# ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତ ।



ପୂଜନୀୟ ଶ୍ରୀଯୁକ୍ତ କୃଷ୍ଣଦାସ କବିରାଜ ଗୋସ୍ୱାମୀ ବିରଚିତ

## ଆଦିଲୀଳା ।

ଶ୍ଳୋକ ମାନଙ୍କର ପ୍ରସିଦ୍ଧ ଟୀକା ଓ ଓଡ଼ିଆ ଅନୁବାଦ,

ପୂଜ୍ୟପାଦ ଶ୍ରୀଯୁକ୍ତ ବିଶ୍ୱନାଥ ଚକ୍ରବର୍ତ୍ତୀକୃତ ପୟାରମାନଙ୍କର,

ସଂସ୍କୃତ ଟୀକା ଏବଂ ବାବାଜୀ ଶ୍ରୀ ପଦ୍ମଚରଣ ଦାସଙ୍କ କୃତ

ସଜ୍ଜନତୋଷିଣୀ ନାମ୍ନୀ ବିସ୍ତୃତ ତାତ୍ପର୍ଯ୍ୟ ବ୍ୟାଖ୍ୟା

ସମ୍ବଳିତ ।

ଶ୍ରୀ ମଧୁସୂଦନଦାସଙ୍କ

ଦ୍ୱାରା

ପ୍ରକାଶିତ

ପ୍ରଥମ ସଂସ୍କରଣ ।



# ଭୂମିକା ।

ଅପାରଂ କସ୍ୟାପି ପ୍ରଣୟିଜନବୃନ୍ଦସ୍ୟ କୁତୁକୀ
ରସସ୍ତୋମଂ ହୃତ୍ୱା ମଧୁରମୁପଭୋକ୍ତୁଂ କମପି ଯଃ ।
ରୁଚଂ ସ୍ୱାମାବବ୍ରେ ଦ୍ୟୁତିମିହ ତଦୀୟାଂ ପ୍ରକଟୟନ୍
ସ ଦେବଶ୍ଚୈତନ୍ୟାକୃତିରତିତରାଂ ନଃ କୃପୟତୁ ॥

ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତ ଯେ କି ଅମୂଲ୍ୟଗ୍ରନ୍ଥ ତାହା ବୈଷ୍ଣବଜଗତରେ କାହାକୁ ଅଜ୍ଞାତ ନାହିଁ । ଏଥିରେ ବୈଷ୍ଣବଧର୍ମର ସିଦ୍ଧାନ୍ତମାନ ଉତ୍ତମରୂପେ ମୀମାଂସିତ ହୋଇଅଛି ଏବଂ ଶ୍ରୀମନ୍ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟଚନ୍ଦ୍ରଙ୍କର ଲୀଳାମାନ ମଧ୍ୟ ବର୍ଣ୍ଣିତ ହୋଇଅଛି । ଶ୍ରୀମନ୍ମହାପ୍ରଭୁ ୧୪୦୭ ଶକ ଅର୍ଥାତ୍ ୧୪୮୫ ଖ୍ରୀଷ୍ଟାବ୍ଦରେ ନବଦ୍ୱୀପରେ ଅବତୀର୍ଣ୍ଣ ହୋଇ ୪୮ ବର୍ଷ ପ୍ରକଟ-ଲୀଳା କରିଥିଲେ । ସେ ୨୪ ବର୍ଷ ବୟଃକ୍ରମକାଳରେ ସନ୍ନ୍ୟାସଗ୍ରହଣପୂର୍ବକ ଶ୍ରୀପୁରୁଷୋତ୍ତମକୁ ଆସି ନାନା ଭକ୍ତ-ଲୀଳାଦ୍ୱାରା ଅବଶିଷ୍ଟ ୨୪ ବର୍ଷ ସେଠାରେ ଅତିବାହିତ କରିଥିଲେ । ସେଥିମଧ୍ୟରୁ ପ୍ରଥମ ଛଅବର୍ଷ ଭାରତର ଦକ୍ଷିଣ, ପଶ୍ଚିମ ଓ ଉତ୍ତରପ୍ରଦେଶମାନ ଭ୍ରମଣକରି ପ୍ରେମ-ବନ୍ୟାରେ ସମସ୍ତ ଭାରତକୁ ପ୍ଲାବିତ କରିଥିଲେ । ସେ ଶ୍ରୀରାଧାଭାବରେ ଭାବିତ ହୋଇ ସର୍ବଦା ପ୍ରେମାସ୍ୱାଦନ କରୁଥିଲେହେଁ ସମସ୍ତ ଜୀବଙ୍କୁ ହରିନାମ ଓ ପ୍ରେମ ପ୍ରଦାନ ମଧ୍ୟ ତାଙ୍କର ଅନ୍ୟତମ ପ୍ରଧାନ-କାର୍ଯ୍ୟ ହୋଇଥିଲା । ଶ୍ରୀ ଶ୍ରୀ ଚୈତନ୍ୟ ଚରିତାମୃତ ଉତ୍ତମରୂପେ ପାଠକଲେ ପାଠକମାନେ ତାଙ୍କର ପ୍ରବର୍ତ୍ତିତ ବୈଷ୍ଣବଧର୍ମ ହୃଦୟଙ୍ଗମ କରି ପାରିବେ । ଉତ୍କଳର ତାତ୍କାଳିକ ପ୍ରତାପଶାଳୀ ମହାରାଜା ଶ୍ରୀ ପ୍ରତାପରୁଦ୍ର ଦେବ ସମଗ୍ର ଦର୍ଶନଶାସ୍ତ୍ରର ସୁବକ୍ତା ପଣ୍ଡିତପ୍ରବର ଶ୍ରୀ ବାସୁଦେବ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ଓ କାଶୀଧାମବାସୀ ଦଣ୍ଡୀସ୍ୱାମୀ ପଣ୍ଡିତ ଓ ସନ୍ନ୍ୟାସିଶିରୋମଣି ଶ୍ରୀପ୍ରକାଶାନନ୍ଦ ସରସ୍ୱତୀ ଯେଉଁମାନେ କି ଶ୍ରୀବେଦାନ୍ତଦର୍ଶନର ଶାଙ୍କରଭାଷ୍ୟର ଆଚାର୍ଯ୍ୟ, ଏମାନେ ଶ୍ରୀମନ୍ମହାପ୍ରଭୁଙ୍କର ମତକୁ ଶ୍ରେଷ୍ଠତମ ମତ ବୋଲି ଅବଧାରଣ କରି ତାହା ଗ୍ରହଣ ଓ ପ୍ରଚାର କରିଥିଲେ, ଏବଂ କେତେକ ପ୍ରଧାନ ପ୍ରଧାନ ମୁସଲମାନ ମଧ୍ୟ ଏହି ମତ ଗ୍ରହଣକରି ଦେଶରେ ପ୍ରଚାର କରିଥିଲେ । ଏହି ମତ ତାତ୍କାଳିକ ଭାରତର ପ୍ରାୟ ସକଳ ପ୍ରଦେଶର ବିଖ୍ୟାତ ପଣ୍ଡିତ ଓ ସଜ୍ଜନ-ପୁରୁଷମାନେ ଅବଲମ୍ବନ ଓ ପ୍ରଚାର କରିଥିଲେ । ଯଥା—ଉତ୍କଳ ସମ୍ରାଟଙ୍କର ମନ୍ତ୍ରୀ ଓ ପ୍ରାଦେଶିକ ଶାସନକର୍ତ୍ତା କବିବର ଶ୍ରୀଳ ରାମାନନ୍ଦ ରାୟ, ବଙ୍ଗର ମୁସଲମାନସମ୍ରାଟଙ୍କର ପ୍ରଧାନ ମନ୍ତ୍ରୀ ଓ ଉପମନ୍ତ୍ରୀ ଶ୍ରୀଳ ସନାତନ ଗୋସ୍ୱାମୀ ଓ ଶ୍ରୀଳ ରୂପ ଗୋସ୍ୱାମୀ, ଦାକ୍ଷିଣାତ୍ୟର ପଣ୍ଡିତପ୍ରବର ଶ୍ରୀ ବେଙ୍କଟଭଟ୍ଟ ଓ ତାଙ୍କର ପୁତ୍ର ଶ୍ରୀ ଗୋପାଳ ଭଟ୍ଟ ଗୋସ୍ୱାମୀ ଏବଂ ପଶ୍ଚିମର ମହାପଣ୍ଡିତ ଶ୍ରୀ ବଲ୍ଲଭ ଭଟ୍ଟ ଇତ୍ୟାଦି ଏକାକଥାରେ ଏହି ମତ ତାତ୍କାଳିକ ଭାରତର ସବୁ ସମ୍ପ୍ରଦାୟର ମନସ୍ୱି ବ୍ୟକ୍ତିମାନେ ଗ୍ରହଣ କରିଥିଲେ । ଏହି ମହାପୁରୁଷମାନେ ଶ୍ରୀ ମନ୍ମହାପ୍ରଭୁଙ୍କର ସ୍ୱରୂପ ଗତ ଐଶ୍ୱର୍ଯ୍ୟ ଅନୁଭବପୂର୍ବକ ତାଙ୍କୁ ସ୍ୱୟଂ ରସ-ବିହାରୀ ଶ୍ରୀ ରାଧା-ସ୍ୱଭାବ-କାନ୍ତି-ବିଭୂଷିତ ଶ୍ରୀମନ୍ ଶ୍ରୀ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ବୋଲି ଜାଣି ଜଗତରେ ପ୍ରଚାର କରିଅଛନ୍ତି । ଏହା ଶ୍ରୀଳ ଗ୍ରନ୍ଥକାର ମହୋଦୟ ଉତ୍ତମରୂପେ ଏହି ଗ୍ରନ୍ଥରେ ଆଲୋଚନା କରିଅଛନ୍ତି ।

ଅଧୁନା ନଗଣ୍ୟ ଦରିଦ୍ର ଉତ୍କଳ ସେ ସମୟରେ ମହାସମୃଦ୍ଧିଶାଳୀ ପ୍ରଦେଶ ଥିଲା । ଏହି ପ୍ରଦେଶ ଶ୍ରୀ ମନ୍ମହାପ୍ରଭୁଙ୍କର ଶେଷ ବାରବର୍ଷର ଲୀଳାକେନ୍ଦ୍ର ହେତୁ ତାତ୍କାଳିକ ଓ ତତ୍ପରବର୍ତ୍ତୀ ଅସ୍ମମାନଙ୍କର ପୂର୍ବପୁରୁଷମାନେ ପ୍ରାୟ ସମସ୍ତେ ଶ୍ରୀମନ୍ମହାପ୍ରଭୁଙ୍କର ମତର ଅନୁସରଣ କରୁଥିଲେ, ଏବଂ ଅଧୁନା ମଧ୍ୟ ଏହାର ପରିଚୟ ପ୍ରତ୍ୟେକ ନଗର ଏବଂ ଗ୍ରାମମାନଙ୍କରେ ମିଳୁଅଛି । କିନ୍ତୁ ଦୁଃଖର ବିଷୟ, କାଳକ୍ରମରେ ତାହା ଉପଯୁକ୍ତ ଆଲୋଚନା ଅଭାବରୁ ମଳିନ ହୋଇଯାଉଅଛି । ଏଣୁ କୃପାର ସାଗର ଶ୍ରୀମନ୍ମହାପ୍ରଭୁ ଓ ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁଙ୍କଠାରେ ଅଧମ ଦାସର ପ୍ରାର୍ଥନା ଯେ ସେମାନେ ଉତ୍କଳର ନରନାରୀମାନଙ୍କୁ ପୁନର୍ବାର କୃପାକରି ଶ୍ରୀ ଚୈତନ୍ୟଚରିତାମୃତ ହୃଦୟଙ୍ଗମ କରିବାର ଓ ତତ୍ପ୍ରଦର୍ଶିତ ମାର୍ଗରେ ବିଚରଣ କରିବାର ଶକ୍ତି ପ୍ରଦାନକରନ୍ତୁ । ଶ୍ରୀ ଶ୍ରୀ ଗୁରୁଦେବଗଣ ଏହି ବହିର୍ମୁଖ ବିପଥଗାମୀ ଶିଷ୍ୟପ୍ରତି ଅଶେଷ କୃପା ପୂର୍ବକ କେଶ କର୍ଷଣ କରି ନିଜସେବାରେ ନିଯୁକ୍ତ କରନ୍ତୁ । ଓ କ୍ଷମାଶୀଳ ବୈଷ୍ଣବଗଣ ନିଜଗୁଣରେ ଏହାର ସମସ୍ତ ଦୋଷ ମାର୍ଜନ କରନ୍ତୁ । ସେମାନଙ୍କର ଶ୍ରୀଚରଣଧୂଳି ଏ ଅଧମର ଏକାନ୍ତ ଭରସା ।

ବଙ୍ଗଳା ଅକ୍ଷରରେ ଶ୍ରୀ ଶ୍ରୀ ଚୈତନ୍ୟଚରିତାମୃତର ବହୁବିଧ ସଂସ୍କରଣ ବାହାରିଅଛି; ଆମ୍ଭ ଉତ୍କଳୀୟମାନେ ଅନେକେ ତାହା ପାଠ କରି ଥାଆନ୍ତି । କିନ୍ତୁ ବଙ୍ଗଭାଷା ଅନଭିଜ୍ଞ ଓଡ଼ିଆଭାଇମାନେ ସେଥିରୁ ବଞ୍ଚିତ । ଶ୍ରୀପୁରୁଷୋତ୍ତମଧାମର ଶ୍ରୀରାଧାକାନ୍ତ-ମଠର ଅଧିକାରୀ ଶ୍ରୀ ଭଗବାନ ଦାସ ମହାଶୟ ଉତ୍କଳର ବିଶେଷତଃ ଗଞ୍ଜାମ ପ୍ରଦେଶାନ୍ତର୍ଗତ ଓଡ଼ିଆଭାଇମାନଙ୍କର ଅସୁବିଧା ନିମନ୍ତେ ଖଣ୍ଡିଏ ଶ୍ରୀ ଚୈତନ୍ୟଚରିତାମୃତ ଉତ୍କଳ ଭାଷ୍ୟସହ ଉତ୍କଳାକ୍ଷରରେ ପ୍ରକାଶ କରିବାକୁ ମୋତେ ଅନୁରୋଧ କରିଥିଲେ । କିନ୍ତୁ ଶ୍ରୀ ଚୈତନ୍ୟଚରିତାମୃତପରି ଗ୍ରନ୍ଥର ଭାଷ୍ୟ ପ୍ରକାଶ କରିବା ମୋ ପକ୍ଷରେ ଅତିବ କଠିନ ଏବଂ ଲେଖେ ବା ଛପାଇବାର ବ୍ୟୟଭାର କିଏ ବହନ କରିବ ଏହିସବୁ କାରଣରୁ ମୁଁ ସେଥିରେ ସ୍ଥିରଚିତ୍ତ ହୋଇନଥିଲି । ତାହାର କେତେକ ବର୍ଷପରେ ମୋର ସ୍ନେହାସ୍ପଦ ବନ୍ଧୁ ବାବୁ ଶ୍ରୀ ନିମାଇଁ ଚରଣ ରାୟ ଓ ପଣ୍ଡିତ ଶ୍ରୀ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ ଶ୍ରୀ ଚୈତନ୍ୟ ଚରିତାମୃତ ଭଲରୂପେ ଆଲୋଚନା କରିବାର ଇଚ୍ଛା ପ୍ରକାଶ କରନ୍ତେ ସେଥିରେ ମୁଁ କହିଲି ଅଧିକାରୀ ଶ୍ରୀ ଭଗବାନ ଦାସ ଓ ଭାଷ୍ୟସହ ଶ୍ରୀଚୈତନ୍ୟଚରିତାମୃତ ପ୍ରକାଶ କରିବାକୁ ଅନୁରୋଧ କରିଥିଲେ । ଉକ୍ତଗ୍ରନ୍ଥ ଆଲୋଚନାରେ ଉକ୍ତ ପ୍ରସ୍ତାବଟିକୁ କାର୍ଯ୍ୟରେ ପରିଣତ କରନ୍ତୁ ନା ? ନିମାଇଁ ବାବୁ କହିଲେ "ହେଉ ତାହାହିଁ କରିବା" ଏହିଁରେ ମୁଁ କହିଲି "ତାହା ଆମ୍ଭମାନଙ୍କର ଦୁଃସାଧ" କାରଣ ଶ୍ରୀ ଚୈତନ୍ୟଚରିତାମୃତ କଠିନ ସିଦ୍ଧାନ୍ତରେ ପୂର୍ଣ୍ଣ ସେଥି ଭିତରକୁ ପ୍ରବେଶକରିବା ଆମ୍ଭମାନଙ୍କର ସାଧ୍ୟାତୀତ; ଦ୍ୱିତୀୟତଃ ଛପାଇବାର ଖର୍ଚ୍ଚ ବା କିଏ ବହନକରିବ; ନିମାଇଁବାବୁ କହିଲେ ଯେ ସତତ ଅସମ୍ଭବକୁ ସମ୍ଭବ କରାଇଥାଆନ୍ତି, ସେ କୃପାକଲେ ଏ କାର୍ଯ୍ୟଟି ସମ୍ପନ୍ନ ହୋଇଯିବ; ଏତିକିରେ ସେଦିନର କଥା ବନ୍ଦହେଲା । ପରଦିନ ମୁଁ ଢେଙ୍କାନାଳର ରାଜା ସୁରପ୍ରତାପ ମହେନ୍ଦ୍ର ବାହାଦୁରଙ୍କ ଠାରେ କଥାପ୍ରସଙ୍ଗରେ ପୂର୍ବଦିନର କଥାବାର୍ତ୍ତାମାନ ପ୍ରକାଶକଲି । ତାହା ଶୁଣି ଗୁଣଗ୍ରାହୀ ରାଜାମହୋଦୟ କହିଲେ "ଆପଣମାନେ ଭାଷ୍ୟ ପ୍ରସ୍ତୁତ କରନ୍ତୁ ବ୍ୟୟଭାର ମୁଁ ବହନ କରିବି" । ମୁଁ ସେଥିରେ ଅତୀବ ଆନନ୍ଦିତ ହୋଇ ତାହା ନିମାଇଁ ବାବୁଙ୍କୁ ଜଣାଇଲି ଏବଂ ଆମ୍ଭେମାନେ ଭାଷ୍ୟ ଲେଖିବାକୁ ଆରମ୍ଭ କଲୁଁ । ଅର୍ଥବୋଧ ସକାଶେ କେତେକ ବୈଷ୍ଣବଶାସ୍ତ୍ରର ଆବଶ୍ୟକ ହେବାରୁ ଉପରୋକ୍ତ ରାଜା ମହୋଦୟ ଗ୍ରନ୍ଥଖରିଦ ପ୍ରଭୃତି ପାଇଁ ମୋତେ ଏକ ହଜାର ମୁଦ୍ରା ପ୍ରଦାନ କଲେ ।

ଶ୍ରୀମନ୍ମହାପ୍ରଭୁଙ୍କ କୃପାରୁ ବହୁ୨ ବାଧା ଅତିକ୍ରମ କରି ଆମ୍ଭେମାନେ ଭାଷ୍ୟ ପ୍ରସ୍ତୁତ କରିବାକୁ ଲାଗିଲୁଁ; କିନ୍ତୁ ତାହାଶେଷ ନ ହେଉଣୁ ଆମ୍ଭମାନଙ୍କର ଶ୍ରଦ୍ଧେୟ ରାଜା ମହୋଦୟ ଇହଧାମ ପରିତ୍ୟାଗ କରି ଆମ୍ଭମାନଙ୍କୁ ଶୋକସାଗରରେ ଭସାଇଦେଇ ଗୋଲକଧାମକୁ ଚାଲିଗଲେ । ତତ୍ପରେ ତାଙ୍କର ସୁଯୋଗ୍ୟା ପତ୍ନୀ ରାଣୀ ଶ୍ରୀମତୀ କୃଷ୍ଣଚନ୍ଦ୍ରପ୍ରିୟାଦେବୀ ଉତ୍କଳ ଭାଷ୍ୟସହ ଶ୍ରୀ ଚୈତନ୍ୟଚରିତାମୃତ ସମସ୍ତ ଶ୍ରବଣକରି ଅନ୍ତ ୧୬୦୦୧ ଙ୍କା ଆମ୍ଭମାନଙ୍କୁ ପ୍ରଦାନ କଲେ । ତେଣୁ ମୁଁ ଉତ୍ସାହିତ ହୋଇ ଉତ୍କଳର ଓ ଗଞ୍ଜାମପ୍ରଦେଶର କେତେକ ରାଜା ମହାରାଜା ମଠର ମହନ୍ତ ଜମିଦାର ଓ ଅପରାପର ବ୍ୟକ୍ତିମାନଙ୍କଠାରୁ ଭିକ୍ଷା ସଂଗ୍ରହକରି ଏଗ୍ରନ୍ଥ ପ୍ରକାଶକରିବାକୁ ସକ୍ଷମ ହୋଇଅଛି । ଆଦିଲୀଳା ବର୍ତ୍ତମାନ ପ୍ରକାଶିତ ହେଲା । ମଧ୍ୟଲୀଳା ଯନ୍ତ୍ରସ୍ଥ ।

ଶ୍ରୀଶ୍ରୀ ଚୈତନ୍ୟଚରିତାମୃତପରି କଠିନ ଗ୍ରନ୍ଥର ଭାଷ୍ୟ ପ୍ରକାଶରେ ଆମ୍ଭେମାନେ କେତେଦୂର କୃତକାର୍ଯ୍ୟ ହୋଇଅଛୁଁ ମୁଁ ତାହା କହି ନପାରେ, ଆଶାକରେଁ ପାଠକମାନେ ନିଜ ଗୁଣରେ ସମସ୍ତ ଦୋଷ ମାର୍ଜନା କରିବେ ।

ଶେଷରେ ବକ୍ତବ୍ୟ ଏହିକି ମୋର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ନିମାଇଁ ବାବୁଙ୍କ ସାହାଯ୍ୟରେ ମୁଁ ଏହା ପ୍ରକାଶକରିବାକୁ ସମର୍ଥ ହୋଇଅଛି । ଏମନ୍ତ କି ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛି ନିମାଇଁବାବୁ ଏଥିର ଭାଷ୍ୟକାର ଓ ମୁଁ ତାଙ୍କର ସହାୟକାରୀ; ବାବୁ ଶ୍ରୀ ରାଧାକୃଷ୍ଣ ବସୁ ଏମ ଏ ଓ ପଣ୍ଡିତ ଶ୍ରୀ ବୈଦ୍ୟନାଥ ନନ୍ଦ ପ୍ରୁଫ୍‌ଦେଖିବାରେ ଯଥୋଷ୍ଟ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞତା ପାଶରେ ଆବଦ୍ଧ ।

ଏ ଭାଷ୍ୟପ୍ରଭୃତି ପ୍ରସ୍ତୁତ କରିବାକୁ ଆମ୍ଭେମାନେ ଭାରତ ବିଖ୍ୟାତ ଶ୍ରୀଳ ବିଶ୍ୱନାଥଚକ୍ରବର୍ତ୍ତୀ ମହାଶୟଙ୍କ ଶ୍ରୀଚୈତନ୍ୟଚରିତାମୃତର ସଂସ୍କୃତଟୀକାର ଅର୍ଥକୁ ବିଶେଷ ଭାବରେ ଅବଲମ୍ବନକରିଅଛୁଁ; ଯେଉଁ ସନେହ ସ୍ଥାନମାନଙ୍କର ଉକ୍ତ ମହୋଦୟଙ୍କର ଟୀକା ନାହିଁ, ସେଠାରେ ଶ୍ରୀଚୈତନ୍ୟଚରିତାମୃତର ବଙ୍ଗୀୟ ଅଷ୍ଟାଦଶ ସଂସ୍କରଣର ଭାଷ୍ୟମାନ ଦେଖି ଯାହା ଉପଯୁକ୍ତ ବୋଧ ହୋଇଅଛି ତାହା ଗ୍ରହଣ କରିଅଛୁଁ । ଏବଂ ଯେଉଁ୨ ସ୍ଥାନରେ ସେ ଭାଷ୍ୟକାର ମାନଙ୍କ ମତ ସହିତ ଆମ୍ଭମାନଙ୍କମତର ଐକ୍ୟ ନ ହୋଇଅଛି ସେଠାରେ ଶ୍ଲୋକସ୍ଥଳରେ ଶ୍ରୀମଦ୍‌ଭାଗବତ, ଶ୍ରୀ ମଦ୍‌ଭଗବଦଗୀତା ଶ୍ରୀ ଲଳିତ ମାଧବ, ଶ୍ରୀବିଦଗ୍ଧ ମାଧବ ପ୍ରଭୃତି ମୂଳଗ୍ରନ୍ଥମାନ ଦେଖି ପୂର୍ବାପରମାନ ମିଳାଇ ଅର୍ଥଠିକ କରିଅଛୁଁ । ଓ ଭାଷାର ପଦ୍ୟସ୍ଥଳରେ ଆମ୍ଭଭୁହିଁଙ୍କ ଯାହା ସମୀଚୀନ ବୋଧହେଲା ତାହା ବସାଇଅଛୁଁ ।

ଶ୍ରୀ ପଦ୍ମଚରଣ ଦାସ ।



# ଶୁଦ୍ଧିପତ୍ର

| ପୃଷ୍ଠା | ବିଷୟ | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ୨ | ଟୀକା | ୩ଶ୍ଳୋ | ଆବର୍ଭାବଂ | ଆବିର୍ଭାବଃ |
| ୧୧ | ଭାଷ୍ୟ | ୨୦ ,, | ଲଭନ୍ତୁ | କଳ୍ପନ୍ତୁ |
| ୧୨ | ଟୀକା | ୩୪ ବାଃଚଃ | ପାନ୍ତଭତମା | ପାନ୍ତଭମୋ |
| ,, | ,, | ,, | ଦ୍ୱୈପାୟନ୍ୟ | ଦ୍ୱୈପାୟନ |
| ,, | ଭାଷ୍ୟ | ୩୨ | ନାରଦାସୁରଙ୍କୁ ମାଘ | ନରଙ୍କାସୁରଙ୍କୁ ମାତ୍ର |
| ୧୮ | ଟୀକା | ୩୪ଶ୍ଳୋ | ପଞ୍ଚଶତବାନ | ପଞ୍ଚଶୀତବାନ୍ |
| ୧୯ | ଭାଷ୍ୟ | ୩୨ | ବ୍ରଣତଃ | ବ୍ରଣତଃ |
| ୨୨ | ,, | ୪୩ | ଏଇମତ | ଏଇ କ୍ରମ |
| ୩୫ | ମୂଳ | ୩୮ | ବେଦପେ | ବୈଦେଷେ |
| ୫୨ | ମୂଳ | ୮ଶ୍ଳୋକ | ଉଟ୍ଟଙ୍କୈ | ଉଟ୍ଟଙ୍କୈଃ |
| ୬୪ | ଭାଷ୍ୟ | ୧୪।୧୫ | ପରମକାରୁଣ | ପରମକାରୁଣ |
| ୭୭ | ଟୀକା | ୬ଶ୍ଳୋ | ନବବଧାନ: | ନବବଧାନାଂ |
| ୮୭ | ମୂଳ | ୨ ,, | ତୃଷ୍ଣା | ତୃଷ୍ଣା |
| ୮୯ | ଭାଷ୍ୟ | ୪୫।୫୫ | ଜନରୂପ | ରୂପର |
| ୯୦ | ,, | ୫୨।୫୭ | ଆଜ୍ଞ | ଆଦ୍ |
| ,, | ,, | ,, | ବୈଚିତ୍ର୍ୟକୃତ | ବୈଚିତ୍ରୀକୃତ |
| ୯୯ | ,, | ୨୮ | ଶାଙ୍କ ଶକ୍ତିବର୍ଯ୍ୟ | ସଙ୍କଶକ୍ତିବର୍ଯ୍ୟା |
| ୧୦୩ | ମୂଳ | ୧୨ଶ୍ଳୋ | ମଧୁରାକ୍ଷୀ | ମଧୁରାଣି |
| ୧୦୭ | ,, | ୧୯ ,, | ଅଭିବୃଦ୍ଧି | ଅଭିବୃଦ୍ଧିଂ |
| ୧୧୨ | ,, | ୨୩ ,, | ସଙ୍ଖଃ | ସଙ୍ଖ୍ୟଂ |
| ,, | ଟୀକା | ୨୪ଶ୍ଳୋ | ଅନ୍ତେନ | ଅନ୍ୟେନ |
| ୧୨୮ | ,, | ୪୦ ,, | ଧତ୍ରା | ଧୃତ୍ୱା |
| ୧୩୦ | ମୂଳ | ୪୧ ,, | ମନିଭଞ୍ଜନେନ | ମନୋଭଞ୍ଜନେନ |
| ୧୬୩ | ,, | ୮୨ | ସ | ସତ୍ |
| ୧୭୮ | ,, | ୨୦ଶ୍ଳୋ | କାର୍ଯ୍ୟତାସୁବ | କାର୍ଯ୍ୟତାସୁଷ |
| ,, | ଟୀକା | ୨୧,, | ଉଦ୍ବୋତ | ଉଦ୍ବୋତ୍ତଂ |
| ୧୯୦ | ଟୀକା | ୮ ,, | କଙ୍କଃ | କଙ୍କସ୍ଥଃ |
| ୧୯୩ | ମୂଳ | ୭୦ | ବେବ୍ୟ | ସେବ୍ୟ |
| ,, | ଭାଷ୍ୟ | ୬୩ | କଉବ | କଦ୍ରବ |
| ୨୧୨ | ,, | ୧୦୫ | ଅବତାର | ଅବତାର |
| ,, | ,, | ,, | ଛଦାକଳ୍ପକ | ଛଦାନନ୍ଦଘନ |

| ପୃଷ୍ଠା | ସ୍ଥଳ | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|---|
| ୧୧୦ | ମୂଳ | ୮ | ଚୋରେ | ଭାଗେ |
| ୧୧୩ | ,, | ୩ଶ୍ଳୋକ | ଦ୍ଵଭା | ଦ୍ଵଭାଂ |
| ୧୧୭ | ଭାଷ୍ୟ | ୧୯ | ଶ୍ରୀବୈଷ୍ଣବଚରଣ | ଶ୍ରୀବୈଷ୍ଣବପଦ |
| ୧୨୮ | ମୂଳ | ୬୭ | ଲକ୍ଷ୍ମି | ଲକ୍ଷ୍ମୀ |
| ୧୩୨ | ,, | ୪୮ | ଯାହାଁ | ତାହାଁ |
| ୧୩୪ | ,, | ୧୦୬ | ଗଙ୍ଗାଦ୍ଵାର | ଗଙ୍ଗାଦ୍ଵାର |
| ୧୪୧ | ,, | ୧୪୦ | ଠୋଲ | ଢୋଲ |
| ୧୪୨ | ଭାଷ୍ୟ | ୬ | ଭଗବତ | ଭଗ୍ନବତ |
| ୧୪୬ | ମୂଳ | ୨୦ | ସଦ୍ଭାବ | ସଦ୍ଭବ |
| ୧୪୭ | ,, | ୬୩ | ଉଠର | ଉଠନ୍ତ |
| ୧୪୮ | ,, | ୫୦ | ନାନ | ସ୍ଥାନ |
| ,, | ,, | ,, | ସ୍ଥାନ | ନାନ |
| ୧୪୯ | ,, | ୨୫ | ସଂଘପରଣ | ସଂଯୋଗକଥନ |
| ୧୫୩ | ,, | ୫୨ | ଗଙ୍ଗାଦ୍ଵାର | ଗଙ୍ଗାଦ୍ଵାର |
| ୧୫୪ | ଟୀକା | ୪ଶ୍ଳୋ | ଭଗବତ୍ | ଭଗବନ୍ତ |
| ୧୫୭ | ମୂଳ | ୧୦୨ | ଶାହି | ପହି |
| ୧୬୫ | ଟୀକା | ୨ଶ୍ଳୋ | ଲଘ୍ୟା | ଲଘ୍ନ୍ୟା |
| ୧୬୮ | ମୂଳ | ୩ଶ୍ଳୋ | ଦ୍ଵାଦଶାବର୍ତ୍ତ | ଦ୍ଵାଦଶାବର୍ତ୍ତ |
| ୧୭୭ | ,, | ୫୪ | ହ୍ରଦ୍ଭେ | ହ୍ରଦ୍ଭ |
| ,, | ,, | ୫ଶ୍ଳୋ | ସାଙ୍ଖ୍ୟ | ଶାଙ୍ଖ୍ୟ |
| ୧୭୮ | ମୂଳ | ୬ଶ୍ଳୋ | କଃ | କ୍ୱ |
| ,, | ,, | ୬୫ | ଘନ | ଘନ |
| ୧୭୯ | ଭାଷ୍ୟ | ୧୦୪ | ଦକ୍ତି | ଉକ୍ତି |
| ୧୮୦ | ମୂଳ ୧୩୦ | ୧୩ | ନଚ୍ୟକରେ | ନୃତ୍ୟକରେ |
| ୧୮୧ | ,, ୧୪୪ | ୧୮ | ଅପରଧ | ଅପରାଧ |
| ,, | ,, ୧୪୭ | ୨ | ଢୋଦେଁ | ଚଦେଁ |
| ୧୮୭ | ଟୀକା | ୫ | ଯେମନେ | ଯେମାନେ |
| ୧୮୮ | ଶ୍ଳୋକାର୍ଥ (୫) | ୮ | ଏଡଦ୍ଵାରା | ଏତଦ୍ଵାରା |
| ୧୮୯ | ମୂଳ | ୧ | କଣ୍ଠୁ | କଣ୍ଠ |
| ୧୯୨ | ,, | ୫ | ଶନ୍ଦେହେଦ | ଶନ୍ଦେହେଦଃ |

## ଅଦିଲାଲାର

# ସୂଚୀପତ୍ର

| ବିଷୟ | | ପୃଷ୍ଠାଙ୍କ |
|---|---|---|
| ପ୍ରଥମ | ପରିଚ୍ଛେଦ | ୧ |
| ଦ୍ୱିତୀୟ | ” | ୨୫ |
| ତୃତୀୟ | ” | ୪୦ |
| ଚତୁର୍ଥ | ” | ୭୧ |
| ପଞ୍ଚମ | ” | ୧୪୨ |
| ଷଷ୍ଠ | ” | ୧୮୦ |
| ସପ୍ତମ | ” | ୨୦୦ |
| ଅଷ୍ଟମ | ” | ୨୨୦ |
| ନବମ | ” | ୨୨୯ |
| ଦଶମ | ” | ୨୩୪ |
| ଏକାଦଶ | ” | ୨୪୨ |
| ଦ୍ୱାଦଶ | ” | ୨୪୫ |
| ତ୍ରୟୋଦଶ | ” | ୨୫୦ |
| ଚତୁର୍ଦ୍ଦଶ | ” | ୨୫୮ |
| ପଞ୍ଚଦଶ | ” | ୨୬୩ |
| ଷୋଡ଼ଶ | ” | ୨୬୫ |
| ସପ୍ତଦଶ | ” | ୨୭୩ |





RAJA SURAPRATAP MOHINDRA BAHADUR
OF DHENKANOL.

# ଉତ୍ସର୍ଗପତ୍ର ।

ଭୂତପୂର୍ବ ଢେଙ୍କାନାଳାଧୀଶ୍ୱର ଶ୍ରୀ ସୂରପ୍ରତାପ ମହେନ୍ଦ୍ରବାହାଦୁରଙ୍କ ନାମରେ ଉତ୍ସୃଷ୍ଟ ।

ହେ ସୂରପ୍ରତାପ ! ସୁକବିର ଗୁଣଶାଳୀ,
ଗଲ୍ ଗୁଳ ଢେଙ୍କାନାଳ ଧରଣ ଅଧିକାର ।
ଲାଗୁଥିଲା ଢେଙ୍କାନାଳ ବୃନ୍ଦାବନପରି
ବନରାଜି-ସୁଶୋଭିତ ଗିରୀ-ବେଷ୍ଟିତ ।
ଯେତେବେଳେ ଯାଇଁ ବୁଲେଁ ଏକାନ୍ତ ଭାବରେ
ଭଗୀରଥୀ ପୁଷ୍କରର ସୁବିସ୍ତୀର୍ଣ୍ଣ ତଟେ,
ଗୃହଦ୍ୱାର ଗିରି ମୂର୍ତ୍ତି କରେ ବୃନ୍ଦାବନ,
ଲାଗେ ସରସୀ ମାନସ-ଶରୀର ସମାନ ।
ପୁଣି ଯେବେ ଯାଏଁ କୁଞ୍ଜକାନ୍ତଙ୍କ ମନ୍ଦିରେ,
ଦେଖେଁ ଶ୍ରୀକୁଞ୍ଜକାନ୍ତଙ୍କୁ ଶ୍ରୀମତୀ-ସଙ୍ଗରେ,
ଦେଖେଁ ସମ୍ମୁଖରେ ଅନ୍ନପୂର୍ଣ୍ଣା ସରୋବର,
ଚତୁର୍ଦ୍ଦିଗ ଚିତ୍ରରାଜି-ବେଷ୍ଟିତ ସୁନ୍ଦର,
ହୁଏ ମନେ, ଏହି ରାଧାପ୍ରିୟ ରାଧାକୁଣ୍ଡ,
ଚଉଦିଗ ସୁଶୋଭିତ ବନ ଉପବନେ,
ବିହରୁ ଅଛନ୍ତି ଏଥି ସଦା ପ୍ରୀତ-ମନେ
ରାଧା ସଙ୍ଗେ ରାଧାକାନ୍ତ ସଖୀଗଣ ଘେନି ।
କରୁଛନ୍ତି ଅବା କେବେ ଜଳେ ଜଳ-କେଳି
ଜଳ-ପିଙ୍ଗା-ପିଚ୍ଚି-ରଙ୍ଗେ ପରସ୍ପର ଅଙ୍ଗେ,
କରି ପୂର୍ଣ୍ଣ ଅନ୍ନପୂର୍ଣ୍ଣା ସ୍ୱରୂପର ସାଧନା ।
କେବେ ଚରୁଡାଳେ ରଙ୍ଗେ ରଚି ଗୃହ-ଦୋଳା
ଦୋଳୁଛନ୍ତି କୁଞ୍ଜକାନ୍ତ ପ୍ରେମର ତରଙ୍ଗେ
ବସାଇ ଆପଣା ବାମେ ପ୍ରେୟସୀ ପ୍ରଧାନା,
ଚତୁର୍ଦ୍ଦିଗେ ଅଷ୍ଟସଖୀ ଭୁଜେ ଭୁଜ ଧରି
ଘୂରୁଛନ୍ତି ବେଢ଼ି ତାଙ୍କୁ ମଣ୍ଡଳ ଆକାରେ
ଘେନି କୃଷ୍ଣପ୍ରିୟା-ଦେବୀ-ଦିବ୍ୟ ଆରାଧନା ।
ପଡ଼ିରହିଅଛି ସେହି ଭଗୀରଥୀ ସର,
ଅଛନ୍ତି ଶ୍ରୀକୁଞ୍ଜକାନ୍ତ ସୁନ୍ଦର ମନ୍ଦିର,
ଅଛି ସେହି ବନଶୋଭା ଅକ୍ଷୁଣ୍ଣ ଭାବରେ,
ଚିତ୍ରରାଜି ରହିଛନ୍ତି ଅଟଳ ମହିମାରେ;
କିନ୍ତୁ କି ଅଜ୍ଞାତ ଆଜି ହୋଇଛି ମୋହର
ସର୍ବ ଶୂନ୍ୟମୟ ସର୍ବ ଦିଶଇ ଅନ୍ଧାର ।
ହୋଇଛି କି ଅନ୍ଧ ମୁହିଁ ପାରୁନାହିଁ ଦେଖି ?
କି ଅବା ବାତୁଳ ମୁହିଁ ଭ୍ରାନ୍ତ ମୋର ଆଖି ?
ନା ନା, ଜାଣିଲି ଏ ତଥ୍ୟ, ଅଛି ବୃନ୍ଦାବନ,
କିନ୍ତୁ ନାହାନ୍ତି ସେ ବୃନ୍ଦା କରିବେ ସଜାଣ ।
କିଏ ସଜାଇବ ବନ ତାଙ୍କ ଅଙ୍ଗାବନେ,
କିଏ ବସାଇବ ରାଧାମୋହନ ଯତନେ,
କିଏ ବା କରିବ ସେବା ମାନସ ମନାଇ
ଯେଉଁଠାରେ ଯେ ବା ଯୋଗ୍ୟ ପଦାର୍ଥ ଖଞ୍ଜାଇ ।
ବୃନ୍ଦା ବିନେ ବୃନ୍ଦାଙ୍କର ଯେତେ ପରିଗ୍ରହୀ
ପଡ଼ିଛନ୍ତି ଅଚେତରେ ଦୁଃଖେ ହୋଇ ଘାର ।
ପଡ଼ିଅଛି ଅର୍ଦ୍ଧହୋଇ ଝୁଲଣ-ମଣ୍ଡପ
ଲଣ୍ଡଭଣ୍ଡ କାଷ୍ଠକଟି ହୋଇ କାଷ୍ଠସ୍ତୂପ ।
କେଉଁ ଗୁଣ ବା ବର୍ଣ୍ଣିବ ସୁରରେ ତୋହର,
ଥିଲୁ ତୁହି ଆସି ମହୀ ସାଜ ଗୁପ୍ତେ ନର— ।
କୃଷ୍ଣର କିଂକର ତୁହି, କୃଷ୍ଣ କାର୍ଯ୍ୟ ଲାଗି,
ପଠାଇ ଥିଲେ ଗୋବିନ୍ଦ ସ୍ୱକାର୍ଯ୍ୟନିମନ୍ତେ ।
ସାଧି ସେ ଆଦେଶ, ସୁଖେ ଗଲୁ ଏବେ ଚଳି,
ମରୁଅଛୁଁ ଆମ୍ଭେମାନେ ସିନା ଜଳିଜଳି ।
ଏକବିଂଶ ବର୍ଷକାଳ ରହି ତୋର ସଙ୍ଗେ
ପଦେ ପଦେ ଦେଖିଅଛୁ ତୋହର ଆଚରଣ ।
କି ବର୍ଣ୍ଣିବ ଗୁଣ-ବଳ ସୁରରେ ତୋହର
ପ୍ରତ୍ୟୟ ନଯିବେ ନରେ ଅନୁଭବ ବିନା,
ଭାବିବେ ଅତ୍ୟୁକ୍ତି ବୋଲି ଏବର୍ଣ୍ଣନା ମୋର,
ହେଲେହେଁ ଅଳପତର ଏ ପ୍ରକୃତଠାରୁ ।
ତେବେ କରିବାକୁ ଶାନ୍ତ ମନରୁ ବେଦନା
କହୁଅଛୁ ଟୁକିକରେ ସେମାନଙ୍କୁ କିଛି;
ରାଜା ହୋଇ ନଥିଲି ତୋ-ରାଜଅଭିମାନ,
ଧନ-ଗର୍ବ-ରୂପ-ଗର୍ବ ଯଉବନ-ଗର୍ବ
ମାନ ଥିଲେ ଏ ସକଳ ତୋହଠାରେ ହାରି;

ନେଉଥିଲୁ ରୂପେ ଗୁଣେ ସର୍ବଚିତ୍ତ ହରି ।
ଯେ ଦେଖିଛି ଥରେ ତୋର ସୌମ୍ୟ କଳେବର,
ସେ ବୁଝିଛି ତାହା କେଡ଼େ ଅଟଇ ମଧୁର ।
ଯେ କରିଛି ଥରେ ତୋର ସଙ୍ଗରେ ଆଳାପ,
ସେ ବୁଝିଛି କି ମଧୁର ତୋହର ସଂଳାପ ।
କହିନାହୁଁ କାହାକୁ ତୁ ତୁଚ୍ଛ କଟୁଭାଷା,
ହେଲେହେଁ ବିରକ୍ତ ମନେ ମନ୍ଦ କାର୍ଯ୍ୟ ଦେଖି ।
ଧନ-ଯୌବନଗର୍ବରେ ବହୁ ବହୁ ଜନ
ମଣନ୍ତି ଧରାକୁ ସରା, ମନୁଷ୍ୟକୁ ପଶୁ,
କରନ୍ତି ବହୁ ଅନୀତ ଗଣନାକୁ ବଳି,
ହୋଇ ମତ୍ତ ହବା ରତ ମାଦକସେବନେ ।
ପରନାରୀ ପରବିତ୍ତ-ହରଣରେ ମାତି
ନୃତ୍ୟ-ଗୀତରେ ପୁହାଇ ଦିଅନ୍ତି ଯେ ରାତି ।
କିନ୍ତୁ ଖାଇନାହୁଁ ଏହି ଜୀବନରେ ତୁହି
ପାନସଙ୍ଗେ ଗୁଣ୍ଡି, ରହୁ ଅନ୍ୟ-ନିଶା ଦୂରେ ।
କରିନାହୁଁ ପରିହାସ ପରକାମିନୀ
ମାତୃତୁଲ୍ୟା ପରନାରୀ ମଣି ସଦା ମନେ ।
ନୁହଇ ଏତିକି, ଥିଲା ଅନେକ ଆହୁରି,
ଧୈର୍ଯ୍ୟ, ସହିଷ୍ଣୁତା, ଆଦି ସାଧାରଣୁ ବଳି ।
ଭଲକାର୍ଯ୍ୟେ ଭଲଲୋକେ ଥିଲା ତୋ ଆଦର,
ମନ୍ଦ ଆଚରଣପ୍ରତି ମନେ ବହି ଘୃଣା ।
ଦେଖିଥିଲି ଗୁଣ ଏକ ମହତ ପ୍ରଧାନ
ଅବିଚଳ ମାତୃଭକ୍ତି ଜନନୀଙ୍କଠାରେ ।
କହିପାରେ ଗର୍ବକରି ମୁହିଁ ବାରବାର ।
ନମିଳେ ଏ କଳି-କାଳେ ଜନ ସାଧାରଣେ,
ତେମନ୍ତ ସୁନ୍ଦର ଭକ୍ତି ବାଳକ ଭିତରେ ।
ଚମତ୍କାର-ଗୁଣ ଏକ ଅଛି ଅନୁଭବ,
ବାତ୍ସଲ୍ୟ-ସ୍ନେହରେ ତୋର ହିତ ବାଞ୍ଛାକରି
ଦୋଷ ଦେଖି ଗୁପତରେ ଦେଲେ ତୋତେ ଗାଳି;
ହେଉ ନଥିଲୁ ତୁ କେବେ ରାଜମଦେ ଚଳି;
କରୁଥିଲୁ ଭଲଭାବେ ସେମାନ ଗ୍ରହଣ,
ଚେଷ୍ଟାକରି ସାଧ୍ୟମତ ଆପଣା ଶୋଧନେ ।
ମିଶିଥିଲା ପୁଣି ତହିଁ ଆସି କୃଷ୍ଣଭକ୍ତି
ନିତ୍ୟ ଶୁଦ୍ଧ, ଅପାର୍ଥିବ, ଦେବତା-ଦୁର୍ଲ୍ଲଭ,
ନଏ ଯାହା ମାୟିକରୁଁ ବିମୁକ୍ତ କରାଇ
କୃଷ୍ଣପ୍ରିୟ-ଲୀଳା-ସ୍ଥଳୀ ଶ୍ରୀବୃନ୍ଦାବନକୁ ।
ଦିଏ ଚିର ସୁଖକର କୃଷ୍ଣସେବା-ସୁଖ
ମଜ୍ଜାଇ ପ୍ରେମ-ରସରେ ଦିବସ ରଜନୀ ।
ଅର୍ପିଥିଲୁ ଆପଣାକୁ ଶ୍ରୀକୃଷ୍ଣ-ସେବାରେ
ରାଧା ବୃନ୍ଦାବନଚନ୍ଦ୍ର ମାନସ ମଜାଇ ।
ମଧ୍ୟେ ମଧ୍ୟେ କରୁ ଯେବେ ତୁ ଶ୍ରୀକ୍ଷେତ୍ରେ ବାସ
ନିତି ନିତି ଯାଉ ଜଗନ୍ନାଥ-ଦରଶନେ
ହେଲେହେଁ ଶ୍ରୀଅଙ୍ଗପୀଡ଼ା ତୁଚ୍ଛ ତାକୁ ମଣି,
ମଣି ପ୍ରୀତିକର ଜଗନ୍ନାଥଦରଶନ ।
କର୍ମ୍ମୀ ରାଜ-ପୁରୋହିତ କର୍ମ୍ମକାଣ୍ଡ ଲଙ୍ଘି,
ସୁକୌଶଳେ ଭକ୍ତିପଥେ ହେଲୁ ଅଗ୍ରସର;
ଗୁପତେ ପ୍ରେମଭଣ୍ଡାର କଲୁ ତୁ ଲୁଣ୍ଠନ,
ଅଲକ୍ଷିତେ ଜଗତରେ ଦେଲୁ ତାହା ବାଣ୍ଟି ।
ନ ଜାଣନ୍ତି ଆଜଯାଏ ଢେଙ୍କାନାଳ ବାସୀ,
ବୃନ୍ଦାବନବାସୀ ରାଧା-ରମଣ-ସେବକ
ଭକ୍ତ-ପଣ୍ଡିତଗୋସାଇଁ ଶ୍ରୀମଧୁସୂଦନ
ହୋଇଥିଲେ ଶିକ୍ଷାଗୁରୁ ଗୁପତେ ତୋହର ।
କିଏ ଜାଣିଥିଲା ଆଜଯାଏ ଢେଙ୍କାନାଳେ,
ଲେଖୁଥିଲୁ ଗୁପତରେ କୃଷ୍ଣ-ଗୁଣାବଳି,
ଚୈତନ୍ୟଚରିତାମୃତ-ଗ୍ରନ୍ଥ-ରାଜୁଁ ବାଛି,
ଶ୍ରୀ ସାକ୍ଷୀଗୋପାଳଙ୍କର ସାକ୍ଷ୍ୟ ଦେବା ଲୀଳା
ଆସିଣ ବିଗ୍ରହ-ରୂପେ ବୃନ୍ଦାବନ ଧାମୁଁ
ବଡ଼ବିପ୍ର ଛୋଟବିପ୍ର ପ୍ରେମେ ହୋଇ ବଶ ।
ଅପୂର୍ଣ୍ଣ ରହିଛି ସେହି ସରସ-କବିତା
ଦେଖି କାହାନୟନରୁ ନ ଝରିବ ନୀର ।
ତୋ ଭକ୍ତିବଳରେ ମହା ମହା ଭକ୍ତମାନେ
ଆସୁଥିଲେ ଢେଙ୍କାନାଳ—ଗୁଣାଲୁବ୍ଧ ହୋଇ ।
କହି ନପାରିବି ଏଥି ସମସ୍ତଙ୍କ ନାମ ;
କେତେ ଜଣଙ୍କର ନାମ କରୁଛି ଉଲ୍ଲେଖ ।
ରସିକ ଭକତ ବିଦ୍ୟାଭୂଷଣ ରସିକ
ବକ୍ତାବର ଉପଇନ୍ଦ୍ର, ଭକତ-ବିନୋଦ ,
ସୁବିଖ୍ୟାତ କାର୍ତ୍ତିକେୟ ସୌମ୍ୟ ରାମଦାସ
ଦଳେବଳେ ତିନଥର ଆସିଥିଲେ ଏଥି ।

ଯାହାଙ୍କ ମଧୁଙ୍କାର୍ତନ-ସରସ-ଝଙ୍କାରେ
ପୂର୍ଣ୍ଣ ବଙ୍ଗ-ଉତ୍କଳ-ଲତା ପ୍ରେମରହିଲ୍ଲୋଳେ ।
ଶ୍ରୀ ମଧୁସୂଦନ ପ୍ରେମ-ମଧୁ କରି ଦାନ
ଢେଙ୍କାନାଳ ରାଜ୍ୟପୁର ଧନ୍ୟ କଲେ ଯେହ୍ନୁ ।
ଉତ୍କଳେ ଏ ଢେଙ୍କାନାଳେ ଅଗ୍ରେ ପଦାର୍ପଣ—
କଲେ ଭାଗବତରତ୍ନ ମଲ୍ଲିକ କୁଳଦା,
କଲେ ଯେହ୍ନୁ ଶତରଣ ସିଦ୍ଧାନ୍ତ-ରତନ
ଅପ୍ରକାଶ ରହିଥିବା ଯେଉଁ ପେଟ-ପେଟକାରୁ ।
ଠାକୁର ଶ୍ରୀ ହରନାଥ ଆସିଥିଲେ ଏଥି
ହୋଇଣ ଆକୃଷ୍ଟ ତୋର ଭକ୍ତି-ଗୁଣରେ ।
"ଜୟ ନିତାଇ" ଦେବେନ୍ଦ୍ର ନବଦ୍ୱୀପ-ଭୂଷଣ
ଆସିଣ ଦେଖାଇଥିଲେ ତୃଣରୁ ନୀଚତା ।
ଶ୍ରୀ ନିତ୍ୟାନନ୍ଦ ବଂଶଜ ନିତ୍ୟାନନ୍ଦମୟ
ମୋହନ ସୁନ୍ଦରଦେବ ଗୋସ୍ୱାମୀ-ପ୍ରବର
ବୀଣାକଣ୍ଠେ କେତେଥର ଗାଇ ଗୀତମାନ
ପୂର୍ଣ୍ଣ କରିଥିଲେ ଢେଙ୍କାନାଳ ରାଜପୁର ।
ଶଙ୍କରମଠ-ଭୂଷଣ ପଣ୍ଡିତ ପ୍ରବର
ସନ୍ୟାସୀ ମଧୁସୂଦନ ତୀର୍ଥ ସରସ୍ୱତୀ
ଢାଳିଥିଲେ ବାକ୍ୟାମୃତ ଅନର୍ଗଳ ଖଟବ
ବୃନ୍ଦାଳ ରାଜସଭାରେ ଧରମ ମରମ ।
ଆଖଡ଼ିଆ ହରିଦାସ ଦାସ ନିତ୍ୟାନନ୍ଦ
ମୋହିଥିଲେ ଜନ ମନ ରସ-କରତଳେ ।
ଭାରତର ଧର୍ମବୀର ଶିଶିରକୁମାର
ହୋଇଥିଲେ ଅତି ପ୍ରୀତ ତୋ ମଧୁଭାଷଣେ,
ପ୍ରେରିଲେ ଦ୍ୱାରକାନାଥେ ବାଞ୍ଛି ତୋର ହିତ ।
କଲେ ଯେ ଢେଙ୍କାନାଳର ମଙ୍ଗଳ ସାଧନ,
ତାଙ୍କର ଯତ୍ନାନୁସାରେ "ନିମାଇ ସନ୍ନ୍ୟାସ"
ହେଲା ଅଭିନୀତ ଢେଙ୍କାନାଳ ରଙ୍ଗମଞ୍ଚେ
ତାଙ୍କ ଯୋଗୁଁ ପ୍ରଚାରିତ ହେଲା ଘରେ ଘରେ
ମଙ୍ଗଳ ହରିକୀର୍ତ୍ତନ ଅମଙ୍ଗଳ-ନାଶୀ ।
ଭାରତ ବିଖ୍ୟାତ ଧନୀ ବୈଷ୍ଣବ-ପ୍ରବର
ବୈଷ୍ଣବ ସେବୀ ରାଜର୍ଷି ରାୟ ବନମାଳୀ
ଲଭି ଥିଲେ ପ୍ରୀତି ତୋହ ସଙ୍ଗେ ଆଳାପରେ
ଦେଖି ତୋ କୃଷ୍ଣାନୁରାଗ ଶ୍ରୀ ବୃନ୍ଦାବନରେ ।

ଜନନୀ ଶ୍ରୀ ଅନ୍ନପୂର୍ଣ୍ଣା ପତ୍ନୀ କୃଷ୍ଣପ୍ରିୟା,
ସଙ୍ଗେ ମିଳି ସାଧିଥିଲ କୃଷ୍ଣପ୍ରିୟ କାର୍ଯ୍ୟ,
ରଖି କୁମାରଙ୍କ ଆଗେ ସୁନ୍ଦର ଆଦର୍ଶ,
ଶିଖାଇଣ ଥିଲ ରାଜନୀତ ଧର୍ମନୀତ ।
କୋଟି କୋଟି ଉପଦେଶେ ନ ହୁଏ ଯା ସାଧି
ଏକମାତ୍ର ଆଦର୍ଶରେ ଅଟେ ତା ସୁଲଭ !
ଦେଖାଇଲେ ସୁ-ଆଦର୍ଶ ଗମ୍ଭୀର ପ୍ରକୃତି
ସ୍ୱଚରିତ୍ର ବନମାଳୀ ରହି ପାଶେ ପାଶେ ।
ନିର୍ମଳ-ଚରିତ୍ରେ-ଗଢ଼ା ଗୁରୁ ମିଶ୍ରଭାଷୀ
ଜଗତରେ ସମଦୃଷ୍ଟି ଲଭା ଜଗତ ବନ୍ଧୁ
ନିଜର ଉଚ୍ଚ ଆଦର୍ଶ ରଖି ତୋ ଆଗରେ
ମାଟିଲେ ମାଟିଣି ଦେଇ ତୋ ଗଢ଼ା ଚରିତ୍ର ।
ବାହାର ଶ୍ରଧାନ କଷ୍ଟ ନପାରଇଁ ବୁଝି,
ଜାଣିପାରୁନାହିଁ କଥ ଗୋବିନ୍ଦଙ୍କ ଇଚ୍ଛା,
ଫୁଟାଇ ସୁନ୍ଦର ଏକ କୁସୁମ ଏ ମହୀ,
ନହେଉଣୁ ଗନ୍ଧତାର ସ୍ୱଚ୍ଛନ୍ଦେ ବିସ୍ତାର
ତୋଳି ନେଇଗଲେ କେଉଁ ଦେବପୂଜାଲାଗି ;
କି ଭାବରେ କଲେ ତାର ଉଚିତ ବେଭାର ।
ନିଷ୍ଠୁର କାହିଁକି ଏଡ଼େ ହେଲେ ମୋହ ପ୍ରତି
କାହିଁକି ଅପୂର୍ଣ୍ଣ ମୋର ରଖିଲେ ବାସନା !
ଭାବିଥିଲି ପୁର ! ତୋର ଅବଲମ୍ବନରେ
ହୋଇବ ପ୍ରଚାର ଗୌରପ୍ରେମ ଏ ଉତ୍କଳେ ।
ମାତିବେ ପୁଣି ଉତ୍କଳ-ନରନାରୀମାନେ
ପିଇ କୃଷ୍ଣପ୍ରେମରସ ସରସ ମଧୁର ।
ଅନ୍ତରେ ରହିଲା ଏକ ବାସନା ଅପୂର୍ଣ୍ଣ
ନ ପାରିଲି ଯା ଶୁଣାଇ ଥରେ ପୂର୍ଣ୍ଣକରି ।
ଚୈତନ୍ୟ ଚରିତାମୃତ ସର୍ବାଙ୍ଗସାର
ବୁଝାଇଣ କହିବି ଏହି ଟୀକାସହି ।
କିନ୍ତୁ ପ୍ରଭୁ ଏ ପ୍ରତ୍ୟୟ ଜନ୍ମିନ୍ତି ମୋହର
ନେଇଛନ୍ତି ମହାପ୍ରଭୁ ନିଜ-ପଦ କଥି ।
ଯେଣୁ ଶେଷଦିନ ଯେବେ ଗଲୁ ତୁହି ଭୁଲି
ଛାଡ଼ି ଏହି ଧରା, ଛାଡି ସଂସାର ମମତା;
ଖେଳୁଥିଲା ଗୋବିନ୍ଦଙ୍କ ଗୋଷ୍ଠଲୀଳା ଚିତ୍ରେ ।
ସେହିଦିନ ଭୃତ୍ୟେ ରାଇ ଦେଲୁ ତେ ଆଦେଶ,

"କର ଶୀଘ୍ର ଧେନୁ, ବତ୍ସା, ବାଳକ-ନିର୍ମାଣ,
ସ୍ୱୋପନ୍ନ ନିରମିତ ଅଗ୍ନି କାଷ୍ଠ କଟ,
ନିକଟରେ ଗୋଷ୍ଠାଷ୍ଟମୀ ହେବ ହେନ୍ଦ୍ୱଦିନ,
ଲକ୍ଷ୍ମୀକାନ୍ତ ଶ୍ରୀକୃଷ୍ଣଙ୍କର ନବ ଗୋଷ୍ଠଲୀଳା ।
ଯାନ୍ତୁ ଚାଲି ଏସନରେ କୃଷ୍ଣଲୀଳାମାନ,
କାର୍ତ୍ତିକ ପ୍ରବେଶ-ଶୁକ୍ଳା ଏକାଦଶୀ ଦିନ,
ଏ ମହୋତ୍ସବର ତେଜ ଗଲା ନିତ୍ୟଧାମେ ।
ଏଣିକ ମୋ ନିବେଦନ ଗୁରୁର ଚରଣେ
ପାରନ୍ତି ଯେ ଅସମ୍ଭବ ସମ୍ଭବ କରାଇ,
ପାରନ୍ତି ଯେ ସାଧୁ କ୍ଷୁଦ୍ରଦ୍ୱାରା ବଡ଼ କାର୍ଯ୍ୟ

କରନ୍ତୁ ନିୟୁକ୍ତ ତୋତେ ଉଜ୍ଜ୍ୱଳ ହୃଦରେ,
ଚୈତନ୍ୟ-ଚରିତାମୃତ ପ୍ରକୃତ କାର୍ଯ୍ୟରେ ।
ତାଙ୍କ ଆଜ୍ଞାରେ ଲେଖକ ଅଲଙ୍କାର ପାଇ ।
ଆସ୍ୱାଦନ୍ତୁ ଭକ୍ତେ ଯାହା ମଧୁର ...
ରହି ସାଧୁଗଣମେଳେ ଭକ୍ତି ବଢ଼ାଇ ଘରେ,
ମ୍ଲାନିତ କରାଅ ଗୌରପ୍ରେମ-ତରଙ୍ଗରେ
ଗୌରପ୍ରିୟ-ଭୂମି ଏହି ସରଳ ଉତ୍କଳ
ଜୀବନ୍ତରେ ଯେ ଉଦ୍ଦେଶ୍ୟ ହୋଇଲା ସଫଳ
ହେଉ ହେ ସଫଳ, ଏବେ ପ୍ରଭୁ କୃପାବଳେ ।

ଶ୍ରୀ ପଦ୍ମଚରଣ ଦାଶ ।

—o:*:o—

ଶ୍ରୀଶ୍ରୀକୃଷ୍ଣଚୈତନ୍ୟଚନ୍ଦ୍ରାୟ ନମଃ ।

# ଶ୍ରୀଶ୍ରୀ ଚୈତନ୍ୟ ଚରିତାମୃତ ।

## ଆଦିଲୀଳା ।

### ପ୍ରଥମ ପରିଚ୍ଛେଦ ।

ବନ୍ଦେ ଗୁରୂନୀଶଭକ୍ତାନୀଶମୀଶାବତାରକାନ୍ ।
ତତ୍ପ୍ରକାଶାଂଶ୍ଚ ତଚ୍ଛକ୍ତୀଃ କୃଷ୍ଣଚୈତନ୍ୟସଂଜ୍ଞକମ୍ ୧ ॥

ବନ୍ଦେ ଶ୍ରୀକୃଷ୍ଣଚୈତନ୍ୟ-ନିତ୍ୟାନନ୍ଦୌ ସହୋଦିତୌ ।
ଗୌଡ଼ୋଦୟେ ପୁଷ୍ପବନ୍ତୌ ଚିତ୍ରୌ ଶନ୍ଦୌ
ତମୋନୁଦୌ ॥ ୨ ॥

( ଗ୍ରନ୍ଥାରମ୍ଭେ ପ୍ରଥମଂ ତାବତ୍ ସର୍ବଶୁଭାୟ ସର୍ବବିଘ୍ନବିନାଶାୟ ସର୍ବାଭୀଷ୍ଟପରିପୂରଣାୟ ଚ ଶିଷ୍ଟାଚାରପରମ୍ପରାପ୍ରାପ୍ତେଷ୍ଟଦେବତାନମସ୍କାରରୂପଂ ମଙ୍ଗଳମାଚରତି ବନ୍ଦେ ଇତି ) ଗୁରୂନ୍ ( ଇତି ବହୁବଚନଂ ଦୀକ୍ଷାଶିକ୍ଷାଭେଦେନ ଗୁରୋଃ ଦ୍ୱୈବିଧ୍ୟାତ୍ ଶିକ୍ଷାଗୁରୋରପି ଅନ୍ତର୍ଯାମିଭକ୍ତଶ୍ରେଷ୍ଠଭେଦେନ ଦ୍ୱୈବିଧ୍ୟାତ୍ ) ଈଶଭକ୍ତାନ୍ ( ଶ୍ରୀବାସାଦୀନ୍ ) ଈଶାବତାରକାନ୍ ( ଶ୍ରୀମଦଦ୍ୱୈତାଚାର୍ଯ୍ୟାଦୀନ୍ ) ତତ୍ପ୍ରକାଶାନ୍ ( ଶ୍ରୀମନ୍ନିତ୍ୟାନନ୍ଦାଦୀନ୍ ) ଚ ତଚ୍ଛକ୍ତୀଃ ( ଶ୍ରୀ ଗଦାଧରାଦୀନ୍ ) କୃଷ୍ଣଚୈତନ୍ୟସଂଜ୍ଞକଂ ( କୃଷ୍ଣଚୈତନ୍ୟଃ ସଂଜ୍ଞା ନାମ ଯସ୍ୟ ତମ୍ ) ଈଶଂ ବନ୍ଦେ । [ ୧ମ ଶ୍ଲୋକଃ ]

ପୁନର୍ମଙ୍ଗଳମାଚରତି ବନ୍ଦେ ଇତି । ଗୌଡ଼ୋଦୟେ ( ଗୌଡ଼ ଏବ ଉଦୟଃ ଉଦୟାଚଳଃ ତସ୍ମିନ୍ ) ସହ (ଏକଦା) ଉଦିତୌ (ଉଦୟଂ ପ୍ରାପ୍ତୌ) ପୁଷ୍ପବନ୍ତୌ ( ଦିବାକରନିଶାକରୌ ଇତି ଅତ୍ର ନତୁ ଗୌଣୀ ବୃତ୍ତିଃ କୋଟିଚନ୍ଦ୍ରସୂର୍ଯ୍ୟସମପ୍ରଭ ଇତି ଦର୍ଶନାତ୍ ) ଚିତ୍ରୌ ( ଆଶ୍ଚର୍ଯ୍ୟୌ ) ଶନ୍ଦୌ ( ଶଂ କଲ୍ୟାଣଂ ଦଦାତେ ଯୌ ) ତମୋନୁଦୌ ( ଅଜ୍ଞାନତମୋନାଶକୌ ) ଶ୍ରୀକୃଷ୍ଣଚୈତନ୍ୟ-ନିତ୍ୟାନନ୍ଦୌ ( ଅହଂ ) ବନ୍ଦେ । [୨ୟ ଶ୍ଲୋକଃ]

ସହ ଏକଦା ପ୍ରଥମମିଳନାତ୍ ସହାବସ୍ଥିତ୍ୟା ପ୍ରକାଶମାନୌ ନତୁ ସହଜାତୌ ଉଭୟୋର୍ଜନ୍ମକାଳସ୍ୟ ଭେଦତ୍ । ୨ । ଚ, ଚ,

---

ଗୁରୁମାନଙ୍କୁ ( ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ ) ଈଶ (ସର୍ବୈଶ୍ୱର୍ଯ୍ୟ ଓ ସର୍ବମାଧୁର୍ଯ୍ୟପୂର୍ଣ୍ଣ ଭଗବାନଙ୍କ) ଭକ୍ତମାନଙ୍କୁ, ଈଶଅବତାରମାନଙ୍କୁ, ଈଶପ୍ରକାଶମାନଙ୍କୁ, ଈଶଶକ୍ତିମାନଙ୍କୁ ଏବଂ ସ୍ୱୟଂ ଈଶ ଶ୍ରୀକୃଷ୍ଣଚୈତନ୍ୟଙ୍କୁ ବନ୍ଦନା କରୁଅଛୁ । [ ୧ମ ଶ୍ଲୋକାର୍ଥ ]

ଗୌଡ଼ଦେଶରୂପ ଉଦୟାଚଳରେ ଯୁଗପତ୍ (ଏକକାଳୀନ) ସମୁଦିତ ଆଶ୍ଚର୍ଯ୍ୟରୂପ ଶୁଭଦାୟକ ଅଜ୍ଞାନାନ୍ଧକାରନାଶକ ରବିଚନ୍ଦ୍ରତୁଲ୍ୟ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ବନ୍ଦନା କରୁଅଛୁ । [ ୨ୟ ଶ୍ଲୋକାର୍ଥ ] ( ପ୍ରଥମ ମିଳନଠାରୁ ଏକତ୍ର ବାସ ଏଠାରେ ଲକ୍ଷ୍ୟ )

ଯଦଦ୍ୱୈତଂ ବ୍ରହ୍ମୋପନିଷଦି ତଦପ୍ୟସ୍ୟ ତନୁଭା,
ଯ ଆତ୍ମାନ୍ତର୍ଯାମୀ ପୁରୁଷ ଇତି ସୋଽସ୍ୟାଂଶବିଭବଃ ।
ଷଡୈଶ୍ୱର୍ଯ୍ୟୈଃ ପୂର୍ଣ୍ଣୋ ଯ ଇହ ଭଗବାନ୍ ସ ସ୍ୱୟମୟଂ,
ନ ଚୈତନ୍ୟାତ୍ କୃଷ୍ଣାଜ୍ଜଗତି ପରତତ୍ତ୍ୱଂ ପରମିହ ॥୩॥

ବିଦଗ୍ଧମାଧବେ ( ୧।୨ )—
ଅନର୍ପିତଚରୀଂ ଚିରାତ୍ କରୁଣୟାବତୀର୍ଣ୍ଣଃ କଲୌ,
ସମର୍ପୟିତୁମୁନ୍ନତୋଜ୍ଜ୍ୱଳରସାଂ ସ୍ୱଭକ୍ତିଶ୍ରିୟମ୍ ।
ହରିଃ ପୁରଟସୁନ୍ଦରଦ୍ୟୁତିକଦମ୍ବସନ୍ଦୀପିତଃ,
ସଦା ହୃଦୟକନ୍ଦରେ ସ୍ଫୁରତୁ ବଃ ଶଚୀନନ୍ଦନଃ ॥୪॥

ବସ୍ତୁ ନିର୍ଦ୍ଦିଶତି ଯଦଦ୍ୱୈତମିତି । ଉପନିଷଦି ( ବେଦେ ବେଦବାଦିନଃ ) ଯତ୍ର ଅଦ୍ୱୈତଂ (ଦ୍ୱିଧାପ୍ରୀତଂ ଜ୍ଞାନଂ ନାସ୍ତି ଯତ୍, ଚିନ୍ମାତ୍ରସତ୍ତ୍ୱସ୍ୱରୂପଂ) ବ୍ରହ୍ମ (ବଦନ୍ତି) ତତ୍ ଅପି ଅସ୍ୟ (ଶ୍ରୀକୃଷ୍ଣସ୍ୟ) ତନୁଭା ( ଅଙ୍ଗକାନ୍ତିଃ ନିର୍ବିଶେଷାବିର୍ଭାବ ) ( ଯୋଗଶାସ୍ତ୍ରେ ଯୋଗିଭିଃ ) ଯଃ ପୁରୁଷଃ ଆତ୍ମାନ୍ତର୍ଯାମୀ ( ଅନ୍ତର୍ନୋଜୀବସ୍ୟ ଅନ୍ତର୍ଯାମୀ ପରମାତ୍ମା ଇତି ଉଚ୍ୟତେ ) ( ସଃ ପୁରୁଷଃ ) ଅସ୍ୟ ( ଭଗବତଃ ଶ୍ରୀକୃଷ୍ଣସ୍ୟ ) ଅଂଶବିଭବଃ ( ଐଶ୍ୱର୍ଯ୍ୟାଂଶଃ ସବିଶେଷାବିର୍ଭାବଃ ) ( ଇହ ତନ୍ତ୍ରବର୍ତ୍ମେ ସାତ୍ୱତୈଃ ) ଷଡୈଶ୍ୱର୍ଯ୍ୟୈଃ (ଉପଲକ୍ଷିତଃ) ଯଃ ଭଗବାନ୍ ପୂର୍ଣ୍ଣଃ (ଭବତି) ( ସଃ ଭଗବାନ୍ ) ଅୟଂ ଶ୍ରୀକୃଷ୍ଣଚୈତନ୍ୟଃ ସ୍ୱୟଂ; ( ଅତଃ ) ଇହ ଜଗତି କୃଷ୍ଣଚୈତନ୍ୟାତ୍ ପରତତ୍ତ୍ୱଂ ପରଂ ( ଭିନ୍ନଂ ) ନ । [ ୩ୟ ଶ୍ଲୋକଃ ]

ଆଶୀର୍ବାଦରୂପଂ ମଙ୍ଗଳମାଚରତି ଅନର୍ପିତେତି । ଚିରାତ୍ (ଚିରକାଲଂ ବ୍ୟାପ୍ୟ) ଅନର୍ପିତଚରୀଂ ( ଅଦତ୍ତପୂର୍ବାଂ ) ଉନ୍ନତୋଜ୍ଜ୍ୱଳରସାଂ ( ଉନ୍ନତୋ ବର୍ଦ୍ଧିତୋ ମୁଖ୍ୟଃ ଉଜ୍ଜ୍ୱଳଃ ଶୃଙ୍ଗାରାଖ୍ୟଃ ରସୋ ଯସ୍ୟାଂ ତାଂ ) ସ୍ୱଭକ୍ତିଶ୍ରିୟଂ ( ନିଜପ୍ରେମସମ୍ପଦ୍ରୂପାଂ ) ସମର୍ପୟିତୁଂ ( ସମ୍ୟକ୍ ଅର୍ପୟିତୁଂ ) କଲୌ ହରିଃ କରୁଣୟାବତୀର୍ଣ୍ଣଃ ( କୃପୟା ଅବତୀର୍ଣ୍ଣଃ ) ପୁରଟସୁନ୍ଦରଦ୍ୟୁତିକଦମ୍ବସନ୍ଦୀପିତଃ ( ପୁରଟଂ ସୁବର୍ଣ୍ଣଃ ତସ୍ମାତ୍ ଅତିସୁନ୍ଦରଃ ଦ୍ୟୁତିକଦମ୍ବଃ କାନ୍ତିସମୂହଃ ତେନ ସନ୍ଦୀପିତଃ ସମ୍ୟକ୍ ପ୍ରକାଶିତଃ ଯଃ ସଃ ) ଶଚୀନନ୍ଦନଃ ବଃ ( ଯୁଷ୍ମାକଂ ) ହୃଦୟକନ୍ଦରେ ସଦା ( ସର୍ବସ୍ମିନ୍ କାଲେ ) ସ୍ଫୁରତୁ । ଏତେନାବତାରପ୍ରୟୋଜନମପି ଦର୍ଶିତଂ । [ ୪ର୍ଥ ଶ୍ଳୋକଃ ]

ଉନ୍ନତୋଜ୍ଜ୍ୱଳରସାଂ ଉନ୍ନତଃ ପ୍ରଧାନତ୍ୱେନ ସ୍ୱୀକୃତ ଉଜ୍ଜ୍ୱଳରସୋ, ଯସ୍ୟା ତାଂ ସୂତ୍ରେ ପ୍ରକାଶୀଭୂୟ ତିଷ୍ଠତି । ୪ । ବି, ଚ,

ଉପନିଷଦରେ ( ବେଦରେ ) ଅଦ୍ୱୈତବାଦୀମାନେ ଯାହାଙ୍କୁ ଚିନ୍ମାତ୍ରସତ୍ତ୍ୱରୂପ ଅଦ୍ୱୈତ ଅର୍ଥାତ୍ ଦ୍ୱିତୀୟରହିତ ବ୍ରହ୍ମ ବୋଲି ବର୍ଣ୍ଣନା କରନ୍ତି ସେ ମଧ୍ୟ ଏହି ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତି ଅର୍ଥାତ୍ ନିର୍ବିଶେଷ ଆବିର୍ଭାବ; ଯୋଗମାର୍ଗରେ ଯେ ଅନ୍ତର୍ଯାମୀ ପୁରୁଷରୂପୀ ପରମାତ୍ମା ବୋଲି କଥିତ ସେ ଏହି ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟାଂଶ ଅର୍ଥାତ୍ ସବିଶେଷ ଆବିର୍ଭାବ ଏବଂ ଭକ୍ତିଯୋଗରେ ଯାହାଙ୍କୁ ଷଡୈଶ୍ୱର୍ଯ୍ୟଦ୍ୱାରା ପରିପୂର୍ଣ୍ଣ ଶ୍ରୀଭଗବାନ୍ ବୋଲି କହନ୍ତି ସେହି ଶ୍ରୀକୃଷ୍ଣହିଁ ସ୍ୱୟଂ ଶ୍ରୀକୃଷ୍ଣଚୈତନ୍ୟ । ଅତଏବ ଇହ ଜଗତରେ ଶ୍ରୀକୃଷ୍ଣଚୈତନ୍ୟ ବ୍ୟତୀତ ଅନ୍ୟ ପରତତ୍ତ୍ୱ ନାହିଁ । [ ୩ୟ ଶ୍ଲୋକାର୍ଥ ]

ଚିରକାଳରୁ ଯାହା ଅର୍ପିତ ହୋଇନାହିଁ, ଏପରି ଉନ୍ନତ (ଶ୍ରେଷ୍ଠ) ଉଜ୍ଜ୍ୱଳରସ (ମଧୁରରସ) ପରିପୁଷ୍ଟ ନିଜଭକ୍ତି-ସମ୍ପତ୍ତି ( ପ୍ରେମଭକ୍ତିରୂପ ଉପାସନାସମ୍ପତ୍ତି ) ଦାନକରିବା ନିମିତ୍ତ କଳିଯୁଗରେ ଯେ କୃପାପୂର୍ବକ ଅବତୀର୍ଣ୍ଣ ଏବଂ ଯାହାଙ୍କର କାନ୍ତି ଗଳିତ ସୁବର୍ଣ୍ଣର କାନ୍ତିଠାରୁ ଅଧିକତର ଶୋଭମାନ ସେହି ଶ୍ରୀଶଚୀନନ୍ଦନ ହରି ଆପଣମାନଙ୍କ ହୃଦୟକନ୍ଦରରେ ସଦା ବିରାଜ କରନ୍ତୁ । ଅର୍ଥାତ୍ ସିଂହ ଯେପରି ଗିରିଗହ୍ୱରରେ ପ୍ରବେଶ କରି ତନ୍ମଧ୍ୟସ୍ଥ ଦୁର୍ମଦ ମାତଙ୍ଗକୁଳକୁ ବିନାଶ କରେ ସେହିପରି ଶ୍ରୀଶଚୀନନ୍ଦନ ହରି ( ଗୌରସିଂହ ) ଜୀବମାନଙ୍କ ହୃଦୟରୂପ ଗୁହାରେ ପ୍ରକାଶିତ ହୋଇ ତନ୍ମଧ୍ୟସ୍ଥ ପାପତାପାଦି କଳିସ୍ୱରୂପ ଦୁର୍ମଦ ହସ୍ତୀମାନଙ୍କୁ ହୁଙ୍କାର ଦ୍ୱାରା ବିନାଶ କରନ୍ତୁ [ ୪ର୍ଥ ଶ୍ଲୋକାର୍ଥ ]

ଶ୍ରୀସ୍ୱରୂପଗୋସ୍ୱାମିକଡ଼ଚାୟାମ୍—
ରାଧା କୃଷ୍ଣପ୍ରଣୟବିକୃତିର୍ହ୍ଲାଦିନୀ ଶକ୍ତିରସ୍ମା-
ଦେକାତ୍ମାନାବପି ଭୁବି ପୁରା ଦେହଭେଦଂ ଗତୌ ତୌ
ଚୈତନ୍ୟାଖ୍ୟଂ ପ୍ରକଟମଧୁନା ତଦ୍ୱୟଂ ଚୈକ୍ୟମାପ୍ତଂ,
ରାଧାଭାବଦ୍ୟୁତିସୁବଳିତଂ ନୌମି କୃଷ୍ଣସ୍ୱରୂପମ୍ ॥୫॥*

ଶ୍ରୀରାଧାୟାଃ ପ୍ରଣୟମହିମା କୀଦୃଶୋ ବାନୟୈବା-
ସ୍ୱାଦ୍ୟୋ ଯେନାଦ୍ଭୁତମଧୁରିମା କୀଦୃଶୋ ବା ମଦୀୟଃ ॥
ସୌଖ୍ୟଂ ଚାସ୍ୟା ମଦନୁଭବତଃ କୀଦୃଶଂ ବେତି ଲୋଭା-
ତ୍ତଦ୍ଭାବାଢ୍ୟଃ ସମଜନି ଶଚୀଗର୍ଭସିନ୍ଧୌ ହରୀନ୍ଦୁଃ ॥୬॥*

---

ଶ୍ରୀକୃଷ୍ଣଚୈତନ୍ୟସ୍ୟ ଶ୍ରୀକୃଷ୍ଣତ୍ୱାଶଙ୍କାଂ ପରିହରନ୍ ତସ୍ୟ ଶ୍ରୀକୃଷ୍ଣତ୍ୱଂ ବକ୍ତୁଂ ପ୍ରଥମଂ ତାବତ୍ ଶ୍ରୀରାଧାୟାଃ ସ୍ୱରୂପମାହ, ରାଧେତି, ରାଧା କୃଷ୍ଣପ୍ରଣୟବିକୃତିଃ ( କୃଷ୍ଣସ୍ୟ ପ୍ରେମ୍ଣଃ ବିକୃତିଃ ବିକାରରୂପ ବିଳାସରୂପ ) ହ୍ଲାଦିନୀ ଶକ୍ତିଃ ( ଯତଃ ଅତଃ ହେତୋଃ ) ଏକାତ୍ମାନୌ ( ସ୍ୱରୂପତଃ ଅଭିନ୍ନୌ ରାଧାକୃଷ୍ଣୌ ) ପୁରା ( ଅନାଦିକାଳତଃ ) ତୌ ( ରାଧାକୃଷ୍ଣୌ ) ଭୁବି ( ଗୋଲୋକେ ) ଦେହଭେଦଂ ଗତୌ ( ପ୍ରାପ୍ତୌ ) ଅଧୁନା ( ଇଦାନୀଂ ) ତଦ୍ୱୟଂ ( ତଯୋର୍ଦ୍ୱୟଂ ) ଚ ( ନିଶ୍ଚିତଂ ) ଐକ୍ୟଂ ଆପ୍ତଂ ରାଧାଭାବଦ୍ୟୁତିସୁବଳିତଂ ( ଭାବଶ୍ଚ ଦ୍ୟୁତିଶ୍ଚ ଭାବଦ୍ୟୁତୀ, ରାଧାୟାଃ ଭାବଦ୍ୟୁତୀ, ତାଭ୍ୟାଂ ସୁବଳିତଂ ଯୁକ୍ତଂ ଏକୀଭୂତଂ ଅନ୍ତଃକୃଷ୍ଣଂ ବହିର୍ଗୌରଂ ) କୃଷ୍ଣସ୍ୱରୂପଂ ( କୃଷ୍ଣ ଏବ ସ୍ୱରୂପଂ ନତ୍ୱାକୃତି ପରି ଚିତ୍ରରୂପଂ ) ଚୈତନ୍ୟାଖ୍ୟଂ ପ୍ରକଟଂ ( ପ୍ରକଟିତଂ ) ( ଏବମ୍ଭୂତଂ ଶ୍ରୀରାଧାର୍ବିକାନ୍ତିମନ୍ବିତଂ ଶ୍ରୀକୃଷ୍ଣଚୈତନ୍ୟାଖ୍ୟଂ ଶ୍ରୀକୃଷ୍ଣଂ ) ନୌମି ଏତେନୋଦ୍ଦିଷ୍ଟସ୍ୟ ଶ୍ରୀକୃଷ୍ଣଚୈତନ୍ୟସ୍ୟ ତତ୍ତ୍ୱଲକ୍ଷଣକଥନବ୍ୟାଜେନ ପୁନର୍ବସ୍ତୁନିର୍ଦ୍ଦେଶରୂପଂ ମଙ୍ଗଳମପ୍ୟାଚରିତଂ ଭବତୀତି ବିଜ୍ଞେୟଂ । [ ୫ମ ଶ୍ଳୋକଃ ]

ପୂର୍ବଶ୍ଳୋକେନୋଦ୍ଦିଷ୍ଟଦର୍ଶିତଂ ଅବତାରମୂଳପ୍ରୟୋଜନଂ ଶ୍ରୀକୃଷ୍ଣଚୈତନ୍ୟସ୍ୟ ଚ ତତ୍ତ୍ୱସ୍ତ୍ରୈ ଘଟିତେ ଦର୍ଶୟତି ଶ୍ରୀରାଧାୟା ଇତି । ଶ୍ରୀରାଧାୟାଃ ପ୍ରଣୟମହିମ ( ପ୍ରଣୟସ୍ୟ ମହିମ ମହତ୍ତ୍ୱଂ ) କୀଦୃଶଃ, ଯେନ ( ପ୍ରେମ୍ଣା ) ଅନୟା ( ଶ୍ରୀରାଧୟା ) ମଦୀୟଃ ଅଦ୍ଭୁତମଧୁରିମ ( ଆଶ୍ଚର୍ଯ୍ୟମାଧୁର୍ଯ୍ୟ ତତ୍ପରଃ ) ଆସ୍ୱାଦ୍ୟଃ ( ଆସ୍ୱାଦନୀୟଃ ) ସ ମଧୁରିମା କୀଦୃଶୋ ବା, ମଦନୁଭବତଃ ( ମଦନୁଭବାତ୍ ) ଅସ୍ୟାଃ ( ଶ୍ରୀରାଧାୟାଃ ) ସୌଖ୍ୟଂ କୀଦୃଶଂ ବା ଇତି ଲୋଭାତ୍ ତଦ୍ଭାବାଢ୍ୟଃ ( ତସ୍ୟାଃ ଭାବେନ ଆଢ୍ୟଃ ଯୁକ୍ତଃ ସନ୍ ) ଶଚୀଗର୍ଭସିନ୍ଧୌ ( ଶଚୀଗର୍ଭସମୁଦ୍ରେ ) ହରୀନ୍ଦୁଃ ( କୃଷ୍ଣଚନ୍ଦ୍ରଃ ) ସମଜନି ( ପ୍ରାଦୁର୍ବଭୂବ ) । [ ୬ଷ୍ଠ ଶ୍ଳୋକଃ ]

ଉଭୟରୂପତ୍ୱେଽପି ଶ୍ରୀରାଧାଭାବେନ ସ୍ୱବିଷୟସ୍ୱାଦନେନ କୃଷ୍ଣସ୍ୟୋଦ୍ଦିଷ୍ଟଦବତାରେ ପ୍ରାଧାନ୍ୟମଦୟ୍ୟ ମୂର୍ତ୍ତିଃ ଯେନ ପ୍ରଣୟମହିମ୍ନା ଅନୟାସ୍ୱାଦ୍ୟୋ ମଦୀୟୋ ମଧୁରିମ ବା କୀଦୃଶଃ । ବ, ନି, [ ୬ଷ୍ଠ ଶ୍ଳୋକଃ ]

---

✓ଶ୍ରୀରାଧା କୃଷ୍ଣଙ୍କର ବିଳାସରୂପା ହ୍ଲାଦିନୀ ନାମ ଶକ୍ତି । ଏହି ହେତୁ ଶ୍ରୀରାଧା ଓ ଶ୍ରୀକୃଷ୍ଣ ସ୍ୱରୂପତଃ ଅଭିନ୍ନ ହୋଇଥିଲେହେଁ ଲୀଳାରସ ଆସ୍ୱାଦନ କରିବା ସକାଶେ ଅନାଦିକାଳରୁ ନିତ୍ୟଧାମ ଶ୍ରୀଗୋଲୋକରେ ଦୁଇ ରୂପରେ ଲୀଳା କରନ୍ତି । ବୈବସ୍ୱତମନୁଙ୍କର ଅଷ୍ଟାବିଂଶତି ଚତୁର୍ଯୁଗୀୟ ଦ୍ୱାପରଶେଷରେ ସେ ଦୁହେଁ ବୃନ୍ଦାବନଧାମରେ ପ୍ରକଟ ହୋଇ ଲୀଳା କରିଥିଲେ । ଅଧୁନା ସେ ଦୁହେଁ ଏକ ହୋଇ ଚୈତନ୍ୟ ନାମ ଧାରଣ କରି ପ୍ରକଟ ହୋଇଅଛନ୍ତି । ସେହି ଶ୍ରୀକୃଷ୍ଣଚୈତନ୍ୟ ଯେ କି ସ୍ୱରୂପତଃ ଶ୍ରୀକୃଷ୍ଣ ଥାଇ ଶ୍ରୀରାଧାଙ୍କ ଭାବ ଓ କାନ୍ତିରେ ସୁବଳିତ ହୋଇଅଛନ୍ତି, ତାଙ୍କୁ ପ୍ରଣାମ କରେ ।

[ ୫ମ ଶ୍ଳୋକାର୍ଥ ]

ଶ୍ରୀରାଧାଙ୍କର ପ୍ରଣୟମହିମ ( ପ୍ରେମର ମାହାତ୍ମ୍ୟ ) କିରୂପ, ଯଦ୍ୱାରା ( ଯେ ପ୍ରେମଦ୍ୱାରା ) ସେ ( ଶ୍ରୀରାଧା ) ମୋର ( ଶ୍ରୀକୃଷ୍ଣଙ୍କର ) ଅଦ୍ଭୁତ ମଧୁରିମା ଆସ୍ୱାଦନ କରନ୍ତି, ସେ ମଧୁରିମା ଅବା କିରୂପ, ଏହିପ୍ରକାରେ ଆସ୍ୱାଦନଜନିତ ତାହାଙ୍କର ( ଶ୍ରୀରାଧାଙ୍କର ) ଯେଉଁ ସୁଖ ଜାତ ହୁଏ ତାହା ଅବା କିରୂପ, ଏହି ତିନିବିଷୟରେ ଲୋଭ ହେତୁ ତାହାଙ୍କର ( ଶ୍ରୀରାଧାଙ୍କର ) ଭାବଯୁକ୍ତ ହୋଇ ଶ୍ରୀ ଶଚୀଗର୍ଭ-

ସଙ୍କର୍ଷଣଃ କାରଣତୋୟଶାୟୀ,
ଗର୍ଭୋଦଶାୟୀ ଚ ପୟୋଽବ୍ଧିଶାୟୀ ।
ଶେଷଶ୍ଚ ଯସ୍ୟାଂଶକଳାଃ ସ ନିତ୍ୟା-
ନନ୍ଦାଖ୍ୟରାମଃ ଶରଣଂ ମମାସ୍ତୁ ॥ ୭ ॥*
ମାୟାତୀତେ ବ୍ୟାପି-ବୈକୁଣ୍ଠଲୋକେ,
ପୂର୍ଣ୍ଣୈଶ୍ୱର୍ଯ୍ୟେ ଶ୍ରୀଚତୁର୍ବ୍ୟୂହମଧ୍ୟେ ।
ରୂପଂ ଯସ୍ୟୋଦ୍ଭାତି ସଙ୍କର୍ଷଣାଖ୍ୟଂ,
ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୮ ॥*
ମାୟାଭର୍ତ୍ତାଜାଣ୍ଡସଂଘାଶ୍ରୟାଙ୍ଗଃ,
ଶେତେ ସାକ୍ଷାତ୍ କାରଣାମ୍ଭୋଧିମଧ୍ୟେ ।
ଯସ୍ୟୈକାଂଶଃ ଶ୍ରୀପୁମାନାଦିଦେବ-
ସ୍ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୯ ॥*

ସଙ୍କର୍ଷଣଃ ( ପରବ୍ୟୋମ୍ନି ଚତୁର୍ବ୍ୟୂହସ୍ଥିତଃ ମହାସଙ୍କର୍ଷଣଃ ) କାରଣତୋୟଶାୟୀ ( ସୃଷ୍ଟେରଭାବପରାୟଣରୂପକାରଣମିତ୍ୟର୍ଥଃ ତଦେବ ତୋୟଂ, ତସ୍ମିନ୍ ଶେତେ ଯଃ ସଃ ପ୍ରଥମପୁରୁଷାବତାର ମାୟାଭର୍ତ୍ତା ମହାବିଷ୍ଣୁଃ ) ଗର୍ଭୋଦଶାୟୀ ( ଗର୍ଭ ଏବ ଅଭ୍ୟନ୍ତରମେବ ସୃଷ୍ଟେରିତି ଶେଷଃ, ଉଦଂ ଜଳଂ ତସ୍ମିନ୍ ଶେତେ ଯଃ ସଃ ହିରଣ୍ୟଗର୍ଭାନ୍ତର୍ଯାମୀ ଦ୍ୱିତୀୟପୁରୁଷଃ) ପୟୋଽବ୍ଧିଶାୟୀ ( ପୟଃ କ୍ଷୀରଂ ତସ୍ମିନ୍ ଶେତେ ଯଃ ସଃ ପରମାତ୍ମା ତୃତୀୟପୁରୁଷଃ ବିଷ୍ଣୁଃ ) ଶେଷଃ ( ଅନନ୍ତଃ ) ଚ ଯସ୍ୟାଂଶକଳାଃ ( ଯସ୍ୟ ଅଂଶାଃ, କଳାଃ ଅଂଶସ୍ୟ ଅଂଶାଃ ) ସ ନିତ୍ୟାନନ୍ଦାଖ୍ୟରାମଃ ( ନିତ୍ୟାନନ୍ଦାଭିଧେୟଃ ଶ୍ରୀବଳଦେବଃ ) ମମ ଶରଣଂ (ଆଶ୍ରୟଃ) ଅସ୍ତୁ ( ଭବତୁ ) । [ ୭ମ ଶ୍ଳୋକଃ ]

ସଙ୍କର୍ଷଣଃ ପରବ୍ୟୋମନାଥସ୍ୟ ଦ୍ୱିତୀୟୋ ବ୍ୟୂହଃ କାରଣତୋୟଶାୟୀ ମହାବିଷ୍ଣୁଃ ଗର୍ଭୋଦଶାୟୀ ବ୍ରହ୍ମାଣ୍ଡାନ୍ତର୍ଯାମୀତି [ ୭ମ ଶ୍ଳୋକଃ ] ବି, ଚ,

ମାୟାତୀତେ ପୂର୍ଣ୍ଣୈଶ୍ୱର୍ଯ୍ୟେ ବ୍ୟାପିବୈକୁଣ୍ଠଲୋକେ ଶ୍ରୀଚତୁର୍ବ୍ୟୂହମଧ୍ୟେ (ବାସୁଦେବ ସଙ୍କର୍ଷଣ ପ୍ରଦ୍ୟୁମ୍ନାନିରୁଦ୍ଧାନାଂ ମଧ୍ୟେ ସଙ୍କର୍ଷଣାଖ୍ୟଂ ଯସ୍ୟ ରୂପଂ ଉଦ୍ଭାତି ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ( ପ୍ରପନ୍ନୋଽସ୍ମି ) । [ ୮ମ ଶ୍ଳୋକଃ ]

ବ୍ୟାପି ସର୍ବବ୍ୟାପନଶୀଳେ ବୈକୁଣ୍ଠ ଧାମ୍ନି ଶ୍ରୀଚତୁର୍ବ୍ୟୂହ ମଧ୍ୟେ ବାସୁଦେବ ସଙ୍କର୍ଷଣ ପ୍ରଦ୍ୟୁମ୍ନ ଅନିରୁଦ୍ଧ ଇତି ଚତୁର୍ବ୍ୟୂହ ମଧ୍ୟେ [ ୮ମ ଶ୍ଳୋକଃ ] ବି, ଚ,

ମାୟାଭର୍ତ୍ତା ( ପ୍ରକୃତେର୍ଭର୍ତ୍ତା ତଥା ନିୟାମକଃ ) ଅଜାଣ୍ଡସଂଘାଶ୍ରୟାଙ୍ଗଃ ( ଅଜାଣ୍ଡାନାଂ ବ୍ରହ୍ମାଣ୍ଡାନାଂ ସଂଘଃ ସମୂହଃ ତସ୍ୟ ଆଶ୍ରୟଃ ଅଙ୍ଗଂ ଯସ୍ୟ ସଃ ) ଯସ୍ତୁ କାରଣାମ୍ଭୋଧିମଧ୍ୟେ ସାକ୍ଷାତ୍ ଶେତେ ଏବମ୍ଭୂତଃ ଆଦିଦେବଃ ( ପ୍ରଥମଃ ) ପୁମାନ୍ ( ପୁରୁଷଃ ) ଯସ୍ୟ ( ଶ୍ରୀ ନିତ୍ୟାନନ୍ଦସ୍ୟ ) ଏକାଂଶଃ ତଂ ଶ୍ରୀନିତ୍ୟାନନ୍ଦାଖ୍ୟରାମଂ ( ଅହଂ ) ପ୍ରପଦ୍ୟେ । [ ୯ମ ଶ୍ଳୋକଃ ]

ଅଜାଣ୍ଡସଂଘସ୍ୟ ବ୍ରହ୍ମାଣ୍ଡସମୂହସ୍ୟ ଆଶ୍ରୟୋଽଙ୍ଗଂ ଯସ୍ୟ, ଆଦିଦେବଃ ଦେବାନାମାଦିଃ, କାରଣାର୍ଣ୍ଣବଶାୟୀତି [ ୯ମ ଶ୍ଳୋକଃ ] ବି, ଚ,

ରୂପ ସମୁଦ୍ରରୁ ହରିରୂପ ଚନ୍ଦ୍ର (ଶ୍ରୀକୃଷ୍ଣଚୈତନ୍ୟ) ଉଦୟ ହେଲେ (ଆବିର୍ଭୂତ ହେଲେ) । [୬ଷ୍ଠ ଶ୍ଳୋକାର୍ଥ]

ପରବ୍ୟୋମରେ ( ବୈକୁଣ୍ଠରେ ) ଚତୁର୍ବ୍ୟୂହସ୍ଥିତ ମହାସଙ୍କର୍ଷଣ, କାରଣାର୍ଣ୍ଣବଶାୟୀ ପ୍ରଥମପୁରୁଷାବତାର ମହାବିଷ୍ଣୁ, ଗର୍ଭୋଦକଶାୟୀ ଦ୍ୱିତୀୟପୁରୁଷାବତାର ହିରଣ୍ୟଗର୍ଭାନ୍ତର୍ଯାମୀ; କ୍ଷୀରୋଦଶାୟୀ ତୃତୀୟପୁରୁଷାବତାର ବିଷ୍ଣୁ ଓ ଅନନ୍ତଦେବ ଏମାନେ ଯାହାଙ୍କର ଅଂଶ ଓ କଳା ( ଅଂଶର ଅଂଶ) ସେହି ଶ୍ରୀନିତ୍ୟାନନ୍ଦ ନାମା ବଳଦେବ ବା ମୂଳସଙ୍କର୍ଷଣ ମୋର ଆଶ୍ରୟ ହୁଅନ୍ତୁ । [୭ମ ଶ୍ଳୋକାର୍ଥ]

ମାୟାତୀତ ପୂର୍ଣ୍ଣଐଶ୍ୱର୍ଯ୍ୟସମନ୍ୱିତ ସର୍ବବ୍ୟାପନଶୀଳ ଶ୍ରୀବୈକୁଣ୍ଠଲୋକରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଏହି ଚତୁର୍ବ୍ୟୂହମଧ୍ୟରେ ସଙ୍କର୍ଷଣ ନାମରେ ଯାହାଙ୍କର ରୂପ ପ୍ରକାଶିତ, ସେହି ଶ୍ରୀନିତ୍ୟାନନ୍ଦାଖ୍ୟ ବଳରାମଙ୍କର ଶରଣ ନେଲି । [ ୮ମ ଶ୍ଳୋକାର୍ଥ ]

ଯସ୍ୟାଂଶାଂଶଃ ଶ୍ରୀଲଗର୍ଭୋଦଶାୟୀ,
ଯନ୍ନାଭ୍ୟବ୍ଜଂ ଲୋକସଙ୍ଘାତନାଳମ୍ ।
ଲୋକସ୍ରଷ୍ଟୁଃ ସୂତିକାଧାମ ଧାତୁ-
ସ୍ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୧୦ ॥ *

ଯସ୍ୟାଂଶାଂଶାଂଶଃ ପରାତ୍ମାଖିଳାନାଂ,
ପୋଷ୍ଟା ବିଷ୍ଣୁର୍ଭାତି ଦୁଗ୍ଧାବ୍ଧିଶାୟୀ ।
କ୍ଷୌଣୀଭର୍ତ୍ତା ଯତ୍କଳା ସୋଽପ୍ୟନନ୍ତ-
ସ୍ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୧୧ ॥ *

ମହାବିଷ୍ଣୁର୍ଜଗତ୍କର୍ତ୍ତା ମାୟୟା ଯଃ ସୃଜତ୍ୟଦଃ ।
ତସ୍ୟାବତାର ଏବାୟମଦ୍ୱୈତାଚାର୍ଯ୍ୟ ଈଶ୍ୱରଃ ॥୧୨॥ *

ଅଦ୍ୱୈତଂ ହରିଣାଦ୍ୱୈତାଦାଚାର୍ଯ୍ୟଂ ଭକ୍ତିଶଂସନାତ୍
ଭକ୍ତାବତାରମୀଶଂ ତମଦ୍ୱୈତାଚାର୍ଯ୍ୟମାଶ୍ରୟେ ॥୧୩॥ *

---

ଯନ୍ନାଭ୍ୟବ୍ଜଂ ( ଯସ୍ୟ ନାଭିପଦ୍ମଂ ) ଲୋକସଙ୍ଘାତନାଳଂ ( ଲୋକସଙ୍ଘାତଃ ଲୋକସମୂହଃ ଚତୁର୍ଦ୍ଦଶଭୁବନଂନାଳଂ ଆଶ୍ରୟସ୍ଥାନଂ ଯସ୍ୟ ତତ୍ ) ଲୋକସ୍ରଷ୍ଟୁଃ ଧାତୁଃ ( ବ୍ରହ୍ମଣଃ ) ସୂତିକାଧାମ (ସୂତିକାଗୃହସ୍ୱରୂପଂ) ଶ୍ରୀଲ ଗର୍ଭୋଦଶାୟୀ (ସଃ ଦ୍ୱିତୀୟପୁରୁଷଃ) ଯସ୍ୟାଂଶାଂଶଃ ( ଯସ୍ୟ ଶ୍ରୀନିତ୍ୟାନନ୍ଦସ୍ୟ ଅଂଶାଂଶଃ) ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ । [ ୧୦ମ ଶ୍ଳୋକଃ ]

ଲୋକସଙ୍ଘାତନାଳଂ ଆଶ୍ରୟସ୍ଥାନଂ ସୂତିକାଧାମ ଜନ୍ମସ୍ଥାନଂ । [ ୧୦ମ ଶ୍ଳୋକଃ ] ବି, ଚ,

ଅଖିଳାନାଂ (ବ୍ୟଷ୍ଟିଜୀବାନାଂ) ପରାତ୍ମା ( ପରମାତ୍ମା, ଅନ୍ତର୍ଯାମୀ ) ପୋଷ୍ଟା ( ପାଲୟିତା ) ଦୁଗ୍ଧାବ୍ଧିଶାୟୀ ( କ୍ଷୀରୋଦଶାୟୀ ତୃତୀୟପୁରୁଷାବତାରଃ ) ବିଷ୍ଣୁଃ ଭାତି ( ବିରାଜତେ ) ସୋଽପି ଯସ୍ୟାଂଶାଂଶାଂଶଃ ( ଯସ୍ୟ ଅଂଶସ୍ୟ ଅଂଶସ୍ୟ ଅଂଶଃ ) କ୍ଷୌଣୀଭର୍ତ୍ତା (ଭୂଭୃତ୍) ଅନନ୍ତଃ (ଶ୍ରୀଲ ଅନନ୍ତଦେବଃ) ଯତ୍କଳା (ଯସ୍ୟ କଳା) ତଂ ଶ୍ରୀନିତ୍ୟାନନ୍ଦରାମଂ (ଅହଂ) ପ୍ରପଦ୍ୟେ(ପ୍ରଣତୋଽସ୍ମି) । [ ୧୧ଶ ଶ୍ଳୋକଃ ]

ଜଗତ୍କର୍ତ୍ତା ମହାବିଷ୍ଣୁଃ ( କାରଣାବ୍ଧିଶାୟୀ ପ୍ରଥମପୁରୁଷାବତାରଃ ) ଯଃ ମାୟୟା ଅଦଃ ( ବିଶ୍ୱଂ ) ସୃଜତି, ତସ୍ୟ ଅବତାରଃ ଏବ ଅୟଂ ଈଶ୍ୱରଃ ଅଦ୍ୱୈତାଚାର୍ଯ୍ୟଃ । [ ୧୨ଶ ଶ୍ଳୋକଃ ]

ହରିଣା ( ସହ ) ଅଦ୍ୱୈତାତ୍ ( ହେତୋଃ ) ଅଦ୍ୱୈତଂ ଭକ୍ତିଶଂସନାତ୍ ( ଭକ୍ତିକଥନାତ୍ ହେତୋଃ ) ଆଚାର୍ଯ୍ୟଂ ଭକ୍ତାବତାରଂ ଈଶଂ ତଂ ଅଦ୍ୱୈତାଚାର୍ଯ୍ୟଂ ଆଶ୍ରୟେ । [ ୧୩ଶ ଶ୍ଳୋକଃ ]

---

ମାୟାଦେବୀଙ୍କର ଭର୍ତ୍ତା ବା ନିୟାମକ ବ୍ରହ୍ମାଣ୍ଡସମୂହର ଆଶ୍ରୟଭୂତ ଶରୀରୀ ( ଅର୍ଥାତ୍ ଅଶେଷ ବ୍ରହ୍ମାଣ୍ଡଗଣ ଯାହାଙ୍କର ଶ୍ରୀଅଙ୍ଗକୁ ଆଶ୍ରୟ କରି ରହିଅଛନ୍ତି ) ଓ ସାକ୍ଷାତ୍ କାରଣସମୁଦ୍ରଶାୟୀ ଆଦିପୁରୁଷ ( ମହାବିଷ୍ଣୁ ପ୍ରଥମ ପୁରୁଷାବତାର ) ଯାହାଙ୍କର ଏକାଂଶ ସେହି ଶ୍ରୀନିତ୍ୟାନନ୍ଦନାମା ବଳରାମଙ୍କୁ ମୁଁ ପ୍ରଣାମ କରେଁ । [ ୯ମ ଶ୍ଳୋକାର୍ଥ ]

ଚତୁର୍ଦ୍ଦଶଭୁବନାତ୍ମକ ଲୋକସମୂହ ଯାହାଙ୍କର ନାଭିପଦ୍ମର ମୃଣାଳ ଓ ଯାହା ଲୋକସ୍ରଷ୍ଟା ବ୍ରହ୍ମାଙ୍କର ଉତ୍ପତ୍ତିସ୍ଥାନ ସେହି ଗର୍ଭୋଦକଶାୟୀ ( ହିରଣ୍ୟଗର୍ଭାନ୍ତର୍ଯାମୀ ଦ୍ୱିତୀୟପୁରୁଷ ) ଯାହାଙ୍କର ଅଂଶର ଅଂଶ ସେହି ଶ୍ରୀନିତ୍ୟାନନ୍ଦରାମଙ୍କୁ ପ୍ରଣାମ କରେଁ । [ ୧୦ମ ଶ୍ଳୋକାର୍ଥ ]

ଅଖିଳ ବ୍ୟଷ୍ଟିଜୀବମାନଙ୍କର ପରମାତ୍ମା ଓ ପାଳନକର୍ତ୍ତା କ୍ଷୀରୋଦଶାୟୀ ବିଷ୍ଣୁ ଯାହାଙ୍କର ଅଂଶର ଅଂଶର ଅଂଶରୂପେ ବିରାଜିତ ଏବଂ ଧରଣୀଧର ଅନନ୍ତଦେବ ଯାହାଙ୍କର କଳା, ସେହି ଶ୍ରୀନିତ୍ୟାନନ୍ଦରାମଙ୍କୁ ପ୍ରଣାମ କରେଁ । [ ୧୧ଶ ଶ୍ଳୋକାର୍ଥ ]

ଯେ ଜଗତ୍କର୍ତ୍ତା କାରଣାବ୍ଧିଶାୟୀ ମହାବିଷ୍ଣୁ ମାୟାଦ୍ୱାରା ବିଶ୍ୱ ସୃଜନ କରନ୍ତି ଏହି ଅଦ୍ୱୈତାଚାର୍ଯ୍ୟ ଈଶ୍ୱର ତାହାଙ୍କର ଅବତାର । [ ୧୨ଶ ଶ୍ଳୋକାର୍ଥ ]

ହରିଙ୍କ ସହିତ ( ମହାବିଷ୍ଣୁଙ୍କ ସହିତ ) ଦ୍ୱୈତଭାବ ନ ଥିବାହେତୁ ଯେ ଅଦ୍ୱୈତ ଏବଂ ଭକ୍ତି ଉପଦେଶ କରନ୍ତି ବୋଲି ଯେ ଆଚାର୍ଯ୍ୟ ( ଗୁରୁ ) ଏବଂ ଯେ ଭକ୍ତରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ସେହି ଅଦ୍ୱୈତାଚାର୍ଯ୍ୟ ଈଶ୍ୱରଙ୍କୁ ମୁଁ ପ୍ରଣାମ କରେଁ । [ ୧୩ଶ ଶ୍ଳୋକାର୍ଥ ]

| | |
|---|---|
| ପଞ୍ଚତତ୍ତ୍ୱାତ୍ମକଂ କୃଷ୍ଣଂ ଭକ୍ତରୂପସ୍ୱରୂପକମ୍ । | ଦୀବ୍ୟଦ୍‌ବୃନ୍ଦାରଣ୍ୟକଳ୍ପଦ୍ରୁମାଧଃ, |
| ଭକ୍ତାବତାରଂ ଭକ୍ତାଖ୍ୟଂ ନମାମି ଭକ୍ତଶକ୍ତିକମ୍ ୧୪॥ | ଶ୍ରୀମଦ୍ରତ୍ନାଗାରସିଂହାସନସ୍ଥୌ । |
| ଜୟତାଂ ସୁରତୌ ପଙ୍ଗୋର୍ମମ ମନ୍ଦମତେର୍ଗତୀ । | ଶ୍ରୀମଦ୍ରାଧା-ଶ୍ରୀଲଗୋବିନ୍ଦଦେବୌ, |
| ମତ୍ସର୍ବସ୍ୱପଦାମ୍ଭୋଜୌ ରାଧାମଦନମୋହନୌ ୧୫॥ | ପ୍ରେଷ୍ଠାଲୀଭିଃ ସେବ୍ୟମାନୌ ସ୍ମରାମି ॥୧୬॥ |

ଭକ୍ତରୂପ ସ୍ୱରୂପକଂ (ଭକ୍ତରୂପଂ, ଭକ୍ତଭାବମୟଂ ଶ୍ରୀକୃଷ୍ଣଚୈତନ୍ୟଂ-ଭକ୍ତସ୍ୱରୂପକଂ ଶ୍ରୀନିତ୍ୟାନନ୍ଦଂ) ଭକ୍ତାବତାରଂ ( ଶ୍ରୀମଦଦ୍ୱୈତାଚାର୍ଯ୍ୟଂ ) ଭକ୍ତାଖ୍ୟଂ ( ଭକ୍ତ ଏବ ଆଖ୍ୟା ଖ୍ୟାତିର୍ଯସ୍ୟ ତଂ ଶ୍ରୀବାସାଦିନ୍ ଭକ୍ତଗଣାନ୍ ) ଭକ୍ତଶକ୍ତିକଂ (ଭକ୍ତାଏବ ଶକ୍ତି ର୍ଯସ୍ୟତଂ ଶ୍ରୀଗଦାଧରାଦୀନ୍ ) ପଞ୍ଚତତ୍ତ୍ୱାତ୍ମକଂ 'ପଞ୍ଚାନାଂ-ତତ୍ତ୍ୱାନାଂ ସମାହାରଃ ତତ୍ ଏବ ଆତ୍ମା ସ୍ୱରୂପଂ ଯସ୍ୟ ତଂ ) କୃଷ୍ଣଂ ( ଶ୍ରୀକୃଷ୍ଣଚୈତନ୍ୟଂ ) ନମାମି ।
[ ୧୪ଶ ଶ୍ଳୋକଃ ]

ପଙ୍ଗୋଃ ( ସ୍ଥାନାନ୍ତରଗମନେ ଅଶକ୍ତସ୍ୟ ଶ୍ଳେଷେଣ ଅନନ୍ୟଶରଣସ୍ୟ ) ମମ ମନ୍ଦମତେଃ ( ମନ୍ଦପ୍ରଜ୍ଞସ୍ୟ, ଜ୍ଞାନାଦିସାଧନେ ପ୍ରବୃତ୍ତିରହିତସ୍ୟ ) ଗତୀ ମତ୍ସର୍ବସ୍ୱପଦାମ୍ଭୋଜୌ ( ମମ ସର୍ବସ୍ୱେ ପଦାମ୍ଭୋଜୌ ଯୟୋଃ ତୌ ) ସୁରତୌ ( ଶୋଭନପ୍ରେମଯୁକ୍ତୌ ) ରାଧାମଦନମୋହନୌ ଜୟତାଂ ( ସର୍ବୋତ୍କର୍ଷେଣ ବର୍ତ୍ତେତାଂ ) [ ୧୫ଶ ଶ୍ଳୋକଃ ]।

ଦୀବ୍ୟଦ୍‌ବୃନ୍ଦାରଣ୍ୟକଳ୍ପଦ୍ରୁମାଧଃ ( ଦୀବ୍ୟତ୍ ପରମଶୋଭାମୟଂ—ବୃନ୍ଦାବନଂ ତସ୍ମିନ୍ କଳ୍ପଦ୍ରୁମାଧଃ ) ଶ୍ରୀମଦ୍ରତ୍ନାଗାରସିଂହାସନସ୍ଥୌ ( ଶ୍ରୀମତି ରତ୍ନାଗାରେ ରତ୍ନାଳୟେ ରତ୍ନସିଂହାସନେ ସ୍ଥିତୌ ) ଶ୍ରୀମଦ୍ରାଧାଶ୍ରୀଲଗୋବିନ୍ଦଦେବୌ ପ୍ରେଷ୍ଠାଲୀଭିଃ (ପ୍ରିୟସଖୀଭିଃ) ସେବ୍ୟମାନୌ ସ୍ମରାମି । [୧୬ଶ ଶ୍ଳୋକଃ]

---

ଯେ ସ୍ୱୟଂ ଭକ୍ତରୂପ, ଭକ୍ତସ୍ୱରୂପ, ଭକ୍ତ ଅବତାର, ଭକ୍ତ ଏବଂ ଭକ୍ତ ଶକ୍ତି ଏହିପ୍ରକାର ପଞ୍ଚତତ୍ତ୍ୱରୂପ ହୋଇଅଛନ୍ତି ଏମନ୍ତ କୃଷ୍ଣଙ୍କୁ ( ଶ୍ରୀକୃଷ୍ଣଚୈତନ୍ୟଦେବଙ୍କୁ ) ନମସ୍କାର କରେଁ । ଅର୍ଥାତ୍ ସ୍ୱୟଂ ଶ୍ରୀବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଚୈତନ୍ୟ ହୋଇ ଭକ୍ତରୂପରେ ଅବତୀର୍ଣ୍ଣ, ଶ୍ରୀବଳରାମ ଶ୍ରୀନିତ୍ୟାନନ୍ଦ ହୋଇ ଭକ୍ତସ୍ୱରୂପରେ ଅବତୀର୍ଣ୍ଣ, ସ୍ୱୟଂ ଶ୍ରୀମହାବିଷ୍ଣୁ ଶ୍ରୀଅଦ୍ୱୈତାଚାର୍ଯ୍ୟ ହୋଇ ଭକ୍ତାବତାର ରୂପେ ଅବତୀର୍ଣ୍ଣ, ଶ୍ରୀ ବ୍ରଜେନ୍ଦ୍ରନନ୍ଦନଙ୍କ ପାର୍ଷଦଗଣ ଶ୍ରୀବାସାଦି ଭକ୍ତରୂପରେ ଅବତୀର୍ଣ୍ଣ ଏବଂ ତାହାଙ୍କର ( ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ) ଶକ୍ତିମାନେ ଶ୍ରୀଗଦାଧରାଦି ଅନ୍ତରଙ୍ଗ ଭକ୍ତରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଅଥଚ ଏହି ପଞ୍ଚତତ୍ତ୍ୱ ଏକାତ୍ମରୂପରେ ଶ୍ରୀକୃଷ୍ଣଚୈତନ୍ୟଦେବ ଅଟନ୍ତି । ତାହାଙ୍କୁ ନମସ୍କାର କରେଁ । [ ୧୪ ଶ ଶ୍ଳୋକାର୍ଥ ] ।

ପଙ୍ଗୁ ଅର୍ଥାତ୍ ସ୍ଥାନାନ୍ତରଗମନେ ଅଶକ୍ତ (ଅନନ୍ୟଶରଣ ) ଏହି ମନ୍ଦବୁଦ୍ଧି ( ଜ୍ଞାନାଦି ସାଧନେ ପ୍ରବୃତ୍ତି ରହିତ ) ଲୋକର ଯେଉଁମାନେ ଗତି ( ଆଶ୍ରୟ ) ଯେଉଁମାନଙ୍କର ଶ୍ରୀପାଦପଦ୍ମ ମୋର ସର୍ବସ୍ୱ ଓ ଯେଉଁମାନେ ଶୋଭନପ୍ରେମଯୁକ୍ତ ଅବା କୃପାଳୁ ସେହି ଶ୍ରୀରାଧାମଦନମୋହନ ଜୟଯୁକ୍ତ ହେଉନ୍ତୁ । [ ୧୫ଶ ଶ୍ଳୋକାର୍ଥ ] ।

ପରମଶୋଭାମୟ ଶ୍ରୀବୃନ୍ଦାବନର କଳ୍ପବୃକ୍ଷ ମୂଳରେ ସୁନ୍ଦର ରତ୍ନମୟ ମନ୍ଦିରମଧ୍ୟସ୍ଥ ରତ୍ନସିଂହାସନୋପରି ବିରାଜିତ ଏବଂ ପ୍ରିୟସଖୀଗଣଙ୍କ ଦ୍ୱାରା ସେବିତ ଶ୍ରୀରାଧା ଓ ଶ୍ରୀଗୋବିନ୍ଦଦେବଙ୍କୁ ସ୍ମରଣ କରୁଅଛୁ । [ ୧୬ଶ ଶ୍ଳୋକାର୍ଥ ] ।

ଶ୍ରୀମାନ୍ ରାସରସାରମ୍ଭୀ ବଂଶୀବଟତଟସ୍ଥିତଃ ।
କର୍ଷନ୍ ବେଣୁସ୍ୱନୈର୍ଗୋପୀର୍ଗୋପୀନାଥଃ ଶ୍ରିୟେଽସ୍ତୁ ନଃ ॥*
ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଏ ତିନ ଠାକୁର ଗୌଡ଼ୀୟାକେ କରିୟାଛେନ ଆତ୍ମସାଥ
ଏ-ତିନେର ଚରଣ ବନ୍ଦ, ତିନେ ମୋର ନାଥ । ୨ ।

ଗ୍ରନ୍ଥେର ଆରମ୍ଭେ କରି ମଙ୍ଗଳାଚରଣ ।
ଗୁରୁ ବୈଷ୍ଣବ ଭଗବାନ୍—ତିନେର ସ୍ମରଣ । ୩ ।
ତିନେର ସ୍ମରଣେ ହୟ ବିଘ୍ନବିନାଶନ ।
ଅନାୟାସେ ହୟ ନିଜ-ବାଞ୍ଛିତପୂରଣ । ୪ ।
ସେ ମଙ୍ଗଳାଚରଣ ହୟ ତ୍ରିବିଧ ପ୍ରକାର— ।
ବସ୍ତୁନିର୍ଦ୍ଦେଶ, ଆଶୀର୍ବାଦ, ନମସ୍କାର । ୫ ।

ଶ୍ରୀମାନ୍ ( ଭଗବାନ୍ ସର୍ବୈଶ୍ୱର୍ଯ୍ୟପରିପୂର୍ଣ୍ଣଃ ପ୍ରେମମୂର୍ତ୍ତିରସିକଃ ) ରାସରସାରମ୍ଭୀ (ରାସପ୍ରବର୍ତ୍ତକଃ) ବଂଶୀବଟତଟସ୍ଥିତଃ ବେଣୁସ୍ୱନୈଃ ( ବେଣୁଧ୍ୱନିଭିଃ ) ଗୋପୀଃ ( ତାଦୃଶଭାବବତୀଃ ଗୋପୀଗଣାନ୍ ) କର୍ଷନ୍ ( ସନ୍ ) ଗୋପୀନାଥଃ ନଃ ( ଅସ୍ମାକଂ ) ଶ୍ରିୟେ ( କୁଶଳାୟ ) ଅସ୍ତୁ (ଭବତୁ) [୧୭ଶ ଶ୍ଳୋକସ୍ୟ]

ଏଭିଃ ଶବ୍ଦେନ ମଦନମୋହନ-ଗୋବିନ୍ଦ-ଗୋପୀନାଥାଃ ଏତେ ତ୍ରୟଃ, ଅତ୍ର ମଦନମୋହନ ଶବ୍ଦେନ ମଦନଗୋପାଳୋଽପି ଜ୍ଞାତବ୍ୟଃ ଇତି । ୨ । ବି, ଚ,

ଯେ ସର୍ବାର୍ଥ ପରିପୂର୍ଣ୍ଣ ରାସରସପ୍ରବର୍ତ୍ତକ ଅଟନ୍ତି, ଏବଂ ଯେ ବଂଶୀବଟମୂଳଦେଶରେ ଅବସ୍ଥାନ କରି ବେଣୁଧ୍ୱନି ଦ୍ୱାରା ଗୋପସୁନ୍ଦରୀବୃନ୍ଦଙ୍କୁ ଆକର୍ଷଣ କରୁଅଛନ୍ତି ସେହି ଶ୍ରୀଗୋପୀନାଥ ଆମ୍ଭମାନଙ୍କର କୁଶଳ ବିଧାନ କରନ୍ତୁ । [ ୧୭ଶ ଶ୍ଳୋକାର୍ଥ ] ।

ଶ୍ରୀଲ କବିରାଜ ଗୋସ୍ୱାମୀ ନିଜେ ଗୌଡ଼ଦେଶବାସୀ ଓ ପରେ ଶ୍ରୀବୃନ୍ଦାବନବାସୀ ହୋଇଥିଲେ । ଶ୍ରୀମଦନମୋହନ ତାହାଙ୍କର କୁଳଦେବତା ଓ ସେହି ବିଗ୍ରହ ଶ୍ରୀସନାତନ ଗୋସ୍ୱାମୀଙ୍କ ଦ୍ୱାରା ପ୍ରଭୁଙ୍କର ସ୍ୱପ୍ନାଦେଶମତେ ମଥୁରାସ୍ଥ କୌଣସି ଏକ ଚୌବେଙ୍କ ଗୃହରୁ ଆନୀତ ହୋଇ ଶ୍ରୀଶ୍ରୀବୃନ୍ଦାବନଧାମରେ ପ୍ରତିଷ୍ଠିତ ହୋଇଅଛନ୍ତି । ଶ୍ରୀଗୋବିନ୍ଦ ବ୍ରଜବାସୀରୂପ ଧରି ଶ୍ରୀରୂପ ଗୋସ୍ୱାମୀଙ୍କୁ ଆଦେଶ କଲେ ମୁଁ ଏହି ଶ୍ରୀବୃନ୍ଦାବନସ୍ଥ ଗୋମାଟିଲା ନାମକ ସ୍ଥାନରେ ( ଯୋଗପୀଠରେ ) ରହିଅଛି ତୁମ୍ଭେ ମୋତେ ପ୍ରକାଶ କର । ତହୁଁ ଶ୍ରୀରୂପ ଗୋସ୍ୱାମୀ ଲୋକମାନଙ୍କଦ୍ୱାରା ଭୂମିଖନନପୂର୍ବକ ଶ୍ରୀଗୋବିନ୍ଦବିଗ୍ରହଙ୍କୁ ପ୍ରକାଶ କଲେ । ଶ୍ରୀଶ୍ରୀଗୋପୀନାଥଦେବ ଶ୍ରୀଲ ମଧୁପଣ୍ଡିତଙ୍କଦ୍ୱାରା ଶ୍ରୀଜୀଉଙ୍କ ସ୍ୱପ୍ନାଦେଶକ୍ରମେ ଶ୍ରୀଶ୍ରୀବୃନ୍ଦାବନଧାମସ୍ଥ ଶ୍ରୀବଂଶୀବଟ ନିକଟରୁ ଆନୀତ ହୋଇ ପ୍ରତିଷ୍ଠିତ ହୋଇଅଛନ୍ତି । ଏହି ତିନି ଶ୍ରୀବିଗ୍ରହ ଗୌଡ଼ଦେଶବାସୀ ଶ୍ରୀମାନ୍ ମହାପ୍ରଭୁଙ୍କ ପ୍ରିୟଭକ୍ତମାନଙ୍କଦ୍ୱାରା ପ୍ରତିଷ୍ଠିତ ଓ ମହାପ୍ରଭୁଙ୍କ ଭକ୍ତବୃନ୍ଦଙ୍କର ପ୍ରାଣଧନ ସ୍ୱରୂପ; ତେଣୁ ଶ୍ରୀଲ କବିରାଜ ଗୋସ୍ୱାମୀ ଏହି ତିନି ବିଗ୍ରହଙ୍କୁ ଗ୍ରନ୍ଥାରମ୍ଭରେ ପ୍ରଣାମ କରି କହିଅଛନ୍ତି ଯେ ଏହି ତିନି ଠାକୁର ଗୌଡ଼ୀୟ ବୈଷ୍ଣବମାନଙ୍କୁ ଆତ୍ମସାତ୍ କରିଅଛନ୍ତି ଅର୍ଥାତ୍ ଆପଣାର ଅତି ପ୍ରିୟ ବୋଲି ଗ୍ରହଣ କରିଅଛନ୍ତି । ଏହିହେତୁ ଏ ତିନି ବିଗ୍ରହ ମୋର ନାଥ ଅର୍ଥାତ୍ ପ୍ରଭୁ, ତେଣୁ ଏହି ତିନି ବିଗ୍ରହଙ୍କର ଶ୍ରୀଚରଣକମଳରେ ପ୍ରଣାମ କରୁଅଛି । ଏଥିର ପ୍ରମାଣ ଯଥା—

( ଶ୍ରୀ ଭକ୍ତିରତ୍ନାକର ଷଷ୍ଠ ତରଙ୍ଗ )

" ଶ୍ରୀଗୋବିନ୍ଦ ଗୋପୀନାଥ ମଦନମୋହନ, ଏ ତିନ ଠାକୁର ଗୌଡ଼ୀୟାର ପ୍ରାଣଧନ ।
ଏ ତିନ ଗୌଡ଼ିୟାର ସର୍ବସ୍ୱ ସବେ ଜାନେ, ଗୌଡ଼ିୟାକେ ଆତ୍ମସାତ୍ କୈଲ୍ ଏଇ ତିନେ ।"

ତଥାହି ଚୈତନ୍ୟଚରିତାମୃତେ—

ଏଇ ତିନ ଗୌଡ଼ିୟାକେ କୈଲ ଆତ୍ମସାତ୍ । ଏଇ ତିନ ଠାକୁର ବନ୍ଦୋ ତିନୋ ମୋର ନାଥ ॥

ଗୌଡ଼ିୟା—ଶ୍ରୀମନ୍ ମହାପ୍ରଭୁଙ୍କର ଭକ୍ତମାନଙ୍କୁ ଗୌଡ଼ିୟା ବା ଗୌଡ଼ୀୟ ବୈଷ୍ଣବ ବୋଲାଯାଏ । ୨ୟ ପୟାର ।

ବସ୍ତୁନିର୍ଦ୍ଦେଶ—ଗ୍ରନ୍ଥର ଲକ୍ଷ୍ୟବସ୍ତୁ, ତତ୍ତ୍ୱବିଚାର ଦ୍ୱାରା ସ୍ଥିର କରିବା । ୫ ।

ପ୍ରଥମ ଦୁଇଶ୍ଳୋକେ ଇଷ୍ଟଦେବନମସ୍କାର ।
ସାମାନ୍ୟ-ବିଶେଷରୂପେ ଦୁଇ ତ ପ୍ରକାର । ୬ ।
ତୃତୀୟ-ଶ୍ଳୋକେତେ କରି ବସ୍ତୁର ନିର୍ଦ୍ଦେଶ ।
ଯାହା ହୈତେ ଜାନି ପରତତ୍ତ୍ୱେର ଉଦ୍ଦେଶ । ୭ ।
ଚତୁର୍ଥ-ଶ୍ଳୋକେତେ କରି ଜଗତେ ଆଶୀର୍ବାଦ ।
ସର୍ବ୍ବତ୍ର ମାଗିୟେ କୃଷ୍ଣଚୈତନ୍ୟ-ପ୍ରସାଦ । ୮ ।
ସେଇ ଶ୍ଳୋକେ କହି ବାହ୍ୟାବତାର-କାରଣ ।
ପଞ୍ଚ-ଷଷ୍ଠ-ଶ୍ଳୋକେ କହି ମୂଳ ପ୍ରୟୋଜନ । ୯ ।
ଏଇ ଛୟ ଶ୍ଳୋକେ କହି ଚୈତନ୍ୟେର ତତ୍ତ୍ୱ ।
ଆର ପଞ୍ଚ ଶ୍ଳୋକେ ନିତ୍ୟାନନ୍ଦେର ମହତ୍ତ୍ୱ । ୧୦ ।
ଆର ଦୁଇ ଶ୍ଳୋକେ ଅଦ୍ୱୈତତତ୍ତ୍ୱାଖ୍ୟାନ ।
ଆର ଏକ ଶ୍ଳୋକେ ପଞ୍ଚତତ୍ତ୍ୱେର ବ୍ୟାଖ୍ୟାନ ।୧୧।
ଏଇ ଚୌଦ୍ଦ ଶ୍ଳୋକେ କରି ମଙ୍ଗଳାଚରଣ ।
ତହିଁମଧ୍ୟେ କହି ସବ ବସ୍ତୁ-ନିରୂପଣ । ୧୨ ।
ସବ ଶ୍ରୋତା ବୈଷ୍ଣବେରେ କରି ନମସ୍କାର ।
ଏଇ ସବ ଶ୍ଳୋକେର କରି ଅର୍ଥ-ବିଚାର । ୧୩ ।
ସକଲ ବୈଷ୍ଣବ ! ଶୁନ କରି ଏକମନ ।
ଚୈତନ୍ୟକୃଷ୍ଣେର ଶାସ୍ତ୍ରମତ-ନିରୂପଣ । ୧୪ ।
କୃଷ୍ଣ, ଗୁରୁ, ଭକ୍ତ, ଶକ୍ତି, ଅବତାର, ପ୍ରକାଶ ।
କୃଷ୍ଣ ଏଇ ଛୟରୂପେ କରେନ ବିଲାସ ।୧୫।
ଏଇ ଛୟ ତତ୍ତ୍ୱେର କରି ଚରଣ-ବନ୍ଦନ ।
ପ୍ରଥମେ ସାମାନ୍ୟ କରି ମଙ୍ଗଳାଚରଣ । ୧୬ ।
ତଥାହି—
ବନ୍ଦେ ଗୁରୂନୀଶଭକ୍ତାନୀଶମୀଶାବତାରକାନ୍ ।
ତତ୍ପ୍ରକାଶାଂଶ୍ଚ ତଚ୍ଛକ୍ତୀଃ କୃଷ୍ଣଚୈତନ୍ୟସଂଜ୍ଞକମ୍ ।୮।*
ମନ୍ତ୍ରଗୁରୁ ଆର ଯତ ଶିକ୍ଷାଗୁରୁଗଣ ।
ତାଁହାର ଚରଣ ଆଗେ କରିୟେ ବନ୍ଦନ । ୧୭ ।
ଶ୍ରୀରୂପ, ସନାତନ, ଭଟ୍ଟ ରଘୁନାଥ ।
ଶ୍ରୀଜୀବ, ଗୋପାଳ ଭଟ୍ଟ, ଦାସ ରଘୁନାଥ । ୧୮ ।

ସାମାଗୁରୁଶିକ୍ଷାଗୁରୁରୂପେଣ ଗୁରୁଦ୍ୱୟଂ । ୧୬ । ବି, ଚ,
୧୮ଶ ଶ୍ଳୋକରୁ ଅନ୍ୱୟ ଆଦଲୀଲା ୧ମ ପରିଚ୍ଛେଦର ୧ମ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଇଷ୍ଟଦେବ—ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ।

ସାମାନ୍ୟ ବିଶେଷରୂପେ—ଯାହା ଉଦ୍ଦେଶ୍ୟ ବସ୍ତୁକୁ ବୁଝାଇ ଅତିରିକ୍ତ ବସ୍ତୁକୁ ମଧ୍ୟ ବୁଝାଏ ତାହାର ନାମ "ସାମାନ୍ୟ" (ଗୌଣ)। ଯାହା କେବଳ ଉଦ୍ଦେଶ୍ୟ ବସ୍ତୁକୁ ବୁଝାଇ ନିରସ୍ତ ହୁଏ ତାହାର ନାମ "ବିଶେଷ" (ମୁଖ୍ୟ) । ୬ ।

ପରତତ୍ତ୍ୱର ଉଦ୍ଦେଶ—ପରତତ୍ତ୍ୱ ଅର୍ଥାତ୍ ଶ୍ରେଷ୍ଠତତ୍ତ୍ୱ ବା ମୂଳତତ୍ତ୍ୱର ଉଦ୍ଦେଶ ଅର୍ଥାତ୍ ସାଧାରଣ ଜ୍ଞାନ । ୭ ।

ପ୍ରସାଦ—ଅନୁଗ୍ରହ । ୮ ।

ବାହ୍ୟାବତାର କାରଣ—ଅବତାରର ବାହ୍ୟକାରଣ (ଗୌଣହେତୁ) ଅର୍ଥାତ୍ ଜଗତର ଯେଉଁ ପ୍ରୟୋଜନ ସାଧନ ନିମିତ୍ତ ଅବତାର ତାହା ।

ମୂଳପ୍ରୟୋଜନ—ଅନ୍ତରଙ୍ଗ କାରଣ (ମୁଖ୍ୟହେତୁ) ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ନିଜର ଯେଉଁ ପ୍ରୟୋଜନ ସାଧନ ନିମିତ୍ତ ଅବତାର ତାହା । ୯ ।

ଚୈତନ୍ୟ କୃଷ୍ଣେର—ଶ୍ରୀକୃଷ୍ଣଚୈତନ୍ୟରୂପଧାରୀ ଶ୍ରୀକୃଷ୍ଣଙ୍କର । ୧୪ ।

"କୃଷ୍ଣ ଗୁରୁଦ୍ୱୟ ଭକ୍ତ ଅବତାର ପ୍ରକାଶ, ଶକ୍ତି ଏଇ ଛୟରୂପେ କରେନ ବିଳାସ" ।

କୌଣସି ପୁସ୍ତକରେ ଏହା ଦେଖାଯାଏ । ୧୫ ।

ଗୁରୁଦ୍ୱୟ—ଦ୍ୱିବିଧ ଗୁରୁ (୧ ମନ୍ତ୍ରଗୁରୁ ୨ ଶିକ୍ଷାଗୁରୁ) । ୧୫ ।

ଦ୍ୱିବିଧ ନମସ୍କାରରୂପ ମଙ୍ଗଳାଚରଣ ମଧ୍ୟରୁ ପ୍ରଥମେ ସାମାନ୍ୟରୂପ ମଙ୍ଗଳାଚରଣର ବିଷୟ ଉଲ୍ଲେଖ କରିଅଛନ୍ତି । ୧୬ ।

ଏଇ ଛଅ୍ଯ ଗୁରୁ—ଶିକ୍ଷାଗୁରୁ ଯେ ଆମାର ।
ଏଇ ଗୁରୁଗଣେ ଆଗେ କରି ନମସ୍କାର । ୧୯ ।
ଭଗବାନେର ଭକ୍ତ ଯତ ଶ୍ରୀବାସପ୍ରଧାନ ।
ତାଁସଭାର ପାଦପଦ୍ମେ ସହସ୍ର ପ୍ରଣାମ । ୨୦ ।

ଅଦ୍ୱୈତ-ଆଚାର୍ଯ୍ୟ—ପ୍ରଭୁର ଅଂଶ-ଅବତାର ।
ତାଁର ପାଦପଦ୍ମେ କୋଟି ପ୍ରଣତି ଆମାର । ୨୧ ।
ନିତ୍ୟାନନ୍ଦରାୟ—ପ୍ରଭୁର ସ୍ୱରୂପପ୍ରକାଶ ।
ତାଁର ପାଦପଦ୍ମ ବନ୍ଦ, ଯାଁର ମୁଞି ଦାସ । ୨୨ ।

---

ଗୁରୂନିତ୍ୟସ୍ୟାର୍ଥମାହ " ମନ୍ତ୍ରଗୁରୁ " ଇତି । ୧୭ । ପଯ୍ୟାର ବ, ଚ,

ଶିକ୍ଷାଗୁରୁନାମାନ୍ୟାହ ଶ୍ରୀରୂପ ଇତି । ଶ୍ରୀନିତ୍ୟାନନ୍ଦସ୍ୟ ନିଜଗୁରୁତ୍ୱେନ ପ୍ରସିଦ୍ଧତ୍ୱାତ୍ତୁ ନାମୋଲ୍ଲେଖୋ ନ କୃତଃ ଇତି । ୧୮ । ବ, ଚ,

ଏତେ ଷଟ୍ଗୁରୁଶିକ୍ଷାୟାଂ ତତ୍ତ୍ୱଶିକ୍ଷାସ୍ୱିତି ଯାବତ୍ତୁ ମମ ଗୁରବ ଇତି । ୧୯ । ବ, ଚ,

ଈଶଭକ୍ତାନିତ୍ୟସ୍ୟାର୍ଥମାହ " ଭଗବାନେର " ଇତି । ୨୦ । ବ, ଚ,

ଈଶାବତାରକାନିତ୍ୟସ୍ୟାର୍ଥମାହ " ଅଦ୍ୱୈତ " ଇତି । ୨୧ । ବ, ଚ,

ତତ୍ପ୍ରକାଶାଂଶ୍ଚେତ୍ୟସ୍ୟାର୍ଥମାହ "ନିତ୍ୟାନନ୍ଦେ" ତି । ଗୁରୁତ୍ୱେନୈବ ପ୍ରକାଶତ୍ୱମିତି ।୨୨। ବ, ଚ,

---

ଗୁରୁମାନଙ୍କୁ (ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ) ଈଶ (ସର୍ବୈଶ୍ୱର୍ଯ୍ୟ ଓ ସର୍ବମାଧୁର୍ଯ୍ୟପୂର୍ଣ୍ଣ ଭଗବାନଙ୍କ) ଭକ୍ତମାନଙ୍କୁ, ଈଶଅବତାରମାନଙ୍କୁ, ଈଶପ୍ରକାଶମାନଙ୍କୁ, ଈଶଶକ୍ତିମାନଙ୍କୁ ଏବଂ ସ୍ୱୟଂ ଈଶ ଶ୍ରୀକୃଷ୍ଣ-ଚୈତନ୍ୟଙ୍କୁ ବନ୍ଦନା କରୁଅଛି । [ ୧୮ଶ ଶ୍ଲୋକାର୍ଥ ]

ମନ୍ତ୍ରଗୁରୁ—ଦୀକ୍ଷାଗୁରୁ ।

ଶିକ୍ଷାଗୁରୁଗଣ—ତତ୍ତ୍ୱଉପଦେଷ୍ଟା ଗୁରୁଗଣ ( ଅର୍ଥାତ୍ ମନ୍ତ୍ରଗୁରୁ ବ୍ୟତୀତ ଅପର ) ।

ମନ୍ତ୍ରଗୁରୁ ଛଡ଼ା ଅନ୍ୟଠାରୁ ତତ୍ତ୍ୱଉପଦେଶ ଗ୍ରହଣ କଲେ ସେ ଗୁରୁ ଶିକ୍ଷାଗୁରୁ ନାମରେ ଅଭିହିତ ।

ଗ୍ରନ୍ଥକର୍ତ୍ତା ଶ୍ରୀକୃଷ୍ଣଦାସ କବିରାଜଙ୍କର ଅଷ୍ଟାଦଶପଦ୍ୟୋଲ୍ଲିଖିତ ଶ୍ରୀରୂପାଦି ଛ ଗୋସ୍ୱାମୀ ଶିକ୍ଷାଗୁରୁ ଥିଲେ । ସେହିହେତୁ " ବନ୍ଦେ ଗୁରୂନ୍ " ଏହି ବହୁବଚନୋନ୍ତ ଶବ୍ଦ ଅଷ୍ଟାଦଶ ଶ୍ଲୋକରେ ସେ ବ୍ୟବହାର କରିଅଛନ୍ତି । ୧୭ ।

ଗ୍ରନ୍ଥକାରଙ୍କର ମନ୍ତ୍ରଗୁରୁ ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ପ୍ରସିଦ୍ଧହେତୁ ତାହାଙ୍କର ନାମ ଉଲ୍ଲେଖ କରିନାହାନ୍ତି । ୧୮ ।

ଏଇ ଛଅ୍ଯ ଗୁରୁ ଶିକ୍ଷାଗୁରୁ ଯେ ଆମାର, ତାଁ ସଭାର ପାଦପଦ୍ମେ କୋଟି ନମସ୍କାର ।

କୌଣସିି ପୁସ୍ତକରେ ଏରୂପ ପାଠ ଅଛି ।

ଏଇ ଗୁରୁଗଣେ—ଦୀକ୍ଷାଗୁରୁ ଓ ଛ ଶିକ୍ଷାଗୁରୁ । ୧୯ ।

ଶ୍ରୀବାସ—ଭକ୍ତତତ୍ତ୍ୱ । ୨୦ ।

ଶ୍ରୀଅଦ୍ୱୈତାଚାର୍ଯ୍ୟ—ଅବତାରତତ୍ତ୍ୱ, ଅଂଶ—ମହାବିଷ୍ଣୁ ।

ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ—ପ୍ରକାଶତତ୍ତ୍ୱ । ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ଶ୍ରୀକବିରାଜ ଗୋସ୍ୱାମୀଙ୍କର ଗୁରୁହେତୁ ପ୍ରକାଶ ବୋଲି କହିଅଛନ୍ତି ।

ଯାଁର ମୁଇଁ ଦାସ—ଯାହାଙ୍କର ମୁଁ ମନ୍ତ୍ରଶିଷ୍ୟ । ୨୨ ।

ଗଦାଧରପଣ୍ଡିତାଦି—ପ୍ରଭୁର ନିଜଶକ୍ତି ।
ତାଁସଭାର ଚରଣେ ମୋର ସହସ୍ର ପ୍ରଣତି । ୨୩ ।
ଶ୍ରୀକୃଷ୍ଣଚୈତନ୍ୟ-ପ୍ରଭୁ ସ୍ୱୟଂଭଗବାନ ।
ତାଁହାର ପଦାରବିନ୍ଦେ ଅନନ୍ତ ପ୍ରଣାମ । ୨୪ ।
ସାବରଣେ ପ୍ରଭୁରେ କରିୟା ନମସ୍କାର ।
ଏଇ ଛୟ ତେଁହୋ ଯୈଛେ—କରି ସେ ବିଚାର ।୨୫।

ଯଦ୍ୟପି ଆମାର ଗୁରୁ ଚୈତନ୍ୟେର ଦାସ ।
ତଥାପି ଜାନିୟେ ଆମି ତାଁହାର ପ୍ରକାଶ । ୨୬ ।
ଗୁରୁ କୃଷ୍ଣରୂପ ହନ ଶାସ୍ତ୍ରେର ପ୍ରମାଣେ ।
ଗୁରୁରୂପେ କୃଷ୍ଣ କୃପା କରେନ ଭକ୍ତଗଣେ । ୨୭ ।
ତଥାହି ଶ୍ରୀମଦ୍ଭାଗବତେ (୧୧।୧୭।୨୭)—
ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ନାବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟବୁଦ୍ଧ୍ୟାସୂୟେତ ସର୍ବଦେବମୟୋ ଗୁରୁଃ ।୧୯।୫।

ତଚ୍ଛକ୍ତୀରିତ୍ୟସ୍ୟାର୍ଥଃ ଗଦାଧରେତି । ୨୩ । ବି, ଚ,

ଈଶମିତ୍ୟସ୍ୟାର୍ଥଃ "ଶ୍ରୀକୃଷ୍ଣେ" ତି । ୨୪ । ବି, ଚ,

ଶ୍ରୀକୃଷ୍ଣଚୈତନ୍ୟଃ ଯଦ୍ରୂପେଣ ଭକ୍ତଷଡ଼୍ରୂପଃ ତତ୍ ବିଚାରୟନ୍ ତଦ୍ ତାବତ୍ ପ୍ରଥମତଃ । ଗୁରୁନିତ୍ୟସ୍ୟ ବିଶେଷମାହ "ଯଦ୍ୟପୀତି" । "ନିତ୍ୟାନନ୍ଦରାୟ ପ୍ରଭୁର ସ୍ୱରୂପ ପ୍ରକାଶ" ଇତ୍ୟାଦିନା "ଯଦ୍ୟପୀ" ତ୍ୟାଦିନା ଚ ଗୁରୁପଦେନାତ୍ର ନିତ୍ୟାନନ୍ଦପ୍ରଭୁରେବୋକ୍ତ ବ୍ୟକ୍ତିତଂ । ନନୁ ନିତ୍ୟାନନ୍ଦପ୍ରଭୋ-ର୍ବଲରାମତ୍ୱେନ ବଲରାମସ୍ୟତୁ ବୈଭବତ୍ୱେନ କଥମଦ୍ୱ୍ୟାଖ୍ୟାନୁସଙ୍ଗତ୍ୱେନ ବିଳାସତ୍ୱେନ ଚ ଧ୍ୟାତ୍ରେ କୁତସ୍ତସ୍ୟ ପ୍ରକାଶତ୍ୱମିତ୍ୟାହ "ଯଦ୍ୟପୀ" ତ୍ୟାଦି । ଗୁରୁତ୍ୱେନୈବ ପ୍ରକାଶତ୍ୱଂ ନତୁ ବାସ୍ତବତ୍ୱେନ ଇତଭାବଃ ପ୍ରକାଶତ୍ୱେନୈବ ତଥାତ୍ୱଂ । ଇତି । ୨୬ । ବି, ଚ,

ଆଚାର୍ଯ୍ୟଂ (ଗୁରୁଂ) ମାଂ (ମତ୍ସ୍ୱରୂପଂ) ବିଜାନୀୟାତ୍ କର୍ହିଚିତ୍ (କଦାଚିତ୍ ଅପି ତଂ) ନ ଅବମନ୍ୟେତ (ଯତଃ) ଗୁରୁଃ ସର୍ବଦେବମୟଃ (ଅତଃ) ମର୍ତ୍ତ୍ୟବୁଦ୍ଧ୍ୟା (ତସ୍ମୈ) ନ ଅସୂୟେତ (ତସ୍ମିନ୍ ଦୋଷାରୋପଂ ନ କୁର୍ଯ୍ୟାତ୍) । [୧୯ଶ ଶ୍ଳୋକଃ]

ଶ୍ରୀଗଦାଧରପଣ୍ଡିତ—ଅନ୍ତରଙ୍ଗାଶକ୍ତିତତ୍ତ୍ୱ । ୨୩ ।

ଶ୍ରୀକୃଷ୍ଣଚୈତନ୍ୟପ୍ରଭୁ—ପରତତ୍ତ୍ୱ । ୨୪ ।

ସାବରଣେ—ପାର୍ଷଦଗଣ ସହିତ ।

ଏଇ ଛୟ—୧୯ଶ ଠାରୁ ୨୪ଶତି ପର୍ଯ୍ୟନ୍ତ ପୟାରମାନଙ୍କରେ ଯେଉଁ ତତ୍ତ୍ୱମାନଙ୍କର ନାମ କହିଗଲି ଅର୍ଥାତ୍ ଗୁରୁମାନେ, ଭକ୍ତ, ଅବତାର, ପ୍ରକାଶ (ସ୍ୱରୂପ) ଶକ୍ତି ଏବଂ ସ୍ୱୟଂ ପରତତ୍ତ୍ୱ ।

ତେହେଁ—ସେ (ମହାପ୍ରଭୁ) ଯୈଛେ—ଯେପରି ।

ଯଦିଚ ମୋର (ଶିଷ୍ୟର) ଗୁରୁ (ଦୀକ୍ଷାଗୁରୁ) ମନୁଷ୍ୟରୂପରେ ଭକ୍ତହେତୁ ସ୍ୱାଭାବିକ ଶ୍ରୀକୃଷ୍ଣଚୈତନ୍ୟଙ୍କର ଦାସ (ଭକ୍ତ) ଅଟନ୍ତି, ତଥାପି ମୁଁ (ଶିଷ୍ୟ) ତାହାଙ୍କୁ (ଗୁରୁଙ୍କୁ) ତାହାଙ୍କର (ଶ୍ରୀକୃଷ୍ଣଚୈତନ୍ୟଙ୍କର) ପ୍ରକାଶ (ସ୍ୱରୂପ) ବୋଲି ମନେ କରେଁ । ଏହାର ମର୍ମ ନିମ୍ନ ପୟାର ଓ ଶ୍ଳୋକରେ ଶ୍ରୀଲ କବିରାଜ ଗୋସ୍ୱାମୀ ବୁଝାଇଦେଇଅଛନ୍ତି ଅର୍ଥାତ୍ ଶ୍ରୀମନ୍ ନିତ୍ୟାନନ୍ଦପ୍ରଭୁ ଶ୍ରୀଲ କବିରାଜ ଗୋସ୍ୱାମିଙ୍କର ଗୁରୁହେତୁ ପ୍ରକାଶ, କିନ୍ତୁ ପ୍ରକୃତ ଶ୍ରୀବଳରାମତତ୍ତ୍ୱହେତୁ ମହାପ୍ରଭୁଙ୍କର ବିଳାସମୂର୍ତ୍ତି । ୨୬ ।

ଶ୍ରୀଉଦ୍ଧବଙ୍କୁ ଶ୍ରୀକୃଷ୍ଣ କହୁଅଛନ୍ତି, ଶ୍ରୀଗୁରୁଦେବଙ୍କୁ ମୋର ସ୍ୱରୂପ ବୋଲି ଜ୍ଞାନ କରିବ, କଦାପି ତାଙ୍କୁ ଅବଜ୍ଞା କରିବ ନାହିଁ, କିମ୍ବା ତାଙ୍କୁ ମନୁଷ୍ୟ ବୋଲି ଜ୍ଞାନ କରି ତାଙ୍କ ପ୍ରତି କୌଣସି ଦୋଷାରୋପ କରିବ ନାହିଁ । ଯେହେତୁ ଶ୍ରୀଗୁରୁ ସର୍ବଦେବମୟ ଅଟନ୍ତି । [୧୯ଶ ଶ୍ଳୋକାର୍ଥ]

ଶିକ୍ଷାଗୁରୁକେ ତ ଜାନି—କୃଷ୍ଣେର ସ୍ୱରୂପ ।
ଅନ୍ତର୍ଯାମୀ ଭକ୍ତଶ୍ରେଷ୍ଠ—ଏଇ ଦୁଇ ରୂପ । ୨୮ ।
ତଥୈବ ( ୧୧।୨୯।୬ )—
ନୈବୋପଯନ୍ତ୍ୟପଚିତିଂ କବୟସ୍ତବେଶ,
ବ୍ରହ୍ମାୟୁଷାପି କୃତମୃଦ୍ଧମୁଦଃ ସ୍ମରନ୍ତଃ ।
ଯୋଽନ୍ତର୍ବହିସ୍ତନୁଭୃତାମଶୁଭଂ ବିଧୁନ୍ୱ-
ନ୍ନାଚାର୍ଯ୍ୟଚୈତ୍ତ୍ୟବପୁଷା ସ୍ୱଗତିଂ ବ୍ୟନକ୍ତି ।୨୦।
ତଥାହି ଶ୍ରୀଭଗବଦ୍ଗୀତାୟାମ୍ ( ୧୦।୧୦ )—
ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବକମ୍ ।
ଦଦାମି ବୁଦ୍ଧି ଯୋଗଂ ତଂ ଯେନ ମାମୁପଯାନ୍ତି ତେ ।୨୧।

ଶ୍ରୀକୃଷ୍ଣଚୈତନ୍ୟଃ ଯଦ୍ରୂପେଣ ଶିକ୍ଷାଗୁରୁସ୍ତଦ୍ଦିଶ୍ୟରମାହ "ଶିକ୍ଷେତି" ସ୍ୱରୂପଦ୍ୱୟେନ ତଥାହୁରିତି । ୨୮ । ବ, ଚ,

ଈଶ ( ହେ ଭଗବନ୍ ) ବ୍ରହ୍ମାୟୁଷାପି ( ବ୍ରହ୍ମଣୋ ଜୀବନପରିମାଣେନାପି ) କୃତଂ ( ତ୍ୱତ୍କୃତୋପକାରଂ ) ସ୍ମରନ୍ତଃ ଋଦ୍ଧମୁଦଃ ( ଉପଚିତପରମାନନ୍ଦାଃ ) କବୟଃ (ଦେବାଦୟଃ ମନୁଷ୍ୟାଃ) ତବ ଅପଚିତିଂ ( ଋଣବିମୁକ୍ତିଂ ) ନୈବୋପୟନ୍ତି ( ନୈବପ୍ରାପ୍ନୁବନ୍ତି ) ଯଃ ( ଭବାନ୍ ) ତନୁଭୃତାଂ ( ଶରୀରଧାରିଣାଂ ସର୍ବେଷାଂ ) ଅନ୍ତର୍ବହିଃ ( ବାହ୍ୟାନ୍ତରୟୋଃ ) ଅଶୁଭଂ ( ଅମଙ୍ଗଳଂ ) ବିଧୁନ୍ୱନ୍ ( ଦୂରୀକୁର୍ବନ୍ ) ଆଚାର୍ଯ୍ୟଚୈତ୍ତ୍ୟବପୁଷା ( ଆଚାର୍ଯ୍ୟବପୁଷା ଗୁରୁରୂପେଣ ଚୈତ୍ତ୍ୟବପୁଷା ଅନ୍ତର୍ଯାମିରୂପେଣ କରଣଭୂତେନ ) ସ୍ୱଗତିଂ ( ଭଜନୋଦ୍ଦେଶଂ ) ବ୍ୟନକ୍ତି ( ପ୍ରକାଶୟତି ) । [୨୦ଶ ଶ୍ଳୋକଃ]

( ଏବଂ ) ତେଷାଂ ସତତଯୁକ୍ତାନାଂ ( ନିତ୍ୟଂ ମଦ୍‌ଯୋଗଂ ବାଞ୍ଛତାଂ, ପ୍ରୀତିପୂର୍ବକଂ ମମ-ଯାଥାତ୍ମ୍ୟଜ୍ଞାନଜେନ ରୂପଭାବେଣ ଯଥାମମ୍ୟାନ୍ତି ତଥା ) ଭଜତାଂ ( ଜନାନାଂ ) ତଂ ବୁଦ୍ଧିଯୋଗଂ ( ବୁଦ୍ଧିରୂପଂ ଯୋଗଂ ଉପାୟଂ ) ଅହଂ ( ସ୍ୱଭକ୍ତିସୁଖରସିକଃ ) ଦଦାମି ( ଅର୍ପୟାମି ) ଯେନ ( ଉପାୟେନ ) ତେ ( ଭକ୍ତାଃ ) ମାଂ ଉପଯାନ୍ତି ( ପ୍ରାପ୍ନୁବନ୍ତି ) । [ ୨୧ଶ ଶ୍ଳୋକଃ ] ।

ଦୀକ୍ଷାଗୁରୁଙ୍କ ବିଷୟ ପର ଶିକ୍ଷାଗୁରୁଙ୍କ ବିଷୟ କହୁଅଛନ୍ତି । ଶିକ୍ଷାଗୁରୁ ଅନ୍ତର୍ଯାମୀ ଓ ଭକ୍ତଶ୍ରେଷ୍ଠ ଏହି ଦୁଇରୂପରେ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଅଟନ୍ତି, ଅତଏବ ଏହାର ତାତ୍ପର୍ଯ୍ୟ ଏହି ଯେ ଜୀବ ପ୍ରଥମେ ଶ୍ରୀଗୁରୁଙ୍କଠାରୁ ଦୀକ୍ଷାମନ୍ତ୍ର ଗ୍ରହଣ କରିବା ପର ଶ୍ରୀକୃଷ୍ଣଙ୍କର ତତ୍ତ୍ୱାଦିର ଜ୍ଞାନ ଲାଭ କାରଣ ଇଚ୍ଛୁକ ହେଲେ, ଶ୍ରୀକୃଷ୍ଣ ଅନ୍ତର୍ଯାମୀ ରୂପରେ ସଦସତ୍‌ବୁଦ୍ଧି ପ୍ରେରଣା ଦ୍ୱାରା ବିଷୟବାସନା ଖଣ୍ଡନ କରନ୍ତି ଓ ତତ୍ତ୍ୱାଦିର ଜ୍ଞାନ ନିମନ୍ତେ ଏବଂ ଭକ୍ତିର ବର୍ଦ୍ଧନ ନିମନ୍ତେ ଆଦର୍ଶ ଏବଂ ଉପଦେଶ ଆଦିର ପ୍ରୟୋଜନ ହେଉ; ସେହି ଜୀବପ୍ରତି କୃପାବଶତଃ ନିଜର ଭକ୍ତଶ୍ରେଷ୍ଠଙ୍କୁ ( ନିତ୍ୟସିଦ୍ଧ କିମ୍ବା ସାଧନସିଦ୍ଧ ଭକ୍ତଙ୍କୁ ) ମିଳାଇ ଦିଅନ୍ତି । ଭକ୍ତଶ୍ରେଷ୍ଠ ( ଉତ୍ତମଭକ୍ତ ) ଶ୍ରୀକୃଷ୍ଣଙ୍କର ସ୍ୱରୂପ, କାରଣ ଭକ୍ତହୃଦୟରେ ଶ୍ରୀକୃଷ୍ଣ ସର୍ବଦା ଥାଆନ୍ତି । ଏହି ବିଷୟର ତାତ୍ପର୍ଯ୍ୟ ନିମ୍ନ ଶ୍ଳୋକରେ ବ୍ୟକ୍ତ ହୋଇଅଛି । ୨୮ ।

ହେ ପ୍ରଭୋ ! ବ୍ରହ୍ମବିଦ୍‌ମାନେ ବ୍ରହ୍ମାଙ୍କର ପରମାୟୁ ଲାଭକରି ମଧ୍ୟ ପରମାନନ୍ଦ ଲାଭ ଦ୍ୱାରା ଆପଣଙ୍କ କୃତ ଉପକାର-ଋଣରୁ ମୁକ୍ତ ହୋଇ ପାରନ୍ତିନାହିଁ, କାରଣ ଆପଣ ଜୀବର ସର୍ବପ୍ରକାର ଅମଙ୍ଗଳ ଦୂରକରିବା ଅଭିପ୍ରାୟରେ ବାହାରେ ଗୁରୁରୂପରେ ( ଭକ୍ତଶ୍ରେଷ୍ଠରୂପରେ ଦୃଷ୍ଟାନ୍ତ ଓ ଉପଦେଶ ଦ୍ୱାରା ) ଏବଂ ଅନ୍ତରରେ ଅନ୍ତର୍ଯାମୀ ରୂପରେ ( ସଦସତ୍‌ବୁଦ୍ଧିର ପ୍ରେରଣା ଦ୍ୱାରା ) ତତ୍ତ୍ୱଜ୍ଞାନ ଓ ଭକ୍ତି-ଶିକ୍ଷା ଦେଇ ନିଜକୁ ପରିଚିତ କରନ୍ତି । [ ୨୦ଶ ଶ୍ଳୋକାର୍ଥ ] ।

ଶ୍ରୀଭଗବାନ୍ ଶ୍ରୀଅର୍ଜ୍ଜୁନଙ୍କୁ କହୁଅଛନ୍ତି, ହେ ଅର୍ଜ୍ଜୁନ ! ଯେଉଁମାନେ ନିରନ୍ତର ମୋଠାରେ ଚିତ୍ତସମର୍ପଣ କରି ମୋତେ ପ୍ରୀତିପୂର୍ବକ ଭଜନ୍ତି ମୁଁ ସେମାନଙ୍କୁ ସେହିପରି ବୁଦ୍ଧିଯୋଗ ଦିଏଁ; ଯଦ୍ଦ୍ୱାରା ସେମାନେ ମୋତେ ପ୍ରାପ୍ତ ହୁଅନ୍ତି । [ ୨୧ଶ ଶ୍ଳୋକାର୍ଥ ] ।

ଯଥା ବ୍ରହ୍ମଣେ ଭଗବାନ୍ ସ୍ୱୟମୁପଦିଶ୍ୟାନୁଭାବିତବାନ୍

ତଥାହି ( ଭା: ୨।୯।୩୦—୩୫ )—

ଜ୍ଞାନଂ ପରମଗୁହ୍ୟଂ ମେ ଯଦ୍ ବିଜ୍ଞାନସମନ୍ୱିତମ୍ ।
ସରହସ୍ୟଂ ତଦଙ୍ଗଞ୍ଚ ଗୃହାଣ ଗଦିତଂ ମୟା ॥୨୨॥

ଯାବାନହଂ ଯଥାଭାବୋ ଯଦ୍ରୂପଗୁଣକର୍ମକଃ ।
ତଥୈବ ତତ୍ତ୍ୱବିଜ୍ଞାନମସ୍ତୁ ତେ ମଦନୁଗ୍ରହାତ୍ ॥୨୩॥

ଅହମେବାସମେବାଗ୍ରେ ନାନ୍ୟଦ୍ ଯତ୍ ସଦସତ୍ ପରମ୍ ।
ପଶ୍ଚାଦହଂ ଯଦେତଚ୍ଚ ଯୋଽବଶିଷ୍ୟେତ
ସୋଽସ୍ମ୍ୟହମ୍ ॥ ୨୪ ॥

ମେ ( ମମ ଭଗବତୋ ) ଜ୍ଞାନଂ ( ଶବ୍ଦଦ୍ୱାରା ଯାଥାର୍ଥ୍ୟନିର୍ଦ୍ଧାରଣଂ ) ମୟା ଗଦିତଂ ସତ୍ ଗୃହାଣ ( ଇତ୍ୟନେନ ନ ଜାନାତି ଭାବଃ ) ଯତଃ ପରମଗୁହ୍ୟଂ ( ବ୍ରହ୍ମଜ୍ଞାନାଦପି ରହସ୍ୟତମଂ ) ତଚ୍ଚ ବିଜ୍ଞାନେନ ( ତଦନୁଭବେନାପି ) ସମନ୍ୱିତଂ-ଯୁକ୍ତଂ ( ଗୃହାଣ ) ( ନ ଏତାବଦେବ, କିନ୍ତୁ ) ସରହସ୍ୟଂ ( ତତୋଽପି ରହସ୍ୟଂ ଯଦ୍‌ଭକ୍ତମନ୍ୟସ୍ମିନ୍ ତେନାପି ସହିତଂ, ତଚ୍ଚ ପ୍ରେମଭକ୍ତିରୂପଂ ) ( ତଥା ) ତଦଙ୍ଗଞ୍ଚ ( ଶ୍ରବଣାଦିସାଧନଭକ୍ତିରୂପଂ ) ( ଗୃହାଣ ) । [ ୨୨ଶ ଶ୍ଳୋକଃ ] ।

ଯାବାନ୍ ( ସ୍ୱରୂପତୋ ଯତ୍ପରିମାଣକୋଽହଂ ) ଯଥାଭାବଃ ( ଯଲ୍ଲକ୍ଷଣଂ ) ଯଦ୍ରୂପଗୁଣକର୍ମକଃ ( ଯାନିସ୍ୱରୂପାନ୍ତରଙ୍ଗାନି ରୂପାଣି ଶ୍ୟାମ ଚତୁର୍ଭୁଜତ୍ୱାଦୀନି ଗୁଣାଃ ଭକ୍ତବାତ୍ସଲ୍ୟାଦୟଃ କର୍ମାଣି-ତତ୍ତ୍ଵଲୀଳାଃ ଯସ୍ୟ ସଃ ) ତଥୈବ ( ତେନ ସର୍ବେଣ ପ୍ରକାରେଣୈବ ) ତତ୍ତ୍ୱବିଜ୍ଞାନଂ ( ଯାଥାର୍ଥ୍ୟାନୁଭବଃ ) ମଦନୁଗ୍ରହାତ୍ ତେ ( ତବ ) ଅସ୍ତୁ ( ଭବତୁ ) ( ଏତେନ ଚତୁଃଶ୍ଳୋକ୍ୟର୍ଥସ୍ୟ ନିର୍ବିଶେଷପରତ୍ୱଂ ସ୍ୱୟମେବ ପରାସ୍ତଂ ) । [ ୨୩ଶ ଶ୍ଳୋକଃ ] ।

ଅହଂ ଏବ ଅଗ୍ରେ ( ସୃଷ୍ଟେଃ ପୂର୍ବଂ ) ଆସଂ ( ସ୍ଥିତଃ ) ସତ୍ (କାର୍ଯ୍ୟଂ) ଅସତ୍ (କାରଣଂ) ତୟୋଃ ପରଂ ଯତ୍ ( ବ୍ରହ୍ମ ) ତତ୍ ( ମତ୍ତୋଽନ୍ୟତ୍ ) ନ । ପଶ୍ଚାତ୍ ( ସୃଷ୍ଟେରନନ୍ତରମପି ) ଅହଂ ଏବ ( ଅସ୍ମି ) ଯଦ୍ ଏତଦ୍ ( ବିଶ୍ୱଂ ) ତତ୍ ଅପି ଅହଂ ଏବ ( ଅସ୍ମି ) ପ୍ରଳୟେ ଯଃ ଅବଶିଷ୍ୟେତ ସଃ ( ଅପି ) ଅହଂ ଏବ ଅସ୍ମି । [ ୨୪ଶ ଶ୍ଳୋକଃ ] ।

ଶ୍ରୀଭଗବାନ୍ ଶ୍ରୀବ୍ରହ୍ମାଙ୍କୁ କହିଲେ, ବ୍ରହ୍ମଜ୍ଞାନଠାରୁ ସୁଦ୍ଧା ଗୁହ୍ୟତମ ଯେ ମୋର ଭଗବତ୍ତତ୍ତ୍ୱବିଷୟକ ଜ୍ଞାନ ତାହା ଅନୁଭବର ସହିତ ଗ୍ରହଣ କର ଏବଂ ତାହାଠାରୁ ଗୁହ୍ୟତମ ଯେ ପ୍ରେମଭକ୍ତି ଏବଂ ତାହାର ଶ୍ରବଣକୀର୍ତ୍ତନାଦି ରୂପ ସାଧନାଙ୍ଗ ଏମାନ ମୁଁ କହୁଅଛି ଗ୍ରହଣ କର । [ ୨୨ଶ ଶ୍ଳୋକାର୍ଥ ] ।

ମୁଁ ସ୍ୱରୂପତଃ ଯେପରି, ମୋର ଭାବ ( ଲକ୍ଷଣ ) ଯେରୂପ, ମୋର ରୂପ ( ଶ୍ୟାମ ଚତୁର୍ଭୁଜାଦି ) ଯେରୂପ, ମୋର ଗୁଣ ( ଭକ୍ତବାତ୍ସଲ୍ୟାଦି ) ଯେରୂପ ମୋର କର୍ମ ( ଲୀଳା ) ଯେରୂପ, ସେ ସମସ୍ତ ମୋର ଅନୁଗ୍ରହରୁ ତୁମ୍ଭର ଯଥାର୍ଥ ଅନୁଭବ ହେଉ । ଏତଦ୍ଦ୍ୱାରା ନିର୍ବିଶେଷବାଦ ନିରାସ କରା ହୋଇଅଛି ।
[ ୨୩ଶ ଶ୍ଳୋକାର୍ଥ ]

ଅଗ୍ରେ (ସୃଷ୍ଟିର ପୂର୍ବରୁ ଅର୍ଥାତ୍ ମହାପ୍ରଳୟ କାଳରେ) ଏକମାତ୍ର ମୁଁ ଥିଲି; ସତ୍ ( କାର୍ଯ୍ୟ ) ଅସତ୍ ( କାରଣ ) ( ଏ ଉଭୟର ) ପର ( ଅତୀତ ଯେ ବ୍ରହ୍ମ ) ସେ ମୋଠାରୁ ଭିନ୍ନ ନୁହନ୍ତି । ସୃଷ୍ଟିର ପରେ ( ଜଗତ୍‌ସ୍ଥିତି କାଳରେ ) ମଧ୍ୟ ମୁଁ ଥାଏଁ । ଏହି ବିଶ୍ୱସଂସାର ମଧ୍ୟ ମୁଁ ଏବଂ ପ୍ରଳୟର ପରେ ଯାହା ଅବଶିଷ୍ଟ ରହେ ତାହା ମଧ୍ୟ ମୁଁ । ଏହାର ତାତ୍ପର୍ଯ୍ୟ ଏହି ଯେ ଯେତେବେଳେ ଏହି କାର୍ଯ୍ୟ-କାରଣାତ୍ମିକା ସୃଷ୍ଟି ନ ଥିଲା ସେହି ମହାପ୍ରଳୟକାଳରେ ଶ୍ରୀଭଗବାନ୍ ପ୍ରପଞ୍ଚାତୀତ ସ୍ୱସବିଶେଷସ୍ୱରୂପରେ ବର୍ତ୍ତମାନ ଥିଲେ । ବ୍ରହ୍ମ ଯେ କି ସୃଷ୍ଟିର କାର୍ଯ୍ୟକାରଣର ନିୟାମକ, ସେ ଶ୍ରୀଭଗବାନଙ୍କଠାରୁ ଭିନ୍ନ ନୁହନ୍ତି, ଯେହେତୁ ଶ୍ଳୋକାନ୍ତରରେ ସୂଚିତ ହୋଇଅଛି ଯେ ବ୍ରହ୍ମ ଶ୍ରୀଭଗବାନଙ୍କର ଅଙ୍ଗକାନ୍ତି ।

ଋତେଽର୍ଥଂ ଯତ୍ ପ୍ରତୀୟେତ ନ ପ୍ରତୀୟେତ ଚାତ୍ମନି ।
ତଦ୍ୱିଦ୍ୟାଦାତ୍ମନୋ ମାୟାଂ ଯଥାଭାସୋ ଯଥା ତମଃ ॥୨୫॥

ଯଥା ମହାନ୍ତି ଭୂତାନି ଭୂତେଷୂଚ୍ଚାବଚେଷ୍ୱନୁ ।
ପ୍ରବିଷ୍ଟାନ୍ୟପ୍ରବିଷ୍ଟାନି ତଥା ତେଷୁ ନ ତେଷ୍ୱହମ୍ ॥୨୬॥

ଅର୍ଥଂ ( ପରମପୁରୁଷାର୍ଥଭୂତଂ ମାଂ ) ଋତେ ( ବିନା ) ଯତ୍ ପ୍ରତୀୟେତ ( ମତ୍ପ୍ରତୀତୌ ତତ୍ ପ୍ରତୀତ୍ୟଭାବାତ୍ ମତ୍ତଃ ବହିଃ ଏବ ଯସ୍ୟ ପ୍ରତୀତିଃ ଯତ୍ ) ଚ ଆତ୍ମନି ( ସ୍ୱସ୍ମିନ୍ ) ନ ପ୍ରତୀୟେତ ( ଯସ୍ୟ ଚ ମଦାଶ୍ରୟତ୍ୱଂ ବିନା ସ୍ୱତଃ ପ୍ରତୀତିଃ ନାସ୍ତି ) ତତ୍ ( ତଥାଲକ୍ଷଣଂ ବସ୍ତୁ ) ଆତ୍ମନଃ ମମ ( ପରମେଶ୍ୱରସ୍ୟ ) ମାୟାଂ ( ଜୀବମାୟା ଗୁଣମାୟେତି ଚ ଦ୍ୱ୍ୟାତ୍ମିକାଂ ମାୟାଖ୍ୟଶକ୍ତିଂ ) ବିଦ୍ୟାତ୍ । ଯଥା ଆଭାସଃ ( ପ୍ରତିଚ୍ଛବିବିଶେଷଃ ) ଯଥା ଚ ତମଃ ( ଅନ୍ଧକାରଃ ) । [ ୨୫ଶ ଶ୍ଳୋକଃ ]

ଯଥା ମହାନ୍ତିଭୂତାନି ( ପଞ୍ଚମହାଭୂତାନି ) ଉଚ୍ଚାବଚେଷୁ ଭୂତେଷୁ ( ଭୌତିକେଷୁ ) ଅପ୍ରବିଷ୍ଟାନି ( ବହିଃସ୍ଥିତାନି ) ( ଅପି ) ଅନୁପ୍ରବିଷ୍ଟାନି ( ଅନ୍ତଃସ୍ଥିତାନି ) ( ଭାନ୍ତି ) ତଥା ଅହଂ ( ଶ୍ରୀଭଗବାନ୍ ) ତେଷୁ ( ଭୂତଭୌତିକେଷୁ ) ( ପ୍ରବିଷ୍ଟଃସନ୍ନପି ଅପ୍ରବିଷ୍ଟୋଽସ୍ମି ) ( ଚ ) ନ ତେଷୁ ( ପ୍ରଣତଜନେଷୁ ଅନୁପ୍ରବିଷ୍ଟଃ ଅନ୍ତଃକରଣେଷୁ ଦର୍ଶନଂ ଦାତୁଂ ଅପ୍ରବିଷ୍ଟଃ ବହିଃସ୍ଥିତଃ ପ୍ରକଟରୂପେଣ ଇନ୍ଦ୍ରିୟଗ୍ରାହ୍ୟୋଽଭବାମି ଇତ୍ୟର୍ଥଃ ) । [ ୨୬ଶ ଶ୍ଳୋକଃ ]

ସୃଷ୍ଟି ହେଲା ପର ଏହି ପ୍ରପଞ୍ଚର ସମଷ୍ଟି ଓ ବ୍ୟଷ୍ଟିରେ ଅନ୍ତର୍ଯାମୀରୂପରେ ସେହି ଭଗବାନ୍ ମଧ୍ୟ ଅଛନ୍ତି । ଏହି ବିଶ୍ୱସଂସାରରେ ଯାହାକିଛି ଦେଖାଯାଏ ତାହା ଶ୍ରୀଭଗବାନଙ୍କ ବ୍ୟତୀତ ଅନ୍ୟକିଛି ନୁହେଁ । ପୁଣି ଏହି କାର୍ଯ୍ୟକାରଣାତ୍ମିକା ସୃଷ୍ଟିର ଅବସାନରେ ସେହି ଶ୍ରୀଭଗବାନହିଁ ଥାଆନ୍ତି ଅର୍ଥାତ୍ ମହାପ୍ରଳୟ-କାଳରେ ବିଶ୍ୱସଂସାର ଶ୍ରୀଭଗବାନଙ୍କସ୍ୱରୂପରେ ବିଶ୍ରାମ କରେ । [ ୨୪ଶ ଶ୍ଳୋକାର୍ଥ ] ।

ପୂର୍ବଶ୍ଳୋକରେ ଶ୍ରୀଭଗବାନ୍ ଶ୍ରୀବ୍ରହ୍ମାଙ୍କୁ ଦର୍ଶନ ଦାନ କରି ତାଙ୍କ ସାକ୍ଷାତ୍ ଅନୁଭବ ବିଷୟ ଅନ୍ୱୟମୁଖରେ ବୁଝାଇ ଏହି ଶ୍ଳୋକରେ ବ୍ୟତିରେକମୁଖରେ ବୁଝାଉଅଛନ୍ତି । ପରମପୁରୁଷାର୍ଥଭୂତ ଅର୍ଥାତ୍ ସତ୍ୟବସ୍ତୁ ( ମୁଁ ) ବ୍ୟତୀତ ଯାହା ପ୍ରତୀତ ହୁଏ ଅଥଚ ମୋର ପ୍ରତୀତି ବ୍ୟତିରେକେ ଯାହା ସ୍ୱତଃ ପ୍ରତୀତ ହୁଏନା ତାହାକୁ ମୋର ମାୟାବୋଲି ଜାଣିବ । ଏହି ମାୟା ଉପମାଦ୍ୱାରା ଆଭାସ ଓ ଅନ୍ଧକାର ସଦୃଶ ଅଟେ । ଏହାର ଭାବ ଏହି ଯେ ଜୀବର ଭଗବଜ୍ଜ୍ଞାନ ହେବା ପୂର୍ବରୁ ଯେ ଜୀବକୁ ଆତ୍ମପରିଚୟ ଦିଅନ୍ତି ଏବଂ ଜୀବର ଭଗବଜ୍ଜ୍ଞାନ ନ ହେଲେ ଯାହାଙ୍କର ସ୍ୱରୂପଜ୍ଞାନ ( ଜୀବର ) ହୁଏନା ତାହାହିଁ ଭଗବାନଙ୍କର ମାୟା । ଏହା ଦ୍ୱିବିଧା । ଜୀବମାୟା ନିମିତ୍ତାଂଶ ଓ ଗୁଣମାୟା ଉପାଦାନାଂଶ । ଏ ଦୁହିଁରେ ଲିପ୍ତହୋଇ ଜୀବ ବଦ୍ଧ ଥାଏ । [ ୨୫ଶ ଶ୍ଳୋକାର୍ଥ ]

ଯେପରି ମହାଭୂତମାନେ ( ପଞ୍ଚମହାଭୂତ ) ସ୍ୱତନ୍ତ୍ରଭାବରେ ବିଦ୍ୟମାନ ଥିଲେ ସୁଦ୍ଧା ସର୍ବବିଧ ଜୀବଶରୀରରେ ବିଦ୍ୟମାନ ଥାଆନ୍ତି, ମୁଁ ( ଶ୍ରୀଭଗବାନ୍ ) ସେହିପରି ମୋର ସ୍ୱରୂପରେ ବର୍ତ୍ତମାନ ଥାଇ ମଧ୍ୟ ଭୂତଭୌତିକଦେହରେ ଅନୁପ୍ରବିଷ୍ଟ ଥାଏଁ । ଅର୍ଥାତ୍ ଅନ୍ତର୍ଯାମୀରୂପରେ ବିଦ୍ୟମାନ ଥାଏଁ । ସେମାନଙ୍କ ମଧ୍ୟରେ ଯେଉଁମାନେ ମୋଠାରେ ପ୍ରଣତ ଅର୍ଥାତ୍ ମୋର ଭକ୍ତ ସେମାନଙ୍କୁ ମୁଁ ପ୍ରକଟରୂପରେ ବାହାରେ ଦର୍ଶନ ଦିଏଁ ଏବଂ ସେମାନଙ୍କ ଅନ୍ତଃକରଣରେ ମଧ୍ୟ ଦର୍ଶନ ଦିଏଁ ।

ଏହାର ତାତ୍ପର୍ଯ୍ୟ ଏହି ଯେ ଶ୍ରୀଭଗବାନ୍ ସମସ୍ତ ଜୀବର ବାହାରରେ ଅର୍ଥାତ୍ ବ୍ରହ୍ମାଣ୍ଡାତୀତ ଅପ୍ରାକୃତ ଧାମରେ ସ୍ୱତନ୍ତ୍ରଭାବରେ ନିତ୍ୟ ବିରାଜମାନ ଅଥଚ ପରମାତ୍ମାରୂପରେ ସେମାନଙ୍କର ଅନ୍ତଃ-କରଣରେ ମଧ୍ୟ ନିତ୍ୟ ବିରାଜମାନ । କିନ୍ତୁ ସେମାନେ ତାହା ଅନୁଭବ କରିପାରନ୍ତି ନାହିଁ; କେବଳ ସେମାନଙ୍କ ମଧ୍ୟରୁ ଯେଉଁମାନେ ତାଙ୍କର ( ଶ୍ରୀଭଗବାନଙ୍କର ) ଭକ୍ତ, ସେହିମାନେହିଁ ଶ୍ରୀଭଗବାନଙ୍କୁ

ଏତାବଦେବ ଜିଜ୍ଞାସ୍ୟଂ ତତ୍ତ୍ୱଜିଜ୍ଞାସୁନାତ୍ମନଃ ।
ଅନ୍ୱୟବ୍ୟତିରେକାଭ୍ୟାଂ ଯତ୍ ସ୍ୟାତ୍ ସର୍ବତ୍ର
ସର୍ବଦା ॥ ୧୭ ॥ *

ତଥା ଶ୍ରୀକୃଷ୍ଣକର୍ଣାମୃତେ ପ୍ରଥମ ଶ୍ଲୋକେ—
ଚିନ୍ତାମଣିର୍ଜୟତି ସୋମଗିରିର୍ଗୁରୁର୍ମେ,
ଶିକ୍ଷାଗୁରୁଶ୍ଚ ଭଗବାନ୍ ଶିଖିପିଞ୍ଛମୌଳିଃ ।
ଯତ୍ପାଦକଳ୍ପତରୁପଲ୍ଲବଶେଖରେଷୁ,
ଲୀଳା ସ୍ୱୟଂବରରସଂ ଲଭତେ ଜୟଶ୍ରୀଃ ॥୧୮॥ *

ଆତ୍ମନଃ ( ମମ ଭଗବତଃ ) ତତ୍ତ୍ୱଜିଜ୍ଞାସୁନା ( ଯାଥାର୍ଥ୍ୟମନୁଭବିତୁମିଚ୍ଛୁନା ) ଏତାବଦେବ ଜିଜ୍ଞାସ୍ୟଂ ( ଶ୍ରୀଗୁରୁଚରଣେଭ୍ୟଃ ଶିକ୍ଷଣୀୟଂ ) ଯତ୍ ( ଏକମେବ ) ଅନ୍ୱୟବ୍ୟତିରେକାଭ୍ୟାଂ ( ବିଧି-ନିଷେଧାଭ୍ୟାଂ ) ସର୍ବଦାସର୍ବତ୍ର ସ୍ୟାତ୍ ( ଇତି ଉପଦିଶ୍ୟତେ ) [ ୧୭ଶ ଶ୍ଲୋକଃ ] ।

ସୋମଗିରିଃ ମେ ଗୁରୁଃ ( ମନ୍ତ୍ରଗୁରୁଃ ) ଜୟତି (ସର୍ବୋତ୍କର୍ଷେଣ ବର୍ତ୍ତତେ ବା ପ୍ରଣତୋଽସ୍ମି) ( ସଏବ ) ଚିନ୍ତାମଣିଃ ( ଆଶ୍ରୟ ମାତ୍ରେଣ ଅଭୀଷ୍ଟ ପୂରକଃ ) ( ମେ ଇଷ୍ଟଦେବଃ ) ଭଗବାନ୍ ଚ ଜୟତି ( ଯଃ ) ଶିଖିପିଞ୍ଛମୌଳିଃ ( ଶିଖିପିଞ୍ଛଂ ମୌଳିଃ ଶିରୋଭୂଷଣଂ ଯସ୍ୟ ସଃ ଶ୍ରୀବୃନ୍ଦାବନବିହାରୀ ଶ୍ରୀକୃଷ୍ଣଃ ) ( ସଏବ ) ମେ ଶିକ୍ଷାଗୁରୁଃ । ଯତ୍ ( ଯସ୍ୟ ଶ୍ରୀକୃଷ୍ଣସ୍ୟ ) ପାଦୌଏବ ( କୋମଲ୍ୟାରୁଣ୍ୟସର୍ବାଭୀଷ୍ଟ-ପୂରକତ୍ୱାଦନା ) କଳ୍ପତରୁପଲ୍ଲବୌ, ( ତୟୋଃ ) ଶେଖରେଷୁ ( ତଦଙ୍ଗୁଳିନଖାଗ୍ରେଷୁ ) ଲୀଳୟା ସଃ ସ୍ୱୟମ୍ବରଃ ତତ୍ରସଂ ( ତଚ୍ଛୈନ୍ୟସୁଖଂ ) ଜୟଶ୍ରୀଃ ( ଶ୍ରୀରାଧା ) ଲଭତେ ( ନିତ୍ୟଲୀଳାତ୍ୱାତ୍ ବର୍ତ୍ତମାନ-ପ୍ରୟୋଗଃ ) ଅଥବା କେଷାଞ୍ଚିନ୍ମତେ ବର୍ତ୍ମୋପଦେଶଗୁରୁଃ ମନ୍ତ୍ରଗୁରୁଃ ଶିକ୍ଷାଗୁରୁଃ ଇତି ଗୁରୁତ୍ରୟମିଷ୍ଟଦେବ ସ୍ମରଣମିତି । (ଅତ୍ର ଚିନ୍ତାମଣିଃ ଯସ୍ୟାଃ ବାକ୍ୟାଙ୍କୁରେଣ ଲୀଳାଶୁକସ୍ୟ ଅନୁରାଗଃ ଜାତଃ ସା ଜୟତି, ମନ୍ତ୍ରଗୁରୁଃ ସୋମଗିରିର୍ଜୟତି ) ଇଷ୍ଟଦେବ ଶ୍ରୀକୃଷ୍ଣୋଜୟତି ( ସଏବ ଶିକ୍ଷାଗୁରୁର୍ଜୟତି ) । [ ୧୮ ଶ୍ଲୋକଃ ]

ଅନ୍ତଃକରଣରେ ଦେଖନ୍ତି ଓ ବାହାରେ ପ୍ରକଟରୂପରେ ପଞ୍ଚେନ୍ଦ୍ରିୟଦ୍ୱାରା ଆସ୍ୱାଦନ କରନ୍ତି । ଏହାହିଁ ଶ୍ରୀମଦ୍ଭାଗବତର ମୁଖ୍ୟବର୍ଣ୍ଣନା । [ ୧୬ଶ ଶ୍ଲୋକାର୍ଥ ]

ଯେଉଁ ଏକବସ୍ତୁ ( ପରମତତ୍ତ୍ୱବସ୍ତୁ ) ସର୍ବଦେଶରେ, କାଳରେ ବିଧି ଓ ନିଷେଧ ଦ୍ୱାରା ନିରୂପିତ ହୁଅନ୍ତି, ସେହିର ତତ୍ତ୍ୱ ଅନୁଭବ ଅଭିଳାଷୀ ବ୍ୟକ୍ତି ଶ୍ରୀଗୁରୁଙ୍କ ଆଶ୍ରୟରେ ତାହା ଶିକ୍ଷା କରିବେ, ଅର୍ଥାତ୍ ଯେଉଁ ବ୍ୟକ୍ତି ଶ୍ରୀଭଗବାନଙ୍କର ସ୍ୱରୂପ ଜାଣିବାକୁ ଓ ଅନୁଭବ କରିବାକୁ ଇଚ୍ଛୁକ ସେ ଶ୍ରୀଗୁରୁଙ୍କ ଚରଣାଶ୍ରୟ କରି ତାଙ୍କଠାରୁ ସେ ବିଷୟ ଶିକ୍ଷା କରିବେ ।

ଏହାର ବିଶେଷ ବ୍ୟାଖ୍ୟା ( ଅର୍ଥାତ୍ ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନତତ୍ତ୍ୱ ନିରୂପଣ ) ପରବର୍ତ୍ତୀ ମଧ୍ୟଲୀଳାର ୨୫ ପରିଚ୍ଛେଦରେ ଦେଖି ପାରିବେ । [ ୧୭ ଶ୍ଲୋକାର୍ଥ ]

ମୋର ମନ୍ତ୍ରଗୁରୁ ଯାହାଙ୍କ ଆଶ୍ରୟମାତ୍ର ସର୍ବାଭୀଷ୍ଟ ପୂର୍ଣ୍ଣ ହୁଏ, ଅତଏବ ଯେ ଚିନ୍ତାମଣି ସ୍ୱରୂପ ସେହି ଶ୍ରୀଲ ସୋମଗିରି ଜୟଯୁକ୍ତ ହେଉନ୍ତୁ । ମୋର ଇଷ୍ଟଦେବ ଶିଖିପୁଚ୍ଛମୌଳି ଭଗବାନ୍ ଶ୍ରୀଲ ବୃନ୍ଦାବନବିହାରୀ ଶ୍ରୀକୃଷ୍ଣ ଯେ କି ମୋର ପ୍ରେମଦାତା ଶିକ୍ଷାଗୁରୁ ସେ ଜୟଯୁକ୍ତ ହେଉନ୍ତୁ, ଯାହାଙ୍କର ଶ୍ରୀଚରଣ କଳ୍ପତରୁପଲ୍ଲବାଗ୍ରତୁଲ୍ୟ ନଖାଗ୍ର ସୌନ୍ଦର୍ଯ୍ୟରେ ଆମ୍ଭହରି ହୋଇ ଜୟଶ୍ରୀ (ଶ୍ରୀମତୀ ରାଧାଠାକୁରାଣୀ) ସ୍ୱୟମ୍ବର ସୁଖ ଅନୁଭବ କରୁଅଛନ୍ତି ଅର୍ଥାତ୍ ଆମ୍ଭହରି ହୋଇ ଧର୍ମମର୍ଯ୍ୟାଦାଲଙ୍ଘନ ତ୍ୟାଗପୂର୍ବକ ଶ୍ରୀକୃଷ୍ଣଙ୍କର ଶ୍ରୀଚରଣନଖାଗ୍ରରେ ଆପଣାକୁ ବିକ୍ରୟ କରିଅଛନ୍ତି । କାହାରି ମତରେ ଶ୍ରୀଲ ଲୀଳାଶୁକ ବର୍ତ୍ମୋପଦେଶଗୁରୁ, ଦୀକ୍ଷାଗୁରୁ, ଶିକ୍ଷାଗୁରୁ ଓ ଇଷ୍ଟଦେବଙ୍କୁ ଏହି ଶ୍ଲୋକଦ୍ୱାରା ବନ୍ଦନା କରିଅଛନ୍ତି ଅର୍ଥାତ୍ ଚିନ୍ତାମଣିନାମ୍ନୀ ବେଶ୍ୟା ଯାହାଙ୍କ କଥାରେ ଶ୍ରୀଲ ଲୀଳାଶୁକଙ୍କର ବୈରାଗ୍ୟ ଉଦୟ ହୋଇଥିଲା

ଜୀବେ ସାକ୍ଷାତ୍ ନାହିଁ ତାତେ ଗୁରୁ ଚୈତ୍ତ୍ୟରୂପେ ।
ଶିକ୍ଷାଗୁରୁ ହୟ କୃଷ୍ଣ—ମହାନ୍ତସ୍ୱରୂପେ । ୨୯ ।

ତଥାହି ( ଭାଃ ୧୧।୨୬।୨୬ )—

ତତୋ ଦୁଃସଙ୍ଗମୁତ୍ସୃଜ୍ୟ ସତ୍ସୁ ସଜ୍ଜେତ ବୁଦ୍ଧିମାନ୍ ।
ସନ୍ତ ଏବାସ୍ୟ ଛିନ୍ଦନ୍ତି ମନୋବ୍ୟାସଙ୍ଗମୁକ୍ତିଭିଃ ।୨୯।*

ତଥାହି ( ଭାଃ ୩।୨୫।୨୪ )—

ସତାଂ ପ୍ରସଙ୍ଗାନ୍ମମ ବୀର୍ଯ୍ୟସମ୍ବିଦୋ,
ଭବନ୍ତି ହୃତ୍କର୍ଣ୍ଣରସାୟନାଃ କଥାଃ ।
ତଜ୍ଜୋଷଣାଦାଶ୍ୱପବର୍ଗବର୍ତ୍ମନି,
ଶ୍ରଦ୍ଧା ରତିର୍ଭକ୍ତିରନୁକ୍ରମିଷ୍ୟତି ॥ ୩୦ ॥ *

ଈଶ୍ୱରସ୍ୱରୂପ ଭକ୍ତ ତାଁର ଅଧିଷ୍ଠାନ ।
ଭକ୍ତେର ହୃଦୟେ କୃଷ୍ଣେର ସତତ ବିଶ୍ରାମ ।୩୦।

* ଅନ୍ତର୍ଯାମିନଃ ଦର୍ଶନାଭାବାତ୍ ଭକ୍ତଶ୍ରେଷ୍ଠଃ ଗୁରୁଃ କର୍ତ୍ତବ୍ୟଃ । ଇତି । ୨୯ । ବ, ଚ,

ତତଃ ( ତସ୍ମାତ୍ ) ବୁଦ୍ଧିମାନ୍ ( ଜନଃ ) ଦୁଃସଙ୍ଗମ୍ ଉତ୍ସୃଜ୍ୟ ( ତ୍ୟକ୍ତ୍ୱା ) ସତ୍ସୁ ( ସାଧୁଷୁ ) ସଜ୍ଜେତ ( ଆସକ୍ତୋ ଭବେତ୍ ) । ସନ୍ତଃ ( ସାଧବଃ ) ଏବ ଅସ୍ୟ (ଜନସ୍ୟ) ମନୋବ୍ୟାସଙ୍ଗଂ (ଭକ୍ତିପ୍ରତିବନ୍ଧକାଂ-ବାସନାଂ) ଉକ୍ତିଭିଃ (ଭକ୍ତିମହିମା ପ୍ରତିପାଦକୈଃ ବଚନୈଃ) ଛିନ୍ଦନ୍ତି । [୨୯ ଶ୍ଲୋକଃ]

ସତାଂ ( ସାଧୂନାଂ ) ପ୍ରସଙ୍ଗାତ୍ ( ପ୍ରକୃଷ୍ଟାତ୍ ସଙ୍ଗାତ୍ ) ମମ ବୀର୍ଯ୍ୟସମ୍ବିଦଃ ( ମନ୍ମାହାତ୍ମ୍ୟସ୍ୟ ସମ୍ୟକ୍‌ବେଦନଂ ଯାସୁ ତାଃ ) କଥାଃ ଭବନ୍ତି ( ତତ୍‌କଥାଃ ଭକ୍ତାନାଂ ) ହୃତ୍‌କର୍ଣ୍ଣରସାୟନାଃ ( ହୃତ୍-କର୍ଣ୍ଣୟୋଃ ସୁଖଦାଃ ) । ତଜ୍ଜୋଷଣାତ୍ ( ସେବନାତ୍ ଶ୍ରବଣାତ୍ ବା ) ଅପବର୍ଗବର୍ତ୍ମନି ( ଅପବର୍ଗଃ ଅବିଦ୍ୟାନିବୃତ୍ତିଃ ମୁକ୍ତିଃ ବା ବର୍ତ୍ମ ଯସ୍ମିନ୍ ତସ୍ମିନ୍ ହରୌ ) ଆଶୁ ( ଶୀଘ୍ରଂ ) ଶ୍ରଦ୍ଧା, ରତିଃ, ଭକ୍ତିଃ ଅନୁକ୍ରମିଷ୍ୟତି ( ଅନୁକ୍ରମେଣ ଭବନ୍ତି ) । [ ୩୦ଶ ଶ୍ଲୋକଃ ] ।

ଭକ୍ତସ୍ୱରୂପତ୍ୱଂ ଯଦ୍ରୂପେଣ ତଦ୍ବିବୃଣୋତି "ଈଶ୍ୱରେର" ଇତି । ହୃଦୟବାସତ୍ୱେନୈବ ତଥାତ୍ୱମିତି । ୩୦ । ବ, ଚ,

---

ସେ ବର୍ତ୍ମୋପଦେଶଗୁରୁହେତୁ ତାଙ୍କୁ, ମନ୍ତ୍ରଗୁରୁଙ୍କୁ, ଶିକ୍ଷାଗୁରୁଙ୍କୁ ଓ ନିଜ ଇଷ୍ଟଦେବଙ୍କୁ ପ୍ରଣାମ କରିଅଛନ୍ତି । [ ୨୮ ଶ୍ଲୋକାର୍ଥ ]

ଜୀବେ—ଶ୍ରୀକୃଷ୍ଣ ଆଶ୍ରୟୀ ଶିଷ୍ୟରୂପୀ ଜୀବ ବଦ୍ଧହେତୁ ଶ୍ରୀକୃଷ୍ଣଙ୍କର ପ୍ରକଟସ୍ୱରୂପର ସାକ୍ଷାତ୍‌କାର ପାଏନା । ତେଣୁ ଶ୍ରୀକୃଷ୍ଣ ଚୈତ୍ୟରୂପେ ( ଅନ୍ତର୍ଯାମୀରୂପେ ) ଭକ୍ତିର ସ୍ଫୂର୍ତ୍ତି କରନ୍ତି ଏବଂ ଜୀବର ତତ୍ପ୍ରତି ଅନୁରାଗ ବୃଦ୍ଧି ହେଲେ ମହାନ୍ତ ସ୍ୱରୂପେ ( ଭକ୍ତଶ୍ରେଷ୍ଠ ରୂପରେ ଅର୍ଥାତ୍ ଉଚ୍ଚଭକ୍ତ ସହିତ ମିଳିତ କରାଇ ) ଉପଯୁକ୍ତ ଶିକ୍ଷାପ୍ରଦାନ କରନ୍ତି । ୨୯ ।

ଶ୍ରୀକୃଷ୍ଣ ଶ୍ରୀଉଦ୍ଧବଙ୍କୁ କହୁଅଛନ୍ତି—ଅତଏବ ବୁଦ୍ଧିମାନ୍‌ବ୍ୟକ୍ତି ଅସତ୍‌ସଙ୍ଗ ପରିତ୍ୟାଗପୂର୍ବକ ସାଧୁସଙ୍ଗ କରିବେ । ସାଧୁଗଣ ସେହି ବ୍ୟକ୍ତିର ଭକ୍ତିବାଧକ ବାସନାଆଦି ଭକ୍ତିମହିମା ପ୍ରତିପାଦକ ଉପଦେଶ ଦ୍ୱାରା ଛେଦନ କରନ୍ତି । [ ୨୯ ଶ୍ଲୋକାର୍ଥ ]

ଶ୍ରୀକପିଳଦେବ ମାତାଙ୍କୁ କହୁଅଛନ୍ତି—ସାଧୁମାନଙ୍କ ସଙ୍ଗରେ ମୋର ( ଭଗବାନଙ୍କର ) ମାହାତ୍ମ୍ୟ ପ୍ରକାଶକ କଥା ଆଲୋଚିତ ହେଲେ ତାହା ଜୀବର ହୃଦୟ ଓ କର୍ଣ୍ଣର ସୁଖଦାୟକ ହୁଏ । ସେପ୍ରକାର କଥା ଆସ୍ୱାଦନଦ୍ୱାରା ମୁକ୍ତିପଦ ଭଗବାନଙ୍କଠାରେ ତାହାଙ୍କର ଶୀଘ୍ର ଶ୍ରଦ୍ଧା, ରତି ଓ ଭକ୍ତି କ୍ରମେ୨ ଉତ୍ପନ୍ନ ହୁଏ । [ ୩୦ ଶ୍ଲୋକାର୍ଥ ]

ଶ୍ରୀକୃଷ୍ଣଚୈତନ୍ୟ କିପ୍ରକାର ଗୁରୁ ତାହା ବୁଝାଇ, ବର୍ତ୍ତମାନ ସେ କିପ୍ରକାର ଭକ୍ତ ଏହା ବୁଝାଉଅଛନ୍ତି ।

ତଥାହି ( ଭାଃ ୯।୪।୬୮ )—

ସାଧବୋ ହୃଦୟଂ ମହ୍ୟଂ ସାଧୂନାଂ ହୃଦୟନ୍ତ୍ୱହମ୍ ।
ମଦନ୍ୟତ୍ତେ ନ ଜାନନ୍ତି ନାହଂ ତେଭ୍ୟୋ
ମନାଗପି ॥ ୩୧ ॥ *

ତତ୍ରୈବ ( ୧।୧୩।୧୦ )—

ଭବଦ୍‌ବିଧା ଭାଗବତାସ୍ତୀର୍ଥୀଭୂତାଃ ସ୍ୱୟଂ ପ୍ରଭୋ ।
ତୀର୍ଥୀକୁର୍ବନ୍ତି ତୀର୍ଥାନି ସ୍ୱାନ୍ତସ୍ଥେନ ଗଦାଭୃତା ॥୩୨॥*
ସେଇ ଭକ୍ତଗଣ ହୟ ଦ୍ୱିବିଧ ପ୍ରକାର— ।
ପାରିଷଦଗଣ ଏକ, ସାଧକଗଣ ଆର । ୩୧ ।
ଈଶ୍ୱରେର ଅବତାର ଏ ତିନ ପ୍ରକାର— ।
ଅଂଶ-ଅବତାର, ଆର ଗୁଣ-ଅବତାର । ୩୨ ।

ସାଧବଃ ମହ୍ୟଂ ( ମମ ) ହୃଦୟଂ—ଅହଂ ତୁ ସାଧୂନାଂ ହୃଦୟଂ । ତେ ( ସାଧବଃ ) ମଦନ୍ୟତ୍ ( ମତ୍ତଃ ଅନ୍ୟତ୍ ) ନ ଜାନନ୍ତି, ଅହଂ ତେଭ୍ୟଃ ( ସାଧୁଭ୍ୟଃ ଅନ୍ୟତ୍ ) ମନାକ୍ କିଂ ଅପି ନ ଜାନାମି । [ ୩୧ ଶ୍ଳୋକଃ ]

( ହେ ) ପ୍ରଭୋ ! ଭବଦ୍ୱିଧାଃ ଭାଗବତାଃ ( ଭଗବଭକ୍ତାଃ ) ସ୍ୱୟଂ ତୀର୍ଥଭୂତାଃ । ( ଯତଃ ଭବନ୍ତଃ ) ସ୍ୱାନ୍ତସ୍ଥେନ ( ସ୍ୱାନ୍ତଂ—ମନଃ ତତ୍ରସ୍ଥେନ ସ୍ୱସ୍ୟ ଅନ୍ତର୍ସ୍ଥିତେନ ବା ) ଗଦାଭୃତା ତୀର୍ଥାନି ତୀର୍ଥୀକୁର୍ବନ୍ତି ( ପବିତ୍ରୀକୁର୍ବନ୍ତଃ ଚରନ୍ତି ) । [ ୩୨ ଶ୍ଳୋକଃ ]

ଶ୍ରୀକୃଷ୍ଣଚୈତନ୍ୟଃ ଯଦ୍ରୂପେଣ ଈଶାବତାରଃ ତଦ୍‌ବକ୍ତୁମାହ " ଈଶ୍ୱରେର " ଇତି ଅଂଶତ୍ୱେନ ଆବେଶତ୍ୱେନ ଚ ତଥାତ୍ୱଂ ଇତି । ୩୨ । ବ, ଚ,

ଭଜନଶୀଳ ଭକ୍ତର ଭାବ, କ୍ରିୟା, ମୁଦ୍ରା ଆଦି ସର୍ବଦା ଶ୍ରୀକୃଷ୍ଣୋନ୍ମୁଖୀ ହେତୁରୁ ଅର୍ଥାତ୍ ସେମାନେ ଶ୍ରୀକୃଷ୍ଣ ସମ୍ବନ୍ଧ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ କରୁ ନ ଥିବାରୁ ଶ୍ରୀକୃଷ୍ଣ ସର୍ବଦା ସେମାନଙ୍କର ହୃଦୟରେ ଅଧିଷ୍ଠିତ ।

ଶ୍ରୀକୃଷ୍ଣ ଯହିଁରେ ଅଧିଷ୍ଠାନ କରନ୍ତି ସେ ଅପ୍ରାକୃତ ବସ୍ତୁ ଅର୍ଥାତ୍ ସଦଂଶ । ଏଣୁ ତାହାଙ୍କର ସ୍ୱରୂପ, ଭକ୍ତ ଏହି ପ୍ରକାରରେ ଭଗବାନଙ୍କର ସ୍ୱରୂପ । ୩୦ ।

ଶ୍ରୀଭଗବାନ୍ ଶ୍ରୀଦୁର୍ବାସାମୁନିଙ୍କୁ କହୁଅଛନ୍ତି—ସାଧୁମାନେ ମୋର ହୃଦୟ, ମୁଁ ମଧ୍ୟ ସାଧୁମାନଙ୍କର ହୃଦୟ, ସେମାନେ ମୋ ବ୍ୟତୀତ ଆଉ କିଛି ଜାଣନ୍ତି ନାହିଁ ଏବଂ ମୁଁ ମଧ୍ୟ ସେମାନଙ୍କ ବ୍ୟତୀତ ଆଉ କିଛି ଜାଣେନା । [ ୩୧ ଶ୍ଳୋକାର୍ଥ ]

ଶ୍ରୀବିଦୁରଙ୍କୁ ଶ୍ରୀଯୁଧିଷ୍ଠିରମହାରାଜ କହୁଅଛନ୍ତି—ହେ ପ୍ରଭୋ ! ଭବାଦୃଶ ଭାଗବତମାନେ ନିଜେ ତୀର୍ଥସ୍ୱରୂପ । ( ଅତଏବ ଆପଣମାନଙ୍କର ତୀର୍ଥପର୍ଯ୍ୟଟନର ଆବଶ୍ୟକ ନ ଥିଲେ ସୁଦ୍ଧା ତୀର୍ଥସବୁ ମଳିନବ୍ୟକ୍ତିମାନଙ୍କର ସ୍ପର୍ଶରେ ସମୟେ୨ ମଳିନ ହେଉଥିବାରୁ ) ଆପଣମାନେ ଆପଣମାନଙ୍କର ହୃଦୟସ୍ଥ ଗଦାଧରଙ୍କର ସଂସର୍ଗରେ ତୀର୍ଥମାନଙ୍କୁ ( ସେମାନଙ୍କର ମଳିନତା ଦୂର କରିବାଦ୍ୱାରା ପୁନର୍ବାର ) ତୀର୍ଥ କରନ୍ତି । [ ୩୨ ଶ୍ଳୋକାର୍ଥ ]

ସେହି ଭକ୍ତଗଣ—ପୂର୍ବ ବିଂଶତି ପଦ୍ୟରେ ଲକ୍ଷିତ ଭକ୍ତଗଣ ।

ପାରିଷଦଗଣ—ଶ୍ରୀଭଗବାନଙ୍କର ବୈକୁଣ୍ଠଗୋଲୋକାଦିଧାମସ୍ଥ ନିତ୍ୟସିଦ୍ଧ ପାର୍ଷଦଗଣ ।

ସାଧକଗଣ—ଭୌତିକଶରୀରଧାରୀ ଜୀବଗଣ, ଯେଉଁମାନେ ଶ୍ରୀକୃଷ୍ଣଙ୍କର ଭକ୍ତିର ସାଧନ କରୁଅଛନ୍ତି । ୩୧ ।

ଶ୍ରୀକୃଷ୍ଣଚୈତନ୍ୟ ଯେରୂପ ଅବତାର ହୁଅନ୍ତି ତାହା କହୁଅଛନ୍ତି । ଏ ତିନପ୍ରକାର—ପରେ ଉଲ୍ଲିଖିତ ତିନପ୍ରକାର । ୩୨ ।

ଶକ୍ତ୍ୟାବେଶ ଅବତାର ତୃତୀୟ ଏମତ ।
ଅଂଶ-ଅବତାର—ପୁରୁଷ-ମତ୍ସ୍ୟାଦିକ ଯତ । ୩୩ ।
ବ୍ରହ୍ମା, ବିଷ୍ଣୁ, ଶିବ,—ତିନ ଗୁଣାବତାରେ ଗଣି ।
ଶକ୍ତ୍ୟାବେଶ—ସନକାଦି ପୃଥୁ ବ୍ୟାସମୁନି । ୩୪ ।
ଦୁଇରୂପେ ହୟ ଭଗବାନେର ପ୍ରକାଶ— ।
ଏକେତ ପ୍ରକାଶ ହୟ, ଆରେ ତ ବିଳାସ । ୩୫ ।
ଏକଇ ବିଗ୍ରହ ଯଦି ହୟ ବହୁରୂପ ।
ଆକାରେ ତ ଭେଦ ନାହି—ଏକଇ ସ୍ୱରୂପ ।୩୬।
ମହିଷୀବିବାହେ ଯୈଛେ, ଯୈଛେ କୈଲ ରାସ ।
ଇହାକେ କହିୟେ କୃଷ୍ଣେର ମୁଖ୍ୟ 'ପ୍ରକାଶ' ।୩୭।
ତଥାହି ଲଘୁଭାଗବତାମୃତେ ପୂର୍ବଖଣ୍ଡେ (୧।୨୧)—
ଅନେକତ୍ର ପ୍ରକଟତା ରୂପସ୍ୟୈକସ୍ୟ ଯୈକଦା ।
ସର୍ବଥା ତତ୍ସ୍ୱରୂପୈବ ସ ପ୍ରକାଶ ଇତୀର୍ଯ୍ୟତେ ॥୩୩॥ *

" ଶ୍ରୀବ୍ୟାସସ୍ୟ ପ୍ରଭବାବତାରତ୍ୱେଽପି ପଞ୍ଚମତାବଲମ୍ବନେନାବେଶତ୍ୱଂ ତଥାହି ସ୍ୱାୟମ୍ଭୁବେଽପ୍ୟନ୍ତରତମା ଦ୍ୱୈପାୟନ୍ୟମଗାତ୍ ସ୍ୱୟଂ । କଂ ସାୟୁଜ୍ୟଂ ଗତସ୍ତସ୍ମିନ୍ ବହ୍ବଂଶଃ ସେଽପିବାଭବତ୍ । ତସ୍ମାଦାବେଶ ଏବାୟମିତିକେଚନ୍ନଦନ୍ତିତ " । ଇତି । ୩୪ । ବି, ଚ,

ଶ୍ରୀକୃଷ୍ଣଚୈତନ୍ୟଃ ଯଦ୍‌ରୂପେଣ ପ୍ରକାଶ ପୂର୍ବଂ କ୍ରମାହ " ଦୁଇରୂପେ " ଇତି ତତ୍ର ଅଭେଦତ୍ୱେନ ତଥାତ୍ୱମିତି । ପ୍ରକାଶୋଽବ ପ୍ରାଦୁର୍ଭାବମାତ୍ରଂ ନତୁ ପାରିଭାଷିକଂ । ତତ୍ତ୍ୱେ ପ୍ରକାଶସ୍ୟ ବିଳାସଭାବାଦାନର୍ଥକ୍ୟଂ ସ୍ୟାତ୍ ଇତି । ୩୫ । ବି, ଚ,

ନନୁ କ୍ୱଚିଚ୍ଚତୁର୍ଭୁଜତ୍ୱେଽପି ନ ତ୍ୟଜେତ୍ କୃଷ୍ଣରୂପତାଂ । ଅତଃ ପ୍ରକାଶ ଏବ ସ୍ୟାତ୍ତସ୍ୟାପୌ ଦ୍ୱିଭୁଜସ୍ୟ ଚ । ଇତି ଭାଗବତାମୃତେନ ଆକାର ଭିନ୍ନତ୍ୱେଽପି ପ୍ରକାଶପ୍ରସିଦ୍ଧୌ କଥଂ "ଆକାରେ ଓ ଭେଦ ନାହି ଏକଇ ସ୍ୱରୂପ " ଇତ୍ୟାଦିକ ମୁକ୍ତମତ ଆହ " ମୁଖ୍ୟପ୍ରକାଶ " ଇତି ଅୟମାଶୟ ଆକାରୈକ୍ୟେ ମୁଖ୍ୟ ପ୍ରକାଶଃ ଆକାରଭିନ୍ନତ୍ୱେ ଗୌଣ ପ୍ରକାଶଃ । ତଥା ମହିଷୀ-ବିବାହ-ଦର୍ଶନାଭାବାତ୍ ତଦୁପଲକ୍ଷିତ-ନାରଦ ଦୃଷ୍ଟପ୍ରକାଶସ୍ୟ ଚତୁର୍ଭୁଜତ୍ୱେନ ସର୍ବଥା ତତ୍ସ୍ୱରୂପାଭାବାତ୍ ରାସପ୍ରକାଶସ୍ୟୈବ ମୁଖ୍ୟତ୍ୱମିତି [ ୩୭ ] ବି, ଚ,

ଏକସ୍ୟ ରୂପସ୍ୟ ଅନେକତ୍ର ( ଅନେକ ସ୍ଥାନେ ) ଏକଦା (ଏକସ୍ମିନ୍‌କାଲେ) ଯଃ ପ୍ରକଟତା ( ପ୍ରାକଟ୍ୟଂ ଆବିର୍ଭାବଃ ) ସର୍ବଥା ( ସର୍ବପ୍ରକାରେଣ ଆକୃତି ଗୁଣଲୀଳାଭିଃ ସ୍ୱଭାବେନ ବା ) ତତ୍ସ୍ୱରୂପା ଏବ ( ମୂଳରୂପା ସ୍ୱରୂପା, ମୂଳରୂପାଭିନ୍ନା ଏବ ) ସଃ ପ୍ରକାଶଃ ଇତୀର୍ଯ୍ୟତେ ( କଥ୍ୟତେ ) [ ୩୩ ଶ୍ଳୋକଃ ]

ପୁରୁଷ—ପୂର୍ବୋଲ୍ଲିଖିତ ପ୍ରଥମପୁରୁଷ, ଦ୍ୱିତୀୟପୁରୁଷ ଓ ତୃତୀୟପୁରୁଷ ଅର୍ଥାତ୍ କାରଣାବ୍ଧିଶାୟୀ, ଗର୍ଭୋଦକଶାୟୀ ଓ କ୍ଷୀରୋଦକଶାୟୀ । ମତ୍ସ୍ୟାଦିକ—ମତ୍ସ୍ୟ କୂର୍ମ ଆଦି । ୩୩ ।

ସନକାଦି—ଚତୁଃସନକ, ଯଥା-ସନକ, ସନନ୍ଦ, ସନାତନ ଓ ସନତ୍କୁମାର । ୩୪ ।

ଶ୍ରୀକୃଷ୍ଣଚୈତନ୍ୟ ଯେ ରୂପ ପ୍ରକାଶ ହୁଅନ୍ତି ତାହା କହୁଅଛନ୍ତି । ଏକେତ ପ୍ରକାଶ—ପ୍ରକାଶ ଦୁଇ ପ୍ରକାର, ମୁଖ୍ୟପ୍ରକାଶ ଅର୍ଥାତ୍ ସ୍ୱୟଂରୂପ ପ୍ରକାଶ, ଗୌଣପ୍ରକାଶ ଅର୍ଥାତ୍ ଗୁଣଦ୍ୱାରା ଅଭିବ୍ୟକ୍ତ ସ୍ୱୟଂ ରୂପ, ଯାହାକୁ କି ବିଳାସ କୁହାଯାଏ । ୩୫ ।

ଯୈଛେ—ଯେପରି ।

ମହିଷୀ ବିବାହେ—ଶ୍ରୀକୃଷ୍ଣ ଦ୍ୱାରକାଲୀଳାରେ ନାରକା ସୁରକୁମାରୀ ତାଙ୍କ ପୁରରେ ଆବଦ୍ଧ ଥିବା ଷୋଳସହସ୍ର ରାଜକୁମାରୀମାନଙ୍କୁ କାରାମୁକ୍ତ କରିବାରୁ କୁମାରୀମାନଙ୍କ ପ୍ରାର୍ଥନାମତେ ସେମାନଙ୍କ

ତଥାହି ( ଭାଃ ୯ ।୬୯।୨ )—

ଚିତ୍ରଂ ବତୈତଦେକେନ ବପୁଷା ଯୁଗପତ୍ ପୃଥକ୍ ।
ଗୃହେଷୁ ଦ୍ୱ୍ୟଷ୍ଟସାହସ୍ରଂ ସ୍ତ୍ରିୟ ଏକ ଉଦାବହତ୍ ॥୬୪॥ ✻

ତତ୍ରୈବ ( ୧୦।୩୩।୩—୪ )—

ରାସୋତ୍ସବଃ ସମ୍ପ୍ରବୃତ୍ତୋ ଗୋପୀମଣ୍ଡଳମଣ୍ଡିତଃ ।
ଯୋଗେଶ୍ୱରେଣ କୃଷ୍ଣେନ ତାସାଂ ମଧ୍ୟେ
ଦ୍ୱୟୋର୍ଦ୍ୱୟୋଃ ॥ ୬୫ ॥ ✻

ଏକଇ ବିଗ୍ରହ କିନ୍ତୁ ଆକାରେ ହୟ ଅନ ।
ଅନେକ ପ୍ରକାଶ ହୟ 'ପ୍ରକାଶ' ତାର ନାମ ।୬୮।

ତତ୍ରୈବ ତଦେକାତ୍ମରୂପକଥନେ ( ୨।୧୫ )—

ସ୍ୱରୂପମନ୍ୟାକାରଂ ଯତ୍ତସ୍ୟ ଭାତି ବିଲାସତଃ ।
ପ୍ରାୟେଣାତ୍ମସମଂ ଶକ୍ତ୍ୟା ସ 'ବିଲାସୋ'
ନିଗଦ୍ୟତେ ॥ ୬୬ ॥ ✻

ଏକଃ ( ଶ୍ରୀକୃଷ୍ଣଃ ) ଏକେନ ( ଅଭିନ୍ନେନ ) ବପୁଷା (ଶରୀରେଣ) ଯୁଗପତ୍ ( ଏକସ୍ମିନ୍ ମୁହୂର୍ତ୍ତେ ! ପୃଥକ୍ ଗୃହେଷୁ ( ଯୋଡ଼ଶସଂଖ୍ୟକଗୃହେଷୁ ) ଦ୍ୱ୍ୟଷ୍ଟସାହସ୍ରଂ—ସ୍ତ୍ରିୟଃ ( ଷୋଡ଼ଶ ସହସ୍ରଂ ମହିଷ୍ୟଃ ) ଉଦାବହତ୍ ( ପରିଣୀତବାନ୍ ) ( ଏତତ୍ ) ବତ ( ଅହୋ ) ଚିତ୍ରଂ (ଆଶ୍ଚର୍ଯ୍ୟଂ) [ ୬୪ ଶ୍ଲୋକଃ ]

ତାସାଂ ( ମଣ୍ଡଳରୂପେଣ ଅବସ୍ଥିତାନାଂ ଗୋପୀନାଂ ) ଦ୍ୱୟୋଃ ଦ୍ୱୟୋଃ ମଧ୍ୟେ ( ଏକୈକ ରୂପେଣ ପ୍ରବିଷ୍ଟେନ ) ଯୋଗେଶ୍ୱରେଣ ( ଯୋଗୀନାଂ ସେବ୍ୟେନ ) କୃଷ୍ଣେନ ଗୋପୀମଣ୍ଡଳମଣ୍ଡିତଃ ( ଗୋପୀମଣ୍ଡଳୈଃ ଶୋଭମାନଃ ) ରାସୋତ୍ସବଃ ସଂପ୍ରବୃତ୍ତଃ [ ୬୫ ଶ୍ଲୋକଃ ]

ବିଲାସସ୍ୟ ଲକ୍ଷଣମାହ " ଏକଇ " ଇତି [ ୬୮ ] ବି, ଚ,

ଯସ୍ୟ ( ମୂଳରୂପସ୍ୟ ) ବିଲାସତଃ ( ଲୀଳାବିଶେଷାତ୍ ) ଯତ୍ସ୍ୱରୂପଂ ( ଯତ୍ପ୍ରକାଶଂ ) ଅନ୍ୟାକାରଂ ( ବିଲକ୍ଷଣାଙ୍ଗସନ୍ନିବେଶଂ ) (ତ) ଶକ୍ତ୍ୟା ପ୍ରାୟେଣ (କୈଶ୍ଚିତ୍ଗୁଣୈଃ ଊନଂ ) ଆତ୍ମସମଂ ( ସ୍ୱମୂଲତୁଲ୍ୟଂ ) ଭାତି ସ ବିଲାସୋ ନିଗଦ୍ୟତେ ( କଥ୍ୟତେ ) [ ୬୬ ଶ୍ଲୋକଃ ] ।

ଦ୍ୱାରକାକୁ ଆନୟନ କରି ପ୍ରତ୍ୟେକଙ୍କୁ ସ୍ୱତନ୍ତ୍ର ପୁରୀରେ ରଖାଇଥିଲେ ଏବଂ ପ୍ରତ୍ୟେକଙ୍କୁ ପ୍ରତ୍ୟେକଙ୍କ ପୁରୀରେ ଷୋଳହଜାର ଶ୍ରୀବିଗ୍ରହ ଧାରଣ ପୂର୍ବକ ଏକଲଗ୍ନରେ ଏକମୁହୂର୍ତ୍ତରେ ବିବାହ କରିଥିଲେ ।

ସେହିପରି—କହିଲେ ।

ଶ୍ରୀ—ବୃନ୍ଦାବନଲୀଳାରେ ଶ୍ରୀରାସମଣ୍ଡଳୀରେ ଅଗଣିତ ଗୋପକନ୍ୟାମାନଙ୍କର ମଣ୍ଡଳୀରେ ପ୍ରତ୍ୟେକଙ୍କ ନିକଟରେ ଏକ ଏକ ସ୍ୱରୂପରେ ଆବିର୍ଭୂତ ହୋଇ ରାସଲୀଳା କରିଥିଲେ । ମୁଖ୍ୟପ୍ରକାଶରେ ଶ୍ରୀବିଗ୍ରହମାନଙ୍କର ଆକାର, ରୂପ, ଗୁଣ, ବୟଃ ଆଦିରେ କୌଣସି ପ୍ରକାର ତାରତମ୍ୟ ଥାଏ ନା [ ୬୨ । ୬୭ ]

ଆକାର, ଗୁଣ ଓ ଲୀଳାଦିର ଐକ୍ୟ ଥାଇ ଏକ ବିଗ୍ରହ ଯୁଗପତ୍ (ଏକ ମୁହୂର୍ତ୍ତରେ ) ଅନେକ ସ୍ଥାନରେ ଆବିର୍ଭାବ ହେଲେ ତାହାକୁ ପ୍ରକାଶ ବୋଲଯାଏ । ( ମୁଖ୍ୟପ୍ରକାଶ ) [ ୬୩ ଶ୍ଲୋକାର୍ଥ ]

ଶ୍ରୀକୃଷ୍ଣଙ୍କର ଷୋଳସହସ୍ର ମହିଷୀଙ୍କର ଏକ ମୁହୂର୍ତ୍ତରେ ପାଣିଗ୍ରହଣ ବିଷୟ ଶୁଣି ମହାମୁନି ଶ୍ରୀନାରଦ ଭାବିଲେ, ଅହୋ ଏ ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ ଶ୍ରୀକୃଷ୍ଣ ଏକଶରୀର ଦ୍ୱାରା ଏକ ମୁହୂର୍ତ୍ତରେ ପୃଥକ୍ ପୃଥକ୍ ଷୋଳସହସ୍ର ପୁରରେ ଷୋଳସହସ୍ରକନ୍ୟାଙ୍କର ପାଣିଗ୍ରହଣ କଲେ [୬୪ଶ୍ଲୋକାର୍ଥ]

ଯୋଗୀମାନଙ୍କର ଆରାଧ୍ୟ ଶ୍ରୀକୃଷ୍ଣ ଅଚନ୍ତ୍ୟ ଶକ୍ତି ବଳରେ ମଣ୍ଡଳୀକୃତ ଗୋପୀମାନଙ୍କର ପ୍ରତ୍ୟେକ ଦୁଇ ଦୁଇ ମଧ୍ୟରେ ଏକଏକ ରୂପରେ ପ୍ରବିଷ୍ଟ ହୋଇ ଓ ଗୋପୀମଣ୍ଡଳୀଦ୍ୱାରା ଶୋଭମାନ ହୋଇ ରାସୋତ୍ସବରେ ପ୍ରବୃତ୍ତ ହେଲେ [ ୬୫ ଶ୍ଲୋକାର୍ଥ ] -

ଯୈଛେ ବଲଦେବ ପରବ୍ୟୋମେ ନାରାୟଣ ।
ଯୈଛେ ବାସୁଦେବ ପ୍ରଦ୍ୟୁମ୍ନାଦି ସଙ୍କର୍ଷଣ । ୩୯ ।
ଈଶ୍ୱରେର ଶକ୍ତି ହୟ ଏ ତିନ ପ୍ରକାର— ।
ଏକ ଲକ୍ଷ୍ମୀଗଣ, ପୁରେ ମହିଷୀଗଣ ଆର । ୪୦ ।
ବ୍ରଜେ ଗୋପୀଗଣ ଆର ସଭାତେ ପ୍ରଧାନ ।
ବ୍ରଜେନ୍ଦ୍ରନନ୍ଦନ ଯାତେ ସ୍ୱୟଂଭଗବାନ୍ । ୪୧ ।

ସ୍ୱୟଂରୂପ-କୃଷ୍ଣ କାୟବ୍ୟୂହ,—ତାର ସମ ।
ଭକ୍ତସହିତେ ହୟ ତାଁହାର ଆବରଣ । ୨ ।
ଭକ୍ତ-ଆଦି କ୍ରମେ କୈଲ ସଭାର ବନ୍ଦନ ।
ଏସଭାର ବନ୍ଦନ ସର୍ବଶୁଭେର କାରଣ । ୪୩ ।
ପ୍ରଥମ-ଶ୍ଳୋକେ କହି ସାମାନ୍ୟ ମଙ୍ଗଲାଚରଣ ।
ଦ୍ୱିତୀୟ-ଶ୍ଳୋକେତେ କରି ବିଶେଷ ବନ୍ଦନ ।୪୪।

---

ଈଶଶକ୍ତି ବିବୃଣୋତି "ଈଶ୍ୱରେର" ଇତି । ଅଭେଦରୂପେଣ ତାସାଂ ପ୍ରାଧାନ୍ୟ ହେତୁ-ରସ୍ୟ ବ୍ରଜେନ୍ଦ୍ରନନ୍ଦନସ୍ୟ ସ୍ୱୟଂରୂପତ୍ୱେନ ତତ୍‌କ୍ତେ-ରପିସ୍ୱୟଂ-ରୂପତ୍ୱଂ ଯତଃ "ତାରସମ" ଇତ୍ୟୁକ୍ତଂ ଇତି । ବି, ଚ, । ୪୨ ।

ଗୁର୍ବାଦିକ୍ରମସ୍ୟ ସର୍ବେଷାଂ ବନ୍ଦନସ୍ୟ ଚ ବିବୃଣୋତି "ଭକ୍ତସହିତ" ଇତି ।

ଆବରଣତ୍ୱେନ ସର୍ବଶୁଭକାରଣତ୍ୱେନ ଚ ତଥାକ୍ତଂ ଇତିଭାବଃ । ୪୩ । ବି, ଚ,

---

ଏକ ବିଗ୍ରହ ବିଭିନ୍ନ ଆକାର ଧାରଣ କଲେ ତାହା ଗୌଣପ୍ରକାଶ ଏବଂ ତାହାର ନାମ ବିଳାସ । ୩୮ ।

ସ୍ୱୟଂରୂପ ବିଳାସ ବିଶତଃ ବିଭିନ୍ନାକାର ରୂପଧାରଣ କଲେ କିନ୍ତୁ ଶକ୍ତିରେ ପ୍ରାୟ ସମାନ ଥିଲେ ତାହାକୁ ବିଳାସ କୁହାଯାଏ । [ ୩୭ ଶ୍ଳୋକାର୍ଥ ] ।

ବିଳାସର ଉଦାହରଣ ଯଥା ଶ୍ରୀବୃନ୍ଦାବନରେ ବଳଦେବ; ପରବ୍ୟୋମରେ ( ମହା-ବୈକୁଣ୍ଠରେ ) ନାରାୟଣ; ଚତୁର୍ବ୍ୟୂହ ( ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ) ଏମାନେ ଶ୍ରୀକୃଷ୍ଣଙ୍କର ବିଳାସ ରୂପ । ୩୯ ।

ଶ୍ରୀକୃଷ୍ଣଚୈତନ୍ୟ କ ପ୍ରକାରେ ଈଶଶକ୍ତି ହୁଅନ୍ତି ତାହା କହୁଅଛନ୍ତି ।

ଏ ତିନ—ନିମ୍ନୋକ୍ତ ତିନ ।

ଈଶ୍ୱରେର ଶକ୍ତି—ଶ୍ରୀକୃଷ୍ଣଙ୍କର ହ୍ଲାଦିନୀଶକ୍ତି ।

ଲକ୍ଷ୍ମୀଗଣ—ଶ୍ରୀବୈକୁଣ୍ଠାଦିର ଲକ୍ଷ୍ମୀମାନେ ।

ପୁରେ ମହିଷୀଗଣ—ଶ୍ରୀଦ୍ୱାରକା ଓ ମଥୁରାର ମହିଷୀମାନେ ।

ବ୍ରଜେ ଗୋପୀଗଣ—ଶ୍ରୀବୃନ୍ଦାବନର ଗୋପୀମାନେ ।

ସଭାତେ ପ୍ରଧାନ—ଏମାନେ ଲକ୍ଷ୍ମୀ ଓ ମହିଷୀଗଣଙ୍କଠାରୁ ଶ୍ରେଷ୍ଠ । କାରଣ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ହେତୁ ସର୍ବଶ୍ରେଷ୍ଠ; ଅତଏବ ( ଯାତେ ) ଯେଉଁ ବ୍ରଜରେ ଗୋପୀଜନବଲ୍ଲଭ ବ୍ରଜେନ୍ଦ୍ର-ନନ୍ଦନହିଁ ସ୍ୱୟଂ ଭଗବାନ୍, ତାହାଙ୍କର ଶକ୍ତି ବ୍ରଜଦେବୀମାନେ ସେହି କାରଣରୁ ମହିଷୀଆଦିଙ୍କଠାରୁ ଶ୍ରେଷ୍ଠ । ୪୦।୪୧ ।

ସ୍ୱୟଂରୂପ କୃଷ୍ଣ—ଶ୍ୟାମସୁନ୍ଦର ଦ୍ୱିଭୁଜ ମୁରଲୀଧର ଶ୍ରୀନନ୍ଦନନ୍ଦନ କୃଷ୍ଣହିଁ ସ୍ୱୟଂରୂପ ଓ ସେ ସ୍ୱୟଂ ଭଗବାନ୍ । ୪୦।୪୧ ।

ସମ—ଶକ୍ତି ଶକ୍ତିମାନ୍ ଅଭେଦ ହେତୁ ବ୍ରଜଦେବୀମାନେ ଶ୍ରୀକୃଷ୍ଣଙ୍କର ସମ ।

ଭକ୍ତସହିତ ସବେ—ଶ୍ରୀକୃଷ୍ଣ ତତ୍ତ୍ୱଙ୍କର ଭକ୍ତ, ଅବତାର ପ୍ରକାଶ ଓ ଶକ୍ତିମାନେ ଶ୍ରୀକୃଷ୍ଣଙ୍କର ଆବରଣ ଅଟନ୍ତି ଅର୍ଥାତ୍ ପ୍ରକଟଲୀଳାରେ ଏ ସମସ୍ତଙ୍କୁ ଘେନି ଲୀଳା କରନ୍ତି । ୪୨।୪୩ ।

| | |
|---|---|
| ବନ୍ଦେ ଶ୍ରୀକୃଷ୍ଣଚୈତନ୍ୟନିତ୍ୟାନନ୍ଦୌ ସହୋଦିତୌ । | ଶ୍ରୀକୃଷ୍ଣଚୈତନ୍ୟ ଆର ପ୍ରଭୁ ନିତ୍ୟାନନ୍ଦ । |
| ଗୌଡ଼ୋଦୟେ ପୁଷ୍ପବନ୍ତୌ ଚିତ୍ରୌ ଶନ୍ଦୌ ତମୋନୁଦୌ ॥ ୩୨ ॥ * | ଯାଁହାର ପ୍ରକାଶେ ସର୍ବଜଗତ-ଆନନ୍ଦ । ୪୭ । |
| ବ୍ରଜେ ଯେ ବିହରେ ପୂର୍ବେ କୃଷ୍ଣ ବଲରାମ । | ସୂର୍ଯ୍ୟ-ଚନ୍ଦ୍ର ହରେ ଯୈଛେ ସବ ଅନ୍ଧକାର । |
| କୋଟି ସୂର୍ଯ୍ୟ ଚନ୍ଦ୍ର ଜିନି ଦୋଁହାର ନିଜ ଧାମ ।୪୫। | ବସ୍ତୁ ପ୍ରକାଶିୟା କରେ ଧର୍ମେର ପ୍ରଚାର । ୪୮ । |
| ସେଇ ଦୁଇ ଜଗତେରେ ହଇୟା ସଦୟ । | ଏଇମତ ଦୁଇ ଭାଇ ଜୀବେର ଅଜ୍ଞାନ— । |
| ଗୌଡ଼ଦେଶେ ପୂର୍ବଶୈଲେ କରିଲ ଉଦୟ ।୪୬। | ତମୋନାଶ କରି କୈଲ ତତ୍ତ୍ୱବସ୍ତୁ-ଦାନ । ୪୯ । |

୩୨ ଶ୍ଳୋକର ଅନ୍ୱୟ ଆଦିଲୀଳା ୧ମ ପରିଚ୍ଛେଦ ୨ୟ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଉକ୍ତ ଶ୍ଳୋକ ବ୍ୟାଖ୍ୟାୟାଂ "ଶ୍ରୀକୃଷ୍ଣ ଚୈତନ୍ୟ ନିତ୍ୟାନନ୍ଦୌ" ଇତ୍ୟସ୍ୟ ବ୍ୟାଖ୍ୟାମାହ "ବ୍ରଜେତି" । ଯୁଗାବତାର-ସନ୍ଦେହ-ନିବାରଣାର୍ଥମାହ "କୃଷ୍ଣବଲରାମେତି" । ଉପମାନାଦୁପମେୟସ୍ୟ କିଞ୍ଚିତ୍ ସାଦୃଶ୍ୟମାତ୍ରେଣ ନ୍ୟୂନତାପତ୍ତିଃସ୍ୟାତ୍ ତନ୍ନିବାରଣାର୍ଥମାହ "କୋଟୀତି" । ୪୫ । ଚ, ଚ,

"ଗୌଡ଼ୋଦୟେ" ଇତ୍ୟସ୍ୟାର୍ଥମାହ "ଗୌଡ଼ଦେଶ" ଇତି । ୪୬ । ଚ, ଚ,

ପୁଷ୍ପବନ୍ତୌ ଇତ୍ୟସ୍ୟାର୍ଥମାହ "ସୂର୍ଯ୍ୟ ଚନ୍ଦ୍ର" ଇତି । ୪୮ । ଚ, ଚ,

" ତମୋନୁଦୌ " ଇତ୍ୟସ୍ୟାର୍ଥମାହ " ଏଇମତ " ଇତି " ଶନ୍ଦୌ " ଇତ୍ୟସ୍ୟାର୍ଥମାହ " ତତ୍ତ୍ୱବସ୍ତୁ ଦାନ " ଇତି [ ୪୯ ] ଚ, ଚ,

ଗୌଡ଼ଦେଶରୂପ ଉଦୟାଚଳରେ ଯୁଗପତ୍ ସମୁଦିତ ଆଶ୍ଚର୍ଯ୍ୟରୂପ ସୁଖଦାୟକ ଅଜ୍ଞାନାନ୍ଧକାର-ନାଶକ ରବି ଚନ୍ଦ୍ରତୁଲ୍ୟ ଶ୍ରୀକୃଷ୍ଣ ଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ବନ୍ଦନା କରୁଅଛି । [ ୩୨ଶ ଶ୍ଳୋକାର୍ଥ ]

ପୂର୍ବେ—ଦ୍ୱାପର ଶେଷରେ ।

ବ୍ରଜେ ଯେ ବିହରେ—ବ୍ରଜରେ ଶ୍ରୀକୃଷ୍ଣ ବଲରାମ ପ୍ରକଟରୂପରେ ବିହାର କରିଥିଲେ ।

ବିହରେ—( ଏ ଶବ୍ଦ ନିତ୍ୟ ବର୍ତ୍ତମାନକୁ ବୁଝାଉଥିବାରୁ ଶ୍ରୀରାମ କୃଷ୍ଣଙ୍କର ପ୍ରକଟାପ୍ରକଟ ରୂପ ନିତ୍ୟ ବିହାର ସୂଚନା କରୁଅଛି । ଏଣୁ "ବ୍ରଜେ ଯେ ବିହରେ ପୂର୍ବେ କୃଷ୍ଣ ବଲରାମ" ଏହାର ଅର୍ଥ ( ପୂର୍ବେ ) ଅନାଦିକାଳରୁ ଯେଉଁ କୃଷ୍ଣ ବଲରାମ ଶ୍ରୀବୃନ୍ଦାବନରେ (ବ୍ରଜେ) ବିହାର କରୁଅଛନ୍ତି ।

ନିଜଧାମ—ରୂପ । ୪୫ ।

ପୂର୍ବଶୈଳେ—ଗୌଡ଼ଦେଶରୂପ ଉଦୟାଚଳରେ ।

ସେଇ ଦୁଇ—ସ୍ୱୟଂ କୃଷ୍ଣ ବଲରାମ ଅଧୁନା ଗୌଡ଼ଦେଶରେ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ । ୪୬ ।

ପ୍ରକାଶେ—ଆବିର୍ଭାବ ହେତୁ । ୪୭ ।

ବସ୍ତୁ—( ଘଟପଟାଦି ) ପ୍ରକାଶିୟା ( ଦେଖାଇ ) ଅର୍ଥାତ୍ ସୂର୍ଯ୍ୟ ଚନ୍ଦ୍ର ଉଦୟ ହେଲେ ଯେପରି ଜୀବ ପ୍ରତ୍ୟେକ ବସ୍ତୁକୁ ଚିହ୍ନିପାରେ ।

ଧର୍ମେର ପ୍ରଚାର—ଜାଗତିକ ଜୈବଧର୍ମ ଅର୍ଥାତ୍ ଜୀବମାନଙ୍କୁ ନିତ୍ୟ ନୈମିତ୍ତିକ କାର୍ଯ୍ୟରେ ପ୍ରବୃତ୍ତ କରାଏ । ୪୮ ।

ଏଇ ମତ—ସୂର୍ଯ୍ୟ ଚନ୍ଦ୍ରଙ୍କ ପରି ।

ଦୁଇ ଭାଇ—ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ।

ଅଜ୍ଞାନ-ତମେର ନାମ କହୟେ 'କୈତବ' ।
ଧର୍ମ-ଅର୍ଥ-କାମ-ମୋକ୍ଷ-ବାଞ୍ଛା ଆଦି ସବ । ୫୦ ।
ତାର ମଧ୍ୟେ ମୋକ୍ଷବାଞ୍ଛା କୈତବ-ପ୍ରଧାନ ।
ଯାହା ହୈତେ କୃଷ୍ଣଭକ୍ତି ହୟ ଅନ୍ତର୍ଦ୍ଧାନ ॥୫୧॥

ତଥାହି ( ଭାଃ ୧।୧।୨ ) ।—
ଧର୍ମଃ ପ୍ରୋଜ୍ଝିତକୈତବୋଽତ୍ର ପରମୋ
ନିର୍ମତ୍ସରାଣାଂ ସତାଂ,
ବେଦ୍ୟଂ ବାସ୍ତବମତ୍ର ବସ୍ତୁ ଶିବଦଂ
ତାପତ୍ରୟୋନ୍ମୂଳନମ୍ ।
ଶ୍ରୀମଦ୍ଭାଗବତେ ମହାମୁନିକୃତେ କିଂବା
ପରୈରୀଶ୍ୱରଃ,
ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ
ଶୁଶ୍ରୂଷୁଭିସ୍ତତ୍କ୍ଷଣାତ୍ ॥ ୩୮ ॥ *

ବ୍ୟାଖ୍ୟାତଞ୍ଚ ଶ୍ରୀଧରସ୍ୱାମିଚରଣୈଃ—
'ପ୍ରଶବ୍ଦେନ ମୋକ୍ଷାଭିସନ୍ଧିରପି ନିରସ୍ତଃ' ଇତି ॥

ଉକ୍ତସ୍ୟାଜ୍ଞାନତମଃଶବ୍ଦସ୍ୟାର୍ଥମାହ "ଅଜ୍ଞାନ" ଇତି କୃଷ୍ଣନିତ୍ୟଦାସସ୍ୟ ଜୀବସ୍ୟ ତଦାସତ୍ୱଂ ବିନା ନିଜ ପୁରୁଷାର୍ଥ ଅନ୍ୟତ୍ ସର୍ବଂ କୈତବମିତିଭାବଃ [ ୫୦ । ୫୧ ] ॥ ଚ ॥

ମହାମୁନିକୃତେ ( ମହାମୁନିଃ ଶ୍ରୀନାରାୟଣଃ ତେନ ପ୍ରଥମଂ ସଂକ୍ଷେପତଃ କୃତେ ) ଅତ୍ର ଶ୍ରୀମଦ୍ଭାଗବତେ ( ଶ୍ରୀମତ୍ୟାଂ ଭାଗବତେ ) ନିର୍ମତ୍ସରାଣାଂ ( ପରୋତ୍କର୍ଷାସହନଂ ମତ୍ସରଃ ତୋଦରହିତାନାଂ ) ସତାଂ ( ସ୍ୱଧର୍ମପରାଣାଂ ) ପ୍ରୋଜ୍ଝିତକୈତବଃ ( ପ୍ରକର୍ଷେଣ ଉଜ୍ଝିତଂ ନିରାକୃତଂ କୈତବଂ ମୋକ୍ଷପର୍ଯ୍ୟନ୍ତଫଲାଭିସନ୍ଧିଲକ୍ଷଣଂ କପଟଂ ଯସ୍ମିନ୍ ସଃ ) ପରମଃ ( ସର୍ବୋତ୍କୃଷ୍ଟଃ ) ଧର୍ମଃ ( ନିରୂପ୍ୟତେ ) । ଅତ୍ର ( ଶ୍ରୀଭାଗବତେ ) ତାପତ୍ରୟୋନ୍ମୂଳନଂ ( ଆଧ୍ୟାତ୍ମିକାଦିତାପତ୍ରୟନାଶନଂ, ଯଦ୍ୱା ତାପତ୍ରୟଂ ମାୟାକାର୍ଯ୍ୟଂ ଉନ୍ମୂଳୟତି ତନ୍ମୂଳଭୂତାବିଦ୍ୟାପର୍ଯ୍ୟନ୍ତଂ ଖଣ୍ଡୟତି ) ଶିବଦଂ ( ଶିବଂ—ପରମାନନ୍ଦଂ ଦଦାତି ଅନୁଭାବୟତି ) ବାସ୍ତବଂ ( ପରମାର୍ଥଭୂତଂ, ଯଦ୍ୱା ବାସ୍ତବଶ୍ଚ ଜୀବଃ ବାସ୍ତବା ଚ ମାୟା ବାସ୍ତବଞ୍ଚ ଜଗତ୍ ଏଷାଂ ଏକବଭାବଃ ବାସ୍ତବଂ ) ବସ୍ତୁ ( ନ ତୁ ବୈଶେଷିକାଣାମିବ ଦ୍ରବ୍ୟଗୁଣାଦିରୂପଂ ) ବେଦ୍ୟଂ ( ଅସନ୍ଦେହେନୈବଜ୍ଞାତୁଂ ଶକ୍ୟଂ ) । ପରୈଃ ( ଶାସ୍ତ୍ରୈଃ ତଦୁକ୍ତସାଧନୈର୍ବା, ଅପରୈଃ ମୋକ୍ଷପର୍ଯ୍ୟନ୍ତକାମନାରହିତେଶ୍ୱରାରାଧନାଲକ୍ଷଣଧର୍ମବ୍ରହ୍ମସାକ୍ଷାତ୍କାରାଦିଭିଃ ଉକ୍ତୈଃ ଅନୁକ୍ତୈଃ ବା ସାଧନୈରନ୍ୟୈର୍ବା ମାହାତ୍ମ୍ୟମୁପପନ୍ନମିତ୍ୟର୍ଥଃ ଯତଃ ଯଃ ) ଈଶ୍ୱରଃ ହୃଦି କିଂବା ( କଟାକ୍ଷେ ) ସଦ୍ୟଃ ( ତଦେକକ୍ଷଣଏବ ) ଅବରୁଧ୍ୟତେ ( ସ୍ଥିରୀକ୍ରିୟତେ, କିନ୍ତୁ ବିଲମ୍ବେନ କଥଞ୍ଚିତ୍ ଏବ ) ଅତ୍ର ( ଅତ୍ର ଇତି ପଦସ୍ୟ ବିଃ ଉକ୍ତିଃ କୃତା ସା ହି ନିର୍ଦ୍ଧାରଣାର୍ଥେତି ଅତୋ ନିତ୍ୟମେତଦେବ ସର୍ବୈରେବ ଶ୍ରୋତବ୍ୟ ମିତିଭାବଃ) । କୃତିଭିଃ (ପୁଣ୍ୟବଦ୍ଭିଃ କୁଶଳୈଃ ଯଦ୍ୱା କଥଞ୍ଚିତ୍ ତତ୍ତତ୍ସାଧନାନୁକ୍ରମଲବ୍ଧୟା ଭକ୍ତ୍ୟା କୃତାର୍ଥୈଃ ) ଶୁଶ୍ରୂଷୁଭିଃ ( ଶ୍ରୋତୁଂ ଇଚ୍ଛୁଭିଃ ଏବ ) ତତ୍କ୍ଷଣାତ୍ ( ଏବ ଅବରୁଧ୍ୟତେ ) । [ ୩୮ ଶ୍ଳୋକଃ ]

ଅଜ୍ଞାନତମୋନାଶକ—ଅଜ୍ଞାନରୂପ ଅନ୍ଧକାର ଅର୍ଥାତ୍ ଅବିଦ୍ୟାନାଶକ ଜୀବ ଶ୍ରୀକୃଷ୍ଣଙ୍କର ନିତ୍ୟଦାସ ଏହା ଭୁଲିଯିବା ଅଜ୍ଞାନ ।

ତତ୍ତ୍ୱବସ୍ତୁ—ପରତତ୍ତ୍ୱ ( ଭଗବତ୍ତତ୍ତ୍ୱ ) । ୪୯ ।

ଅଜ୍ଞାନରୂପ ତମକୁ କୈତବ କୁହାଯାଏ ।

ଧର୍ମ, ଅର୍ଥ, କାମ, ମୋକ୍ଷ ବାଞ୍ଛାଆଦି ସବ—ଧର୍ମ ଅର୍ଥ କାମ ମୋକ୍ଷ ଏହି ଚାରି ପୁରୁଷାର୍ଥ ଏବଂ ଅନ୍ୟାନ୍ୟ ପ୍ରକାର ସମସ୍ତ ବାଞ୍ଛାକୁ କୈତବ କୁହାଯାଏ ।

| | |
|---|---|
| କୃଷ୍ଣଭକ୍ତିର ବାଧକ—ଯତ ଶୁଭାଶୁଭ କର୍ମ । | ଯାଁହାର ପ୍ରସାଦେ ଏଇ ତମ ହୟ ନାଶ । |
| ସେହ ଏକ ଜୀବେର ଅଜ୍ଞାନ-ତମୋ-ଧର୍ମ । ୫୨ । | ତମୋ ନାଶ କରି କରେ ତତ୍ତ୍ୱେର ପ୍ରକାଶ ।୫୩। |

ନନୁ ସକାମତ୍ୱେନ ଧର୍ମାଣି ବାସନାନାଂ କୈତବତ୍ୱଂ ଭବତୁ । ନିଷ୍କାମକର୍ମଣାଂ ତୁ ଚିତ୍ତଶୁଦ୍ଧିକରତ୍ୱେନ ତଦ୍ବାସନାସ୍ପୃହାଃ ନ ତଥାତ୍ୱଂ ଇତ୍ୟାଶଙ୍କ୍ୟାହ "ଭକ୍ତିର" । ଇତି । ଚିତ୍ତଶୁଦ୍ଧିକର-ତ୍ୱେନ ଶୁଭମପି କର୍ମ ଭକ୍ତିବିରୋଧି ଚେତ୍ ତଦା ଅଶୁଭକର୍ମବତ୍ ଅଜ୍ଞାନତମଃସଦୃଶଂ ଇତି ।୫୩। ବି, ଚ,

କୈତବ—ଫଳକାମନା ଅର୍ଥାତ୍ ଜୀବ ନିଜ ସୁଖାର୍ଥେ ଯାହା ଅଭିଳାଷ କରେ ତାହା କୈତବ । ସର୍ବପ୍ରକାର ଫଳକାମନା କୃଷ୍ଣଭକ୍ତିର ବାଧକ ॥ ୫୦ ॥

ମୋକ୍ଷକାମନା ସେଥିମଧ୍ୟରେ ପ୍ରଧାନ ଓ କୃଷ୍ଣଭକ୍ତ ପକ୍ଷରେ ଏକାନ୍ତ ବର୍ଜ୍ଜନୀୟ । କାରଣ ଜୀବ ଶ୍ରୀକୃଷ୍ଣଙ୍କର ନିତ୍ୟଦାସହେତୁ ଶ୍ରୀକୃଷ୍ଣଙ୍କର ସୁଖାର୍ଥେ ଶ୍ରୀକୃଷ୍ଣଙ୍କର ସେବାହିଁ ଜୀବର ନିଜ ଧର୍ମ । ସ୍ୱ ସୁଖାର୍ଥ ଜୀବର ବାଞ୍ଛା ପ୍ରଧାନ କୈତବ । ୫୧ ।

ମହାମୁନି ଶ୍ରୀମନ୍ନାରାୟଣକୃତ ଏହି ଶ୍ରୀମଦ୍ଭାଗବତରେ ସର୍ବଜୀବରେ ଦୟାଳୁ ଅହିଂସକ ସାଧୁମାନଙ୍କର ଅନୁଷ୍ଠେୟ ମୋକ୍ଷପର୍ଯ୍ୟନ୍ତ ଫଳାଭିସନ୍ଧିଲକ୍ଷଣଯୁକ୍ତ କପଟଧର୍ମର ନିରାସକାରୀ ପରମଧର୍ମ ( ବିଶୁଦ୍ଧଭକ୍ତିଧର୍ମ ) ନିରୂପିତ ହୋଇଅଛି । ଏଥିରେ ତ୍ରିତାପନାଶକ ପରମାନନ୍ଦପ୍ରଦ ପରମାର୍ଥ ବସ୍ତୁର ରୂପଗୁଣବିଶିଷ୍ଟ ବିଷୟ ବର୍ଣ୍ଣିତ ହୋଇଅଛି । ଅପର ଶାସ୍ତ୍ର ଆଲୋଚନାଦ୍ୱାରା ଈଶ୍ୱର (ସଚ୍ଚିଦାନନ୍ଦବିଗ୍ରହ) ଶୀଘ୍ର ହୃଦୟରେ ଅନୁଭୂତ ହୁଅନ୍ତି ନାହିଁ । କିନ୍ତୁ ଏହି ଶ୍ରୀମଦ୍ଭାଗବତ ଆଲୋଚନାଦ୍ୱାରା ଶ୍ରବଣେଚ୍ଛୁ ଭକ୍ତମାନଙ୍କର ହୃଦୟରେ ସେ ତତ୍କ୍ଷଣାତ୍ ଅନୁଭୂତ ହୁଅନ୍ତି । [ ୬୮ ଶ୍ଳୋକାର୍ଥ ]

ଏହି ଶ୍ଳୋକରେ "ନିର୍ମତ୍ସରାଣାଂ ସତାଂ" ଶବ୍ଦର ଅର୍ଥ ଶ୍ରୀଲ ଶ୍ରୀଧରସ୍ୱାମୀ ଏହିପରି କରିଅଛନ୍ତି । ଯଥା—

ସାଧୁମାନେ ସମତ୍ସର ଓ ନିର୍ମତ୍ସର ଦୁଇ ପ୍ରକାର । ଯେଉଁମାନେ କହନ୍ତି ଯେ କେବଳ ବ୍ରହ୍ମ ସତ୍ୟ ବସ୍ତୁ ଓ ଆଉ ସମସ୍ତ ଦୃଷ୍ଟ ବସ୍ତୁ ମିଥ୍ୟା ସେମାନେ ସମତ୍ସର ସାଧୁ, ଯେଉଁମାନେ ଶ୍ରୀଭଗବାନଙ୍କର ରୂପଗୁଣସମନ୍ୱିତ ଶ୍ରୀବିଗ୍ରହଙ୍କୁ ପୂଜ୍ୟ ପୂଜକ ପୂଜକଭାବରେ କେବଳ ଅତ୍ୟନ୍ତିକ ପ୍ରେମଦ୍ୱାରା ନିଷ୍କାମଭାବରେ ଭଜନ୍ତି ସେମାନେ ନିର୍ମତ୍ସର ସାଧୁ ।

୬୮ ଶ୍ଳୋକର "ପ୍ରଶବ୍ଦେନ ଇତି" ଶ୍ରୀଧରସ୍ୱାମୀ ନିଜ ଟୀକାରେ ବ୍ୟାଖ୍ୟା କରିଅଛନ୍ତି ଯେ ପ୍ରୋଜ୍‌ଝିତ କୈତବ ଶବ୍ଦର ଉପସର୍ଗଦ୍ୱାରା ମୋକ୍ଷକାମୀମାନଙ୍କୁ ପରମଧର୍ମର ( ବିଶୁଦ୍ଧଭକ୍ତିଧର୍ମର ) ଅଧିକାରରୁ ନିରାଶ କରାହୋଇଅଛି । [ ୬୮ ଶ୍ଳୋକାର୍ଥ ]

ଶୁଭକର୍ମ—ଏଠାରେ ନିଷ୍କାମ କର୍ମ ।

ଅଶୁଭକର୍ମ—ଘୃଣ୍ୟକର୍ମ ।

ନିଷ୍କାମକର୍ମ ଚିତ୍ତଶୁଦ୍ଧିକର ହେଲେ ସୁଦ୍ଧା ଯଦି ଭକ୍ତିବିରୋଧୀ ହୁଏ ତେବେ ତାହା ନିନ୍ଦ୍ୟ-କର୍ମବତ୍ ଜୀବର ଅଜ୍ଞାନତମ ସଦୃଶ । କାରଣ ଭକ୍ତିବିରୋଧୀ ହେତୁ ଜୀବପକ୍ଷରେ ଦୁହେଁ ଏକ ଅଜ୍ଞାନ ତମୋଧର୍ମବିଶିଷ୍ଟ । ଅତଏବ ଉଭୟ ବର୍ଜ୍ଜନୀୟ । ୫୨ ।

ଯାହାର ପ୍ରସାଦେ—ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କ ଅନୁଗ୍ରହରୁ । ଏଇମତ—ପୂର୍ବୋକ୍ତ ଶୁଭାଶୁଭକର୍ମ ସମନ୍ୱିତ ଅବିଦ୍ୟା ।

ନାଶହୟ—ଅପସାରିତ ହୁଏ ।

ଏହିରୂପ ତମ ନାଶ କରି ତତ୍ତ୍ୱବସ୍ତୁ ( ଶ୍ରୀକୃଷ୍ଣଙ୍କୁ ) ଅନୁଭବ କରନ୍ତି । ୫୩ ।

| | |
|---|---|
| ତତ୍ତ୍ୱବସ୍ତୁ—କୃଷ୍ଣ, କୃଷ୍ଣଭକ୍ତି, ପ୍ରେମରୂପ । | ଏକ ଭାଗବତ ବଡ଼—ଭାଗବତଶାସ୍ତ୍ର । |
| ନାମସଂକୀର୍ତ୍ତନ—ସବ ଆନନ୍ଦସ୍ୱରୂପ । ୯୪ । | ଆର ଭାଗବତ—ଭକ୍ତ ଭକ୍ତିରସପାତ୍ର । ୯୭ । |
| ସୂର୍ଯ୍ୟଚନ୍ଦ୍ର ବାହିରେର ତମ ସେ ବିନାଶେ । | ଦୁଇ ଭାଗବତ-ଦ୍ୱାରା ଦିଯ଼ା ଭକ୍ତିରସ । |
| ବହିର୍ବସ୍ତୁ ଘଟ-ପଟ-ଆଦି ସେ ପ୍ରକାଶେ । ୯୫ । | ତାହାର ହୃଦୟେ ତାର ପ୍ରେମେ ହଯ଼ ବଶ ।୯୮। |
| ଦୁଇଭାଇ ହୃଦୟେର କ୍ଷାଳି ଅନ୍ଧକାର । | ଏକ ଅଦ୍ଭୁତ—ସମକାଲେ ଦୋଁହାର ପ୍ରକାଶ । |
| ଦୁଇଭାଗବତ-ସଙ୍ଗେ କରାନ ସାକ୍ଷାତ୍କାର ।୯୬। | ଆର ଅଦ୍ଭୁତ—ଚିତ୍ତଗୁହାର ତମ କରେ ନାଶ ।୯୯। |

ଅତ୍ରଂହି "କୈଲ ତତ୍ତ୍ୱବସ୍ତୁ ଦାନ" ଇବ କନ୍ଧାବହ ତତ୍ତ୍ୱବସ୍ତୁ ଇତ୍ୟାହ "ତତ୍ତ୍ୱବସ୍ତୁ" ଇତି । କୃଷ୍ଣାଦୟଃ ସମ୍ବନ୍ଧ-ପ୍ରୟୋଜନାଭିଧେୟାଃ ସର୍ବଏବ ତତ୍ତ୍ୱବସ୍ତୁ । ତବ ଅନ୍ୟସାଧନବତ୍ ନାମସଂକୀର୍ତ୍ତନାଦ୍ସାଧନଂ ନ କଷ୍ଟତ୍ ଦୁଃଖକରଂ କିନ୍ତୁ ଆନନ୍ଦ-ସ୍ୱରୂପମେବ । ଅଥବା କୃଷ୍ଣାଦୟଃ ସର୍ବେ ଆନନ୍ଦସ୍ୱରୂପା ଯଦ୍ୱା ତେ ସର୍ବେଷାଂ ଆନନ୍ଦାନାଂ ଆନନ୍ଦସ୍ୱରୂପାଃ । କଲୌ ନାମସଂକୀର୍ତ୍ତନସ୍ୟ ପ୍ରାଧାନ୍ୟାତ୍ ଅନ୍ତେ ଚତୁର୍ଗୃହୀତଂ । ୯୪ । ବି, ଚ,

ପ୍ରାକୃତ ସୂର୍ଯ୍ୟ ଚନ୍ଦ୍ରାଦପି ତୟୋରାଧିକ୍ୟମାହ "ସୂର୍ଯ୍ୟ ଚନ୍ଦ୍ର" ଇତି । ୯୫ । ବି, ଚ,

ଭାଗବତଦ୍ୱୟେନ ସହ ସାକ୍ଷାତ୍କାରୟିତ୍ୱା ହୃଦୟାନ୍ଧକାରଂ କ୍ଷାଳୟନ୍ତି ଇତ୍ୟର୍ଥଃ ।୯୬।୯୮ ବି,ଚ,

"ସହୋଦିତୌ" ଇତ୍ୟସ୍ୟାର୍ଥମାହ "ଏକ ଅଦ୍ଭୁତ" ଇତି ।

"ତମୋନୁଦୌ" ଇତ୍ୟସ୍ୟାର୍ଥମାହ "ଆର ଅଦ୍ଭୁତ" ଇତି ।୯୮।୯୯। ବି, ଚ,

---

ସେହି ତତ୍ତ୍ୱବସ୍ତୁହିଁ ଶ୍ରୀକୃଷ୍ଣ ( ଶ୍ରୀନନ୍ଦନନ୍ଦନ ) ଓ କୃଷ୍ଣ, କୃଷ୍ଣଭକ୍ତି, କୃଷ୍ଣପ୍ରେମ ଅର୍ଥାତ୍ ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନତତ୍ତ୍ୱ ଏବଂ ଭକ୍ତିଦାୟକ ସାଧନାଙ୍ଗ ମଧ୍ୟରେ ମୁଖ୍ୟଅଙ୍ଗ ଶ୍ରୀନାମ-ସଂକୀର୍ତ୍ତନ । ଏ ସମସ୍ତ ଆନନ୍ଦସ୍ୱରୂପ । ୯୪ ।

ସୂର୍ଯ୍ୟ ଚନ୍ଦ୍ର ପ୍ରାକୃତବସ୍ତୁ । ସେମାନେ ଉଦୟ ହେଲେ ବାହାରର ଅନ୍ଧକାର ଦୂରହୁଏ ଏବଂ ପ୍ରତ୍ୟେକବସ୍ତୁ ସ୍ୱସ୍ୱରୂପରେ ପ୍ରକାଶପାଏ । ୯୫ ।

ଦୁଇଭାଇ ( ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ) ଜୀବ ହୃଦୟର ଅନ୍ତର୍ନିହିତ ଅନ୍ଧକାର ( ଅବିଦ୍ୟା ) ନାଶକରି ଦୁଇ ଭାଗବତଙ୍କ ସଙ୍ଗେ ସାକ୍ଷାତ୍ କରାନ୍ତି । ୯୬ ।

ସେହି ଦୁଇ ଭାଗବତ ମଧ୍ୟରୁ ଶ୍ରୀମଦ୍ଭାଗବତଗ୍ରନ୍ଥ ଏକ ଏବଂ ଭକ୍ତିରସପାତ୍ର (ରସିକଭକ୍ତ) ଅପର ଅଟନ୍ତି । ୯୭ ।

ଏହି ଦୁଇ ଭାଗବତ ଶ୍ରୀକୃଷ୍ଣ ପ୍ରେମଭକ୍ତି ରସର ଆଧାର ହେତୁ ଏମାନଙ୍କଦ୍ୱାରା ପୂର୍ବୋକ୍ତ ଅବିଦ୍ୟାରହିତ ଜୀବର ହୃଦୟରେ ପ୍ରେମ ଭକ୍ତି ରସ ଦାନ କରନ୍ତି ଏବଂ ତାହାର ( ସେହି ଜୀବର ) ପ୍ରେମରେ ( ପ୍ରେମସେବାରେ ) ଆବଦ୍ଧ ହୁଅନ୍ତି । ୯୮ ।

ପ୍ରାକୃତ ସୂର୍ଯ୍ୟ ଚନ୍ଦ୍ର ସ୍ୱାଭାବିକ ସେମାନଙ୍କ ପୂର୍ଣ୍ଣଜ୍ୟୋତିର ସହିତ ଏକସମୟରେ ଉଦୟ ହୁଅନ୍ତି ନାହିଁ । ଯଦି ବା ସୂର୍ଯ୍ୟ ଚନ୍ଦ୍ରଙ୍କୁ ଏକସମୟରେ ଦେଖାଯାଏ ଚନ୍ଦ୍ରଙ୍କ ଜ୍ୟୋତି ସେତେବେଳେ ପ୍ରକାଶପାଏ ନାହିଁ ଏବଂ ସେମାନେ ଉଦୟ ହେଲେ ସୁଦ୍ଧା ପର୍ବତ ଗହ୍ୱର ଓ ଆବୃତସ୍ଥାନମାନଙ୍କର ଅନ୍ଧକାର ସେମାନଙ୍କର ଜ୍ୟୋତିଦ୍ୱାରା ଦୂରହୁଏ ନାହିଁ । କିନ୍ତୁ ଏହା ଏକ ଅଦ୍ଭୁତବିଷୟ ଯେ ସୂର୍ଯ୍ୟ-ଚନ୍ଦ୍ରରୂପୀ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ଏ ଦୁହେଁ ନିଜର ପୂର୍ଣ୍ଣଜ୍ୟୋତି ସହିତ ଏକସମୟରେ ଉଦୟ ହେଲେ ଏବଂ ଜୀବର ଚିତ୍ତରୂପୀ ଗୁହାର ଅନ୍ଧକାର ( ଅବିଦ୍ୟା ) ଦୂର କଲେ ।

ଏଇ ଚନ୍ଦ୍ର-ସୂର୍ଯ୍ୟ ଦୁଇ ପରମ ସଦୟ ।
ଜଗତେର ଭାଗ୍ୟେ ଗୌଡ଼େ କରିଲ ଉଦୟ ।୬୦।
ସେଇ ଦୁଇ ପ୍ରଭୁର କରି ଚରଣ ବନ୍ଦନ ।
ଯାହା ହୈତେ ବିଘ୍ନନାଶ ଅଭୀଷ୍ଟପୂରଣ । ୬୧ ।
ଏଇ ଦୁଇ ଶ୍ଳୋକେ କୈଲ ମଙ୍ଗଲ-ବନ୍ଦନ ।
ତୃତୀୟ-ଶ୍ଳୋକେର ଅର୍ଥ ଶୁନ ସର୍ବଜନ ! । ୬୨ ।
ବକ୍ତବ୍ୟ-ବାହୁଲ୍ୟ, ଗ୍ରନ୍ଥ-ବିସ୍ତାରେର ଡରେ ।
ବିସ୍ତାରେ ନା ବର୍ଣ୍ଣି, ସାରାର୍ଥ କହି ଅଲ୍ପାକ୍ଷରେ ।୬୩।
ଅନାଦବ୍ୟବହାରସିଦ୍ଧପ୍ରାଚୀନୈଃ ସ୍ୱଶାସ୍ତ୍ରେ ଉକ୍ତଞ୍ଚ-
'ମିତଞ୍ଚ ସାରଞ୍ଚ ବଚୋ ହି ବାଗ୍ମିତା' ଇତି ।।୩୯।। *
ଶୁନିଲେ ଖଣ୍ଡିବେ ଚିତ୍ତେର ଅଜ୍ଞାନାଦି ଦୋଷ ।
ସବ୍ବଣତତ୍ତ୍ୱ ଜ୍ଞାନ ହବେ—ପାଇବେ ସନ୍ତୋଷ ।୬୪।

"ବନ୍ଦେ" ଇତ୍ୟସ୍ୟାର୍ଥମାହ "ସେଇ ଦୁଇ" ଇତି । ୬୧ । ବି, ଚ,
ମିତଂ ( ସ୍ୱଲ୍ପାକ୍ଷରଂ ) ଚ ସାରଂ ( ସାରଗର୍ଭଂ ) ଚ ବଚଃ ହି ବାଗ୍ମିତା । [୩୯ ଶ୍ଳୋକଃ] ।
ଅଜ୍ଞାନାଦି ଯଥା—ଅଜ୍ଞାନ ବିପର୍ଯ୍ୟାସ ଭେଦଭୟଶୋକାଃ ।
ଅସ୍ୟାର୍ଥଃ ଅଜ୍ଞାନଂ ସ୍ୱରୂପା ପ୍ରକାଶଃ । ବିପର୍ଯ୍ୟାସୋ ଦେହାଦାବହଂ ବୁଦ୍ଧିଃ ।
ଭେଦଃ—ଭୋଗେଚ୍ଛା । ତତ୍ର ପ୍ରତ୍ୟବାଦେ ଭୟଂ । ଶୋକସ୍ତନ୍ନାଶେ ଅହମେବ ମୃତୋଽସ୍ମୀ-ତିବୁଦ୍ଧିଃ ।

ଦୋଷା ଯଥା ବିଷ୍ଣୁଯାମଳେ—ମୋହ ସ୍ତନ୍ଦ୍ରାଭ୍ରମୋ ରୂକ୍ଷ ରସତା କାମଉଲ୍ବଣଃ ।
ଲୋଲତା ମଦମାତ୍ସର୍ଯ୍ୟେ ହିଂସା ଖେଦ ପରିଶ୍ରମୌ ।
ଅସତ୍ୟଂ କ୍ରୋଧଃ ଆଶଙ୍କା ଆକାଙ୍କ୍ଷାବିଶ୍ୱବିଭ୍ରମଃ ।
ବିଷମତ୍ୱଂ ପରାପେକ୍ଷା ଦୋଷା ଅଷ୍ଟାଦଶୋଦିତାଃ ॥ ୬୪ ॥ ବି, ଚ,

ଏହି ଦୁଇ ସୂର୍ଯ୍ୟ ଚନ୍ଦ୍ରରୂପୀ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦ ପରମଦୟାଳୁ ଅଟନ୍ତି । ଏମାନେ ଜଗତର ସୌଭାଗ୍ୟ ହେତୁ ଗୌଡ଼ଦେଶରୂପ ଉଦୟାଚଳରେ ଆବିର୍ଭୂତ ହେଲେ । ୬୦ ।

ଅତଏବ ସେହି ଦୁଇ ପ୍ରଭୁଙ୍କୁ ମୁଁ ପ୍ରଣାମ କରେଁ । କାରଣ ସେମାନଙ୍କଦ୍ୱାରା ବିଘ୍ନ ନାଶହୁଏ ଏବଂ ମନୋବାଞ୍ଛା ପୂର୍ଣ୍ଣହୁଏ । ୬୧ ।

ମଙ୍ଗଳବନ୍ଦନ—ଗୁରୁ ଇଷ୍ଟଦେବରୂପ ମଙ୍ଗଳବନ୍ଦନ ।

ଗ୍ରନ୍ଥକାର କହୁଅଛନ୍ତି ବିସ୍ତୃତ ବ୍ୟାଖ୍ୟା କଲେ ଗ୍ରନ୍ଥ ଅତିବୃହତ୍ ହେବ । ତେଣୁ ସେ ସାରଅର୍ଥ ସଂକ୍ଷେପରେ ( ସୂତ୍ରରୂପରେ ) ବର୍ଣ୍ଣନା କରିଅଛନ୍ତି । ୬୩ ।

ସ୍ୱଳ୍ପାକ୍ଷର ସାରଗର୍ଭ ବାକ୍ୟକୁ ବାଗ୍ମିତା କୁହାଯାଏ । [ ୩୯ ଶ୍ଳୋକାର୍ଥ ] ।

ଅଜ୍ଞାନାଦି—ଅଜ୍ଞାନ ( ଯଦ୍ୱାରା ଜୀବର ସ୍ୱରୂପ ଅପ୍ରକାଶିତ ରହେ ) ।

ବିପର୍ଯ୍ୟାସ—( ଦେହ ଆଦିରେ ମମତା ) ଭେଦ ( ଭୋଗେଚ୍ଛା ) ।

ଭୟ—ଶୋକଆଦି ଦୋଷ ବିଷ୍ଣୁଯାମଳୋକ୍ତ ୧୮ଶ ପ୍ରକାର ଦୋଷ ।

ଅନ୍ୟ କୌଣସି କୌଣସି ପୁସ୍ତକରେ "କୃଷ୍ଣେ ଗାଢ଼ପ୍ରେମ ହବେ" ବୋଲି ଉଲ୍ଲେଖଅଛି

ଶ୍ରୀଚୈତନ୍ୟ-ନିତ୍ୟାନନ୍ଦ-ଅଦ୍ୱୈତ-ମହତ୍ତ୍ୱ ।
ତାଁର ଭକ୍ତ-ଭକ୍ତି-ନାମ ପ୍ରେମ-ରସ-ତତ୍ତ୍ୱ । ୨୫ ।
ଭିନ୍ନ ଭିନ୍ନ ଲିଖିୟାଛି କରିୟା ବିଚାର ।
ଶୁନିଲେ ଜାନିବେ ସବ ବସ୍ତୁ-ତତ୍ତ୍ୱସାର । ୨୬
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୨୭ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଲୀଳାୟାଂ
ଗୁର୍ବାଦି-ବନ୍ଦନ-ମଙ୍ଗଳାଚରଣଂ ନାମ
ପ୍ରଥମପରିଚ୍ଛେଦଃ ॥ ୧ ॥

---

# ଦ୍ୱିତୀୟ ପରିଚ୍ଛେଦ ।

ଶ୍ରୀଚୈତନ୍ୟପ୍ରଭୁଂ ବନ୍ଦେ ବାଳୋଽପି ଯଦନୁଗ୍ରହାତ୍ ।
ତରେନ୍ନାନାମତଗ୍ରାହ-ବ୍ୟାପ୍ତଂ ସିଦ୍ଧାନ୍ତସାଗରମ୍ ।୧*
କୃଷ୍ଣୋତ୍କୀର୍ତ୍ତନଗାନନର୍ତ୍ତନକଳାପାଥୋଜନିଭ୍ରାଜିତା
ସଦ୍ଭକ୍ତାବଳି-ହଂସଚକ୍ରମଧୁପଶ୍ରେଣୀବିହାରାସ୍ପଦମ୍ ।
କର୍ଣ୍ଣାନନ୍ଦିକଳଧ୍ୱନିର୍ବହତୁ ମେ ଜିହ୍ୱାମରୁପ୍ରାଙ୍ଗଣେ,
ଶ୍ରୀଚୈତନ୍ୟଦୟାନିଧେ ତବ ଲସଲ୍ଲୀଳାସୁଧାସ୍ୱର୍ଦ୍ଧୁନୀ ॥ ୨*

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।

---

ବାଳଃ ( ଅଜ୍ଞଃ ) ଅପି ଯଦନୁଗ୍ରହାତ୍ ( ଯସ୍ୟ ଶ୍ରୀଚୈତନ୍ୟପ୍ରଭୋଃ ପ୍ରସାଦାତ୍ ) ନାନାମତଗ୍ରାହବ୍ୟାପ୍ତଂ ( ନାନାମତାନି ଏବ ଗ୍ରାହାଃ ଜଳଜନ୍ତୁବିଶେଷାଃ ତୈଃ ବ୍ୟାପ୍ତଂ ) ସିଦ୍ଧାନ୍ତସାଗରଂ ତରେତ୍ ( ତଂ ) ଶ୍ରୀଚୈତନ୍ୟପ୍ରଭୁଂ ( ଅହଂ ) ବନ୍ଦେ । [ ୧ମ ଶ୍ଳୋକଃ ]

( ହେ ) ଦୟାନିଧେ ! (ଦୟାସମୁଦ୍ର) ଶ୍ରୀଚୈତନ୍ୟ ! କୃଷ୍ଣୋତ୍କୀର୍ତ୍ତନ-ଗାନ-ନର୍ତ୍ତନ-କଳା-ପାଥୋଜନିଭ୍ରାଜିତା ( କୃଷ୍ଣସ୍ୟ ନାମାଦୀନାଂ ଉତ୍କୀର୍ତ୍ତନଂ ଉଚ୍ଚୈଃ ଭାଷଣଂ ଗାନଂ ତାଭ୍ୟାଂ ସମ୍ବଳିତଂ ନର୍ତ୍ତନଂ ନୃତ୍ୟଂ ତେଷାଂ କଳା ବୈଦଗ୍ଧୀ ସା ଏବ ପାଥୋଜନିଃ ପାଥୋଜକଂ ଜଳଂ ଜନି ଜନ୍ମ ଯେଷାଂ ପଦ୍ମାଦୀନାଂ ତୈଃ ଭ୍ରାଜିତା ଶୋଭିତା. ) ସଦ୍ଭକ୍ତାବଳିହଂସଚକ୍ରମଧୁପଶ୍ରେଣୀ-ବିହାରାସ୍ପଦଂ ( ସନ୍ତଃ ସାଧବଃ ଭକ୍ତାଃ ତେ ତେଷାଂ ଅବଳୀ ସମୂହାଃ ତାଃ ଏବ ହଂସଚକ୍ରବାକ-ମଧୁପଶ୍ରେଣ୍ୟଃ ତାସାଂ ବିହାରାସ୍ପଦଂ ବିହାରସ୍ଥାନଂ ) କର୍ଣ୍ଣାନନ୍ଦିକଳଧ୍ୱନିଃ ( କର୍ଣ୍ଣସ୍ୟ ଆନନ୍ଦକରଃ କଳଧ୍ୱନିଃ ମଧୁରଶବ୍ଦଃ ଯସ୍ୟାଃ ସା ) ତବ ଲସଲ୍ଲୀଳାସୁଧାସ୍ୱର୍ଦ୍ଧୁନୀ ( ଲସନ୍ତୀ ଯା ଲୀଳାସୁଧା ସା ଏବ ସ୍ୱର୍ଦ୍ଧୁନୀ ଯଦ୍ୱା ଲସଲ୍ଲୀଳା ଏବ ସୁଧା ସ୍ୱର୍ଦ୍ଧୁନୀ ସ୍ୱର୍ଗନଦୀ ଗଙ୍ଗା ) ମେ ( ମମ ) ଜିହ୍ୱାମରୁପ୍ରାଙ୍ଗଣେ (ଜିହ୍ୱା ଏବ ମରୁପ୍ରାଙ୍ଗଣଂ ନିର୍ଜ୍ଜଳ-ଚତ୍ୱରଂ ତସ୍ମିନ୍.) ବହତୁ । [ ୨ୟ ଶ୍ଳୋକଃ ] ।

---

ଶ୍ରୀକୃଷ୍ଣଚୈତନ୍ୟ ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ଏମାନେ ଈଶ୍ୱରତତ୍ତ୍ୱ ଅର୍ଥାତ୍ ଶ୍ରୀକୃଷ୍ଣଚୈତନ୍ୟ ସ୍ୱୟଂ ଭଗବାନ୍, ଶ୍ରୀନିତ୍ୟାନନ୍ଦ ଏହାଙ୍କର ବିଳାସ, ଶ୍ରୀଅଦ୍ୱୈତ ଏହାଙ୍କର ଅଂଶ । ଶ୍ରୀକୃଷ୍ଣଚୈତନ୍ୟଙ୍କର ଭକ୍ତ, ଭକ୍ତି, ନାମ ଓ ପ୍ରେମରସ ଏ ସମସ୍ତ ତତ୍ତ୍ୱ ଏଠାରେ ଭିନ୍ନଭିନ୍ନରୂପେ ବିଚାର କରି ଗ୍ରନ୍ଥକର୍ତ୍ତା ଲେଖିଅଛନ୍ତି । ତାହା ଶୁଣିଲେ ଓ ପାଠ କଲେ ସମସ୍ତ ବସ୍ତୁତତ୍ତ୍ୱର ମର୍ମ୍ମ ଅବଗତ ହୋଇପାରିବ । (ଭକ୍ତିପୂର୍ବ୍ବକ ଶ୍ରବଣ ଓ ପଠନ କଲେ ଶ୍ରୀକୃଷ୍ଣଙ୍କର ତତ୍ତ୍ୱ ଅନୁଭବ କରିପାରିବେ) ।୨୫।୨୬।

ଗ୍ରନ୍ଥକାର ଏହାପୂର୍ବେ ଲେଖି ଯାଇଅଛନ୍ତି ଯେ ଶ୍ରୀରୂପ, ଶ୍ରୀସନାତନ, ଶ୍ରୀଗୋପାଳ ଭଟ୍ଟ, ଶ୍ରୀରଘୁନାଥ ଭଟ୍ଟ, ଶ୍ରୀରଘୁନାଥ ଦାସ, ଶ୍ରୀଜୀବ ଗୋସ୍ୱାମୀ ଏହି ଛ ଗୋସ୍ୱାମୀ ତାଙ୍କର ଶିକ୍ଷାଗୁରୁ । ତନ୍ମଧ୍ୟ ଶ୍ରୀରୂପ ଗୋସ୍ୱାମୀ ଓ ଶ୍ରୀରଘୁନାଥ ଦାସ ଗୋସ୍ୱାମୀ ଏ ଦୁହେଁ ଗ୍ରନ୍ଥକାରଙ୍କର ବିଶେଷରୂପେ ଶିକ୍ଷାଗୁରୁ ହେତୁ ଏ ଦୁହିଁଙ୍କ ଶ୍ରୀଚରଣରେ ପ୍ରଣାମପୂର୍ବକ ଗ୍ରନ୍ଥକାର ଶ୍ରୀକୃଷ୍ଣଦାସ କବିରାଜ ପ୍ରତ୍ୟେକ ପରିଚ୍ଛେଦ ଶେଷ କରିଅଛନ୍ତି । ୨୭ ।

ପ୍ରଥମ ପରିଚ୍ଛେଦ ସମାପ୍ତ ।

ଯାଁହାର ଅଙ୍ଗର ଶୁଦ୍ଧ କିରଣମଣ୍ଡଳ ।
ଉପନିଷଦ୍ କହେ ତାରେ—ବ୍ରହ୍ମ ସୁନିର୍ମ୍ମଳ ।୮
ଚର୍ମ୍ମଚକ୍ଷେ ଦେଖେ ଯୈଛେ ସୂର୍ଯ୍ୟ ନିର୍ବିଶେଷ ।
ଜ୍ଞାନମାର୍ଗେ ଲଇତେ ନାରେ କୃଷ୍ଣେର ବିଶେଷ ।୯।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୦ )—
ଯସ୍ୟ ପ୍ରଭା ପ୍ରଭବତୋ ଜଗଦଣ୍ଡକୋଟି-
କୋଟିଷ୍ୱଶେଷ-ବସୁଧାଦିବିଭୂତିଭିନ୍ନମ୍ ।
ତଦ୍ବ୍ରହ୍ମ ନିଷ୍କଳମନନ୍ତମଶେଷଭୂତଂ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥ ୫ ॥

କୋଟି-କୋଟି ବ୍ରହ୍ମାଣ୍ଡେ ଯେ-ବ୍ରହ୍ମେର ବିଭୂତି ।
ସେଇ ବ୍ରହ୍ମ—ଗୋବିନ୍ଦେର ହୟ ଅଙ୍ଗକାନ୍ତି ।୧୦
ସେ ଗୋବିନ୍ଦ ଭଜି ଆମି—ତେଁହୋ ମୋର ପତି ।
ତାଁହାର ପ୍ରସାଦେ ମୋର ହୟ ସୃଷ୍ଟି-ଶକ୍ତି ।୧୧।

---

"ଯଦଦ୍ୱୈତଂ ବ୍ରହ୍ମୋପନିଷଦି ତଦପ୍ୟସ୍ୟ ତନୁଭା" । ଇତ୍ୟସ୍ୟାର୍ଥମାହ " ତାହାର [illegible] ଇତି । ଶୁଦ୍ଧଂ ଅପ୍ରାକୃତଂ ଅଥବା କେବଲଂ ।୮। ବି, ଚ,

ନନୁ ଅଙ୍ଗସ୍ୟ ଭାବେ କଥଂ ନିରାକାରଂ କେବଲଂ ତତ୍କିରଣ ଗୃହ୍ଣାତ୍ୟାହ "ଚର୍ମଚକ୍ଷେ" ଇତି । ଯଥାପି ଶ୍ରୀକୃଷ୍ଣବିଗ୍ରହେ ଚର୍ମଚକ୍ଷୁଷା ସୂର୍ଯ୍ୟ ଏବ ଜ୍ଞାନମାର୍ଗେଣ ତଦ୍ଗ୍ରହଣାସାମର୍ଥ୍ୟାତ୍ ଜ୍ଞାନି କିରଣମଣ୍ଡଳମେବ ଗୃହୀତ୍ୱା ନିରାକାରଂ ବ୍ରହ୍ମ ବଦନ୍ତ୍ୟେବାର୍ଥଃ ।୯। ବି, ଚ,

ଜଗଦଣ୍ଡକୋଟିକୋଟିଷୁ ( ଅସଂଖ୍ୟାତେଷୁ ଜଗଦଣ୍ଡେଷୁ ) ଅଶେଷବସୁଧାଦିବିଭୂତିଭିନ୍ନଂ ( ଅଶେଷାଭିଃ ବସୁଧାଦିରୂପାଭିଃ ବିଭୂତିଭିଃ ଭିନ୍ନଂ ଭେଦଂ ପ୍ରାପ୍ତଂ ସତ୍ ) ନିଷ୍କଳଂ ( ପୂର୍ଣ୍ଣଂ ) ଅନନ୍ତଂ ( ଅପରିଚ୍ଛିନ୍ନଂ ) ଅଶେଷଭୂତଂ ( ମୂଳଭୂତଂ ) ତତ୍ ( ପ୍ରସିଦ୍ଧଂ ) ବ୍ରହ୍ମ ପ୍ରଭବତଃ ( ପ୍ରଭାବଯୁକ୍ତସ୍ୟ ) ଯସ୍ୟ ( ଶ୍ରୀଗୋବିନ୍ଦସ୍ୟ ) ପ୍ରଭା ( ଅଙ୍ଗକାନ୍ତିଃ ) ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । [୫ମ ଶ୍ଲୋକଃ]

---

ଯେଉଁ ବ୍ରହ୍ମ ଅନନ୍ତ କୋଟିବ୍ରହ୍ମାଣ୍ଡରେ ଅଶେଷ ବସୁଧାଦି ବିଭୂତିରୂପେ ଭିନ୍ନ ହୋଇ ସୁଦ୍ଧା ପୂର୍ଣ୍ଣ ଅନନ୍ତ ଓ ଅଶେଷ ସ୍ୱରୂପରେ ବିଦ୍ୟମାନ ସେହି ବ୍ରହ୍ମ ଯେଉଁ ପ୍ରଭାବଶାଳୀ ଗୋବିନ୍ଦଙ୍କର ଅଙ୍ଗକାନ୍ତି ସେହି ଆଦିପୁରୁଷ ଶ୍ରୀଗୋବିନ୍ଦଙ୍କୁ ଭଜନ କରେଁ । [ ୫ମ ଶ୍ଲୋକାର୍ଥ ]

ତାହାଙ୍କର—( ଶ୍ରୀକୃଷ୍ଣଙ୍କର ) ଅଙ୍ଗର ( ଶରୀରର ) ଅପ୍ରାକୃତ କିରଣମଣ୍ଡଳକୁ ଉପନିଷଦ୍‌ମାନଙ୍କରେ ସୁନିର୍ମ୍ମଳ ବ୍ରହ୍ମ ବୋଲି କଥିତ ହୋଇଅଛି ।

ଏଥିର ଉଦାହରଣ—ମନୁଷ୍ୟ ଚକ୍ଷୁଦ୍ୱାରା ( ଚର୍ମଚକ୍ଷୁରେ ) ସୂର୍ଯ୍ୟମଣ୍ଡଳକୁ ଦେଖିଲେ ସୂର୍ଯ୍ୟଙ୍କର କେବଳ ଜ୍ୟୋତିର୍ମଣ୍ଡଳ ଦେଖନ୍ତି । କିନ୍ତୁ ସେହି ଜ୍ୟୋତିର୍ମଣ୍ଡଳର ଅଭ୍ୟନ୍ତରରେ ସୂର୍ଯ୍ୟଙ୍କର ସ୍ୱରୂପର ଆକାର ରୂପ, ଗୁଣ ଇତ୍ୟାଦି କିଛି ଦେଖି ବା ବୁଝିପାରନ୍ତି ନାହିଁ । ସେହିରୂପ ଜ୍ଞାନମାର୍ଗରେ ଅର୍ଥାତ୍ ଉପନିଷଦପ୍ରବର୍ତ୍ତିତମାର୍ଗରେ ଜ୍ଞାନୀମାନେ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଅବଧାରଣ କରିବାକୁ ଅକ୍ଷମ ହୋଇ କେବଳ ତାହାଙ୍କର ନିର୍ବିଶେଷ ଜ୍ୟୋତି ଅବଧାରଣ କରନ୍ତି ।୮।୯।

ବ୍ରହ୍ମା କହୁଅଛନ୍ତି, କୋଟି୨ ବ୍ରହ୍ମାଣ୍ଡଗଣ ଯେଉଁ ବ୍ରହ୍ମଙ୍କଠାରୁ ପ୍ରକାଶିତ ସେହି ବ୍ରହ୍ମ ଶ୍ରୀଗୋବିନ୍ଦଙ୍କର ( ଶ୍ରୀକୃଷ୍ଣଙ୍କର ) ଅଙ୍ଗକାନ୍ତି ବା ନିର୍ବିଶେଷ ପ୍ରକାଶରୂପ ଜ୍ୟୋତି ଅଟନ୍ତି । ଅତଏବ ମୁଁ ମୂଳତତ୍ତ୍ୱ ( ଆଦିପୁରୁଷ ) ସେହି ଗୋବିନ୍ଦଦେବଙ୍କୁ ଭଜନ କରେଁ । ଯେହେତୁ ସେ ମୋର ପତି ଅଟନ୍ତି । କେବଳ ତାହାଙ୍କର ଅନୁଗ୍ରହରୁ ମୋର ସୃଷ୍ଟି ଶକ୍ତି ଜନ୍ମିଅଛି । ୧୦।୧୧ ।

ତଥାହି ( ଭାଃ ୧୧।୬।୪୭ )—
ମୁନୟୋ ବାତବସନାଃ ଶ୍ରମଣା ଊର୍ଦ୍ଧ୍ୱମନ୍ଥିନଃ ।
ବ୍ରହ୍ମାଖ୍ୟଂ ଧାମ ତେ ଯାନ୍ତି
ଶାନ୍ତାଃ ସନ୍ନ୍ୟାସିନୋଽମଲାଃ ॥ ୬ ॥ *
ଆତ୍ମାନ୍ତର୍ଯ୍ୟାମୀ ଯାଁରେ ଯୋଗଶାସ୍ତ୍ରେ କୟ ।
ସେହ ଗୋବିନ୍ଦେର ଅଂଶବିଭୂତି ଯେ ହୟ ।୧୬।
ଅନନ୍ତ ସ୍ଫଟିକେ ଯୈଛେ ଏକ ସୂର୍ଯ୍ୟ ଭାସେ ।
ତୈଛେ ଜୀବେ ଗୋବିନ୍ଦେର ଅଂଶ ପ୍ରକାଶେ ।୧୭।
ତଥାହି ଶ୍ରୀଭଗବଦ୍ଗୀତାୟାମ୍ ( ୧୦।୪୨ )—
ଅଥବା ବହୁନୈତେନ କିଂ ଜ୍ଞାତେନ ତବାର୍ଜ୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ
ଜଗତ୍ ॥ ୭ ॥ *

ବାତବସନାଃ ( ଦିଗମ୍ବରାଃ ) ଶ୍ରମଣାଃ ( ଆହାରାଦି ସଙ୍କୋଚେନ ବର୍ଷବାତାଦିସହନେନ ଚ ଶ୍ରମବନ୍ତଃ ) ଊର୍ଦ୍ଧ୍ୱମନ୍ଥିନଃ ( ଊର୍ଦ୍ଧ୍ୱରେତସଃ ) ଅମଲାଃ ( ନିର୍ଦ୍ଧୂତପାପାଃ ) ଅତଃ ଶାନ୍ତାଃ ( କାମକ୍ରୋଧାଦିରହିତାଃ ) ସନ୍ନ୍ୟାସିନଃ ( ତ୍ୟକ୍ତଭୋଗାଃ ) ( ଯେ ଏବ ) ମୁନୟଃ ତେ ( ତବ ) ବ୍ରହ୍ମାଖ୍ୟଂ ଧାମ ( ଜ୍ୟୋତିର୍ମୟଂ ଧାମ ) ଯାନ୍ତି । [ ୬ଷ୍ଠ ଶ୍ଳୋକଃ ]

"ଯ ଆତ୍ମାନ୍ତର୍ଯ୍ୟାମୀ ପୁରୁଷ ଇତି ସୋଽସ୍ୟାଂଶବିଭବଃ" ଇତ୍ୟସ୍ୟାର୍ଥମାହ, "ଆତ୍ମାନ୍ତର୍ଯ୍ୟାମୀ"-ତ୍ୟାଦି । ୧୬ । ବି, ଚ,

ଅଥବା ( ହେ ) ଅର୍ଜ୍ଜୁନ ! ଏତେନ ବହୁନା (ପୃଥକ୍ ପୃଥକ୍ ଉପଦିଶ୍ୟମାନେନ ବିଭୂତି-ବିଶେଷସୂଚକେନ ) ଜ୍ଞାତେନ କିଂ ତବ ( ପ୍ରୟୋଜନଂ ? ଯତଃ ) ଇଦଂ ( ଚିଦଚିଦାତ୍ମକ ବ୍ରହ୍ମାଣ୍ଡ-ପ୍ରମୁଖଂ ) କୃତ୍ସ୍ନଂ ଜଗତ୍ ଏକାଂଶେନ ( ପ୍ରକୃତ୍ୟାଦ୍ୟନ୍ତର୍ଯ୍ୟାମିନା ପୁରୁଷାଖ୍ୟେନ ଅଂଶେନ ) ବିଷ୍ଟଭ୍ୟ ( ବ୍ୟାପ୍ୟ ) ଅହଂ ( ଏବ ) ସ୍ଥିତଃ [ ୭ମ ଶ୍ଳୋକଃ ]

ଶ୍ରୀମାନ୍ ଉଦ୍ଧବ ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ଦିଗମ୍ବର, ଆହାରାଦି ସଙ୍କୋଚ କରିବା ହେତୁରୁ ବାତବର୍ଷା ଆଦି ସହିବାରୁ କ୍ଲେଶସହନଶୀଳ, ଊର୍ଦ୍ଧ୍ୱରେତା, ନିଷ୍ପାପ ଏବଂ କାମକ୍ରୋଧାଦି ସମସ୍ତ ରିପୁବୃତ୍ତିର ନିରୋଧକାରୀ ସନ୍ନ୍ୟାସୀ ଋଷିମାନେ ଆପଣଙ୍କର ଜ୍ୟୋତିର୍ମୟ ବ୍ରହ୍ମଧାମ ( ବ୍ରହ୍ମପଦବୀ ) ପ୍ରାପ୍ତ ହୁଅନ୍ତି ।

ଅର୍ଥାତ୍ ଉପରଲିଖିତ କର୍ମଶୀଳ ଏବଂ ଜ୍ଞାନବାନ୍ ଋଷିମାନେ ବାହ୍ୟ-ଅଭ୍ୟନ୍ତର ସର୍ବପ୍ରକାର ଭୋଗାଦି ତ୍ୟାଗ କରି ଓ ନିଷ୍ପାପ ହୋଇ ମୁକ୍ତ କେବଳ ଶ୍ରୀକୃଷ୍ଣଙ୍କର ଜ୍ୟୋତିର୍ମୟଧାମ ଅର୍ଥାତ୍ ନିର୍ବିଶେଷ ବ୍ରହ୍ମଧାମ ପ୍ରାପ୍ତ ହୁଅନ୍ତି କିନ୍ତୁ ସେମାନେ ତାଙ୍କର ସ୍ୱରୂପ ଦର୍ଶନ କରିବାକୁ ଅକ୍ଷମ । ଅତଏବ ଏଦ୍ୱାର ତାତ୍ପର୍ଯ୍ୟ ଏହି ଯେ କର୍ମୀ ଓ ଜ୍ଞାନୀମାନେ ପରବ୍ରହ୍ମ ବା ଶ୍ରୀକୃଷ୍ଣଙ୍କର ସ୍ୱରୂପ ଦର୍ଶନାଦି ପ୍ରାପ୍ତ ହୁଅନ୍ତି ନାହିଁ । [ ୬ଷ୍ଠ ଶ୍ଳୋକାର୍ଥ ]

ଯୋଗଶାସ୍ତ୍ରରେ ଯାହାଙ୍କୁ ଜୀବର ଅନ୍ତର୍ଯ୍ୟାମୀ ଆତ୍ମା ( ପରମାତ୍ମା ) ବୋଲି ନିର୍ଦ୍ଦେଶ କରିଅଛନ୍ତି ସେହି ପରମାତ୍ମା ଶ୍ରୀଗୋବିନ୍ଦଙ୍କର ବିଭୂତିରୂପ ଅଂଶ ବା ଐଶ୍ୱର୍ଯ୍ୟାଂଶ ଅର୍ଥାତ୍ ଦ୍ୱିତୀୟ ପୁରୁଷାବତାର ଅଟନ୍ତି । ଏଠାରେ ଆଶଙ୍କା ହୋଇପାରେ ଯେ ଶ୍ରୀଗୋବିନ୍ଦଙ୍କ ଏକଅଂଶ କିପରି ଅନନ୍ତକୋଟି ଜୀବର ଅନ୍ତର୍ଯ୍ୟାମୀରୂପରେ ବିରାଜ କରନ୍ତି । ତାହା ନିରାକରଣନିମନ୍ତେ ଗ୍ରନ୍ଥକର୍ତ୍ତା କହୁଅଛନ୍ତି ଯେ ସୂର୍ଯ୍ୟ ଏକ ହୋଇ ମଧ୍ୟ ଅନନ୍ତଖଣ୍ଡ ସ୍ଫଟିକରେ ଯେପରି ଦୃଷ୍ଟ ହୁଅନ୍ତି ସେହିପରି ଶ୍ରୀଗୋବିନ୍ଦଙ୍କର ଅଂଶ ପରମାତ୍ମା ଜୀବମାନଙ୍କ ହୃଦୟରେ ପ୍ରକାଶିତ ହୁଅନ୍ତି । ୧୬ ୧୭ ।

ଶ୍ରୀକୃଷ୍ଣ କହୁଅଛନ୍ତି ହେ ଅର୍ଜ୍ଜୁନ ! ତୁମ୍ଭର ଏ ସମସ୍ତ ବହୁବିଧ ବିଭୂତିବିଶେଷର ଜ୍ଞାନର ପ୍ରୟୋଜନ କଅଣ ? ମୂଳତଃ ଏତିକି ଜାଣ ଯେ ମୁଁ ମୋର ଅଂଶଦ୍ୱାରା ( ପୁରୁଷାଖ୍ୟ ଅଂଶଦ୍ୱାରା ପରମାତ୍ମାରୂପେ ) ଏହି ଚିଜ୍ଜଡାତ୍ମକ ( ସୂକ୍ଷ୍ମ ସ୍ଥୂଳାତ୍ମକ ) ଜଗତକୁ ବ୍ୟାପି ରହିଅଛି ଅର୍ଥାତ୍

ତଥାହି ( ଭାଃ ୧।୯।୪୨ )—

ତମିମମହମଜଂ ଶରୀରଭାଜାଂ,
ହୃଦି ହୃଦି ଧିଷ୍ଠିତମାତ୍ମକଲ୍ପିତାନାମ୍ ।
ପ୍ରତିଦୃଶମିବ ନୈକଧାର୍କମେକଂ,
ସମଧିଗତୋଽସ୍ମି ବିଧୂତଭେଦମୋହଃ ॥ ୮ ॥

ସେହି ତ ଗୋବିନ୍ଦ ସାକ୍ଷାତ୍ ଚୈତନ୍ୟ-ଗୋସାଇଁ ।
ଜୀବ ନିସ୍ତାରିତେ ଐଛେ ଦୟାଳୁ ଆର ନାଇ ॥୧୫

( ସର୍ବ ପ୍ରାଣିନାଂ ) ଦୃଶଂ ( ଅବଲୋକନଂ ) ପ୍ରତିନୈକଧା ( ଅନେକଧା ପ୍ରତୀତଂ) ଏକଂ ଅର୍କଂ ( ସୂର୍ଯ୍ୟଂ ଇବ ) ଆତ୍ମକଲ୍ପିତାନାଂ (ଆତ୍ମନ ଏବ ପରମାତ୍ମସ୍ୱରୂପେଣ କଲ୍ପିତାନାଂ ପ୍ରାଦୁର୍ଭାବିତାନାଂ) ଶରୀରଭାଜାଂ ( ପ୍ରାଣିନାଂ ) ହୃଦି ହୃଦି ( ପ୍ରତିହୃଦୟମଧ୍ୟେ ଧିଷ୍ଠିତଂ—ଅଧିଷ୍ଠିତଂ ) ତଂ ଇମଂ ଅଜଂ ( ଶ୍ରୀକୃଷ୍ଣଂ ) ବିଧୂତଭେଦମୋହଃ ( ଅସ୍ୟୈବ କୃପୟା ଦୂରୀକୃତଃ ଭେଦମୋହଃ ଭଗବଦ୍‌ବିଗ୍ରହାଦ୍ୟେ ବ୍ୟାପକତ୍ୱାଦ୍ୟନ୍ୟାବନାଭାବନାତ୍ମ—ନାନାତ୍ମ-ଜ୍ଞାନଲକ୍ଷଣଃ ମୋହଃ ଯସ୍ୟ ତଥା ଭୂତଃ ) ଅହଂ ସମଧିଗତଃ ପ୍ରାପ୍ତଃ ଅସ୍ମି [ ୮ମ ଶ୍ଳୋକଃ ]

ନନୁ "ଗୋବିନ୍ଦମାଦିପୁରୁଷଂ" ଇତି ବ୍ରହ୍ମସଂହିତାଦି ବାକ୍ୟେନ ଶ୍ରୀଗୋବିନ୍ଦତତ୍ତ୍ୱମେବୋକ୍ତଂ ନ ତୁ ଶ୍ରୀଚୈତନ୍ୟତତ୍ତ୍ୱଂ ଇତ୍ୟାଶଙ୍କାନିବାରଣାର୍ଥମାହ "ସେଇତ ଗୋବିନ୍ଦ" ଇତି । ଗୋବିନ୍ଦ ଏବ ସାକ୍ଷାତ୍ ଚୈତନ୍ୟଃ ନ ତୁ ତତଃ ପୃଥକ୍ ଅତଃ ତତ୍ତ୍ୱକଥନେନୈବ ଚୈତନ୍ୟତତ୍ତ୍ୱଂ ତତ୍ତ୍ୱମେବ କଥିତମିତି । ନନୁ ଗୋବିନ୍ଦାତ୍ କଥଂ ଚୈତନ୍ୟସ୍ୟ ଉତ୍କର୍ଷମିତ୍ୟାହ "ଜୀବନିସ୍ତାରିତେ" ଇତି । ଜୀବାନ୍ ନିସ୍ତାରୟିତୁଂ କୃପୟା ସ ତଥାଭୂଦିତି । ୧୪ । ବି, ଚ,

ଯେପରି ବାସ୍ତବରେ ଗୋଟିଏ ଥାଏ ସେହିପରି ଏହି ଅନୁଭବନୀୟ ଓ ଦୃଶ୍ୟମାନ ବିଭିନ୍ନ ଜଗତରେ ମୁଁ ଓତପ୍ରୋତଭାବରେ ମୋର ପୁରୁଷାଖ୍ୟ ଅଂଶଦ୍ୱାରା ( ପରମାତ୍ମାଭାବରେ ) ରହିଅଛି । [ ୭ମ ଶ୍ଳୋକାର୍ଥ ]

ଶ୍ରୀଭୀଷ୍ମଦେବ କହୁଅଛନ୍ତି, ଯେପରି ଏକ ସୂର୍ଯ୍ୟ ସ୍ଥାନଭେଦରେ ଓ ଦର୍ଶକଭେଦରେ ବହୁରୂପରେ ଦେଖା ଯାଆନ୍ତି ସେହିପରି ମୋର ସମ୍ମୁଖସ୍ଥ ଏହି ପରମମୋହନ ବିଗ୍ରହ ଭଗବାନ୍ ଶ୍ରୀକୃଷ୍ଣ ସ୍ୱୟଂ ଜନ୍ମରହିତ ହୋଇ ସୁଦ୍ଧା ସ୍ୱନିର୍ମିତ ଜୀବମାନଙ୍କର ପ୍ରତ୍ୟେକଙ୍କ ହୃଦୟରେ ଅଧିଷ୍ଠିତ ଥାଇ ବହୁରୂପରେ ଜଣା ଯାଆନ୍ତି । କିନ୍ତୁ ଆଜି ମୁଁ ଏହାଙ୍କ କୃପାରୁ ଏହାଙ୍କ ବ୍ୟାପକତ୍ୱ ଆଦିର ( ଅସମ୍ଭାବନାରୂପ ) ଭେଦ ଓ ( ନାନାତ୍ମ ଜ୍ଞାନରୂପ ) ମୋହଶୂନ୍ୟ ହୋଇ ଏହି ଶ୍ରୀକୃଷ୍ଣଙ୍କର ସମ୍ୟକ୍ ଦର୍ଶନ ଲାଭ କରି କୃତାର୍ଥ ହେଲି [ ୮ମ ଶ୍ଳୋକାର୍ଥ ]

ସେହି ତ ଗୋବିନ୍ଦ—ଯେଉଁ ଗୋବିନ୍ଦଙ୍କର ଅଙ୍ଗକାନ୍ତିକୁ ବ୍ରହ୍ମବାଦୀମାନେ ବ୍ରହ୍ମ ବୋଲି କହନ୍ତି, ଯାହାଙ୍କର ପୁରୁଷରୂପ ଅଂଶକୁ ଯୋଗୀମାନେ ପରମାତ୍ମା ବୋଲି କହନ୍ତି, ଯାହାଙ୍କର ପୂର୍ଣ୍ଣ ଐଶ୍ୱର୍ଯ୍ୟକୁ ଭଗବାନ୍ ବୋଲି କହନ୍ତି, ସେହି ସ୍ୱୟଂ ଭଗବାନ୍ ଗୋବିନ୍ଦ ପ୍ରପଞ୍ଚର ଅତୀତ ହୋଇ ମଧ୍ୟ ପତିତ ଜୀବମାନଙ୍କପ୍ରତି ଅପାର କରୁଣାବଶତଃ ଶ୍ରୀନବଦ୍ୱୀପଧାମରେ ଶ୍ରୀଚୈତନ୍ୟଗୋସାଇଁରୂପରେ ଅବତୀର୍ଣ୍ଣ ହୋଇ ଇନ୍ଦ୍ରିୟଗ୍ରାହ୍ୟ ହୋଇଅଛନ୍ତି । ଏହି ଶ୍ରୀକୃଷ୍ଣଚୈତନ୍ୟ ଅବତାର ଅପେକ୍ଷା ଆଉ ଅଧିକତର ଦୟାଳୁ ଅବତାର ସେ ଆଉ କେବେ ହୋଇନାହାନ୍ତି ।

ସାକ୍ଷାତ୍—ସ୍ୱୟଂ ।

ଏହାର ତାତ୍ପର୍ଯ୍ୟ ଏହି ଯେ ସ୍ୱୟଂ ଭଗବାନ୍ ଜୀବମାନଙ୍କର ମଙ୍ଗଳନିମିତ୍ତ ଅଂଶ ଓ କଳାଦ୍ୱାରା ଅବତୀର୍ଣ୍ଣ ହୋଇ ପ୍ରପଞ୍ଚର ଗୋଚରୀଭୂତ ହୁଅନ୍ତି, କେବେ କେବେ କୃପାପୂର୍ବକ ସ୍ୱୟଂ ଅବତୀର୍ଣ୍ଣ ହୋଇ ମଧ୍ୟ ସେହିପରି ପ୍ରପଞ୍ଚର ଗୋଚରୀଭୂତ ହୁଅନ୍ତି ଯଥା ମତ୍ସ୍ୟ ଓ କୂର୍ମାଦି ଅଂଶ ଓ କଳା ଅବତାର ଓ ଶ୍ରୀନନ୍ଦ-ନନ୍ଦନ ଶ୍ରୀକୃଷ୍ଣ ସ୍ୱୟଂ ଅବତାର । କିନ୍ତୁ ଏହି ଅଂଶ କଳା ଏବଂ ସ୍ୱୟଂ ଅବତାରରେ ଯେ

ପରବ୍ୟୋମେତେ ବୈସେ—ନାରାୟଣ ନାମ ।
ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଲକ୍ଷ୍ମୀକାନ୍ତ ଭଗବାନ୍ । ୧୫ ।
ବେଦ ଭାଗବତ ଉପନିଷଦ ଆଗମ ।
"ପୂର୍ଣ୍ଣତତ୍ତ୍ୱ" ଯାଁରେ କହେ—ନାହି ଯାଁର ସମ ।୧୬।

ଭକ୍ତି ଯୋଗେ ଭକ୍ତ ପାୟ ଯାଁହାର ଦର୍ଶନ ।
ସୂର୍ଯ୍ୟ ଯେନ ସବିଗ୍ରହ ଦେଖେ ଦେବଗଣ ।୧୭।
ଜ୍ଞାନ-ଯୋଗମାର୍ଗେ ତାଁରେ ଭଜେ ଯେଇ ସବ ।
ବ୍ରହ୍ମ-ଆତ୍ମାରୂପେ ତାଁରେ କରେ ଅନୁଭବ ।୧୮।

ଅନନ୍ୱିତମିହ ଶ୍ଳୋକୋକ୍ତ "ଷଡ଼ୈଶ୍ୱର୍ଯ୍ୟୈଃ ପୂର୍ଣ୍ଣୋ ଯ ଇହ ଭଗବାନ୍ ସ" ଇତ୍ୟର୍ଥମାହ "ପରବ୍ୟୋମେତେ" ଇତି । ୧୫ । ୱ, ତ,

କୌଣସି କୌଣସି ବ୍ରାହ୍ମଣ କାର୍ଯ୍ୟ ଉପଲକ୍ଷରେ ଅବତୀର୍ଣ୍ଣ ହୋଇଥିଲେ କିନ୍ତୁ ସମସ୍ତ ଜୀବମାନଙ୍କ ପ୍ରତି ସେମାନଙ୍କ ଦୟା ପ୍ରକାଶ କରିବାହିମାନଙ୍କ ଅର୍ଥାତ୍ ସେମାନଙ୍କର ମାନସିକ ଦୁଃଖ ଉଦ୍ଧାରକାରୀ ଅବତୀର୍ଣ୍ଣ ହୋଇ ନ ଥିଲେ । ସେପରି କି ସ୍ୱୟଂ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣରୂପରେ ଅବତୀର୍ଣ୍ଣ ହୋଇ କେବଳ ଭକ୍ତମାନଙ୍କ ଭାବାନୁଗା ଗତି ବିଧାନ କରିଥିଲେ କିନ୍ତୁ ତାଙ୍କଠାରୁ ମଳିନ ଜୀବମାନଙ୍କର ଉଦ୍ଧାର-ନିମିତ୍ତ କୌଣସି ପ୍ରକାର ବିଶେଷ ଆଗ୍ରହ ଦେଖାଇ ନ ଥିଲେ କିନ୍ତୁ ସେ ଏହି ଶ୍ରୀକୃଷ୍ଣଚୈତନ୍ୟ ଅବତାରରେ ସମସ୍ତ ଜୀବମାନଙ୍କୁ, ଧନୀ, ଦରିଦ୍ର, ପଣ୍ଡିତ, ମୂର୍ଖ ଓ ଜାତିଗତ ଉଚ୍ଚ ନୀଚ ବିଚାର ନ ଦେଖି, ସମସ୍ତଙ୍କ ପ୍ରତି ଏମନ୍ତ କି ସ୍ଥାବର ଜଙ୍ଗମମାନଙ୍କ ପ୍ରତି ମଧ୍ୟ ଅପାର କରୁଣା ପ୍ରକାଶପୂର୍ବକ ନାମ ପ୍ରେମ ଦାନଦ୍ୱାରା ଉଦ୍ଧାର କରିଥିଲେ । କେବଳ ଏତିକି ନୁହେଁ, ଜୀବମାନଙ୍କ ମଳିନତାରେ ଅତ୍ୟନ୍ତ କାତର ହୋଇ ସମସ୍ତଙ୍କୁ ଉଦ୍ଧାର କରିବା ନିମିତ୍ତ ସେମାନଙ୍କର ଦ୍ୱାରସ୍ଥ ହେବାର ଉପଯୋଗୀ ଅବସ୍ଥା ଅର୍ଥାତ୍ ସନ୍ନ୍ୟାସ ଗ୍ରହଣ କରି ଏହି ବିଶାଳ ଭାରତଭୂମିର ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣାଦି ପ୍ରଦେଶ ତୀର୍ଥଭ୍ରମଣଛଳରେ ଶ୍ରୀପାଦଦ୍ୱୟରେ ପରିଭ୍ରମଣ କରି ପତିତ ଜୀବମାନଙ୍କର ଦ୍ୱାରେ ଦ୍ୱାରେ ଉପସ୍ଥିତ ହୋଇ ସେମାନଙ୍କୁ ନାମ ପ୍ରେମ ଦାନ କରି କୃତାର୍ଥ କରିଥିଲେ; ଏବଂ ନିଜଦାସ-ମାନଙ୍କ ଦ୍ୱାରା ସର୍ବଦା ଏହି କାର୍ଯ୍ୟ କରାଇଥିଲେ । ଏହିହେତୁ ସ୍ୱୟଂ ଭଗବାନ୍ ଆଉ କେବେ ଏହି ପତିତ ଜୀବମାନଙ୍କ ଭାଗ୍ୟରେ ଏପରି ଦୟାଳୁ ଅବତାର ହୋଇ ନ ଥିବାରୁ, ଶ୍ରୀକବିରାଜ ଗୋସ୍ୱାମୀ "ଦୟାଳୁ ଆଉ ନାହିଁ" ଏହି ବାକ୍ୟଦ୍ୱାରା ପ୍ରକାଶ କରିଅଛନ୍ତି । ୧୪ ।

ଏଥିପୂର୍ବେ ୮ମ ଓ ୧୨ ଶାଦ ପୟାରମାନଙ୍କରେ ବ୍ରହ୍ମ ଓ ପରମାତ୍ମାବିଷୟ ନିରୂପଣ କରି ଏହି ପଦ ଓ ପରବର୍ତ୍ତୀ ପଦମାନଙ୍କଦ୍ୱାରା ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଭଗବାନଙ୍କ ବିଷୟ ନିରୂପଣ କରୁଅଛନ୍ତି । ବ୍ରହ୍ମ, ପରମାତ୍ମା ଓ ଭଗବାନ୍ ଏ ତିନି ଶ୍ରୀକୃଷ୍ଣଙ୍କର ସ୍ୱରୂପ ଏବଂ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଅଟନ୍ତି । ଏହା ପରବର୍ତ୍ତୀ ପୟାରମାନଙ୍କଦ୍ୱାରା ବୁଝାଇଅଛନ୍ତି । ପରବ୍ୟୋମନାଥ ନାମ ନାରାୟଣ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଲକ୍ଷ୍ମୀକାନ୍ତହିଁ ଭଗବାନ୍ ଅଟନ୍ତି । ୧୫ ।

ଯେଉଁ ଭଗବାନଙ୍କୁ ବେଦ, ଭାଗବତ, ଉପନିଷଦ, ଆଗମ, ପୁରାଣମାନେ "ପୂର୍ଣ୍ଣତତ୍ତ୍ୱ" ବୋଲି ନିରୂପଣ କରିଅଛନ୍ତି ଏବଂ ତାହାଙ୍କ ତୁଲ୍ୟ ଦ୍ୱିତୀୟ ନାହାନ୍ତି ବୋଲି କହିଅଛନ୍ତି । ଏହି ଭଗବାନଙ୍କୁ ପୂର୍ବୋକ୍ତ ସାଧନହେତୁ ଭକ୍ତିଯୋଗଦ୍ୱାରା ଭକ୍ତମାନେ ଦର୍ଶନ କରନ୍ତି ଅର୍ଥାତ୍ ପୂର୍ବେ କହିଅଛନ୍ତି ଯେ ବ୍ରହ୍ମଦର୍ଶୀମାନେ ବ୍ରହ୍ମଙ୍କୁ ନିର୍ବିଶେଷ ଜ୍ୟୋତିରୂପରେ ଅନୁଭବ କରନ୍ତି ଏବଂ ଅଷ୍ଟାଙ୍ଗ-ଯୋଗୀମାନେ ପରମାତ୍ମାଙ୍କୁ ପ୍ରତିବିମ୍ବରୂପରେ ଅନୁଭବ କରନ୍ତି କିନ୍ତୁ ବିଧିମାର୍ଗାବଲମ୍ବୀ ଭକ୍ତମାନେ ଭଗବାନଙ୍କ ସ୍ୱରୂପ ଦର୍ଶନ କରନ୍ତି । ଏ ହେତୁ ଏ ତିନିପ୍ରକାର ଉପାସନାରେ ଉପମାସ୍ୱରୂପ ସୂର୍ଯ୍ୟଙ୍କୁ ଉପମା ଦେଇଅଛନ୍ତି । ଯେପରି ଦେବତାମାନେ ସୂର୍ଯ୍ୟଙ୍କର କରଚରଣାଦିସମନ୍ୱିତ ବିଗ୍ରହ ଦର୍ଶନ କରନ୍ତି, ସେହିପରି ଭକ୍ତମାନେ ଶ୍ରୀମନ୍ନାରାୟଣଙ୍କର ବିଗ୍ରହ ଦର୍ଶନ କରନ୍ତି । ୧୬ । ୧୭ ।

ଉପାସନାଭେଦେ ଜାନ ଈଶ୍ୱର-ମହିମା ।
ଅତଏବ ସୂର୍ଯ୍ୟ ତାଁର ଦିଏତ ଉପମା ॥ ୧୯ ॥
ସେଇ ନାରାୟଣ—କୃଷ୍ଣେର ସ୍ୱରୂପ-ଅଭେଦ ।
ଏକଇ ବିଗ୍ରହ, କିନ୍ତୁ ଆକାର-ବିଭେଦ ॥ ୨୦ ॥
ଇହୋଁ ତ ଦ୍ୱିଭୁଜ, ତିହୋଁ ଧରେ ଚାରି ହାତ ।
ଇହୋଁ ବେଣୁ ଧରେ, ତିହୋଁ ଚକ୍ରାଦିକ-ସାଥ ॥ ୨୧ ॥

ତଥାହି (ଭାଃ ୧୦।୧୪।୧୪)—

ନାରାୟଣସ୍ତ୍ୱଂ ନ ହି ସର୍ବଦେହିନା-
ମାତ୍ମାସ୍ୟଧୀଶାଖିଲଲୋକସାକ୍ଷୀ ।
ନାରାୟଣୋଽଙ୍ଗଂ ନରଭୂଜଳାୟନା-
ତ୍ତଚ୍ଚାପି ସତ୍ୟଂ ନ ତବୈବ ମାୟା ॥ ୫ ॥ *

ଭକ୍ତାନୁଯାୟୀ ତଂ ଏକରୂପମେବ ଅନୁଭବନ୍ତି ଇତ୍ୟାଶଙ୍କ୍ୟ ନିରାକରୋତି "ଉପାସନା" ଇତି । ନ ତେଷାଂ ଏକରୂପ ଏବାନୁଭବଃ ଉପାସନାଭେଦେନୈବ ଈଶ୍ୱରମହିମଜ୍ଞାନଭେଦାତ୍; ଯସ୍ୟ ଯାଦୃଶୀ ଉପାସନା ତସ୍ୟ ତାଦୃଗ୍ ଅନୁଭବଃ ଇତି ଭାବଃ । ଅତଏବ ସୂର୍ଯ୍ୟୋପମା ସଙ୍ଗଚ୍ଛତେ ଏତେନ ଭକ୍ତୈଶ୍ୱର୍ଯ୍ୟାନୁଭବାତ୍ମକ୍ୟମିତି ଯାବତ୍ ॥ ୧୯ ॥ ଚ, ଚ,

"ଶତ୍ରୋର୍ନୈରୈଷଃ ପୂର୍ଣ୍ଣୋ ନ ଇହ ଭଗବାନ୍" ଇତ୍ୟସ୍ୟାର୍ଥମୁପସଂହରତି "ସେଇ" ଇତି ॥ ୨୦ ॥ ଚ, ଚ,

ତଦ୍ଭେଦମାହ "ଇହୋଁ ତ" ଇତି ॥ ୨୧ ॥ ଚ, ଚ,

ସର୍ବଦେହିନାମାତ୍ମା ଅପି ତ୍ୱଂ ନାରାୟଣଃ (ନାରଂ ଜୀବସମୂହଃ ଅୟନଂ ଆଶ୍ରୟଃ ଯସ୍ୟ ସଃ) ନ ହି (କିଂ) ଅଧୀଶଃ, (ଅଧୀଶଃ ପ୍ରବର୍ତ୍ତକଃ ତ୍ୱଂ—ନାରାୟଣଃ ନାରସ୍ୟ ଅୟନଂ ପ୍ରବୃତ୍ତିଃ ଯସ୍ମାତ୍ ସଃ । ଯଦ୍ୱା ନାରାଣାଂ ଚତୁର୍ବିଂଶତି ତତ୍ତ୍ୱାନାଂ ଅୟନଂ ପ୍ରବର୍ତ୍ତକଃ ଯଃ ସଃ ନ ହି) ଅଖିଲଲୋକସାକ୍ଷୀ (ତ୍ୱଂ ନାରାୟଣଃ ନାରଂ ଅୟସେ ଜାନାସି ଯଃ ସଃ । ଯଦ୍ୱା ନାରଂ—ଜୀବସମୂହଂ ଅୟତେ ଜାନାତି ସାକ୍ଷାତ୍ ପଶ୍ୟତି ଯଃ ସଃ ନହି) । ନର ଭୂ ଜଲାୟନାତ୍ (ନରଃ ପରମାତ୍ମା ତସ୍ମାତ୍ ଉଦ୍ଭୂତାଃ ଯେ ଅର୍ଥାଃ ଚତୁର୍ବିଂଶତିତତ୍ତ୍ୱାନି ତଥା ନରାତ୍ ଜାତଂ ଯତ୍ ଜଲଂ ତଦୟନାତ୍ ଯଃ ପ୍ରସିଦ୍ଧଃ) ନାରାୟଣଃ (ସଃ ଅପି ତବ ଏବ) ଅଙ୍ଗମ୍ (ମୂର୍ତ୍ତି ନ ତୁ ତ୍ୱତ୍ତଃ ଭିନ୍ନଃ) ତତ୍ ଚ (ତଥା ସତ୍ୟପି ଜଲସ୍ୟ ଅପି) ସତ୍ୟଂ (ଯଥାର୍ଥଂ ନ ଭବତି କିନ୍ତୁ) ତବ ମାୟା (ଲୀଳା) ଏବ । (ଯଦ୍ୱା ତତ୍ ଚ ତବ ଅଙ୍ଗମ୍ ସତ୍ୟଂ ଏବ ନ ତୁ ମାୟାମାୟିକଂ ଇତି [୫ମ ଶ୍ଳୋକଃ]

---

ସେହି ଭଗବାନଙ୍କୁ ଯେଉଁମାନେ ଜ୍ଞାନମାର୍ଗରେ ଓ ଯୋଗମାର୍ଗରେ ଭଜନ କରନ୍ତି, ସେମାନେ ତାହାଙ୍କୁ ବ୍ରହ୍ମ ଓ ପରମାତ୍ମାରୂପେ ଅନୁଭବ କରନ୍ତି ॥ ୧୮ ॥

ଭକ୍ତ ଉପାସନାପଦ୍ଧତି ଅନୁଯାୟୀ ଭଗବାନଙ୍କର ମହିମା ବିଭିନ୍ନଭାବରେ ଜଣାଯାଏ । ସେହି ହେତୁ ଗ୍ରନ୍ଥକାର ତାଙ୍କୁ ସୂର୍ଯ୍ୟଙ୍କ ସହିତ ଉପମା ଦେଇଅଛନ୍ତି ॥ ୧୯ ॥

ସେହି ଭଗବାନ୍ ନାରାୟଣ ଶ୍ରୀକୃଷ୍ଣଙ୍କର (ଶ୍ରୀଗୋବିନ୍ଦଙ୍କର) ଅଭେଦସ୍ୱରୂପ ଅର୍ଥାତ୍ ଶ୍ରୀକୃଷ୍ଣ ଓ ନାରାୟଣଙ୍କ ସ୍ୱରୂପରେ କୌଣସି ପାର୍ଥକ୍ୟ ନାହିଁ । ଅତଏବ ଏକ ଶ୍ରୀବିଗ୍ରହ ଅଟନ୍ତି କିନ୍ତୁ ଆକାରଗତ ପାର୍ଥକ୍ୟ ଅଛି ॥ ୨୦ ॥

ଇହୋଁ—ଏହି (ଶ୍ରୀକୃଷ୍ଣ) ଆକାରଗତ ଦ୍ୱିଭୁଜ ଏବଂ ବେଣୁଧାରୀ ଅଟନ୍ତି ।

ତିହୋଁ—ସେ (ନାରାୟଣ) ଆକାରଗତ ଚତୁର୍ଭୁଜ ଏବଂ ଶଙ୍ଖଚକ୍ରଗଦାପଦ୍ମଧାରୀ ଅଟନ୍ତି ॥ ୨୧ ॥

ବ୍ରହ୍ମା ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି—ଆପଣ ଦେହୀମାନଙ୍କର ପରମାତ୍ମା ହେତୁ ଆପଣ କି ନାରାୟଣ ନୁହନ୍ତି ? କାରଣ ନାରଶବ୍ଦର ଅର୍ଥ ଜୀବସମୂହ, ଅୟନଶବ୍ଦର ଅର୍ଥ ଆଶ୍ରୟ, ଜୀବସମୂହଙ୍କର

| ଅନ୍ୱୟାର୍ଥଃ— | ତୋମାର ନାଭିପଦ୍ମ ହୈତେ ଆମାର ଜନ୍ମୋଦୟ । |
|---|---|
| | ତୁମି ପିତା-ମାତା—ଆମି ତୋମାର ତନୟ ।୨୩। |
| ଶିଶୁ-ବତ୍ସ ହରି ବ୍ରହ୍ମା କରି ଅପରାଧ । | ପିତା-ମାତା ବାଲକେର ନା ଲୟ ଅପରାଧ । |
| ଅପରାଧ କ୍ଷମାଇତେ ମାଗେନ ପ୍ରସାଦ— । ୨୨ । | ଅପରାଧ କ୍ଷମ—ମୋରେ କରହ ପ୍ରସାଦ ।୨୪। |

ଯେ ଆଶ୍ରୟ ସେହି ପରମାତ୍ମାହିଁ ନାରାୟଣଶବ୍ଦବାଚ୍ୟ ଅତଏବ ଆପଣ ପରମାତ୍ମା ହେତୁ ନାରାୟଣ ଅଟନ୍ତି । ପୁଣି ଆପଣ ଅଧୀଶ୍ୱର ଅର୍ଥାତ୍ ସର୍ବପ୍ରବର୍ତ୍ତକ ହେତୁ ନାରାୟଣ ଅଟନ୍ତି । କାରଣ ନାରଶବ୍ଦର ଅର୍ଥ ଜୀବସମୂହ ବା ତତ୍ତ୍ୱସମୂହ, ସେହିର ପ୍ରବର୍ତ୍ତକ ଈଶ୍ୱରଙ୍କୁ ନାରାୟଣ କୁହାଯାଏ । ପୁଣି ଆପଣ ସର୍ବଲୋକସାକ୍ଷୀ ହେତୁ ନାରାୟଣ ଅଟନ୍ତି, କାରଣ ଯେ ଲୋକସମୂହକୁ ଜାଣନ୍ତି ବା ସାକ୍ଷାତ୍ ଦର୍ଶନ କରନ୍ତି ତାହାଙ୍କୁ ନାରାୟଣ କୁହାଯାଏ । ପୁଣି ନର ଅର୍ଥାତ୍ ପରମାତ୍ମାଙ୍କ-ଠାରୁ ଉଦ୍ଭୂତ ଯେ ଚତୁର୍ବିଂଶ ତତ୍ତ୍ୱ ( ଜୀବ, ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍, ଜିହ୍ୱା, ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ, ) ଏବଂ ସେଥିରୁ ଜାତ ଯେ ଜଳ ଏହି ଦୁଇଟି ଯାହାଙ୍କର ଆଶ୍ରୟ ସେହି ପ୍ରସିଦ୍ଧ ନାରାୟଣ ଆପଣଙ୍କର ଅଂଶ ଅର୍ଥାତ୍ ମୂର୍ତ୍ତିବିଶେଷ, ଏ ହେତୁ ସେ ଆପଣଙ୍କଠାରୁ ଭିନ୍ନ ନୁହନ୍ତି । ତେବେ ସେହି ନାରାୟଣଙ୍କର ଯେ ତାଦୃଶ ପରିଚ୍ଛିନ୍ନତ୍ୱ ତାହା ସତ୍ୟ ନୁହେଁ; କେବଳ ଆପଣଙ୍କର ଲୀଳା ଅଟେ । ଅଥବା ନାରାୟଣରୂପ ଆପଣଙ୍କର ସେହି ମୂର୍ତ୍ତି ସତ୍ୟ ଅଟେ । ତାହା ମାୟିକ ନୁହେ [ ୧ମ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣଙ୍କର ଶ୍ରୀ ବୃନ୍ଦାବନଲୀଳାରେ ଗୋପବାଳକମାନଙ୍କ ସହିତ କ୍ରୀଡ଼ା ଭୋଜନାଦି ଏବଂ ଗୋବତ୍ସଚାରଣାଦି ଦର୍ଶନ କରି ବ୍ରହ୍ମାଙ୍କର ମନରେ ସନ୍ଦେହ ହୋଇଥିଲା ଯେ ଏହି ଗୋପବାଳକ ଶ୍ରୀକୃଷ୍ଣ କି ସେହି ଭଗବାନ୍, ଯେ କି ପୃଥିବୀର ଭାରନାଶକାରଣ ଅବତୀର୍ଣ୍ଣ ହେବାନିମିତ୍ତ ପ୍ରତିଶ୍ରୁତ ହୋଇଥିଲେ । ଏହା ନିଶ୍ଚୟ ଜାଣିବା କାରଣ ବ୍ରହ୍ମା ଆପଣାର ମାୟାଦ୍ୱାରା ଗୋପବାଳକମାନଙ୍କୁ ଏବଂ ଗୋବତ୍ସମାନଙ୍କୁ ହରଣ କରି ନେଇଗଲେ । କିଛିକ୍ଷଣ ପରେ ପୁନରାୟ ବ୍ରହ୍ମା ଫେରିଆସି ଦେଖିଲେ ଯେ ଶ୍ରୀକୃଷ୍ଣ ପୂର୍ବବତ୍ ଗୋପବାଳକ ଓ ଗୋବତ୍ସମାନଙ୍କ ସମଭିବ୍ୟାହାରରେ ରହିଅଛନ୍ତି । ଏହା ଦେଖି ବ୍ରହ୍ମା ଅତି ବିସ୍ମିତ ହୋଇ ରହିଲେ । ପୁନରାୟ ଏହିପରି ଦେଖୁ ଦେଖୁ ଦେଖିଲେ ଯେ ଆଉ ଗୋପବାଳକ ଓ ଗୋବତ୍ସମାନେ ନାହାନ୍ତି । ତତ୍ ସ୍ଥାନରେ ଅଗଣିତ ବୈକୁଣ୍ଠ ସେମାନଙ୍କ ଅଧୀଶ୍ୱର ନାରାୟଣଙ୍କ ସହ ଓ ବ୍ରହ୍ମା ରୁଦ୍ରାଦି ଦିକ୍‌ପାଳସମନ୍ୱିତ ଅନନ୍ତକୋଟି ବ୍ରହ୍ମାଣ୍ଡମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ରହିଅଛନ୍ତି ଓ ସମସ୍ତେ ଶ୍ରୀକୃଷ୍ଣଙ୍କୁ ପ୍ରଣାମସ୍ତୁତି କରୁଅଛନ୍ତି; ଏହା ଦର୍ଶନ କରି ବ୍ରହ୍ମା ମୋହପ୍ରାପ୍ତ ହେଲେ; ମୋହନାଶ ପରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ତାହାଙ୍କଠାରେ ଆପଣାକୃତ ଅପରାଧଭୟରେ ବ୍ରହ୍ମା ଭୀତ ହୋଇ ଅପରାଧ କ୍ଷମାକାରଣ ଶ୍ରୀକୃଷ୍ଣଙ୍କର ଅନୁଗ୍ରହପ୍ରାର୍ଥୀ ହୋଇ ସ୍ତୁତି କରିଥିଲେ । ଉପରୋକ୍ତ ଶ୍ଳୋକଟି ବ୍ରହ୍ମସ୍ତବ ଶ୍ଳୋକମାନଙ୍କ ମଧ୍ୟରେ ଗୋଟିଏ ଅଟେ ଏବଂ ଗ୍ରନ୍ଥକର୍ତ୍ତା ସେହିର ଭାବାର୍ଥ ନିମ୍ନ କେତେକ ପଦ୍ୟାଦିଦ୍ୱାରା ବର୍ଣ୍ଣନ କରିଅଛନ୍ତି । ୨୨ ।

ବ୍ରହ୍ମା କହିଲେ ହେ ଶ୍ରୀକୃଷ୍ଣ ! ମୁଁ ଆପଣଙ୍କର ନାଭିପଦ୍ମରୁ ଜନ୍ମ ହୋଇଅଛି ତେଣୁ ଆପଣ ମୋର ପିତା ଏବଂ ମାତା ଅଟନ୍ତି । ପ୍ରାକୃତ ପିତାମାତାମାନେ ଯେପରି ନିଜ ସନ୍ତାନର ଅପରାଧ ଦେଖିଲେ ପୁଣ୍ଟା ତାକୁ ଅପରାଧଭାବରେ ଗ୍ରହଣ ନ କରି ସ୍ୱାଭାବିକ କ୍ଷମା କରିଥାଆନ୍ତି ଆପଣ ମଧ ତଦ୍ରୂପ ମୋର ଅପରାଧ କ୍ଷମା କରି ମୋ ପ୍ରତି ଅନୁଗ୍ରହ ପ୍ରକାଶ କରନ୍ତୁ । ୨୩ । ୨୪ ।

କୃଷ୍ଣ କହେନ—ବ୍ରହ୍ମା ତୋମାର ପିତା ନାରାୟଣ ।
ଆମି ଗୋପ, ତୁମି କୈଛେ ଆମାର ନନ୍ଦନ ? ।୨୫।
ବ୍ରହ୍ମା ବଲେନ—ତୁମି କି ନା ହଓ ନାରାୟଣ ? ।
ତୁମି ନାରାୟଣ, ଶୁନ ତାହାର କାରଣ— ।୨୬।
ପ୍ରାକୃତାପ୍ରାକୃତ-ସୃଷ୍ଟ୍ୟେ ଯତ ଜୀବ-ରୂପ ।
ତାହାର ଯେ ଆତ୍ମା ତୁମି ମୂଲ-ସ୍ୱରୂପ ।୨୭।
ପୃଥ୍ୱୀ ଯୈଛେ ଘଟକୁଲେର କାରଣ-ଆଶ୍ରୟ ।
ଜୀବେର ନିଦାନ ତୁମି—ତୁମି ସର୍ବାଶ୍ରୟ ।୨୮।

'ନାର'-ଶବ୍ଦେ କହେ ସର୍ବ ଜୀବେର ନିଚୟ ।
'ଅୟନ'-ଶବ୍ଦେତେ କହେ ତାହାର ଆଶ୍ରୟ ।୨୯।
ଅତଏବ ତୁମି ହଓ ମୂଲ ନାରାୟଣ ।
ଏଇ ଏକ ହେତୁ, ଶୁନ ଦ୍ୱିତୀୟ କାରଣ— ।୩୦।
ଜୀବେର ଈଶ୍ୱର—ପୁରୁଷାଦି ଅବତାର ।
ତାହା-ସବା ହୈତେ ତୋମାର ଐଶ୍ୱର୍ଯ୍ୟ ଅପାର ।୩୧।
ଅତଏବ ଅଧୀଶ୍ୱର ତୁମି ସର୍ବପିତା ।
ତୋମାର ଶକ୍ତିତେ ତାରା ଜଗତ-ରକ୍ଷିତା ।୩୨।

" ନାରାୟଣସ୍ତ୍ୱଂ ନହି " ଇତ୍ୟସ୍ୟାର୍ଥମାହ "ବ୍ରହ୍ମା କହେ" ଇତି ।୨୬। ବ, ଚ,

ତତ୍ର ପ୍ରଥମ-ହେତୁଃ " ସର୍ବଦେହିନାମାତ୍ମାସି " ଇତ୍ୟସ୍ୟାର୍ଥମାହ " ପ୍ରାକୃତାପ୍ରାକୃତ " ଇତି ।୨୭। ବ, ଚ,

ତତ୍ର ଦୃଷ୍ଟାନ୍ତମାହ " ପୃଥ୍ୱୀତି " ।୨୮। ବ, ଚ,

ତତ୍ର ନାରାୟଣପଦବ୍ୟୁତ୍ପତ୍ତ୍ୟା ତଦ୍ୟାର୍ଥମାହ " ନାରଶବ୍ଦେ " ଇତି । ନାରାଣାଂ ଜୀବାନାଂ ସମୂହଃ ନାରଃ ତସ୍ୟ ଅୟନଂ ଆଶ୍ରୟଃ ଇତି ନାରାୟଣଃ । ସର୍ବଜୀବାଶ୍ରୟ ଇତ୍ୟର୍ଥଃ ।୨୯। ବ, ଚ,

ଘଟକାରଣାଶ୍ରୟଃ ଭୂଖଣ୍ଡାନାଂ ପୃଥ୍ୱୀବତ୍ ବସ୍ତୁ ପ୍ରକୃତି ନାରାୟଣାନାମପି କାରଣାଶ୍ରୟତ୍ୱେନ ତନ୍ମୂଲତ୍ୱାତ୍ ତ୍ୱଂ ମୂଲନାରାୟଣ ଇତି ଭାବଃ ।୩୦। ବ, ଚ,

ଅଥ ଦ୍ୱିତୀୟହେତୋଃ " ଅଧୀଶ୍ୱର " ଇତ୍ୟସ୍ୟାର୍ଥେ ପ୍ରଥମଂ ତାବତ୍ " ଈଶ୍ୱର " ଇତି ପଦସ୍ୟାର୍ଥମାହ " ଜୀବେର " ଇତି । " ଅଧି " ଇତ୍ୟସ୍ୟାର୍ଥମାହ " ତା ସବା " ଇତି । ତେଭ୍ୟ ପୁରୁଷାଦ୍ୟ-ବତାରେଭ୍ୟଃ ତବ ଅପାରମୈଶ୍ୱର୍ଯ୍ୟଂ ।୩୧। ବ, ଚ,

ଅଥ ତଥା ଈଶ୍ୱର ଇତ୍ୟୁଭୟ-ଯୋଗେନ ତଦ୍ୟାର୍ଥମାହ " ଅତଏବ " ଇତି । ଅପାର ଐଶ୍ୱର୍ଯ୍ୟତ୍ୱେନ ତ୍ୱମେବ ଅଧୀଶ୍ୱରଃ ଅସ୍ୟାର୍ଥଃ "ସର୍ବପିତା" ସର୍ବେଷାଂ ଜୀବାନାଂ ପିତା ପାଳକ ଇତ୍ୟର୍ଥଃ । ନନୁ ପୁରୁଷାଦ୍ୟବତାର ଏବ ଜଗଦ୍ରକ୍ଷିତାର ଇତ୍ୟତ୍ର ତତ୍ର କଥମିତ୍ୟତ ଆହ " ତୋମାର " ଇତି । ତ୍ୱଚ୍ଛକ୍ତ୍ୟୈବ ଯତସ୍ତେ ଜଗତ୍-ରକ୍ଷିତାରଃ ଅତସ୍ତ୍ୱଂ ମୂଳ ଏବ ତଦ୍ରକ୍ଷିତା ପାଳକ ଇତ୍ୟର୍ଥଃ ।୩୨। ବ, ଚ,

ବ୍ରହ୍ମାଙ୍କର ପ୍ରାର୍ଥନା ଶୁଣି ଶ୍ରୀକୃଷ୍ଣ କହିଲେ ହେ ବ୍ରହ୍ମନ୍ ! ତୁମ୍ଭେ ଯାହାଙ୍କର ନାଭିପଦ୍ମରୁ ଜନ୍ମ ହୋଇଅଛ ସେ ନାରାୟଣ, ମୁଁ ଗୋପ, ତୁମ୍ଭେ କିପରି ମୋର ପୁତ୍ର ହେଲ ? ।୨୫।

ବ୍ରହ୍ମା କହିଲେ ହେ ଶ୍ରୀକୃଷ୍ଣ ! ମୋର ପିତା ନାରାୟଣ ଏ କଥା ସତ୍ୟ କିନ୍ତୁ ଆପଣ ମଧ୍ୟ ନାରାୟଣ ଅଟନ୍ତି ଏବଂ ତେଣୁ ମୁଁ ଆପଣଙ୍କୁ ଯେ ପିତା ମାତା ବୋଲି ସମ୍ବୋଧନ କରିଅଛି ତାହା ମଧ୍ୟ ସତ୍ୟ ଅଟେ । ଆପଣ କିପରି ନାରାୟଣ ଅଟନ୍ତି ତାହାର କାରଣ କହୁଅଛି ଶୁଣିବା ହେଉନ୍ତୁ । ପ୍ରାକୃତ ଅର୍ଥାତ୍ ମାୟାବଲମ୍ବିତ ବ୍ରହ୍ମାଣ୍ଡଗଣ ଏବଂ ଅପ୍ରାକୃତ ଅର୍ଥାତ୍ ମାୟାତୀତ ବୈକୁଣ୍ଠାଦିଧାମରୂପ ସୃଷ୍ଟି-ମଧ୍ୟରେ ଯେତେ ଜୀବ ବାସ କରନ୍ତି ସେମାନଙ୍କର ଆପଣ ମୂଳସ୍ୱରୂପ ପରମାତ୍ମା ଅଟନ୍ତି ଅର୍ଥାତ୍ ଆଦିକାରଣ ଓ ଆଶ୍ରୟ ଅଟନ୍ତି ତାହାର ଉପମା ଯଥା—

ଯେପରି କି ପୃଥ୍ୱୀ ଅର୍ଥାତ୍ ମାଟିରୁ ମୃଣ୍ମୟ ଘଟ ସମସ୍ତ ହୁଅନ୍ତି ଏବଂ ମାଟିରେ ରହନ୍ତି, ସେହିପରି ଆପଣ ଜୀବମାନଙ୍କର ନିଦାନ ଅର୍ଥାତ୍ ମୂଳକାରଣ ଅଟନ୍ତି ଏବଂ ସର୍ବାଶ୍ରୟ ମଧ୍ୟ ଅଟନ୍ତି ଅର୍ଥାତ୍ ଆପଣଙ୍କ ବ୍ୟତୀତ ଜୀବର କୌଣସି ସ୍ୱାତନ୍ତ୍ର୍ୟ ନାହିଁ ।

ନାରେର ଅୟନ ଯାତେ କରହ ପାଳନ ।
ଅତଏବ ହଓ ତୁମି ମୂଳ ନାରାୟଣ । ୩୩ ।
ତୃତୀୟ କାରଣ ଶୁନ ଶ୍ରୀଭଗବାନ୍ !—
ଅନନ୍ତ ବ୍ରହ୍ମାଣ୍ଡେ ବହୁ ବୈକୁଣ୍ଠାଦି ଧାମ । ୩୪ ।
ଇଥେ ଯତ ଜୀବ,—ତାର ତ୍ରୈକାଳିକ କର୍ମ୍ମ ।
ତାହା ଦେଖ, ସାକ୍ଷୀ ତୁମି, ଜାନ ସବ ମର୍ମ୍ମ । ୩୫ ।
ତୋମାର ଦର୍ଶନେ ସର୍ବଜଗତେର ସ୍ଥିତି ।
ତୁମି ନା ଦେଖିଲେ କାର ନାହିଁ ସ୍ଥିତି-ଗତି । ୩୬ ।
ନାରେର ଅୟନ ଯାତେ କର ଦରଶନ ।
ତାହାତେଓ ହଓ ତୁମି ମୂଳ ନାରାୟଣ । ୩୭ ।
କୃଷ୍ଣ କହେନ—ବ୍ରହ୍ମା ତୋମାର ନା ବୁଝି ବଚନ ।
ଜୀବହୃଦି ଜଲେ ବୈସେ, ସେ-ଇ ନାରାୟଣ । ୩୮ ।

ତତ୍ର ନାରାୟଣଶବ୍ଦସ୍ୟାର୍ଥମାହ " ନାରେର " ଇତି । ଅତ୍ର ଅୟନଶବ୍ଦଃ ପାଳନାର୍ଥଃ ଇତି ପୂର୍ବସ୍ମାତ୍ ବିଶେଷଃ । ପୁରୁଷାଦିନାରାୟଣେଭ୍ୟଃ ଅଧିକୈଶ୍ୱର୍ଯ୍ୟତ୍ୱାତ୍ ବା ମୂଳପାଳକତ୍ୱାତ୍ ତ୍ୱଂ ମୂଳ ନାରାୟଣ ଇତି ଭାବଃ । ୩୩ । ବି, ଚ,

ତତ୍ର ତୃତୀୟ ହେତୋଃ " ଅଖିଳ ଲୋକସାକ୍ଷୀ " ଇତ୍ୟସ୍ୟାର୍ଥମାହ " ଅନନ୍ତ " ଇତି ।
୩୪ । ୩୫ । ବି, ଚ,

ତଦ୍ଦର୍ଶନେ କାରଣମାହ " ତୋମାର " ଇତି । ତଦ୍ଦୃଷ୍ଟ୍ୟଭାବେ ତେଷାଂ ଜୀବାନାଂ ସ୍ଥିତିଗତୀ ନସ୍ତଃ ଅତସ୍ତ୍ୱଂ ପଶ୍ୟସି । ୩୬ । ବି, ଚ,

ତତ୍ର " ନାରାୟଣ " ଶବ୍ଦସ୍ୟାର୍ଥମାହ "ନାରେର" ଇତି । ଅତ୍ର ଅୟନ ଶବ୍ଦଃ ଦର୍ଶନାର୍ଥଃ ଇତି ପୂର୍ବସ୍ମାତ୍ ବିଶେଷଃ । ପୁରୁଷାଦି—ନାରାୟଣଦୃଷ୍ଟିସଦ୍ଭାବେଽପି ତ୍ୱଦ୍ଦୃଷ୍ଟ୍ୟଭାବେନ ଜୀବାନାଂ ଯତଃ ସ୍ଥିତିଗତୀ ନସ୍ତଃ ଅତସ୍ତ୍ୱଂ ମୂଳ ନାରାୟଣଃ ଇତି ଭାବଃ । ୩୭ । ବି, ଚ,

ନାର ଶବ୍ଦର ଅର୍ଥ ଜୀବସମୂହ, ଅୟନ ଶବ୍ଦର ଅର୍ଥ ସେମାନଙ୍କର ଆଶ୍ରୟ ଏହିହେତୁ ଆପଣ ମୂଳ ନାରାୟଣ ଅଟନ୍ତି ଅର୍ଥାତ୍ ଅଂଶୀ ନାରାୟଣ ଅଟନ୍ତି । ଆପଣ ଯେ ନାରାୟଣ ଏହାର ଏ ଗୋଟିଏ କାରଣ । ପୁଣି ଦ୍ୱିତୀୟ କାରଣ କହୁଅଛି ଶୁଣିବା ହେଉନ୍ତୁ । ୨୬ ରୁ ୩୦ ।

ବ୍ରହ୍ମାଣ୍ଡାନ୍ତର୍ଗତ ଜୀବମାନଙ୍କର ଅନ୍ତର୍ଯାମୀ ଓ ପାଳନକର୍ତ୍ତା ଯେ ପୁରୁଷ ଓ ଗୁଣାବତାରମାନେ ଈଶ୍ୱରନାମରେ ପରିଚିତ, ସେମାନଙ୍କଠାରୁ ଆପଣଙ୍କର ଐଶ୍ୱର୍ଯ୍ୟ ଅପାର ଅବା ଅସୀମ । ଏହିହେତୁ ଆପଣ ସେମାନଙ୍କର ଅଧୀଶ୍ୱର, ଆପଣ ସେମାନଙ୍କର ଅଂଶୀହେତୁ ସେମାନଙ୍କର ପିତା ଏବଂ ଆପଣଙ୍କ ଦତ୍ତ ଶକ୍ତିଦ୍ୱାରା ସେମାନେ ଜଗତ ରକ୍ଷା କରୁଅଛନ୍ତି । ଅତଏବ " ନାର " ଅର୍ଥାତ୍ ଜୀବମାନଙ୍କ " ଅୟନ " ଅର୍ଥାତ୍ ପାଳନକର୍ତ୍ତାହେତୁ ଆପଣ ମୂଳ ନାରାୟଣ । ୩୧—୩୩ ।

ହେ ଭଗବନ୍ ! ଆପଣ ଯେ ନାରାୟଣ ତାହାର ତୃତୀୟ କାରଣ କହୁଅଛି ଶୁଣିବା ହେଉନ୍ତୁ । ଅଶେଷ ବ୍ରହ୍ମାଣ୍ଡ ଓ ଅଶେଷ ବୈକୁଣ୍ଠାଦିଧାମମାନଙ୍କରେ ଯେତେ ଜୀବ ଅଛନ୍ତି ସେମାନଙ୍କର ତ୍ରୈକାଳିକ ( ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ) କାର୍ଯ୍ୟାବଳୀକୁ ଆପଣ ଦେଖନ୍ତି ସେହିହେତୁ ଆପଣ ସର୍ବସାକ୍ଷୀ ଅଟନ୍ତି ଏବଂ ସେ କାର୍ଯ୍ୟାବଳୀର ମର୍ମ୍ମ ମଧ୍ୟ ଆପଣ ଅବଗତ ହୁଅନ୍ତି ( ଅର୍ଥାତ୍ ଆପଣ ସର୍ବଜ୍ଞ ଅଟନ୍ତି ) । ଆପଣ ସର୍ବସାକ୍ଷୀରୂପରେ ଦେଖୁଥିବାରୁ ସର୍ବବିଧ ଜଗତ ରହିଅଛି; ଆପଣ ନ ଦେଖିଲେ ସେମାନଙ୍କର ଅବସ୍ଥିତି ରହିବନାହିଁ କିମ୍ବା ଗତି କ କ୍ରିୟାଶକ୍ତି ହେବନାହିଁ । ଅତଏବ " ନାର " ( ସର୍ବଜଗତସ୍ଥ ଜୀବମାନଙ୍କ ) " ଅୟନ " ( ଦର୍ଶକ ) ହେତୁ ଆପଣ ମଧ୍ୟ ମୂଳ ନାରାୟଣ ଅଟନ୍ତି । ୩୪—୩୭ ।

ବ୍ରହ୍ମାଙ୍କର ଏପ୍ରକାର କଥା ଶୁଣି ଶ୍ରୀକୃଷ୍ଣ କହିଲେ ହେ ବ୍ରହ୍ମନ୍ ! ତୁମ୍ଭର କଥା ମୁଁ କିଛି ବୁଝିପାରୁନାହିଁ । ତୁମ୍ଭେ ଯେଉଁ ନାରାୟଣମାନଙ୍କ ବିଷୟ କହିଲ ସେମାନେ ଜୀବମାନଙ୍କ ହୃଦୟରେ

ବ୍ରହ୍ମା କହେ—ଜଳେ ଜୀବେ ଯେଇ ନାରାୟଣ ।
ସେ-ସବ ତୋମାର ଅଂଶ, ଏ ସତ୍ୟ ବଚନ ।୩୯।
କାରଣାବ୍ଧି-ଗର୍ଭୋଦକ-କ୍ଷୀରୋଦକଶାୟୀ ।
ମାୟାଦ୍ୱାରେ ସୃଷ୍ଟି କରେ, ତାତେ ସବ ମାୟୀ ।୪୦।
ସେଇ ତିନ ଜଳଶାୟୀ ସର୍ବ-ଅନ୍ତର୍ଯାମୀ ।
ବ୍ରହ୍ମାଣ୍ଡ-ବୃନ୍ଦେର ଆତ୍ମା ଯେ ପୁରୁଷନାମୀ । ୪୧ ।
ହିରଣ୍ୟଗର୍ଭେର ଆତ୍ମା ଗର୍ଭୋଦକଶାୟୀ ।
ବ୍ୟଷ୍ଟିଜୀବ-ଅନ୍ତର୍ଯାମୀ କ୍ଷୀରୋଦକଶାୟୀ । ୪୨ ।
ଏ ସଭାର ଦର୍ଶନେତେ ଆଛେ ମାୟାଗନ୍ଧ ।
ତୁରୀୟ କୃଷ୍ଣେର ନାହିଁ ମାୟାର ସମ୍ବନ୍ଧ । ୪୩ ।

ଜଳଜୀବହୃଦୟଶାୟିତ୍ୱେନ କେ ତେ ନାରାୟଣାଃ କଥମ୍ବା ଜଳଶାୟିତ୍ୱମନ୍ତର୍ଯାମିତ୍ୱଞ୍ଚ ଇତ୍ୟେତତ୍ତ୍ୱ ପ୍ରତିପାଦୟତି "କାରଣାବ୍ଧୀତି" ସାର୍ଦ୍ଧେନ । କାରଣାବ୍ଧ୍ୟାଦି ଶାୟିତ୍ୱେନ ତେ ତ୍ରୟଃ ଜଳଶାୟିନଃ ମାୟୟା ତଦୁପଲକ୍ଷିତ ମାୟିକବସ୍ତୁନା ଚ ସୃଷ୍ଟିକର୍ତ୍ତୃତ୍ୱେ ମାୟିକତୟା ଜୀବହୃଦୟଶାୟିନଶ୍ଚ ଅନ୍ତର୍ଯାମିନ ଇତ୍ୟର୍ଥଃ । ୪୦ । ବି, ଚ,

କୋ ହି ସର୍ବାନ୍ତର୍ଯାମୀ ତତ୍ରାହ "ବ୍ରହ୍ମାଣ୍ଡ" ଇତି । ତତ୍ର ଯଃ ପୁରୁଷୋ ନାମା କାରଣାର୍ଣ୍ଣବଶାୟୀ ସ ବ୍ରହ୍ମାଣ୍ଡସମୂହାନ୍ତର୍ଯାମୀ ମାୟାନ୍ତର୍ଯାମୀ ଇତ୍ୟର୍ଥଃ । ବିଶେଷୋକ୍ତ୍ୟଭାବାତ୍ତୁ ପୁରୁଷପଦେନାତ୍ର ପ୍ରଥମପୁରୁଷ ଏବ ଜ୍ଞେୟଃ ଅନେନୈବ ତୁ କାରଣାର୍ଣ୍ଣବଶାୟିତ୍ୱମୁକ୍ତଂ ଅଥବା ପରପଦୋକ୍ତ ଗର୍ଭୋଦକଶାୟ୍ୟାଦି ସାହାଯ୍ୟେନ । ୪୧ । ବି, ଚ,

ତତ୍ର ଯୋଗର୍ଭୋଦକଶାୟୀ ନାରାୟଣଃ ସ ବ୍ରହ୍ମାଣ୍ଡାନ୍ତର୍ଯାମୀ । ତଥା ଯଃ କ୍ଷୀରୋଦକଶାୟୀ ନାରାୟଣଃ ସ ପ୍ରତ୍ୟେକଜୀବାନାମନ୍ତର୍ଯାମୀ । ୪୨ । ବି, ଚ,

ଜଳଜୀବଶାୟିନାଂ ଶ୍ରୀନାରାୟଣାନାଂ ଜଳଜୀବଶାୟିତ୍ୱେ କାରଣମୁକ୍ତ୍ୱା ଅଥ ତେ ଶ୍ରୀକୃଷ୍ଣାଂଶାଃ ଶ୍ରୀକୃଷ୍ଣସ୍ତୁ ଅଂଶୀତ୍ୟତ୍ରକାରଣମାହ "ଏହା ସଭାର" ଇତି । ଅତ୍ରାୟମାଶୟଃ ମାୟାସମ୍ବନ୍ଧିନା ଦ୍ରଷ୍ଟୃତ୍ୱେନ ନ୍ୟୂନମାହାତ୍ମ୍ୟାତ୍ତୁ ତେ ଶ୍ରୀକୃଷ୍ଣସ୍ୟ ଅଂଶାଃ; ତତ୍ତ୍ୱ ସମ୍ବନ୍ଧରହିତେନ ତୁରୀୟତ୍ୱେନ ଅଧିକମାହାତ୍ମ୍ୟାତ୍ତୁ ଶ୍ରୀକୃଷ୍ଣଃ ଅଂଶୀ । ଯଦ୍ୱା ଭିନ୍ନବସ୍ତୁମାୟାଦିସମ୍ବନ୍ଧେନ ତେ ଅଂଶାଃ ତଦ୍ରାହିତ୍ୟେନ ଚ ଶ୍ରୀକୃଷ୍ଣଃ ଅଂଶୀ । ଯଥା ଘଟାଦି ସମ୍ବନ୍ଧେନ ଘଟାଦ୍ୟାକାଶଃ ତଦ୍ରାହିତ୍ୟେନ ଚ ବୃହଦାକାଶଃ । ଏତଚ୍ଚ "ବିରାଟ୍ ହିରଣ୍ୟଗର୍ଭଶ୍ଚ" ଏତଚ୍ଛ୍ଲୋକବ୍ୟାଖ୍ୟାୟାମପି ସ୍ପଷ୍ଟୀ ଭବିଷ୍ୟତି । ୪୩ । ବି, ଚ,

ଅନ୍ତର୍ଯାମୀରୂପରେ ବାସ କରନ୍ତି ଏବଂ ଜଳରେ ବାସ କରନ୍ତି । ମୋତେ କି ନିମିତ୍ତ ନାରାୟଣ ବୋଲି କହୁଅଛ ? । ୩୮ ।

ଶ୍ରୀକୃଷ୍ଣଙ୍କର କଥା ଶୁଣି ବ୍ରହ୍ମା କହିଲେ ସର୍ବବିଧ ଜଗତ୍ସ୍ଥ ଜୀବମାନଙ୍କ ହୃଦୟରେ ଅନ୍ତର୍ଯାମୀ ବା ସାକ୍ଷୀରୂପରେ ଓ ଜଳରେ (କାରଣୋଦକ, ଗର୍ଭୋଦକ, କ୍ଷୀରୋଦକରେ) ନାରାୟଣମାନେ ବାସ କରନ୍ତି ଏହା ସତ୍ୟ କିନ୍ତୁ ସେମାନେ ଆପଣଙ୍କର ଅଂଶ ଅର୍ଥାତ୍ ଆପଣ ସେମାନଙ୍କର ଅଂଶୀ । ୩୯ ।

କାରଣାବ୍ଧିଶାୟୀ ପ୍ରଥମପୁରୁଷ, ଗର୍ଭୋଦକଶାୟୀ ଦ୍ୱିତୀୟପୁରୁଷ ଓ କ୍ଷୀରୋଦକଶାୟୀ ତୃତୀୟପୁରୁଷ ଏମାନେ ମାୟାଦ୍ୱାରା ବ୍ରହ୍ମାଣ୍ଡର ଓ ବ୍ରହ୍ମାଣ୍ଡସ୍ଥ ପଦାର୍ଥମାନଙ୍କର ସୃଷ୍ଟି କରନ୍ତି ବୋଲି ଏମାନଙ୍କୁ ମାୟୀ (ମାୟାର ନିୟନ୍ତା) କୁହାଯାଏ । ସେହି ତିନି ପୁରୁଷାବତାର ଜଳଶାୟୀ ଓ ସର୍ବାନ୍ତର୍ଯାମୀ ଅଟନ୍ତି । ଅର୍ଥାତ୍ ପୁରୁଷନାମୀ (ପୁରୁଷ ନାମ ଯାହାଙ୍କଠାରୁ ହୋଇଅଛି ଅର୍ଥାତ୍ ପ୍ରଥମପୁରୁଷ) ବ୍ରହ୍ମାଣ୍ଡବୃନ୍ଦର (ସମଷ୍ଟି ବ୍ରହ୍ମାଣ୍ଡର) ପରମାତ୍ମା ଏବଂ ମାୟାର ଅନ୍ତର୍ଯାମୀ ଅଟନ୍ତି ।

ତଥାହି (ଭାଃ ୧୧।୧୫।୧୬) ସ୍ୱାମିଟୀକାୟାମ୍—
ବିରାଡ୍ ହିରଣ୍ୟଗର୍ଭଶ୍ଚ କାରଣଂ ଚେତ୍ୟୁପାଧୟଃ ।
ଈଶସ୍ୟ ଯତ୍ତ୍ରିଭିର୍ହୀନଂ ତୁରୀୟଂ ତତ୍ ପ୍ରଚକ୍ଷତେ ॥୧୦॥ *
ଯଦ୍ୟପି ତିନେର ମାୟା ଲଞା ବ୍ୟବହାର ।
ତଥାପି ତତ୍‌ସ୍ପର୍ଶ ନାହିଁ—ସଭେ ମାୟାପାର । ୪୪ ।

ତଥାହି ( ଭାଃ ୧।୧୧।୩୮ )—
ଏତଦୀଶନମୀଶସ୍ୟ ପ୍ରକୃତିସ୍ଥୋଽପି ତଦ୍‌ଗୁଣୈଃ ।
ନ ଯୁଜ୍ୟତେ ସଦାତ୍ମସ୍ଥୈର୍ଯଥା ବୁଦ୍ଧିସ୍ତଦାଶ୍ରୟା ॥୧୧॥ *
ସେଇ ତିନେର ହଓ ତୁମି ପରମ ଆଶ୍ରୟ ।
ତୁମି ମୂଳ ନାରାୟଣ—ଇଥେ କି ସଂଶୟ ? ।୪୫।

ବିରାଟ୍ ( ସ୍ଥୂଳଂ ) ହିରଣ୍ୟଗର୍ଭଃ ( ସୂକ୍ଷ୍ମଂ ) ଇତି କାର୍ଯ୍ୟଦ୍ୱୟଂ କାରଣଂ ( ମାୟା ) ଇତି ( ଏତାନି ଉପାଧୟଃ ) ଈଶସ୍ୟ ( ପୁରୁଷାବତାରସ୍ୟ ) । ଯତ୍ ( ଏତୈଃ ) ତ୍ରିଭିଃ ( ଉପାଧିଭିଃ ) ହୀନଂ ( ସମ୍ବନ୍ଧଶୂନ୍ୟଂ ) ତତ୍ ( ପଦଂ ) ତୁରୀୟଂ ( ସଚ୍ଚିଦାନନ୍ଦବସ୍ତୁ ) ପ୍ରଚକ୍ଷତେ [ ୧୦ ମ ଶ୍ଳୋକଃ ]

ତଦାଶ୍ରୟା ( ଶ୍ରୀଭଗବଦାଶ୍ରୟା ପରମ ଭାଗବତାନାଂ ) ବୁଦ୍ଧିଃ ଯଥା ସଦା ଆତ୍ମସ୍ଥୈଃ (ଗୁଣୈଃ) ନ ଯୁଜ୍ୟତେ ( ତଥା ) ( ଈଶ୍ୱରଃ ) ପ୍ରକୃତିସ୍ଥୋଽପି ତଦ୍‌ଗୁଣୈଃ ନ ଯୁଜ୍ୟତେ ( ଇତି ଯତ୍ ) ଏତତ୍ ଈଶସ୍ୟ ଈଶନଂ ( ଐଶ୍ୱର୍ଯ୍ୟଂ ) [ ୧୧ ଶ ଶ୍ଳୋକଃ ]

ନନୁ ପରବ୍ୟୋମନାଥ ଏବ ମୂଳନାରାୟଣଃ ଯତଃ ସ ଏବ ତେଷାମଂଶୀ ନ ତ୍ୱମିତ୍ୟତ ଆହ— " ସେଇ ତିନେର " ଇତି । ଅତ୍ର ଝଲାସନ୍ଧ୍ୱେନ ବଳରାମ ନାରାୟଣୟୋରଭେଦଂ କୃତ୍ୱା ଏବୋକ୍ତଂ " ସେଇ ତିନେର " ଇତି, ନଚେତ୍ " ସଙ୍କର୍ଷଣଃ କାରଣତୋୟଶାୟୀ " ଇତି ପ୍ରଥମୋକ୍ତ ନିତ୍ୟା-ନନ୍ଦ-ତତ୍ତ୍ୱ-ପ୍ରତିପାଦକ ବାକ୍ୟେନ ବିରୋଧ ଆପତେତ୍ । ୪୫ । ୪୬ । ବି, ଚ,

ଗର୍ଭୋଦକଶାୟୀ ଦ୍ୱିତୀୟପୁରୁଷ ହିରଣ୍ୟଗର୍ଭଙ୍କର ( ବ୍ରହ୍ମାଙ୍କର ) ଆତ୍ମା ( ବ୍ୟଷ୍ଟି ବ୍ରହ୍ମାଣ୍ଡର ପରମାତ୍ମା ) ଅଟନ୍ତି ଓ କ୍ଷୀରୋଦକଶାୟୀ ତୃତୀୟପୁରୁଷ ବ୍ୟଷ୍ଟିଜୀବର ପରମାତ୍ମା ଅଟନ୍ତି । ଏ ସମସ୍ତଙ୍କୁ ଅର୍ଥାତ୍ ଏ ତିନି ପୁରୁଷଙ୍କୁ ଦର୍ଶନ କଲେ ମାୟାର ସମ୍ବନ୍ଧ ଥାଏ କିନ୍ତୁ ତୁରୀୟ ଅର୍ଥାତ୍ ଏ ତିନର ଅତୀତ ଅର୍ଥାତ୍ ଚତୁର୍ଥସ୍ଥାନୀୟ ଶ୍ରୀକୃଷ୍ଣ ମାୟାର ଅତୀତ ହେତୁ ମାୟାସମ୍ବନ୍ଧରହିତ । ଏଣୁ ମାୟାର ସମ୍ବନ୍ଧ ରହିତ ହେଲେ ଏହାଙ୍କର ଦର୍ଶନ ମିଳେ । ୪୦ । ୪୩ ।

ବିରାଟ୍ ଅର୍ଥାତ୍ ସ୍ଥୂଳ, ହିରଣ୍ୟଗର୍ଭ ଅର୍ଥାତ୍ ସୂକ୍ଷ୍ମ ଏହି ଦୁଇପ୍ରକାର କାର୍ଯ୍ୟ, କାରଣ ଅର୍ଥାତ୍ ମାୟା ( କାରଣରୂପା ) ଏହି ତିନି ସମ୍ବନ୍ଧଦ୍ୱାରା ଈଶ୍ୱରଙ୍କର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପୁରୁଷନାମକ ଉପାଧି ହୋଇଅଛି । ଏହି ତିନି ଉପାଧିର ସହିତ ସମ୍ବନ୍ଧରହିତ ଯେ ତତ୍ତ୍ୱ ତାହାକୁ ତୁରୀୟ ( ସଚ୍ଚିଦାନନ୍ଦ ) କୁହାଯାଏ [ ୧୦ ମ ଶ୍ଳୋକାର୍ଥ ]

ଯଦ୍ୟପି ଏହି ତିନି ପୁରୁଷାବତାର ମାୟାଦ୍ୱାରା ସୃଷ୍ଟିକାର୍ଯ୍ୟ କରନ୍ତି ତଥାପି ଏମାନେ ମାୟାକୁ ସ୍ପର୍ଶ କରନ୍ତି ନାହିଁ । ଅତଏବ ଏମାନେ ମାୟାଠାରୁ ପୃଥକ୍ ଅଟନ୍ତି । ୪୪ ।

( ପରମଭାଗବତମାନଙ୍କର ) ଶ୍ରୀଭଗବଦାଶ୍ରୟା ବୁଦ୍ଧି ଯେପରି ମାୟାକାର୍ଯ୍ୟରେ ଯୁକ୍ତ ଥାଇ ସୁଦ୍ଧା ତାହାର ଗୁଣରେ ଲିପ୍ତ ନ ଥାଏ, ସେହିପରି ଈଶ୍ୱର ପ୍ରକୃତିରେ ଅବସ୍ଥାନ କରି ସୁଦ୍ଧା ତାହାର ଗୁଣଲିପ୍ତ ହୁଅନ୍ତି ନାହିଁ, ତାହାହିଁ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ [ ୧୧ ଶ ଶ୍ଳୋକାର୍ଥ ]

ବ୍ରହ୍ମା କହୁଅଛନ୍ତି ହେ ଶ୍ରୀକୃଷ୍ଣ ! ଆପଣ ପୂର୍ବକଥିତ ତିନି ପୁରୁଷାବତାରଙ୍କ ଶ୍ରେଷ୍ଠ ଆଶ୍ରୟ ଅର୍ଥାତ୍ ଆଶ୍ରୟର ଆଶ୍ରୟ ଏହେତୁ ଆପଣ ମୂଳ ନାରାୟଣ ଅଟନ୍ତି ଅର୍ଥାତ୍ ଶ୍ରୀନାରାୟଣଙ୍କର ଆପଣ ଯେ ଆଦିକାରଣ ଅଟନ୍ତି ଏଥିରେ ସଂଶୟ କଅଣ ? ଯେହେତୁ ପରବ୍ୟୋମନାଥ ନାରାୟଣ ପୂର୍ବୋକ୍ତ ତିନି ପୁରୁଷାବତାରଙ୍କର ଅଂଶୀ ଅର୍ଥାତ୍ ସେହି ତିନି ପୁରୁଷାବତାର ଶ୍ରୀପରବ୍ୟୋମନାଥ ନାରାୟଣଙ୍କଠାରୁ

| | |
|---|---|
| ସେଇ ଛନେର ଅଂଶୀ ପରବ୍ୟୋମ-ନାରାୟଣ । | ବ୍ରହ୍ମ ଆତ୍ମା ଭଗବାନ୍—କୃଷ୍ଣେର ବିହାର । |
| ତେଁହ ତୋମାର ବିଳାସ, ତୁମି ମୂଳ ନାରାୟଣ ।୪୬। | ଏ ଅର୍ଥ ନା ଜାନି ମୂର୍ଖ ଅର୍ଥ କରେ ଆର । ୫୯ । |
| ଅତଏବ ବ୍ରହ୍ମବାକ୍ୟେ—ପରବ୍ୟୋମ-ନାରାୟଣ । | ଅବତାରୀ—ନାରାୟଣ, କୃଷ୍ଣ—ଅବତାର । |
| ତେଁହ କୃଷ୍ଣେର ବିଳାସ, ଏଇ ତତ୍ତ୍ୱ-ବିବରଣ ।୪୭। | ତେଁହ ଚତୁର୍ଭୁଜ, ଇଁହ ମନୁଷ୍ୟ-ଆକାର । ୬୦ । |
| ଏଇ ଶ୍ଲୋକ ତତ୍ତ୍ୱ-ଲକ୍ଷଣ ଭାଗବତସାର । | ଏଇମତେ ନାନାରୂପ କରେ ପୂର୍ବପକ୍ଷ । |
| ପରିଭାଷା-ରୂପେ ଇହାର ସର୍ବତ୍ରାଧିକାର । ୪୮ । | ତାହାରେ ନିର୍ଜିତେ ଭାଗବତପଦ୍ୟ ଦକ୍ଷ । ୬୧ । |

"ଷଡ଼୍‌ଭିରୈଶ୍ୱର୍ଯ୍ୟୈଃ ପୂର୍ଣ୍ଣୋ ଯ ଇହ ଭଗବାନ୍" ଇତ୍ୟସ୍ୟାର୍ଥମୁପସଂହରତି "ଅତଏବ" ଇତି । ୪୭ । ବି, ଚ,

"ନାରାୟଣସ୍ତ୍ୱଂ" ଇତି ବ୍ରହ୍ମ-ବାକ୍ୟେନ ଶ୍ରୀକୃଷ୍ଣ ଏବ ମୂଳନାରାୟଣଃ ପରବ୍ୟୋମନାଥନାରାୟଣସ୍ତୁ ତସ୍ୟୈବ ବିଳାସ ଇତି ସ୍ଥିରୀକୃତଂ କିନ୍ତୁ ଅନ୍ୟୈ ଅନେ୍ୟକ ନାରାୟଣସ୍ୟୈବ ଅଂଶଃ ଶ୍ରୀକୃଷ୍ଣ ଇତି ଯତ୍ର ପ୍ରତିପଦ୍ୟତେ ତନ୍ନିରାକରୋତି "ଏଇଶ୍ଲୋକ" ଇତି । ସର୍ବତତ୍ତ୍ୱବିଦାଦିକବି—ବ୍ରହ୍ମବାକ୍ୟେନୈନାଶ୍ରୀଭାଗବତସ୍ୟ ଶ୍ରେଷ୍ଠ ତତ୍ତ୍ୱଲକ୍ଷଣୋଽୟଂ ଶ୍ଲୋକଃ ଅତଃ ବ୍ରହ୍ମବାକ୍ୟତ୍ୱେନ ଶ୍ରେଷ୍ଠ ପରିଭାଷା ସଦୃଶତ୍ୱାତ୍ ଅସ୍ୟୈବ ସର୍ବାଧିକାରଃ । ତେନ ଚ ତତ୍ରାପି ଅୟମେବାର୍ଥଃ ନ ତୁ ଅନେ୍ୟାଽର୍ଥଃ ଅଧିକାରାଭାବାତ୍ । ଅୟଂ ଭାବଃ ବ୍ରହ୍ମବାକ୍ୟସ୍ୟ ସର୍ବପ୍ରଧାନତ୍ୱାତ୍ ଏତସ୍ମିନ୍ ତତ୍ତ୍ୱଦ୍ୟୁକ୍ତେ ତେଷାମଧିକାରାଭାବାତ୍ ନ ତଦର୍ଥାବକାଶଃ ଅତଃ ଏତଦାନୁଗତ୍ୟେନ ତତ୍ରାପି ଏତଦନୁକୂଲୋଽର୍ଥୋ ଭବେଦେବ । ୪୮ । ବି, ଚ,

ବ୍ରହ୍ମ, ଆତ୍ମା, ଭଗବାନ୍ ଏତଦ୍ରୂପେଣ ଶ୍ରୀକୃଷ୍ଣ ବିହରତି ଇତି "ଯଦଦ୍ୱୈତଂ" ଶ୍ଲୋକାର୍ଥୋ ପରମତଂ ନିରସିତୁଂ ଆହ "ବ୍ରହ୍ମ" ଇତି । ୫୯ । ମୁଖ୍ୟାର୍ଥମନୁବଦତି "ଅବତାରୀ"ତି ।୬୦। ବି, ଚ,

---

ଉଦ୍ଭୂତ ଅଛନ୍ତି, ଏବଂ ସେହି ଅଂଶୀ ପରବ୍ୟୋମନାଥ ନାରାୟଣ ଆପଣଙ୍କର ବିଳାସମୂର୍ତ୍ତି (ଗୌଣ-ପ୍ରକାଶ), ତେଣୁ ଆପଣ ସେହି ନାରାୟଣଙ୍କର ମୂଳ କାରଣ ଅର୍ଥାତ୍ ଅଂଶୀ; ଅଂଶରୂପେ ଯେତେ ନାରାୟଣ ଆପଣ ସମସ୍ତଙ୍କର ମୂଳ କାରଣ । ୪୫ । ୪୬ ।

ଗ୍ରନ୍ଥକର୍ତ୍ତା ଶ୍ରୀଳ କବିରାଜ ଗୋସ୍ୱାମୀ ପ୍ରକାଶ କରୁଅଛନ୍ତି ଯେ ପୂର୍ବୋକ୍ତ ନବମଶ୍ଳୋକରେ ବ୍ରହ୍ମାଙ୍କର ବାକ୍ୟଦ୍ୱାରା ସେହି ପରବ୍ୟୋମନାଥ ନାରାୟଣ ଶ୍ରୀକୃଷ୍ଣଙ୍କର ବିଳାସ (ଗୌଣପ୍ରକାଶ) ଏହାହିଁ ନିରୂପିତ ହେଲା । ଏହି ନବମଶ୍ଳୋକରେ ଯେଉଁ ତତ୍ତ୍ୱଲକ୍ଷଣ ପ୍ରକାଶ ହୋଇଅଛି ତାହା ଶ୍ରୀମଦ୍ଭାଗବତରେ ସାରବସ୍ତୁ ଅଟେ । ପରିଭାଷାରୂପରେ (ମୂଳ ବା ସିଦ୍ଧାନ୍ତ) ରୂପରେ ଏହି ଶ୍ଲୋକର ସବୁ ସ୍ଥାନରେ ଅଧିକାର ଅର୍ଥାତ୍ ତତ୍ତ୍ୱଲକ୍ଷଣଯୁକ୍ତ ସିଦ୍ଧାନ୍ତମାନଙ୍କ ମଧ୍ୟରେ ଏହା ଶ୍ରେଷ୍ଠ ଅଟେ ।

ପରିଭାଷା—ଯେ ଅନିୟମରେ ନିୟମ ବିଧାନ କରେ ତାହାକୁ ପରିଭାଷା କହନ୍ତି । ନିୟମ—ଭିନ୍ନସ୍ଥାନରୁ ବିକ୍ଷିପ୍ତ ବସ୍ତୁକୁ ସଙ୍କୋଚ କରି ଏକସ୍ଥାନରୁ କରିବା । ୪୭ । ୪୮ ।

ଉପରୋକ୍ତ ଶ୍ଳୋକମାନଙ୍କଦ୍ୱାରା ସିଦ୍ଧାନ୍ତ ନିରୂପଣ କରାଗଲା ଯେ ବ୍ରହ୍ମ ପରମାତ୍ମା ଓ ଭଗବାନ୍ (ନାରାୟଣ) ଏମାନେ ଶ୍ରୀକୃଷ୍ଣଙ୍କର ବିହାର ବା ବିଳାସ ଅଛନ୍ତି ଅର୍ଥାତ୍ ଶ୍ରୀକୃଷ୍ଣ ଉପରୋକ୍ତ ପ୍ରକାର ରୂପରେ ଲୀଳା କରନ୍ତି । ମୂର୍ଖମାନେ (ତତ୍ତ୍ୱାନଭିଜ୍ଞ ବ୍ୟକ୍ତିମାନେ) ଏହି ମୁଖ୍ୟ ଅର୍ଥ ନ ଜାଣି ଅଜ୍ଞତାବଶତଃ ଅନ୍ୟପ୍ରକାର ଅର୍ଥ କରନ୍ତି । କେହି କେହି କହନ୍ତି ଯେ ନାରାୟଣ ଅବତାରୀ ବା ମୂଳ ଅଟନ୍ତି ଏବଂ ଶ୍ରୀକୃଷ୍ଣ ତାହାଙ୍କର ଅବତାର (ଅଂଶ) କାରଣ ନାରାୟଣ ଚତୁର୍ଭୁଜ ଓ ଶ୍ରୀକୃଷ୍ଣ ମନୁଷ୍ୟଆକାର (ଦ୍ୱିଭୁଜ) ଏହିପରି ଯେଉଁମାନେ ତର୍କ ଉତ୍ଥାପନ କରନ୍ତି ସେହି ପୂର୍ବପକ୍ଷ

ତଥାହି ( ଭାଃ ୧।୨।୧୧ )—

ବଦନ୍ତି ତତ୍ତତ୍ତ୍ୱବିଦସ୍ତତ୍ତ୍ୱଂ ଯଜ୍ଜ୍ଞାନମଦ୍ୱୟମ୍ ।
ବ୍ରହ୍ମେତି ପରମାତ୍ମେତି ଭଗବାନିତି ଶବ୍ଦ୍ୟତେ ॥୧୨॥*

ଶୁନ ଭାଇ ! ଏଇ ଶ୍ଳୋକ କରହ ବିଚାର ।
ଏକ ମୁଖ୍ୟତତ୍ତ୍ୱ, ତିନ ତାହାର ପ୍ରଚାର ।୬୨।
ଅଦ୍ୱୟ ଜ୍ଞାନ ତତ୍ତ୍ୱବସ୍ତୁ—କୃଷ୍ଣେର ସ୍ୱରୂପ ।
ବ୍ରହ୍ମ ଆତ୍ମା ଭଗବାନ୍—ତିନ ତାଁର ରୂପ ।୬୩।
ଏଇ ଶ୍ଳୋକେର ଅର୍ଥେ ତୁମି ହୈଲା ନିର୍ବଚନ ।
ଆର ଏକ ଶୁନ ଭାଗବତେର ବଚନ ।୬୪।

ତଥାହି ( ଭାଃ ୧।୩।୨୮ )—

ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରାରିବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ ॥୧୩॥*

ମୁଖ୍ୟାର୍ଥଂ ନାସ୍ତିପ୍ରଭୂମାହ " ଶୁନ ଭାଇ " ଇତ୍ୟାଦି ।୬୨। ବି, ନ,
ମୁଖ୍ୟତତ୍ତ୍ୱମେବାହ " ଅଦ୍ୱୟ " ଇତି ।୬୩। ବି, ଚ,

ଏତେ ଚ ( ଉକ୍ତାନୁକ୍ତାଃ ସର୍ବେ ) ପୁଂସଃ ( ପରମେଶ୍ୱରସ୍ୟ ) ଅଂଶକଳା ( ଅଂଶାଶ୍ଚ କଳାଃ ବିଭୂତୟଶ୍ଚ ) ( ଇହ ଯଃ ବିଂଶତିତମାବତାରତ୍ୱେନ କଥିତଃ ସଃ ) କୃଷ୍ଣଃ ( ନ ଅଂଶଃ ନ ଚ ଅଂଶୀ ପୁରୁଷଃ ) ତୁ ( କିନ୍ତୁ ) ସ୍ୱୟଂ ( ଏବ ନ ତୁ ତତଃ ପ୍ରାଦୁର୍ଭୂତୋଽବାନ୍ ) ଭଗବାନ୍ । ( ତେ ଚ ଅବତାରାଃ ) ଇନ୍ଦ୍ରାରିବ୍ୟାକୁଳଂ ( ଇନ୍ଦ୍ରାରିଭିଃ ଦୈତ୍ୟୈଃ ବ୍ୟାକୁଳଂ ଉପଦ୍ରୁତଂ ) ଲୋକଂ ଯୁଗେଯୁଗେ ( ପ୍ରତ୍ୟୁଗଂ ତତ୍ତଦବସରେ ) ମୃଡ଼ୟନ୍ତି ( ସୁଖିନଂ କୁର୍ବନ୍ତି ) [ ୧୩ଶ ଶ୍ଳୋକଃ ]

( ପ୍ରତିଦ୍ୱନ୍ଦ୍ୱୀମାନଙ୍କ ) ର ମତ ଖଣ୍ଡନ କରିବା ବିଷୟରେ ଶ୍ରୀମଦ୍ଭାଗବତର ନିମ୍ନୋକ୍ତ ଶ୍ଳୋକମାନେ ସକ୍ଷମ ଅଟନ୍ତି ।୬୧। ୬୧ ।

୧୨ ଶ ଶ୍ଳୋକର ଅନୁବାଦ ୨ୟ ପରିଚ୍ଛେଦର ୪ର୍ଥ ଶ୍ଳୋକରେ ଦ୍ରଷ୍ଟବ୍ୟ । ତତ୍ତ୍ୱଜ୍ଞବ୍ୟକ୍ତିମାନେ ଅଦ୍ୱୟ ( ଦ୍ୱିତୀୟ ରହିତ ଯେ ଜ୍ଞାନ ) ତାହାକୁ ତତ୍ତ୍ୱ ବୋଲି ନିର୍ଦ୍ଦେଶ କରନ୍ତି ଏହି ତତ୍ତ୍ୱକୁ କେହି ବ୍ରହ୍ମ, କେହି କେହି ପରମାତ୍ମା, କେହି କେହି ଭଗବାନ୍ ବୋଲି କହନ୍ତି [ ୧୨ଶ ଶ୍ଳୋକାର୍ଥ ]

ଗ୍ରନ୍ଥକାର ପୂର୍ବପକ୍ଷକୁ କହୁଅଛନ୍ତି ହେ ତୁମେ ଯେ କହିଲ ଶ୍ରୀମନ୍ ନାରାୟଣ ଅବତାରୀ ଓ କୃଷ୍ଣ ଅବତାର ତେବେ ଶ୍ରୀମଦ୍ଭାଗବତର ଉପରୋକ୍ତ ଶ୍ଳୋକଟିକୁ ବିଚାର କର । ଏହାକୁ ବିଚାର କଲେ ସେଥିରୁ ଚମତ୍କାର ବିଷୟ ମିଳେ । ଯଥା;—

ଅଦ୍ୱୟ ଜ୍ଞାନ ଅର୍ଥାତ୍ ମୁଖ୍ୟ ତତ୍ତ୍ୱ ଏକ, ବ୍ରହ୍ମ, ଆତ୍ମା, ଭଗବାନ ଏହି ତିନ ମୁଖ୍ୟତତ୍ତ୍ୱର ପ୍ରଚାର ବା ପ୍ରକାଶକ ତତ୍ତ୍ୱ । ଅଦ୍ୱୟ ଜ୍ଞାନତତ୍ତ୍ୱ ବସ୍ତୁଟି ସ୍ୱୟଂ ଶ୍ରୀକୃଷ୍ଣ ବା ତାହାଙ୍କର ସ୍ୱରୂପ ବା ନିଜ-ରୂପ । ବ୍ରହ୍ମ ଆତ୍ମା ( ପରମାତ୍ମା ) ଭଗବାନ ( ନାରାୟଣ ) ଏହି ତିନ ତାହାଙ୍କର ( ଶ୍ରୀକୃଷ୍ଣଙ୍କର ) ରୂପ (ବିଳାସରୂପ) ଅର୍ଥାତ୍ ଉପାସକମାନଙ୍କର ଭାବନାରୂପ; ଏହାଦ୍ୱାରା ସିଦ୍ଧ ହେଲା ଯେ ଭଗବାନ ( ନାରାୟଣ ) ମୂଳତତ୍ତ୍ୱ ବା ଅବତାରୀ ନୁହନ୍ତି । ଏ ମୂଳତତ୍ତ୍ୱଙ୍କର ( ଅଦ୍ୱୟ ଜ୍ଞାନତତ୍ତ୍ୱଙ୍କର ) ଐଶ୍ୱର୍ଯ୍ୟ ପ୍ରକାଶ ବା ଭଗବାନରୂପ ଅଟନ୍ତି । ଅତଏବ ଅଦ୍ୱୟଜ୍ଞାନରୂପୀ କୃଷ୍ଣ ମୂଳତତ୍ତ୍ୱ ବା ଅବତାରୀ ଏବଂ ଭଗବାନରୂପ ନାରାୟଣ ତାହାଙ୍କର ଅବତାର ବା ବିଳାସ ବିଶେଷରୂପ ।୬୨। ୬୩ ।

ଗ୍ରନ୍ଥକର୍ତ୍ତା ଉପରୋକ୍ତ ତତ୍ତ୍ୱପ୍ରକାଶକୁ ଲକ୍ଷ୍ୟ କରି କହୁଅଛନ୍ତି ହେ ପୂର୍ବପକ୍ଷ ! ତୁମ୍ଭେ ଉକ୍ତ ଶ୍ଳୋକର ଅର୍ଥର ବିଚାର କରି ବର୍ତ୍ତମାନ ନିର୍ବଚନ ହେଲ ଅର୍ଥାତ୍ ଆଉ ତର୍କ ଉଠାଇ ପାରନା । ତଥାପି ଶ୍ରୀମଦ୍ଭାଗବତର ଆଉ ଗୋଟିଏ ଶ୍ଳୋକ କହୁଅଛୁଁ ତାହା ଶୁଣି ବିଚାର କର ।୬୪।

ସବ ଅବତାରେର କରି ସାମାନ୍ୟ ଲକ୍ଷଣ ।
ତାର ମଧ୍ୟେ କୃଷ୍ଣଚନ୍ଦ୍ରେର କରିଲ ଗଣନ । ୫୫ ।
ତବେ ସୂତଗୋସାଞିଁ ମନେ ପାଞାଁ ବଡ଼ ଭୟ ।
ଯାର ଯେ ଲକ୍ଷଣ ତାହା କରିଲ ନିଶ୍ଚୟ । ୫୬ ।
ଅବତାର ସବ—ପୁରୁଷେର କଲା ଅଂଶ ।
କୃଷ୍ଣ—ସ୍ୱୟଂଭଗବାନ୍ ସର୍ବ-ଅବତଂସ । ୫୭ ।
ପୂର୍ବପକ୍ଷ କହେ—ତୋମାର ଭାଲ ତ ବ୍ୟାଖ୍ୟାନ ।
ପରବ୍ୟୋମ-ନାରାୟଣ—ସ୍ୱୟଂଭଗବାନ୍ । ୫୮ ।
ତେହୋଁ ଆସି କୃଷ୍ଣରୂପେ କରେନ ଅବତାର ।
ଏଇ ଅର୍ଥ ଶ୍ଳୋକେ ଦେଖି, କି ଆର ବିଚାର ? ।୫୯।
ତାରେ କହେ—କେନେ କର କୁତର୍କାନୁମାନ ? ।
ଶାସ୍ତ୍ର-ବିରୁଦ୍ଧାର୍ଥ କଭୁ ନା ହୟ ପ୍ରମାଣ । ୬୦ ।
ତଥାହି ଏକାଦଶୀତତ୍ତ୍ୱେ ଧୃତୋ ନ୍ୟାୟଃ—
ଅନୁବାଦମନୁକ୍ତ୍ୱା ତୁ ନ ବିଧେୟମୁଦୀରୟେତ୍ ।
ନ ହ୍ୟଲବ୍ଧାସ୍ପଦଂ କିଞ୍ଚିତ୍ କୁତ୍ରଚିତ୍
ପ୍ରତିତିଷ୍ଠତି । ୧୪ ॥ *

"ଏତେଚାଂଶ" ଇତି ଶ୍ଳୋକାର୍ଥମବତାରପ୍ରିତୁମାହ "ସବ" ଇତି । ୫୫ । ୫୬ । ବି, ଚ,

ଶ୍ଳୋକାର୍ଥମାହ ଅବତାର ଇତି । ଅଂଶତ୍ୱଂ ନାମ ଶକ୍ତୀନାଂ ସଦାଲ୍ପାଂଶପ୍ରକାଶିତା । ପୂର୍ଣ୍ଣତ୍ୱଞ୍ଚ ସ୍ୱେଚ୍ଛୟୈବ ନାନାଶକ୍ତିପ୍ରକାଶିତା । ସର୍ବ ଅବତଂସ ସର୍ବକାରଣ-ସର୍ବାଶ୍ରୟଃ ଇତ୍ୟର୍ଥଃ । ୫୭ । ବି, ଚ,

ଅନୁବାଦ୍ୟ ମନୁକ୍ତ୍ୱୈବ ଇତି । ଅନୁବାଦଂ ଜ୍ଞାତବସ୍ତୁ ବିଧେୟଂ ଅଜ୍ଞାତବସ୍ତୁ ଇତ୍ୟର୍ଥଃ । । ୫୮ । ବି, ଚ,

ଅନୁବାଦଂ ( ଉଦ୍ଦେଶ୍ୟଂ ଜ୍ଞାତବସ୍ତୁ ) ଅନୁକ୍ତ୍ୱା ( ନ କଥୟିତ୍ୱା ) ତୁ ବିଧେୟଂ (ଅଜ୍ଞାତ-ବସ୍ତୁ ) ନ ଉଦୀରୟେତ୍ ( ନ କଥୟେତ୍ ) ନ ହି ଅଲବ୍ଧାସ୍ପଦଂ ( ନ ଲବ୍ଧଂ ପ୍ରାପ୍ତଂ ଆସ୍ପଦଂ ସ୍ଥାନଂ ଯେନ ତଥାଭୂତଂ ) କିଞ୍ଚିତ୍ ( କୁତ୍ରଚିତ୍ ) ( ଅପି ) ପ୍ରତିତିଷ୍ଠତି. ( ପ୍ରତିଷ୍ଠାଂ ଲଭତେ ) [ ୧୪ଶ ଶ୍ଳୋକଃ ]

ଶ୍ରୀସୂତ କହୁଅଛନ୍ତି, ପୂର୍ବକଥିତ ଉକ୍ତ ଓ ଅନୁକ୍ତ ଅବତାରମାନେ ପରମେଶ୍ୱରଙ୍କର ଅଂଶ ଓ ବିଭୂତି କିନ୍ତୁ ପୂର୍ବକଥିତ ବିଂଶତିତମ ଶ୍ରୀକୃଷ୍ଣ ସ୍ୱୟଂ ବା ନିଜେ ଭଗବାନ ବା ପରମେଶ୍ୱର ଅଟନ୍ତି । ଉକ୍ତ ଅବତାରମାନେ ଦୈତ୍ୟମାନଙ୍କଦ୍ୱାରା ଉପଦ୍ରୁତ ସଂସାରକୁ ଯୁଗେ ଯୁଗେ ସୁଖୀ କରନ୍ତି [୧୩ଶଶ୍ଳୋକାର୍ଥ]

ଗ୍ରନ୍ଥକାର କହୁଅଛନ୍ତି ପରମେଶ୍ୱରଙ୍କ ଅବତାରମାନେ ସ୍ୱାଭାବିକ ଇନ୍ଦ୍ରିୟ-ଅଗୋଚର ହେଲେ ହେଁ ଜୀବମାନଙ୍କ ପ୍ରତି କୃପାପରବଶ ହୋଇ ସେମାନଙ୍କର ମଙ୍ଗଳବିଧାନାର୍ଥ ଇନ୍ଦ୍ରିୟଗ୍ରାହ୍ୟ-ରୂପ ଗ୍ରହଣ କରି ଅବତୀର୍ଣ୍ଣ ହୋଇଥିବାରୁ ଶ୍ରୀସୂତ ଗୋସ୍ୱାମୀ ଅବତାରମାନଙ୍କ ନାମସହିତ ଶ୍ରୀକୃଷ୍ଣଙ୍କର ନାମ ଉଲ୍ଲେଖ କଲେ ଏବଂ ସମସ୍ତଙ୍କ କାର୍ଯ୍ୟାବଳୀ ମଧ୍ୟ ସାମାନ୍ୟତଃ ନିର୍ଦ୍ଦେଶ କଲେ; କିନ୍ତୁ ଶ୍ରୀକୃଷ୍ଣ ସ୍ୱୟଂ ଅବତାରୀ ହେତୁ ଅବତାର ନୁହନ୍ତି ଏହା ବିଚାର କରି ଶ୍ରୀସୂତ ଅବତାରମାନଙ୍କ ବିଶେଷ ଲକ୍ଷଣ ଅର୍ଥାତ୍ ସେମାନେ କେହିକେହି ପରମେଶ୍ୱରଙ୍କର ଅଂଶ ଓ କେହି କେହି ତାହାଙ୍କର କଳା ବା ଅଂଶ ବିଭୂତି କିନ୍ତୁ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ବା ପରମେଶ୍ୱର ଅଟନ୍ତି ଏଣୁ ସେ ସମସ୍ତଙ୍କର ଅର୍ଥାତ୍ ଅବତାରମାନଙ୍କର ଏବଂ ଅବତାରୀ ନାରାୟଣଙ୍କର ଅବତଂସ ଅର୍ଥାତ୍ ମୂଳ ଅଟନ୍ତି ବୋଲି ଉଲ୍ଲେଖ କଲେ । ୫୫ । ୫୬ ।

ଗ୍ରନ୍ଥକାରଙ୍କର ଉପରୋକ୍ତ ବ୍ୟାଖ୍ୟା ଶୁଣି ପୂର୍ବପକ୍ଷ ( ପ୍ରତିବାଦୀ ) କହିଲେ ଆପଣ ଆଚ୍ଛା ବ୍ୟାଖ୍ୟା କଲେ । ଶ୍ଳୋକର ଅର୍ଥରୁ ଜଣାଯାଏ ଯେ ପରବ୍ୟୋମ ନାରାୟଣହିଁ ସ୍ୱୟଂ ଭଗବାନ୍, ସେ ଆସି କୃଷ୍ଣରୂପରେ ଅବତୀର୍ଣ୍ଣ ହୁଅନ୍ତି ଶ୍ଳୋକର ଏହି ଅର୍ଥ ଦେଖୁଅଛୁଁ; ଏଥିରେ ଆପଣଙ୍କର ଆଉ ଉତ୍ତର କଣ ? । ୫୮ । ୫୯ ।

ଅନୁବାଦ ନା କହିୟା ନା କହି ବିଧେୟ ।
ଆଗେ ଅନୁବାଦ କହି ପଶ୍ଚାତ୍ ବିଧେୟ । ୭୧ ।
'ବିଧେୟ' କହିଯେ ତାରେ—ଯେ ବସ୍ତୁ ଅଜ୍ଞାତ ।
'ଅନୁବାଦ' କହି ତାରେ—ଯେଇ ହୟ ଜ୍ଞାତ ।୭୨।
ଯୈଛେ କହି—ଏଇ ବିପ୍ର ପରମ ପଣ୍ଡିତ ।
ବିପ୍ର-ଅନୁବାଦ, ଇହାର ବିଧେୟ ପାଣ୍ଡିତ୍ୟ ।୭୩।
ବିପ୍ରତ୍ୱ ବିଖ୍ୟାତ, ତାର ପାଣ୍ଡିତ୍ୟ ଅଜ୍ଞାତ ।
ଅତଏବ ବିପ୍ର ଆଗେ, ପାଣ୍ଡିତ୍ୟ ପଶ୍ଚାତ । ୭୪ ।

ତୈଛେ ଇହାଁ ଅବତାର ସବ ହୈଲ ଜ୍ଞାତ ।
କାର ଅବତାର ?—ଏଇ ବସ୍ତୁ ଅବିଜ୍ଞାତ ।୭୫।
'ଏତେ'-ଶବ୍ଦେ ଅବତାରେର ଆଗେ ଅନୁବାଦ ।
'ପୁରୁଷେର ଅଂଶ' ପାଛେ ବିଧେୟ-ସମ୍ବାଦ ।୭୬।
ତୈଛେ କୃଷ୍ଣ ଅବତାର-ଭିତରେ ହୈଲ ଜ୍ଞାତ ।
ତାହାର ବିଶେଷ ଜ୍ଞାନ—ସେଇ ଅବିଜ୍ଞାତ ।୭୭।
ଅତଏବ 'କୃଷ୍ଣ'-ଶବ୍ଦ ଆଗେ ଅନୁବାଦ ।
'ସ୍ୱୟଂଭଗବତ୍ତ୍ୱ' ପିଛେ ବିଧେୟ-ସମ୍ବାଦ । ୭୮ ।

କ୍ୱଚିତ୍ ପୁସ୍ତକେ ବିପ୍ରତ୍ୱାଦପାଠଃ ସ ତୁ ପ୍ରମାଦଃ ଜ୍ଞାତବସ୍ତୁ ବିଧେୟଂ ଉଦ୍ଦେଶ୍ୟ-ପ୍ରତିନିର୍ଦ୍ଦେଶ୍ୟ ସମାନ ବର୍ଗୀକାନ୍ତତ୍ୱାତ୍ । ତଥ " ଯୈଛେ କହି ଏଇ ବିପ୍ର ପରମ ପଣ୍ଡିତ " ଇତି । ଇତି ଉଦ୍ଦେଶ୍ୟ ଇତି " ବିପ୍ର ଅନୁବାଦ ଇହାର ବିଧେୟ ପଣ୍ଡିତ " ଇତି ପ୍ରତିନିର୍ଦ୍ଦେଶ୍ୟଃ । ଅତଏବ " ଉଦ୍ଦେଶ ସବତାମ୍ରାମ୍ର ଏବାସ୍ତମେତ ଚ " ଇତ୍ୟନ ଏକଶବ୍ଦେନୈବ ପ୍ରୟୋଗ ଇତି । ୭୩ । ବି, ଚ,

ତତ୍ର ହେତୁଃ ବିପ୍ରରୂପେଣ ବିଖ୍ୟାତ ଇତ୍ୟର୍ଥଃ ପଣ୍ଡିତରୂପେଣ ଅଜ୍ଞାତ ଇତ୍ୟର୍ଥଃ । ୭୪ । ବି, ଚ,

ପ୍ରତିବାଦୀର ଉପରୋକ୍ତ କଥା ଶୁଣି ଗ୍ରନ୍ଥକର୍ତ୍ତା କହିଲେ ଅପଣ ଅନୁମାନଦ୍ୱାର କାହିଁକି କୁତର୍କ ଉଠାଉଅଛନ୍ତି ! ଶାସ୍ତ୍ରବିରୋଧୀ ଅର୍ଥ କଦାପି ପ୍ରମାଣରୂପେ ଗ୍ରହଣୀୟ ହୁଏନାହିଁ । ୭୦ ।

ଆଗେ ଅନୁବାଦ ( ଜ୍ଞାତବସ୍ତୁ ) ନ କହି ବିଧେୟ ( ଅଜ୍ଞାତବସ୍ତୁ ) କହିବା ବିଧି ନୁହେଁ, କାରଣ ଯେ ବାକ୍ୟର ନିର୍ଦ୍ଦିଷ୍ଟ ଆଶ୍ରୟ ନାହିଁ ସେ ବାକ୍ୟ କୌଣସିଠାରେ ପ୍ରତିଷ୍ଠା ଲାଭ କରେ ନାହିଁ [ ୧୯ଶ ଶ୍ଳୋକାର୍ଥ ]

ଗ୍ରନ୍ଥକାର ପୂର୍ବପକ୍ଷଙ୍କ ଉପରୋକ୍ତ ୭୦ ପଯ୍ୟାରରେ ଯେ କୁତର୍କ କରୁଥିବାର କହିଅଛନ୍ତି ତାହା ବର୍ତ୍ତମାନ ବୁଝାଉଅଛନ୍ତି ।

ଆଗେ ଅନୁବାଦ ( ଜ୍ଞାତବସ୍ତୁ ) ନ କହି ବିଧେୟ ( ଅଜ୍ଞାତବସ୍ତୁ ) କହିବ ନାହିଁ । ଯେଉଁ ବସ୍ତୁ ଜ୍ଞାତ ଅବା ଜଣାଯାଏ ତାହାକୁ ଅନୁବାଦ କୁହାଯାଏ, ଯାହା ଅଜ୍ଞାତ ତାହାକୁ ବିଧେୟ କୁହାଯାଏ । ଯେପରିକି " ଏହି ବିପ୍ର ପରମ ପଣ୍ଡିତ " ଏହି ବାକ୍ୟରେ " ବିପ୍ର " ଅନୁବାଦ ଏବଂ " ପାଣ୍ଡିତ୍ୟ " ତାହାଙ୍କର ବିଧେୟ । ଅର୍ଥାତ୍ ଏଠାରେ " ବିପ୍ର " ଜ୍ଞାତବସ୍ତୁ ବା ପ୍ରକାଶମାନ ଏବଂ ତାଙ୍କ ପାଣ୍ଡିତ୍ୟ ଅପ୍ରକାଶିତ ; ଏଣୁ ଅଗ୍ରେ ବିପ୍ରଶବ୍ଦ ବ୍ୟବହୃତ ହୋଇ ପରେ ପଣ୍ଡିତଶବ୍ଦ ଉଲ୍ଲେଖ ହୋଇଅଛି । ୭୧—୭୪ ।

ସେହିପରି ଏଠାରେ ( ଶ୍ରୀମଦ୍ଭାଗବତର ୧ମ ସ୍କନ୍ଧର ତୃତୀୟ ଅଧ୍ୟାୟର ଅଷ୍ଟାବିଂଶ ଶ୍ଳୋକର ପୂର୍ବବର୍ତ୍ତୀ ଶ୍ଳୋକମାନଙ୍କଦ୍ୱାରା) ଅବତାର ସବୁ ଜ୍ଞାତ ହେଲେ କିନ୍ତୁ ଏମାନେ କାହାର ଅବତାର ଏହା ତଦ୍ୱାରା ଜଣାଗଲା ନାହିଁ । ତେଣୁ ଶ୍ରୀସୂତ ଗୋସ୍ୱାମୀ ୧ମ ସ୍କନ୍ଧ ୩ୟ ଅଧ୍ୟାୟ ୨୮ଶ ସଂଖ୍ୟକ ଶ୍ଳୋକଦ୍ୱାରା ତାହା ନିରୂପଣ କରିଅଛନ୍ତି । ସେହି ଶ୍ଳୋକରେ "ଏତେ" ଶବ୍ଦଦ୍ୱାରା ଅବତାରମାନଙ୍କୁ ଲକ୍ଷ୍ୟ କରିଅଛନ୍ତି ଅତଏବ ଅବତାରମାନେ ଆଗେ ଉକ୍ତ ହୋଇଥିବାରୁ ସେମାନେ ଜ୍ଞାତବସ୍ତୁ । ଅତଏବ " ଅନୁବାଦ " ତେଣୁ ଏ ଶ୍ଳୋକରେ " ଏତେ " ଶବ୍ଦ ଅନୁବାଦ । କାହାର ଅବତାର ତାହା ଅଜ୍ଞାତବସ୍ତୁହେତୁ ତାହା " ବିଧେୟ " ଅଟେ । ଏଣୁ " ଏତେ " ଶବ୍ଦର ପର ସେହି ବିଧେୟ ଅର୍ଥାତ୍ "ପୁରୁଷର ଅଂଶ"

'କୃଷ୍ଣେର ସ୍ୱୟଂଭଗବତ୍ତ୍ୱ' ଇହା ହୈଲ ସାଧ୍ୟ ।
'ସ୍ୱୟଂଭଗବାନେର କୃଷ୍ଣତ୍ୱ' ହୈଲ ବାଧ୍ୟ । ୬୯ ।
କୃଷ୍ଣ ଯଦି ଅଂଶ ହୈତ, ଅଂଶୀ ନାରାୟଣ ।
ତବେ ବିପରୀତ ହୈତ ସୂତେର ବଚନ । ୭୦ ।

'ନାରାୟଣ ଅଂଶୀ ଯେଇ ସ୍ୱୟଂଭଗବାନ୍ ।
ତେଁହ ଶ୍ରୀକୃଷ୍ଣ'—ଐଛେ କରିତ ବ୍ୟାଖ୍ୟାନ ।୭୧।
ଭ୍ରମ, ପ୍ରମାଦ, ବିପ୍ରଲିପ୍ସା, କରଣାପାଟବ ।
ଆର୍ଷ-ବିଜ୍ଞ-ବାକ୍ୟେ ନାହି ଦୋଷ ଏଇସବ ।୭୨।

ନନୁ ନାରାୟଣସ୍ୟ ଅଂଶଃ ଶ୍ରୀକୃଷ୍ଣ ଇତି । ପ୍ରକୃତାର୍ଥାନୁରୋଧେନ ନ ତାବତ୍ ଅବ ଅନୁବାଦ ବିଧେୟୟୋଃ ବିପର୍ଯ୍ୟୟୋଽପେକ୍ଷ୍ୟତେ । ଅଥବା ଜ୍ଞା ତବସ୍ତୁତ୍ୱେନ ନାରାୟଣୋଽନୁବାଦଃ କୃଷ୍ଣସ୍ତୁ ବିଧେୟ ଇତ୍ୟେବମସ୍ତୁ ଇତ୍ୟାହ "କୃଷ୍ଣଯଦି"ତି । ସତ୍ୟଂ କିନ୍ତୁ ସୂତସ୍ୟ ବଚନଂ "ଭଗବାଂସ୍ତୁ କୃଷ୍ଣଃ ସ୍ୱୟଂ" ଇତି ବିପରୀତଂ ଭବେତ୍ ଏବ ନ ତୁ ତଥା ଅସ୍ତି । ୭୦ । ବି, ଚ,

ପାଠବୈପରୀତ୍ୟଂ ମାସ୍ତୁ ବ୍ୟାଖ୍ୟା ଚ ତଥା ଭବେଦେବ ଇତ୍ୟାହ "ନାରାୟଣ" ଇତି । ସ୍ୱାମିପାଦ ପ୍ରଭୃତୀନାଂ ତଥା ବ୍ୟାଖ୍ୟାଭାବାତ୍ ତତ୍ ପାଠ ବିପରୀତ ବାକ୍ୟାଭାବାଚ୍ଚ ମନସାପି କଦାଚିତ୍ କୈଶ୍ଚିତ୍ ତଥା ବ୍ୟାଖ୍ୟା ନ କ୍ରିୟତେ ଇତିଭାବଃ । ୭୧ । ବି, ଚ,

"ଭଗବାଂସ୍ତୁ କୃଷ୍ଣଃ ସ୍ୱୟଂ" ଇତିବକ୍ତବ୍ୟେ ଭ୍ରମାଦିଦୋଷାଦେବ "କୃଷ୍ଣସ୍ତୁ ଭଗବାନ ସ୍ୱୟଂ" ଇତି ଉକ୍ତଂ ତଥା ଏତଦନୁଗତୋଽର୍ଥଶ୍ଚ ତୈଃ କୃତ ଇତି ଚେତ୍ତନ୍ନ ଇତ୍ୟାହ "ଭ୍ରମପ୍ରମାଦ" ଇତି । ଭ୍ରମାଦୟଃ ଦୋଷାଃ ଆର୍ଷବାକ୍ୟେ ବିଜ୍ଞବାକ୍ୟେ ଚ ନ ସନ୍ତି ଅତୋଽବ ଶ୍ରୀଶୁକପାଦେନ ଯଦୁକ୍ତଂ ତତ୍ ସତ୍ୟମେବ ତଥା ଏତଦନୁଗତୋଽର୍ଥଶ୍ଚ ଇତିଭାବଃ । ଭ୍ରମ-ଭ୍ରାନ୍ତିଃ, ପ୍ରମାଦୋଽନବଧାନତା ବିପ୍ରଲିପ୍ସା ବିରୋଧୋକ୍ତି, କରଣାପାଟବ ଇନ୍ଦ୍ରିୟାପଟୁତା । ୭୨ । ବି, ଚ,

ବୋଲି ଉଲ୍ଲେଖ କଲେ । ପୁନରାୟ ଅବତାରମାନଙ୍କର ନାମ ଭିତରେ ଶ୍ରୀକୃଷ୍ଣଙ୍କର ନାମ ଉଲ୍ଲେ ହୋଇଅଛି । ତେଣୁ ଶ୍ରୀକୃଷ୍ଣ ଅବତାରମାନଙ୍କ ଭିତରେ ଜ୍ଞାତ ହୋଇଥିବାରୁ "ଅନୁବାଦ" ଅଟ ସେହିହେତୁ କୃଷ୍ଣଙ୍କୁ ଉକ୍ତ ଶ୍ଲୋକରେ ଆଗେ ଉଲ୍ଲେଖ କଲେ କିନ୍ତୁ ଏହି କୃଷ୍ଣଙ୍କର ସାଧାରଣ ଶ୍ରୀମଦ୍ଭାଗବତର ୧।୩।୨୩ ଶ୍ଲୋକରେ କଥିତ ହୋଇଅଛି । ତଥାପି ପୁନରାୟ ଶ୍ରୀକୃଷ୍ଣଙ୍କୁ ଏହି ୧।୩ ଶ୍ଲୋକରେ ଉଲ୍ଲେଖ କରିବାର ପ୍ରୟୋଜନ କଅଣ ? ଏଣୁ ଆକାଙ୍କ୍ଷା ହୁଏ ଯେ କୃଷ୍ଣଙ୍କର ଆଉ ଅଜ୍ଞାତ ଜ୍ଞାନ ବା ବିଧେୟ ଅଛି ବା ତାହାଙ୍କର କିଛି ବିଶେଷତ୍ୱ ଜାଣିବାର ବାକି ରହିଅଛି । କୃଷ୍ଣ ଅନୁବାଦହେତୁ ଆଗେ ଉଲ୍ଲେଖ କରାଗଲା ଏବଂ ତାହାଙ୍କର ବିଶେଷ ଜ୍ଞାନ "ସ୍ୱୟଂ ଭଗ" ବିଧେୟହେତୁ ପରେ ଲେଖାଗଲା । ୬୫—୬୮ ।

ଅତଏବ ଉପରୋକ୍ତ ବ୍ୟାଖ୍ୟାଦ୍ୱାରା ଶ୍ରୀକୃଷ୍ଣଙ୍କର "ସ୍ୱୟଂ ଭଗବତ୍ତ୍ୱ" ସାଧ୍ୟ ବା ଙ୍କର ସ୍ୱଧର୍ମ ବା ଗୁଣ ବୋଲି ଏହା ନିଶ୍ଚୟ ଜଣାଗଲା । କିନ୍ତୁ ସ୍ୱୟଂ ଭଗବାନଙ୍କଠାରେ ଅର୍ଥାତ୍ ତାଙ୍କର ସ୍ୱଧର୍ମ ବା ଗୁଣଦ୍ୱାରା କୃଷ୍ଣତ୍ୱ ବାଧା ପ୍ରାପ୍ତ ହେଲା । ଅର୍ଥାତ୍ ସ୍ୱୟଂ ଭଗବତ୍ତ୍ୱ କୃଷ୍ଣତ୍ୱରେ ପରିଣତହୋଇଅନ୍ତି ନାହିଁ । କିନ୍ତୁ କୃଷ୍ଣ ଧର୍ମୀ ଏବଂ "ସ୍ୱୟଂ ଭଗବତ୍ତ୍ୱ" ତାହାଙ୍କର ଧର୍ମହେତୁ କୃଷ୍ଣ "ସ୍ୱୟଂ ଭଗବତ୍ତ୍ୱ" ରେ ବା ଭଗବାନ୍‌ରୂପରେ ପରିଣତ ହୁଅନ୍ତି । ୬୯ ।

କୃଷ୍ଣ ଯେବେ ଅବତାର ବା ଅଂଶ ହୁଅନ୍ତେ, ନାରାୟଣ ବା ଭଗବାନ୍ ଅଂଶୀ ବା ଅବତାରୀ ହୁଅନ୍ତେ ତାହାହେଲେ ଶ୍ରୀସୂତ ଗୋସ୍ୱାମିଙ୍କ ଉପରୋକ୍ତ ଶ୍ଲୋକସ୍ଥ ବଚନ ବିପରୀତ ହୁଅନ୍ତା । ଯଥା :—"ସ୍ୱୟଂ ଭଗବାନସ୍ତୁ କୃଷ୍ଣଃ" ଅର୍ଥାତ୍ ସ୍ୱୟଂ ଭଗବାନ୍ ନାରାୟଣ ଅଂଶୀ ବା ଅବତାରୀ ଏବଂ ସେ କୃଷ୍ଣରୂପରେ ଅବତୀର୍ଣ୍ଣ ବା ଅବତାର । କିନ୍ତୁ ଏ ଶ୍ଲୋକରେ ସେପରି ଲେଖା ନାହିଁ । ଯଦି କହ ଶ୍ରୀସୂତ ଗୋସ୍ୱାମୀ ଏହିପରି କଥା ( କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ ) ଭ୍ରମ ପ୍ରମାଦାଦିବଶତଃ କହିଅଛନ୍ତି,

ବିରୁଦ୍ଧାର୍ଥ କହ ତୁମି, କହିତେ କର ରୋଷ ।
ତୋମାର ଅର୍ଥେ ଅବିମୃଷ୍ଟବିଧେୟାଂଶ-ଦୋଷ ।୭୩।
ଯାର ଭଗବତ୍ତା ହୈତେ ଅନ୍ୟେର ଭଗବତ୍ତା ।
'ସ୍ୱୟଂଭଗବାନ୍'-ଶବ୍ଦେର ତାହାତେଇ ସତ୍ତା ।୭୪।
ଦୀପ ହୈତେ ଯୈଛେ ବହୁଦୀପେର ଜ୍ୱଳନ ।
ମୂଳ ଏକ ଦୀପ ତାହାଁ କରିୟେ ଗଣନ ।୭୫।
ତୈଛେ ସବ ଭଗବାନେର କୃଷ୍ଣ ସେ କାରଣ ।
ଆର ଏକ ଶ୍ଳୋକ ଶୁନ କୁବ୍ୟାଖ୍ୟାଖଣ୍ଡନ ।୭୬।

ବିରୁଦ୍ଧଦୋଷଃ ବାସ୍ତବଦୋଷଃ । ଅବିମୃଷ୍ଟଃ ପ୍ରାଧାନ୍ୟେନାନିର୍ଦ୍ଦିଷ୍ଟୋ ବିଧେୟାଂଶୋ ଯତ୍ର ତଦ୍ ଇତି କାବ୍ୟପ୍ରକାଶେ ସପ୍ତମ ଉଲ୍ଲାସଃ । ୭୩ । ବି, ଚ,

ଯସ୍ୟ ଯୋଽଂଶଃ ତସ୍ମାଦେବ ତସ୍ୟ ଭଗବତ୍ତା ଯଥା ମହାସଙ୍କର୍ଷଣାଦ୍ ଭଗବତ୍ତାୟା ଏବ ତଦଂଶାନାଂ ସଙ୍କର୍ଷଣାଦୀନାଂ ଭଗବତ୍ତା ଇତି ଯୁକ୍ତିଯୁକ୍ତଂ ତଥା ଯତଃ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ଭଗବତ୍ତାୟାଃ ତଦ୍ଭିନ୍ନାଂଶାନାଂ ଅନ୍ୟେଷାଂ ଭଗବତାଂ ଭଗବତ୍ତା ନ ଭବେତ୍ ଅତଃ "ଯାର ଭଗବତ୍ତା ହଇତେ" ଇତି ଯଦୁକ୍ତଂ ତଦସଙ୍ଗତଂ ଇତ୍ୟାଶଙ୍କ୍ୟାଂ ନିଶ୍ଚିକୁର୍ବନ୍ନାହ "ଦୀପହଇତେ" ଇତି ସାର୍ଦ୍ଧେନ । ଅୟଂ ଭାବଃ ପ୍ରଜ୍ୱଳିତ ପ୍ରଥମ ଦୀପାତ୍ ଦ୍ୱିତୀୟ ଦୀପଃ ଜ୍ୱଳତି ଏତସ୍ମାତ୍ ତୃତୀୟ ଇତ୍ୟାଦିନା ବହୂନାଂ ତେଷାଂ ଜ୍ୱଳନଂ ଭବତି, ତେନ ଚ ପୂର୍ବ୍ୱ ପୂର୍ବ୍ୱ ଦୀପଃ ପର ପର ଦୀପ କାରଣଂ ତଥାପି ପ୍ରଥମୋଦୀପ ଏବ ଯଥା ସର୍ବ୍ୱେଷାଂ ତେଷାଂ କାରଣତ୍ୱେନ ଗଣ୍ୟତେ ତଥା ଶ୍ରୀକୃଷ୍ଣାତ୍ ମହାସଙ୍କର୍ଷଣଃ ତସ୍ମାତ୍ ମହାବିଷ୍ଣୁଃ ତସ୍ମାତ୍ ଗର୍ଭୋଦକଶାୟୀ ମତ୍ସ୍ୟାଦ୍ୟବତାରଶ୍ଚ ଇତ୍ୟାଦିନା ବହବଃ ତଦଂଶାଃ ତତ୍ତଭଗବତ୍ତାୟା ଭଗବନ୍ତ ଭବନ୍ତୁ ତେନ ଚ ମହାସଙ୍କର୍ଷଣାଦୟଃ ସଙ୍କର୍ଷଣାଦୀନାଂ କାରଣାନି ତଥାପି ସ୍ୱୟଂ ଭଗବାନ୍ ସଃ ଶ୍ରୀକୃଷ୍ଣ ଏବ ସର୍ବ୍ୱେଷାଂ ତେଷାଂ ଭଗବତାଂ ମୂଳକାରଣଂ ଅତଃ "ଯାର ଭଗବତ୍ତା ହଇତେ" ଇତ୍ୟତ୍ର ନ ଅସଙ୍ଗତଂ ଏତେନ ଏତଦୁକ୍ତଂ ଭବତି ଶ୍ରୀକୃଷ୍ଣାଦେବ ଯଦଦ୍ୱୈତ ମିଥ୍ୟୈବୋକ୍ତଃ ଷଡୈଶ୍ୱର୍ଯ୍ୟପୂର୍ଣ୍ଣଃ ପରମବ୍ୟୋମନାଥ ନାରାୟଣଃ ଇତ୍ୟର୍ଥଃ । ନ ତୁ ଅସ୍ମାତ୍ ସଃ ଯତଃ ସଃ ଶ୍ରୀକୃଷ୍ଣଃ ସ୍ୱୟଂ ଭଗବାନ୍ ଅୟଂ ତୁ ଭଗବାନ୍ । ୭୫ । ବି, ଚ,

ପ୍ରକୃତରେ ତାଙ୍କ ମନରେ ଏରୂପ ଭାବ ନ ଥିଲା । ଏହାକୁ ଲକ୍ଷ୍ୟ କରି ଗ୍ରନ୍ଥକାର କହୁଅଛନ୍ତି ଯେ ଭ୍ରମ (ଏକ ବସ୍ତୁରେ ଅନ୍ୟ ବସ୍ତୁର ଜ୍ଞାନ ଯଥା ସାମୁକରେ ରୌପ୍ୟ ଜ୍ଞାନ) ପ୍ରମାଦ (ଅନବଧାନତା—ଅମନଯୋଗିତା) ବିପ୍ରଲିପ୍ସା (ବିରୋଧୋକ୍ତି) କରଣାପାଟବ (ଇନ୍ଦ୍ରିୟର ଅପଟୁତା) ଏହି ସମସ୍ତ ଦୋଷ ଋଷି ଏବଂ ବିଜ୍ଞବ୍ୟକ୍ତିମାନଙ୍କ ବାକ୍ୟରେ ରହେ ନାହିଁ । ଏଣୁ ଉପରୋକ୍ତ ଶ୍ଳୋକର "କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ" ଏହି ପଦ ଉପରୋକ୍ତ କୌଣସିପ୍ରକାର ଦୋଷଜନିତ ନୁହେ । ୭୦ । ୭୧ । ୭୨ ।

ଗ୍ରନ୍ଥକାର ପୂର୍ବ୍ୱପକ୍ଷଙ୍କୁ କହୁଅଛନ୍ତି—ଶ୍ଳୋକରେ "କୃଷ୍ଣସ୍ତୁ ଭଗବାନ୍ସ୍ୱୟଂ" ସ୍ପଷ୍ଟ ଉକ୍ତ ହୋଇଅଛି ଏବଂ ତାହା ଋଷି ଓ ବିଜ୍ଞବାକ୍ୟହେତୁ ନିର୍ଦ୍ଦୋଷ ଏହା ଜାଣି ସୁଦ୍ଧା ତୁମ୍ଭେ ଉକ୍ତ ପଦର ବିରୁଦ୍ଧାର୍ଥ କରୁଅଛ ଏବଂ ତାହା ତୁମ୍ଭଙ୍କୁ ବୁଝାଇଦେଲେ ତୁମ୍ଭେ ରାଗ ହେଉଅଛ ଏହା ବଡ଼ ଶୋଚନୀୟ । ତୁମ୍ଭେ ଯେଉଁ ଅର୍ଥ କରୁଅଛ ସେଥିରେ ଅବିମୃଷ୍ଟବିଧେୟାଂଶ ଦୋଷ ଘଟୁଅଛି ।

ଅବିମୃଷ୍ଟବିଧେୟାଂଶ ଦୋଷ—ଜ୍ଞାତବସ୍ତୁ (ଅନୁବାଦ) ଆଗରେ ନ କହି ଅଜ୍ଞାତବସ୍ତୁ (ବିଧେୟ) କୁ ଅଗ୍ରେ କହିଲେ ତାହାକୁ ସାହିତ୍ୟରେ ଅବିମୃଷ୍ଟବିଧେୟାଂଶ ଦୋଷ କୁହାଯାଏ ।୭୩।

ଯାହାଙ୍କର ଭଗବତ୍ତାରୁ ଅପରର ଭଗବତ୍ତା ଲାଭ ହୁଏ ତାହାଙ୍କୁ ସ୍ୱୟଂ ଭଗବାନ୍ କୁହାଯାଏ । ଅର୍ଥାତ୍ "ସ୍ୱୟଂ ଭଗବାନ୍" ଶବ୍ଦର ସତ୍ତା ବା ନିଦାନ ସେହି ଅଟନ୍ତି । ଗ୍ରନ୍ଥକାର ଏହାର ଉଦାହରଣସ୍ୱରୂପ ଦେଖାଉଅଛନ୍ତି । ଯେପରି ପ୍ରଥମେ ଗୋଟିଏ ଦୀପରୁ ୨ୟ ଦୀପ, ତହିଁରୁ ୩ୟ ଦୀପ ଏହିପରି ବହୁ ଦୀପ ପ୍ରଜ୍ୱୋଳନାନୁସାରେ ଜଳାଯାଏ ଏବଂ ଯେପରି ପୂର୍ବ ପୂର୍ବଦୀପମାନେ

ତଥାହି (ଭାଃ ୨।୧୦।୧,୨)—

ଅତ୍ର ସର୍ଗୋ ବିସର୍ଗଶ୍ଚ ସ୍ଥାନଂ ପୋଷଣମୂତୟଃ ।
ମନ୍ୱନ୍ତରେଶାନୁକଥା ନିରୋଧୋ ମୁକ୍ତିରାଶ୍ରୟଃ ॥୧୫॥*

ଦଶମସ୍ୟ ବିଶୁଦ୍ଧ୍ୟର୍ଥଂ ନବାନାମିହ ଲକ୍ଷଣମ୍ ।
ବର୍ଣ୍ଣୟନ୍ତି ମହାତ୍ମାନଃ ଶ୍ରୁତେନାର୍ଥେନ ଚାଞ୍ଜସା ॥୧୬॥*

ଅତ୍ର (ଶ୍ରୀମଦ୍ଭାଗବତେ) ସର୍ଗଃ (ଭୂତମାତ୍ରେନ୍ଦ୍ରିୟଧିୟାଂ-ଜନ୍ମ) ବିସର୍ଗଃ (ବ୍ରହ୍ମଣୋଗୁଣବୈଷମ୍ୟଂ) ସ୍ଥାନଂ (ବୈକୁଣ୍ଠସ୍ୟ ଭଗବତଃ ବିଜୟଃ ସୃଷ୍ଟାନାଂ ତତ୍ତନ୍ମର୍ଯ୍ୟାଦାପାଳନେନ ଉତ୍କର୍ଷଃ ସ୍ଥିତିଃ) ପୋଷଣଂ (ତତଃ ସ୍ଥିତେଷୁ ସ୍ୱଭକ୍ତେଷୁ ତସ୍ୟ ଅନୁଗ୍ରହଃ) ଊତୟଃ (ନାନାକର୍ମବାସନାଃ) ମନ୍ୱନ୍ତରେଶାନୁକଥାଃ (ମନ୍ୱନ୍ତରାଣି ଚ ଈଶାନୁକଥାଃ ଚ) ନିରୋଧଃ (ଅସ୍ୟାନୁ ଶୟନମାତ୍ମନଃ ସହ ଶକ୍ତିଭିଃ) ମୁକ୍ତିଃ (ପୁନରାବୃତ୍ତିଶୂନ୍ୟା ଭଗବତଃ ସନ୍ନିଧୌସ୍ଥିତିଃ) ଆଶ୍ରୟଃ (ଆଭାସଃ ସୃଷ୍ଟିଶ୍ଚ ନିରୋଧଃ ଲୟଶ୍ଚ ଯତଃ ଅଧ୍ୟବସୀୟତେ ସଃ) ଇତି ଦଶାର୍ଥାଃ ନିରୂପ୍ୟନ୍ତେ । [ ୧୫ଶ ଶ୍ଳୋକଃ ]

ମହାତ୍ମାନଃ (ବିଦୁରମୈତ୍ରେୟାଦୟଃ ବାମ୍ନାୟଚେତସଃ ବିବେକିନଃ) ଇହ (ପୁରାଣେ) ଦଶମସ୍ୟ (ଆଶ୍ରୟସ୍ୟ) ବିଶୁଦ୍ଧ୍ୟର୍ଥଂ (ତତ୍ତ୍ୱଜ୍ଞାନାର୍ଥଂ) ନବାନାଂ ଲକ୍ଷଣଂ (ସ୍ୱରୂପଂ) ଶ୍ରୁତେନ (ଶ୍ରୁତ୍ୟା କଣ୍ଠୋକ୍ତ୍ୟା ତତ୍ ବାଚକଶବ୍ଦେନ) ଅଞ୍ଜସା (ସାକ୍ଷାତ୍) ଅର୍ଥେନ (ତାତ୍ପର୍ଯ୍ୟବୃତ୍ତ୍ୟା) ଚ ବର୍ଣ୍ଣୟନ୍ତି । [ ୧୬ଶ ଶ୍ଳୋକଃ ]

ସବୁ ସଂଖ୍ୟାମାନଙ୍କର କାରଣ ହେଲେ ଯେପରି ପ୍ରଥମ ସଂଖ୍ୟା ସମସ୍ତଙ୍କର ମୂଳ କାରଣ, ସେହିପରି ଶ୍ରୀକୃଷ୍ଣ ମହାସଙ୍କର୍ଷଣ, ସଙ୍କର୍ଷଣ, ମହାବିଷ୍ଣୁ ଆଦି ଭଗବାନଙ୍କର ମୂଳ କାରଣ ଏବଂ ସବୁ ଭଗବାନ୍ (ଅବତାରମାନେ) ସେହି ମୂଳସଂଖ୍ୟାସ୍ୱରୂପ ଶ୍ରୀକୃଷ୍ଣଙ୍କଠାରୁ ଅନ୍ୟାନ୍ୟ ସଂଖ୍ୟା ଜ୍ୱଳନବତ୍ ଉଦ୍ଭୂତ । ତେଣୁ ଯେପରି ସଂଖ୍ୟା ଗଣନାରେ ମୂଳସଂଖ୍ୟା ପରିଗଣିତ ହୁଅନ୍ତି, ସେହିପରି ଶ୍ରୀକୃଷ୍ଣ ଅବତାରୀ ହୋଇଥିବାରୁ ଅବତାରମାନଙ୍କ ମଧ୍ୟରେ ଗଣିତ ହୋଇଅଛନ୍ତି । କିନ୍ତୁ ଶ୍ରୀସୂତ ଗୋସ୍ୱାମୀ ଶ୍ରୀକୃଷ୍ଣଙ୍କୁ ଅବତାରମାନଙ୍କ ମଧ୍ୟରେ ଉଲ୍ଲେଖ କରିଥିବାହେତୁ, ସେ ଅବତାର ନୁହନ୍ତି ଅବତାରୀ (ଅର୍ଥାତ୍ ମୂଳସଂଖ୍ୟା) ଏହା ବୁଝାଇବା ସକାଶେ ଉପରୋକ୍ତ ଶ୍ଳୋକରେ "କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ" ଉଲ୍ଲେଖ କରିଅଛନ୍ତି ।

ଗ୍ରନ୍ଥକାର ପୂର୍ବପକ୍ଷଙ୍କୁ ପୁନର୍ବାର କହୁଅଛନ୍ତି ଯେ ଏତେ ବୁଝାଇଲେହେଁ ଯଦି ତୁମ୍ଭେ ମୂଳବ୍ୟାଖ୍ୟା ନ ଛାଡ଼ି ତେବେ ଅନ୍ୟରୂପ ସିଦ୍ଧାନ୍ତଦ୍ୱାରା ବୁଝାଉଅଛି ଶୁଣ । ୭୪ । ୭୫ । ୭୬ ।

ସର୍ଗ (ଭୂତେନ୍ଦ୍ରିୟାଦି ଚତୁର୍ବିଂଶତି ତତ୍ତ୍ୱ ଯେଉଁଠାରୁ ଉତ୍ପନ୍ନ) ବିସର୍ଗ (ବୈରାଜ ପୁରୁଷ (ବ୍ରହ୍ମା) କର୍ତ୍ତୃକ ଯେ ଚରାଚର ସୃଷ୍ଟି) ସ୍ଥାନ (ସୃଷ୍ଟ୍ୟାଦିକାରୀମାନଙ୍କ ସୁଚାରୁରୂପେ ଆପଣା ଆପଣା କର୍ତ୍ତବ୍ୟପାଳନ ବା ସ୍ୱଧର୍ମପାଳନକ୍ରିୟା ଯାହାଙ୍କର ନିୟାମକତ୍ୱହେତୁ ସାଧିତ ହୁଏ ଭଗବାନଙ୍କର ସେହି ଅବସ୍ଥା) ପୋଷଣ (ଭକ୍ତମାନଙ୍କ ପ୍ରତି ଭଗବାନଙ୍କର ଅନୁଗ୍ରହ) ଊତି (ସର୍ବବାଧ କର୍ମବାସନା) ମନ୍ୱନ୍ତର (ସାତ୍ତ୍ୱିକ ଜୀବମାନଙ୍କର ଆଚରଣୀୟଧର୍ମ) ଈଶାନୁକଥା (ଭଗବାନଙ୍କ ଅବତାର ଚରିତ ଓ ଭକ୍ତମାନଙ୍କର ସତ୍କଥା) ନିରୋଧ (ସର୍ବଶକ୍ତି ସଙ୍କୋଚପୂର୍ବକ ଶ୍ରୀଭଗବାନଙ୍କର ଯୋଗନିଦ୍ରା ବା ପ୍ରଳୟ) ମୁକ୍ତି (ଜୀବର ନିରୁପାଧିତ୍ୱ ବା ଭଗବତ୍ ପାର୍ଷଦ ଅବସ୍ଥା) ଆଶ୍ରୟ (ସୃଷ୍ଟି ଏବଂ ପ୍ରଳୟର କାରଣ ବା ନିଦାନ) ଏହି ଦଶଗୋଟି ବିଷୟ ଶ୍ରୀମଦ୍ଭାଗବତରେ ନିରୂପିତ ହୋଇଅଛି । [ ୧୫ଶ ଶ୍ଳୋକାର୍ଥ ]

ଉପରୋକ୍ତ ଦଶମ ପଦାର୍ଥ (ଆଶ୍ରୟର) ତତ୍ତ୍ୱଜ୍ଞାନ ନିମିତ୍ତ ମହାତ୍ମାମାନେ (ବିଦୁର, ମୈତ୍ରେୟାଦି ବିବେକୀମାନେ) ଅନ୍ୟ ନଅଗୋଟି ପଦାର୍ଥର ଲକ୍ଷଣ (ସ୍ୱରୂପ) କେଉଁଠାରେ ସାକ୍ଷାତରେ ଶ୍ରୁତିବାକ୍ୟଦ୍ୱାରା ବାଚକଶବ୍ଦରେ ଉପାଖ୍ୟାନରେ ତାତ୍ପର୍ଯ୍ୟଦ୍ୱାରା ବର୍ଣ୍ଣନ କରିଅଛନ୍ତି । [ ୧୬ଶ ଶ୍ଳୋକାର୍ଥ ]

ଆଶ୍ରୟ ଜାନିତେ କହି ଏ ନବ ପଦାର୍ଥ ।
ଏ-ନବେର ଉତ୍ପତ୍ତିହେତୁ ସେଇ ଆଶ୍ରୟାର୍ଥ ।୭୭।
କୃଷ୍ଣ ଏକ ସର୍ବାଶ୍ରୟ—କୃଷ୍ଣ ସର୍ବଧାମ ।
କୃଷ୍ଣେର ଶରୀରେ ସର୍ବବିଶ୍ୱେର ବିଶ୍ରାମ । ୭୮ ।

ତଥା ଭାବାର୍ଥଦୀପିକାୟାମ୍ ( ଭାଃ ୧୦।୧।୧ )—

ଦଶମେ ଦଶମଂ ଲକ୍ଷ୍ୟମାଶ୍ରିତାଶ୍ରୟବିଗ୍ରହମ୍ ।
ଶ୍ରୀକୃଷ୍ଣାଖ୍ୟଂ ପରଂ ଧାମ ଜଗଦ୍ଧାମ ନମାମି ତତ୍ ।୧୭।।

କୃଷ୍ଣେର ସ୍ୱରୂପ ଆର ଶକ୍ତିତ୍ରୟ-ଜ୍ଞାନ ।
ଯାର ହୟ, ତାର ନାହି କୃଷ୍ଣେତେ ଅଜ୍ଞାନ ।୭୯।
କୃଷ୍ଣସ୍ୱରୂପେର ହୟ ଷଡ୍‌ବିଧ ବିଲାସ ।
ପ୍ରାଭବ-ବୈଭବରୂପେ ଦ୍ୱିବିଧ ପ୍ରକାଶ । ୮୦ ।
ଅଂଶ-ଶକ୍ତ୍ୟାବେଶରୂପେ ଦ୍ୱିବିଧାବତାର ।
ବାଲ୍ୟ-ପୌଗଣ୍ଡ ଧର୍ମ୍ମ ଦୁଇ ତ ପ୍ରକାର । ୮୧ ।
କିଶୋରସ୍ୱରୂପ କୃଷ୍ଣ—ସ୍ୱୟଂ ଅବତାରୀ ।
କ୍ରୀଡ଼ା କରେ ଏଇ ଛୟ-ରୂପେ ବିଶ୍ୱ ଭରି ।୮୨।

---

"ଦଶମଧ୍ୟ" ଇତ୍ୟସ୍ୟାର୍ଥମାହ "ଆଶ୍ରୟ" ଇତି । ଆଶ୍ରୟତତ୍ତ୍ୱଜ୍ଞାନାର୍ଥମେତେ ନବ ପଦାର୍ଥାଃ କଥ୍ୟନ୍ତାଃ ନବାନାମେତେଷାଂ ଯ ଉତ୍ପତ୍ତିହେତୁଃ ସ ଆଶ୍ରୟପଦାର୍ଥଃ ଇତି ଅନ୍ୱୟ ତତ୍ତ୍ୱଜ୍ଞାନଂ । । ୭୭ । ବି, ଚ,

"ଆଶ୍ରୟ" ଇତ୍ୟସ୍ୟାର୍ଥମାହ "କୃଷ୍ଣ" ଇତି । ୭୮ । ବି, ଚ,

ଦଶମେ ( ଦଶମସ୍କନ୍ଧେ ) ଦଶମଂ ( ପଦାର୍ଥଂ ) ଲକ୍ଷ୍ୟଂ—ଆଶ୍ରିତାଶ୍ରୟବିଗ୍ରହଂ ( ଆଶ୍ରିତାନାଂ ଆଶ୍ରୟବିଗ୍ରହଂ ) ଶ୍ରୀକୃଷ୍ଣାଖ୍ୟଂ ତତ୍ପରଂ ଧାମ ଜଗଦ୍ଧାମ ନମାମି । [ ୧୭ଶ ଶ୍ଳୋକଃ ]

ନନୁ ତଦା କଥମନ୍ୟେ ବଦନ୍ତି ଶ୍ରୀନାରାୟଣ ଏବ ଶ୍ରୀକୃଷ୍ଣରୂପେଣାବତୀର୍ଣ୍ଣ ଇତ୍ୟତ ଆହ "କୃଷ୍ଣେର" ଇତି । ଶ୍ରୀକୃଷ୍ଣସ୍ୱରୂପାଦି—ଜ୍ଞାନାଭାବାଦେବ ତଥା ବଦନ୍ତି ନ ତୁ ତଦଭିଜ୍ଞା ଇତ୍ୟର୍ଥଃ । । ୭୯ । ବି, ଚ,

---

ଉପରୋକ୍ତ ଶ୍ଳୋକରେ ଦଶମସଂଖ୍ୟକ ପଦାର୍ଥ ଅର୍ଥାତ୍ ଆଶ୍ରୟତତ୍ତ୍ୱ ଯେ କିଅଣ, ତାହା ଜାଣିବା କାରଣ ସର୍ଗ, ବିସର୍ଗାଦି ନଅଟି ପଦାର୍ଥର ବିଷୟ କୁହାଯାଇଅଛି । ଏହି ନଅଟି ପଦାର୍ଥ ସେହି ଆଶ୍ରୟ ପଦାର୍ଥରୁ ଉତ୍ପନ୍ନ ହୋଇଅଛନ୍ତି । ଶ୍ରୀକୃଷ୍ଣହିଁ ସ୍ୱୟଂ ପରବ୍ର ଅର୍ଥାତ୍ ଉକ୍ତ ନଅ ପଦାର୍ଥର ଆଶ୍ରୟହେତୁ ସର୍ବାଶ୍ରୟ । ସକଳ ବିଶ୍ୱର ଉତ୍ପତ୍ତି ଏବଂ ବିଶ୍ରାମ ସ୍ଥାନ । ୭୭ । ୭୮ ।

ଶ୍ରୀମଦ୍ଭାଗବତର ଦଶମସ୍କନ୍ଧରେ ସର୍ଗ ବିସର୍ଗାଦି ନବପଦାର୍ଥର ଲକ୍ଷ୍ୟ ଦଶମତତ୍ତ୍ୱ ଯେ ଶ୍ରୀକୃଷ୍ଣନାମକ ବିଗ୍ରହ ଯେ କି ଆଶ୍ରିତମାନଙ୍କର ( ଭକ୍ତମାନଙ୍କର ) ଆଶ୍ରୟ, ପରମଧାମ ଏବଂ ଜଗଦ୍ଧାମ ତାହାଙ୍କୁ ପ୍ରଣାମ କରେଁ । [ ୧୭ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣଙ୍କୁ ନାରାୟଣଙ୍କର ଅବତାର ବୋଲି ଯେଉଁମାନେ କହନ୍ତି ସେମାନଙ୍କର ଶ୍ରୀକୃଷ୍ଣଙ୍କର ସ୍ୱରୂପ ଏବଂ ତାଙ୍କର ଶକ୍ତିତ୍ରୟ ଜ୍ଞାନ ନାହିଁ । ୭୯ ।

ଗ୍ରନ୍ଥକାର ଶ୍ରୀକୃଷ୍ଣଙ୍କର ସ୍ୱରୂପର ବିଷୟ କହୁଅଛନ୍ତି । ଶ୍ରୀକୃଷ୍ଣଙ୍କର ସ୍ୱରୂପ ନିତ୍ୟ କିଶୋର-ମୂର୍ତ୍ତି । ସେ ଷଡ୍‌ବିଧ ବିଳାସମୂର୍ତ୍ତିରେ ବିଶ୍ୱଭରଣ, ସଦ୍ଧର୍ମସ୍ଥାପନ ଓ ଭକ୍ତମାନଙ୍କୁ ସୁଖୀକରଣାର୍ଥ କ୍ରୀଡ଼ା କରନ୍ତି । କୃଷ୍ଣ ସ୍ୱୟଂ ଅବତାରୀହେତୁ ତାଙ୍କର ସ୍ୱୟଂ ରୂପ କିଶୋରମୂର୍ତ୍ତି ସବୁ ବିଳାସମୂର୍ତ୍ତିର ନିଦାନ । ଷଡ୍‌ବିଧ ବିଳାସ ଯଥା ପ୍ରାଭବ, ବୈଭବ ନାମକ ପ୍ରକାଶ ଦୁଇପ୍ରକାର । ଅଂଶ, ଶକ୍ତ୍ୟାବେଶ ନାମକ ଦୁଇପ୍ରକାର ଅବତାର । ବାଲ୍ୟ ପୌଗଣ୍ଡ ନାମକ ଦୁଇପ୍ରକାର ଧର୍ମ୍ମ । ୮୦ । ୮୧ । ୮୨ ।

ଏଇ ଛୟ-ରୂପେ ହୟ ଅନନ୍ତ ବିଭେଦ ।
ଅନନ୍ତରୂପେ ଏକ ରୂପ, ନାହିଁ କିଛୁ ଭେଦ ।୮୩।
ଚିଚ୍ଛକ୍ତି, ସ୍ୱରୂପଶକ୍ତି, ଅନ୍ତରଙ୍ଗା ନାମ ।
ତାହାର ବୈଭବ ଅନନ୍ତ ବୈକୁଣ୍ଠାଦି ଧାମ ।୮୪।
ମାୟାଶକ୍ତି ବହିରଙ୍ଗା—ଜଗତ-କାରଣ ।
ତାହାର ବୈଭବ ଅନନ୍ତ ବ୍ରହ୍ମାଣ୍ଡେର ଗଣ ।୮୫।
ଜୀବଶକ୍ତି ତଟସ୍ଥାଖ୍ୟ—ନାହି ଯାର ଅନ୍ତ ।
ମୁଖ୍ୟ ତିନ ଶକ୍ତି—ତାର ବିଭେଦ ଅନନ୍ତ ।୮୬।
ଏମତ ସ୍ୱରୂପଗଣ, ଆର ତିନ ଶକ୍ତି ।
ସଭାର ଆଶ୍ରୟ କୃଷ୍ଣ—କୃଷ୍ଣେ ସଭାର ସ୍ଥିତି ।୮୭
ଯଦ୍ୟପି ବ୍ରହ୍ମାଣ୍ଡଗଣେର ପୁରୁଷ ଆଶ୍ରୟ ।
ସେହ ପୁରୁଷାଦି-ସଭାର କୃଷ୍ଣ ମୂଳାଶ୍ରୟ ।୮୮।

ନନୁ ଅନନ୍ତରୂପେ ତଦନନ୍ତର ରୂପାଣାମେବ କ୍ରୀଡ଼ାଭବେତ୍ତୁ କଥଂ ଏକସ୍ୟୈବ କୃଷ୍ଣସ୍ୟ ତଦ୍ରୂପେଣ ଇତ୍ୟତଃ ଆହ "ଅନନ୍ତରୂପେ" ଇତି । ଏକସ୍ୟୈବ କୃଷ୍ଣସ୍ୟ ରୂପେଣ ସହ ଅନନ୍ତରୂପାଣାଂ ଭେଦାଭାବାତ୍ ପୃଥକ୍ ସ୍ୱୟମନ୍ତ୍ୟାଭାବାଚ ତସ୍ୟୈବ କ୍ରୀଡ଼େତ୍ୟର୍ଥଃ । ସ୍ୱୟମେବ ତାଦୃଶେନ ଏକ ଏବ କୃଷ୍ଣଃ ତତ୍ତଦନନ୍ତରୂପେଣ କ୍ରୀଡ଼ତୀତଭାବଃ । ୮୩ । ଚ, ଚ,

କୃଷ୍ଣସ୍ୱରୂପଂ ବର୍ତ୍ତ୍ୟେ ଶକ୍ତିବସ୍ତୁବର୍ଣ୍ଣରମାହ " ଚିଚ୍ଛକ୍ତିଃ " ଇତି ଜିଭିଃ । ୮୪ । ଚ, ଚ,

" ଶ୍ରୀକୃଷ୍ଣେର ସ୍ୱରୂପ ଆଦି " ଇତ୍ୟେତତ୍ ପଦାର୍ଥମୁପସଂହରତି " ଏଇତ ସ୍ୱରୂପଗଣ " ଇତି । ଶ୍ରୀକୃଷ୍ଣ ଏକ ସର୍ବେଷାମାଶ୍ରୟଃ ଶ୍ରୀକୃଷ୍ଣ ଏବ ସର୍ବେଷାଂ ସ୍ଥିତିଃ ଇତି ଜ୍ଞାନଂ ଯସ୍ୟ ଭବେତ୍ ତସ୍ୟ ଶ୍ରୀନାରାୟଣାଦି ଶ୍ରୀକୃଷ୍ଣାବତାର ଇତି ଅଜ୍ଞାନଂ ନ ଭବେଦିତି ଭାବଃ । ଅତ "ଉଦେତ ସନ୍ତୋ ତାମ୍" ଇତିବତ୍ କୃଷ୍ଣଶବ୍ଦସ୍ୟ ନ ଦ୍ୱିରୁକ୍ତିଦୋଷଃ । କୃଷ୍ଣାଦେବ ତେଷାଂ ପ୍ରକାଶଃ । କୃଷ୍ଣଏବ ତେଷାଂସ୍ଥିତିଃ ଇତି ବକ୍ତାପତ୍ତିଂ କୃଷ୍ଣଶବ୍ଦସ୍ୟ ଦ୍ୱିଃ ପ୍ରୟୋଗଃ ଇତି ଭାବଃ । ୮୭ ।—୮୮ । ଚ, ଚ,

ପୂର୍ବୋକ୍ତ ଛ ରୂପ ସଙ୍ଖ୍ୟାରେ ଛ ହେଲେହେଁ ଗଣନାରେ ଅସଂଖ୍ୟ ଅଟନ୍ତି । ଅତଏବ ଏପ୍ରକାର ଅନନ୍ତରୂପର ମୂଳରୂପ ସହିତ କୌଣସି ପାର୍ଥକ୍ୟ ନାହିଁ । ଯଥା—ପ୍ରାଭବ ସଙ୍ଖ୍ୟାର ରୂପ ମୋହିନୀ, ହଂସ ଓ ଶୁକ୍ଳ ଇତ୍ୟାଦି । ବୈଭବ ସଙ୍ଖ୍ୟାର ରୂପ ମତ୍ସ୍ୟ, କୂର୍ମ ଇତ୍ୟାଦି । ୮୩ ।

ଶ୍ରୀକୃଷ୍ଣଙ୍କର ଚିଚ୍ଛକ୍ତି ଅର୍ଥାତ୍ ଜ୍ଞାନଶକ୍ତିହିଁ ତାହାଙ୍କର ସ୍ୱରୂପଶକ୍ତି । ତାହାକୁ ଅନ୍ତରଙ୍ଗା ବୋଲଯାଏ । ବୈକୁଣ୍ଠାଦି ଅପ୍ରାକୃତ ସୃଷ୍ଟିସମୂହ ସେହି ଚିତ୍ଶକ୍ତିର ବୈଭବର ବା ବ୍ୟାପକତାର ଅନ୍ତର୍ଭୂତ । ୮୪ ।

ଶ୍ରୀକୃଷ୍ଣଙ୍କର ମାୟାଶକ୍ତିର ନାମ ବହିରଙ୍ଗା, ଯେ କି ପ୍ରାକୃତ ସୃଷ୍ଟିର କାରଣ କି ଉପାଦାନ ଅଟନ୍ତି । ବ୍ରହ୍ମାଣ୍ଡସମୂହ ସେହି ମାୟାଶକ୍ତିର ବୈଭବର ଅନ୍ତର୍ଭୂତ ଅଟନ୍ତି । ୮୫ ।

ଶ୍ରୀକୃଷ୍ଣଙ୍କର ଜୀବଶକ୍ତିର ନାମ ତଟସ୍ଥା । ତାହା ଗଣନାରେ ଅସଂଖ୍ୟ । ଏହି ତିନି ଶକ୍ତି ( ଚିତ୍ଶକ୍ତି, ମାୟାଶକ୍ତି ଓ ଜୀବଶକ୍ତି ) ପ୍ରଧାନ ଶକ୍ତି ଅଟନ୍ତି । କିନ୍ତୁ ଏମାନେ ସଙ୍ଖ୍ୟାରେ ତିନି ହେଲେ ମଧ୍ୟ ଗଣନାରେ ପ୍ରତ୍ୟେକେ ଅସଂଖ୍ୟ ଅଟନ୍ତି । ୮୬ ।

ପୂର୍ବୋକ୍ତ ଷଡ଼୍ବିଧସ୍ୱରୂପ ଏବଂ ଉପରୋକ୍ତ ତିନି ଶକ୍ତି ଏମାନଙ୍କର କଣ୍ଠୋଭ-ଧର୍ମୀ ଶ୍ରୀକୃଷ୍ଣହିଁ ଆଶ୍ରୟ ଅଟନ୍ତି ଏବଂ ଏମାନେ ତାଙ୍କଠାରେ ନିତ୍ୟ ବିରାଜମାନ । ୮୭ ।

ଗ୍ରନ୍ଥକାର କହୁଅଛନ୍ତି ହେ ପୂର୍ବପକ୍ଷ ! ଯଦିଚ ପ୍ରଥମପୁରୁଷ ( ମହାବିଷ୍ଣୁ ) ବ୍ରହ୍ମାଣ୍ଡମାନଙ୍କର ଆଶ୍ରୟ, ତଥାପି ଶ୍ରୀକୃଷ୍ଣ ସେହି ପୁରୁଷ ପ୍ରଭୃତିଙ୍କର ମୂଳାଶ୍ରୟ ଅଟନ୍ତି । ୮୮ ।

ସ୍ୱୟଂଭଗବାନ୍ କୃଷ୍ଣ—କୃଷ୍ଣ ସର୍ବାଶ୍ରୟ ।
ପରମ ଈଶ୍ୱର କୃଷ୍ଣ—ସର୍ବଶାସ୍ତ୍ରେ କୟ ॥ ୮୯ ॥
ତଥାହି ବ୍ରହ୍ମସଂହିତାୟାମ୍ ( ୫।୧ )—
ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ ।
ଅନାଦିରାଦିର୍ଗୋବିନ୍ଦଃ ସର୍ବକାରଣକାରଣମ୍ ॥୧୮॥*

ଏ ସବ ସିଦ୍ଧାନ୍ତ ତୁମି ଜାନ ଭାଲମତେ ।
ତବୁ ପୂର୍ବପକ୍ଷ କର ଆମା ଚାଲାଇତେ ॥ ୯୦ ॥
ସେଇ କୃଷ୍ଣ ଅବତାରୀ ବ୍ରଜେନ୍ଦ୍ରକୁମାର ।
ଆପନେ ଚୈତନ୍ୟରୂପେ କୈଲ ଅବତାର ॥୯୧॥

" ପୂର୍ବପକ୍ଷୀ କହେ " ଇତ୍ୟାଦ୍ୟୁକ୍ତଂ ଶ୍ରୀନାରାୟଣ ଏବ ଶ୍ରୀକୃଷ୍ଣରୂପେଣାବତୀର୍ଣ୍ଣଃ ଇତି ଭବାଦିମତଂ । " ତାରେ କହି " ଇତ୍ୟାଦିନା ନିରାକୃତ୍ୟ ଶ୍ରୀକୃଷ୍ଣାଦେବ ଶ୍ରୀନାରାୟଣ ଇତି ଶାସ୍ତ୍ରମତଂ ସଂସ୍ଥାପ୍ୟତ ତଦେବ ଉପସଂହରତି " ସ୍ୱୟଂ ଭଗବାନ୍ " ଇତି । କୃଷ୍ଣଃ ସ୍ୱୟଂ ଭଗବାନ୍ କୃଷ୍ଣଃ ସର୍ବାଶ୍ରୟଃ, କୃଷ୍ଣଃ ପରମେଶ୍ୱରଃ ଇତି ସର୍ବାଣି ଶାସ୍ତ୍ରାଣି କଥୟନ୍ତି ତସ୍ମାତ୍ ଶ୍ରୀକୃଷ୍ଣାଦେବ ଶ୍ରୀନାରାୟଣଃ ନ ତୁ ଶ୍ରୀନାରାୟଣାତ୍ ଶ୍ରୀକୃଷ୍ଣଃ ଶାସ୍ତ୍ରପ୍ରମାଣାଭାବାତ୍ ଇତିଭାବଃ । ଅତଃ ପାଧୁକ୍ତଂ "ଅତଏବ ବ୍ରହ୍ମବାକ୍ୟେ" ଇତି ପଦ୍ୟଂ । ତଥା " ବ୍ରହ୍ମଆତ୍ମା ଭଗବାନ୍ କୃଷ୍ଣେର ବିହାର " । ଇତି " କୃଷ୍ଣସ୍ୱୟଂ ଭଗବାନ୍ " ଇତ୍ୟାଦି ପଦ୍ୟଞ୍ଚ । ୮୯ । ଵି, ଚ,

କୃଷ୍ଣଃ ( ବ୍ରଜେନ୍ଦ୍ରନନ୍ଦନଃ ) ପରମଃଈଶ୍ୱରଃ ( ବଳଦେବ-ନାରାୟଣ-ବାସୁଦେବ-ସଙ୍କର୍ଷଣ-ପ୍ରଦ୍ୟୁମ୍ନାନିରୁଦ୍ଧକାରଣାର୍ଣ୍ଣବଶାୟୀ-ଗର୍ଭୋଦଶାୟୀ-କ୍ଷୀରୋଦଶାୟି ପରମାତ୍ମା ପୁରୁଷାବତାର ମତ୍ସ୍ୟ, କୂର୍ମ, ବରାହ-ରାମ, ନୃସିଂହାଦି ନୈମିତ୍ତିକାବତାର ; ବ୍ରହ୍ମଶିବାଦିଗୁଣାବତାର ନିର୍ବିଶେଷ-ପରବ୍ରହ୍ମ-ମହେନ୍ଦ୍ରାଦି-ବିଭୂତ୍ୟାବତାରାଣାଂ-ସର୍ବେଷାଂ-ପତିଃ ) ସଚ୍ଚିଦାନନ୍ଦବିଗ୍ରହଃ ( ସନ୍ଧିନୀ-ସମ୍ବିତ୍-ହ୍ଲାଦିନୀଶକ୍ତିବିଗ୍ରହ ସମନ୍ୱିତଃ ) ଅନାଦିଃ ( ଅବିରହିତଃ ଅହମେବାସମେବାଗ୍ରେ ଇତି ପଦ୍ମବାଚ୍ୟଃ ) ଆଦିଃ ( ସର୍ବେଷାଂ ମୂଳରୂପଃ) ସର୍ବକାରଣକାରଣଂ (ସର୍ବକାରଣାନାଂ କାରଣଂ ମୂଳଂ) ଗୋବିନ୍ଦଃ । [ ୧୮ଶ ଶ୍ଳୋକଃ ]

ଶାସ୍ତ୍ରବିଚାରପରାଭବେନ ପଣ୍ଡିତାନାମସମୋର୍ଦ୍ଧ୍ୱଂ ଦୁଃଖଂ ଜାୟତେ ତଦ୍ଧ ଭାଗବତୈଃ ପ୍ରତିବାଦୀ ତୁ କସ୍ମାଚିତ୍ ଭଙ୍ଗ୍ୟା ତାନ୍ ସୁଖୀକରୋତି ଯତଃ ଭାଗବତାନାମୟମେବ ସ୍ୱଭାବଃ ଯଥା " ଯସ୍ମାନ୍ନୋଦ୍ୱିଜତେଲୋକଃ " ଇତି ଗୀତୋପନିଷଦ୍ । " ହରିଭକ୍ତୌ ପ୍ରବୃତ୍ତାଃ ଯେ ନ ତେ ସ୍ୟୁଃ ପରତାପିନଃ " ଇତି ଭକ୍ତିରସାମୃତସିନ୍ଧୁଃ । ଅତଃ ପରମଭାଗବତୋ ଗ୍ରନ୍ଥକାରଃ ବିଚାରପରାଭବ-ପ୍ରଭବ ଦୁଃଖ ଦୁଃଖିତଂ ପୂର୍ବପକ୍ଷକର୍ତ୍ତାରଂ ସୁଖୀକର୍ତ୍ତୁମାହ " ଏ ସବ " ଇତି । ମାଂ ଚାଳୟିତୁଂ ବ୍ରହ୍ମପରମାତ୍ମଭଗବଦ୍ରୂପେଣ ଶ୍ରୀକୃଷ୍ଣ ଏବ ବିହରତି ଇତି ସିଦ୍ଧାନ୍ତାତ୍ ଅୟଂ ଚଳତି କିଂ ନ ବା ଇତି ପରୀକ୍ଷିତୁଂ ଇତ୍ୟର୍ଥଃ । ତ୍ୱଂ ମତ୍ପରୀକ୍ଷକଃ ନ ତୁ ଅଜ୍ଞୋଽପୀତିଭାବଃ । ୯୦ । ଵି, ଚ,

" ନ ଚୈତନ୍ୟାତ୍ କୃଷ୍ଣାଜ୍ଜଗତି ପରତତ୍ତ୍ୱଂ ପରମିହ " ଇତ୍ୟସ୍ୟାର୍ଥମାହ " ସେଇ କୃଷ୍ଣ " ଇତିସାର୍ଦ୍ଧେନ । ୯୧ । ଵି, ଚ,

---

ତେଣୁ ସେହି ମୂଳାଶ୍ରୟ ଶ୍ରୀକୃଷ୍ଣଙ୍କୁ ସର୍ବଶାସ୍ତ୍ରରେ ସ୍ୱୟଂ ଭଗବାନ୍ ବା ସର୍ବାଶ୍ରୟ ବା ପରମେଶ୍ୱର ବୋଲି ନିରୂପଣ କରିଅଛନ୍ତି । ଅତଏବ ଶ୍ରୀକୃଷ୍ଣ, ନାରାୟଣଙ୍କର ଅବତାର ନୁହନ୍ତି ; ଶ୍ରୀକୃଷ୍ଣ ଅବତାରୀ, ନାରାୟଣ ତାହାଙ୍କର ଅବତାର । ୮୯ ।

ଶ୍ରୀକୃଷ୍ଣ ( ବ୍ରଜେନ୍ଦ୍ରନନ୍ଦନ ) ଈଶ୍ୱରମାନଙ୍କର ଶ୍ରେଷ୍ଠ ଏଣୁ ପରମେଶ୍ୱର ସଚ୍ଚିଦାନନ୍ଦବିଗ୍ରହ ( ସଚ୍ଚିଦାନନ୍ଦମୟରୂପ ) ସ୍ୱୟଂ ଅନାଦି ( ସ୍ୱପ୍ରକାଶ ) ଏବଂ ଆଦି ( ସର୍ବତତ୍ତ୍ୱର ପ୍ରକାଶକ ବା ମୂଳାଶ୍ରୟ ) ଏବଂ ସର୍ବକାରଣର କାରଣ (ବୀଜସ୍ୱରୂପ) ଗୋବିନ୍ଦ (ଗୋପାଳ) । [ ୧୮ଶ ଶ୍ଳୋକାର୍ଥ ]

| | |
|---|---|
| ଅତଏବ ଚୈତନ୍ୟଗୋସାଇଁ ପରତତ୍ତ୍ୱ-ସୀମା । | କୃଷ୍ଣଙ୍କେ କହଯ୍ୟେ କେହୋ—ନରନାରାୟଣ । |
| ତାଁରେ କ୍ଷୀରୋଦଶାୟୀ କହି, କି ତାଁର ମହିମା ।୧୬। | କେହୋ କହେ—କୃଷ୍ଣ ହୟେ ସାକ୍ଷାତ୍ ବାମନ ।୧୯। |
| ସେହି ତ ଭକ୍ତେର ବାକ୍ୟ—ନହେ ବ୍ୟଭିଚାରୀ । | କେହୋ କହେ—କୃଷ୍ଣ କ୍ଷୀରୋଦଶାୟି-ଅବତାର । |
| ସକଲ ସମ୍ଭବେ ତାଁତେ, ଯାତେ ଅବତାରୀ ।୧୭। | ଅସମ୍ଭବ ନହେ, ସତ୍ୟ ବଚନ ସଭାର । ୧୬ । |
| ଅବତାରୀର ଦେହେ ସବ-ଅବତାରେର ସ୍ଥିତି । | କେହୋ କହେ—ପରବ୍ୟୋମ-ନାରାୟଣ କରି । |
| କେହୋ କୋନମତ କହେ, ଯେମନ ଯାର ମତି ।୧୮। | ସକଲ ସମ୍ଭବେ କୃଷ୍ଣେ ଯାତେ ଅବତାରୀ । ୧୬ । |

ଯତ୍ତୁ ଅନ୍ୟୈର୍ଭକ୍ତୈଃ ତତ୍ତ୍ୱଂ କ୍ଷୀରୋଦଶାୟିତ୍ୱେନ ବଦନ୍ତି ତନ୍ନହି କାରଣାର୍ଣ୍ଣବଶାୟି ପ୍ରଭୃତି କାରଣସ୍ୟ ଶ୍ରୀନାରାୟଣସ୍ୟାପି କାରଣେ ଶ୍ରୀଚୈତନ୍ୟେ କ୍ଷୀରୋଦଶାୟୀତି ଉକ୍ତେ ତତ୍ର ମହିମ୍ନ ଅସମ୍ଭାବାତ୍ ଇତ୍ୟର୍ଥଃ । ୧୬ । ବ, ଚ,

ନନୁ ଭକ୍ତାନାଂ ତେଷାଂ ତଦ୍ବାକ୍ୟଂ କଂ ସର୍ବଥା ହେୟଂ ନହି ନହିତ ସର୍ବଂ ସମାଦଧାନାହ "ସେ ହୋୟେ" ଇତି ଯତ୍ତୁ ଭକ୍ତବାକ୍ୟଂ ତତ୍ତୁ ନ ବ୍ୟଭିଚରିତ ନ ମିଥ୍ୟା ଇତ୍ୟର୍ଥଃ । ଭକ୍ତବାକ୍ୟଂ କ୍ୱଚିଦପି ନ ବ୍ୟଭିଚରତୀତି ଭାବଃ । ଯତଃ ଅବତାରୀ ଇତଃ ସକଳଂ ସମ୍ଭବେତ୍ ଅବତାରଣି ଶ୍ରୀକୃଷ୍ଣଚୈତନ୍ୟେ ସକଳମେବବାକ୍ୟଂ ସମ୍ଭବେଦିତି ସର୍ବସମାଧାନଂ । " ଏ ଅର୍ଥ ନା ଜାନି ମୂର୍ଖ " ଇତ୍ୟତ୍ର ମୂର୍ଖ ଇତି ଯଦୁକ୍ତଂ ତତ୍ତୁ ଅଭକ୍ତପରଂ ଅଥବା " ନାରାୟଣସ୍ତ୍ୱଂ " ଇତି ଶ୍ଳୋକାର୍ଥ-ପରଂ । ୧୭ । ବ୍ୟ, ଚ,

ତଦେବ ପ୍ରକଟୟନ୍ତ " ଅବତାରୀର " ଇତିଦ୍ୱିକଃ । ୧୬ । ବ, ଚ,

ଭକ୍ତସିଦ୍ଧାନ୍ତଶ୍ରବଣପ୍ରୟୋଜନଂ ବଦନ୍ନାଦୌ ଭକ୍ତସ୍ୱାଭାବ୍ୟେନ ଶ୍ରୋତୃନ୍ ପ୍ରଣମ୍ୟ ଶ୍ରବଣାୟାଗ୍ରହୀ କରୋତି " ସବ " ଇତି । ୧୬ । ବ, ଚ,

ଗ୍ରନ୍ଥକାର ପୂର୍ବପକ୍ଷଙ୍କୁ କହୁଅଛନ୍ତି ଯେ ଉପରୋକ୍ତଭାବରେ ଯେ ସମସ୍ତ ସିଦ୍ଧାନ୍ତ ନିରୂପଣ କରାଗଲା ତାହା ତୁମ୍ଭେ ଉତ୍ତମରୂପେ ଜାଣ, ତଥାପି ସ୍ୱପକ୍ଷୀୟ ସିଦ୍ଧାନ୍ତ ସ୍ଥିରି ମୁଁ ବଳିତ ହେବି କି ନା ଏହାଭାବରେ ମୋତେ ପରୀକ୍ଷା କରିବା ସକାଶେ ସ୍ୱପକ୍ଷୀୟ ସିଦ୍ଧାନ୍ତ ଉଠାଇଅଛ । ୧୦ ।

ଉପରୋକ୍ତ ଆଲୋଚନାଦ୍ୱାରା ଏହା ନିର୍ଣ୍ଣିତ ହେଲା ଯେ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ ଯେ କି ଅବତାରୀ ( ସର୍ବଅବତାର ବୀଜ ) ସେ ସ୍ୱୟଂ ଶ୍ରୀଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି, ଅର୍ଥାତ୍ ଶ୍ରୀଚୈତନ୍ୟ ଓ ଶ୍ରୀକୃଷ୍ଣ ଏକତତ୍ତ୍ୱ । ୧୬ ।

ଏଣୁ ଏହା ମଧ୍ୟ ନିର୍ଣ୍ଣୀତ ହେଲା ଯେ ଶ୍ରୀଚୈତନ୍ୟଗୋସାଇଁଙ୍କଠାରେ ପରତତ୍ତ୍ୱ (ମୂଳତତ୍ତ୍ୱ) ସୀମାବଦ୍ଧ ହୋଇଅଛି ଅର୍ଥାତ୍ ଶ୍ରୀଚୈତନ୍ୟଗୋସାଇଁହିଁ ସ୍ୱୟଂ ପରତତ୍ତ୍ୱ ବସ୍ତୁ ଅଟନ୍ତି । ତାହାଙ୍କୁ କ୍ଷୀରୋଦଶାୟୀ ( ତୃତୀୟପୁରୁଷାବତାର ) ବୋଲି କହିବାଦ୍ୱାରା ତାହାଙ୍କର ମାହାତ୍ମ୍ୟ ବୃଦ୍ଧି ନୁହଇ ନା । ତଥାପି ତାହାଙ୍କୁ କ୍ଷୀରୋଦଶାୟୀ ବୋଲି ଯେ ଭକ୍ତ କହିଅଛନ୍ତି ତାହାଙ୍କର ମହିମା ଖର୍ବ କରିବା ନିମନ୍ତେ ନୁହେଁ, କାରଣ ସେ ସ୍ୱୟଂ ଅବତାରୀହେତୁ ତାଙ୍କଠାରେ ସବୁ ଅବତାର ବୀଜ ରହିଅଛି । ଏଣୁ ସେ ସର୍ବ ଅବତାରମୟ । ସେହିହେତୁ ଯେଉଁ ଭକ୍ତର ଯେପରି ଭାବନା ସେ ସେହିରୂପରେ ତାହାଙ୍କୁ ଅନୁଭବ କରେ ଓ ଭାବେ । ଯେପରିକି ଶ୍ରୀକୃଷ୍ଣଙ୍କୁ ମଧ୍ୟ କେହି କେହି ଭକ୍ତ ନରନାରାୟଣ, କେହି ବାମନ, କେହି କ୍ଷୀରୋଦଶାୟୀ, କେହି ପରବ୍ୟୋମ ନାରାୟଣ ପ୍ରଭୃତି ବୋଲି କହିଥାନ୍ତି ଏବଂ ଏ ସମସ୍ତ ନାମ ଶ୍ରୀକୃଷ୍ଣ ସ୍ୱୟଂ ଅବତାରୀହେତୁ ତାଙ୍କଠାରେ ପ୍ରଯୁଜ୍ୟ । ୧୭—୧୬ ।

ସବ ଶ୍ରୋତାଗଣେର କରି ଚରଣବନ୍ଦନ ।
ଏ ସବ ସିଦ୍ଧାନ୍ତ ଶୁନ କରି ଏକମନ । ୯୮ ।
ସିଦ୍ଧାନ୍ତ ବଲିୟା ଚିତ୍ତେ ନା କର ଅଲସ ।
ଇହା ହଇତେ କୃଷ୍ଣେ ଲାଗେ ସୁଦୃଢ଼ ମାନସ ।୯୯।
ଚୈତନ୍ୟ-ମହିମା ଜାନି ଏ ସବ ସିଦ୍ଧାନ୍ତେ ।
ଚିତ୍ତ ଦୃଢ଼ ହଞା ଲାଗେ ମହିମାଜ୍ଞାନ ହଇତେ ।୧୦୦।
ଚୈତନ୍ୟପ୍ରଭୁର ମହିମା କହିବାର ତରେ ।
କୃଷ୍ଣେର ମହିମା କହି କରିୟା ବିସ୍ତାରେ ।୧୦୧।
ଚୈତନ୍ୟଗୋସାଇଁର ଏଇ ତତ୍ତ୍ୱନିରୂପଣ— ।
ସ୍ୱୟଂଭଗବାନ୍ କୃଷ୍ଣ ବ୍ରଜେନ୍ଦ୍ରନନ୍ଦନ ।୧୦୨ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୧୦୩ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଲୀଲାୟାଂ ବସ୍ତୁ-ନିର୍ଦ୍ଦେଶମଙ୍ଗଳାଚରଣେ ଶ୍ରୀକୃଷ୍ଣଚୈତନ୍ୟ-ତତ୍ତ୍ୱନିରୂପଣଂ ନାମ ଦ୍ୱିତୀୟ-ପରିଚ୍ଛେଦଃ । ୨ ।

ସିଦ୍ଧାନ୍ତେ ତର୍କାଦିଭୟାତ୍ ଚିତ୍ତେ ଅଲସଂ ମା କୁରୁ ପ୍ରତିକୂଲତାଂ ହିତ୍ୱା ଅନୁକୂଲମେବ ସିଦ୍ଧାନ୍ତଂ କୁରୁ ଇତି ଭାବଃ । ସିଦ୍ଧାନ୍ତଶ୍ରବଣାଦେବ କୃଷ୍ଣେ ମାନସଂ ଯଥା ସୁଦୃଢ଼ଂ ଲଗେତ୍ତ । ତଥା ଏତେଷୁ ସିଦ୍ଧାନ୍ତେ ଚୈତନ୍ୟମହିମାନଂ ଜାନୀତ ତସ୍ମାତ୍ ମହିମଜ୍ଞାନାତ୍ ତସ୍ମିନ୍ ଚିତ୍ତଂ ଦୃଢ଼ରୂପେଣ ଲଗେତ୍ ସିଦ୍ଧାନ୍ତେନ ମହିମଜ୍ଞାନଂ ତସ୍ମାତ୍ ଚିତ୍ତଦୃଢ଼ସଂଲଗ୍ନଂ ଅତଃ ସିଦ୍ଧାନ୍ତଶ୍ରବଣମାବଶ୍ୟକମିତି ଭାବଃ ।
। ୯୮ । ୯୯ । ବି, ଚ,

ନନୁ ଚୈତନ୍ୟମହିମାକଥନପ୍ରକରଣେ କୃଷ୍ଣସ୍ୟ ମହିମାକଥଂ ବିସ୍ତରେଣ କଥିତ ଇତ୍ୟତ ଆହ "ଚୈତନ୍ୟପ୍ରଭୁର" ଇତି । ତୃତୀୟଚତୁର୍ଥପରିଚ୍ଛେଦାଦୌ ଶ୍ରୀଚୈତନ୍ୟମହିମ-କଥନାର୍ଥଂ ପ୍ରଥମତଃ ଶ୍ରୀକୃଷ୍ଣମହିମା ବିସ୍ତରେଣ ଉକ୍ତଃ । ଅୟମାଶୟଃ ନିଜପ୍ରେମପ୍ରଦାନାର୍ଥଂ ତଦାସ୍ୱାଦନାର୍ଥଂ ସ୍ୱୟଂ ଶ୍ରୀକୃଷ୍ଣ ଏବ ଶ୍ରୀଚୈତନ୍ୟରୂପେଣାବତୀର୍ଣ୍ଣଃ ଇତି ଶ୍ରୀଚୈତନ୍ୟମହିମକଥନାତ୍ ପୂର୍ବମେବ ଶ୍ରୀକୃଷ୍ଣମହିମଜ୍ଞାନାବଶ୍ୟକତ୍ୱାତ୍ ଅଗ୍ରତ ଏବ ତନ୍ମହିମା ଉକ୍ତଃ । ୧୦୦ । ବି, ଚ,

ପ୍ରକରଣାର୍ଥଂ ଶ୍ରୀଚୈତନ୍ୟ-ତତ୍ତ୍ୱ-ନିରୂପଣଂ ଉପସଂହରତି "ଚୈତନ୍ୟ" ଇତି । ସ୍ୱୟଂ ଭଗବାନ୍ ବ୍ରଜେନ୍ଦ୍ରନନ୍ଦନ ଏବ ଶ୍ରୀଚୈତନ୍ୟ ଇତ୍ୟସ୍ୟ ତତ୍ତ୍ୱନିରୂପଣଂ ମହିମା ଇତ୍ୟର୍ଥଃ । ୧୦୧ ।
। ୧୦୨ । ବି, ଚ,

ଗ୍ରନ୍ଥକାର ଶ୍ରୀଲ କବିରାଜ ଗୋସ୍ୱାମୀ ଶ୍ରୀଶ୍ରୀଚୈତନ୍ୟଚରିତାମୃତ ଶ୍ରୋତାମାନଙ୍କୁ ପ୍ରଣାମପୂର୍ବକ ନିବେଦନ କରୁଅଛନ୍ତି ଯେ ଆପଣମାନେ ଏହି ସମସ୍ତ ସିଦ୍ଧାନ୍ତ (ପୂର୍ବକଥିତ ଓ ପରକଥିତ) ମନୋଯୋଗର ସହିତ ଶୁଣନ୍ତୁ । ଏହା ସିଦ୍ଧାନ୍ତ (ତତ୍ତ୍ୱବିଚାର) ବୋଲି ଏଥିରେ ହେଳା କରନ୍ତୁ ନାହିଁ କିମ୍ବା ନୀରସ ମନେ କରନ୍ତୁ ନାହିଁ । କାରଣ ସିଦ୍ଧାନ୍ତ ଜାଣିବାଦ୍ୱାରା ଶ୍ରୀକୃଷ୍ଣଙ୍କଠାରେ ସୁଦୃଢ଼ ବିଶ୍ୱାସ ଜନ୍ମେ । ଏହିସବୁ ସିଦ୍ଧାନ୍ତଦ୍ୱାରା ଶ୍ରୀକୃଷ୍ଣଚୈତନ୍ୟଙ୍କର ମାହାତ୍ମ୍ୟ ଜଣାଯାଏ ଏବଂ ମାହାତ୍ମ୍ୟ ଜାଣିହେଲେ ତାହାଙ୍କଠାରେ ଭକ୍ତର ଚିତ୍ତ ଦୃଢ଼ଭାବରେ ଲାଗିରହେ । ମୁଁ ଆପଣମାନଙ୍କୁ ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁଙ୍କର ମାହାତ୍ମ୍ୟ ବୁଝାଇବା ସକାଶେ ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ପୂର୍ବୋକ୍ତରୂପେ ବିସ୍ତୃତଭାବରେ ବର୍ଣ୍ଣନ କଲି । ଏତଦ୍ଦ୍ୱାରା ଏହା ନିରୂପିତ ହେଲା ଯେ ଶ୍ରୀଚୈତନ୍ୟଗୋସାଇଁ ତତ୍ତ୍ୱତଃ ସ୍ୱୟଂ ଭଗବାନ୍ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ । ଗ୍ରନ୍ଥକାର ଶ୍ରୀଲ କୃଷ୍ଣଦାସ କବିରାଜ ଶ୍ରୀରୂପଗୋସ୍ୱାମୀ ଓ ଶ୍ରୀରଘୁନାଥ ଦାସ ଗୋସ୍ୱାମୀଙ୍କର ଶ୍ରୀଚରଣ ସ୍ମରଣ କରି ଶ୍ରୀଚୈତନ୍ୟଚରିତାମୃତ ଗ୍ରନ୍ଥ ସଙ୍କଳନ କରୁଅଛନ୍ତି । ୯୮—୧୦୩ ।

## ତୃତୀୟ ପରିଚ୍ଛେଦ ।

ଶ୍ରୀଚୈତନ୍ୟପ୍ରଭୁଂ ବନ୍ଦେ ଯତ୍ପାଦାଶ୍ରୟବୀର୍ଯ୍ୟତଃ ।
ସଂଗୃହ୍ଣାତ୍ୟାକରବ୍ରାତାଦଜ୍ଞଃ ସିଦ୍ଧାନ୍ତସନ୍ମଣୀନ୍ ॥୧॥ ॐ

ଜୟଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ତୃତୀୟ-ଶ୍ଳୋକେର ଅର୍ଥ କୈଲ ବିବରଣ ।
ଚତୁର୍ଥ-ଶ୍ଳୋକେର ଅର୍ଥ ଶୁନ ଭକ୍ତଗଣ ! । ୨ ।

ତଥାହି ବିଦଗ୍ଧମାଧବେ ( ୧।୨ )—
ଅନର୍ପିତଚରୀଂ ଚିରାତ୍ କରୁଣୟାବତୀର୍ଣ୍ଣଃ କଲୌ,
ସମର୍ପୟିତୁମୁନ୍ନତୋଜ୍ଜ୍ୱଲରସାଂ ସ୍ୱଭକ୍ତିଶ୍ରିୟମ୍ ।
ହରିଃ ପୁରଟସୁନ୍ଦରଦ୍ୟୁତିକଦମ୍ବସନ୍ଦୀପିତଃ,
ସଦା ହୃଦୟକନ୍ଦରେ ସ୍ଫୁରତୁ ବଃ ଶଚୀନନ୍ଦନଃ ॥୨॥ ॐ

ପୂର୍ଣ୍ଣ ଭଗବାନ୍ କୃଷ୍ଣ ବ୍ରଜେନ୍ଦ୍ରକୁମାର ।
ଗୋଲୋକେ ବ୍ରଜେର ସହ ନିତ୍ୟ ବିହାର । ୩ ।
ବ୍ରହ୍ମାର ଏକଦିନେ ତେଁହୋ ଏକବାର ।
ଅବତୀର୍ଣ୍ଣ ହଞା କରେନ ପ୍ରକଟ ବିହାର । ୪ ।

ଯତ୍ ପାଦାଶ୍ରୟବୀର୍ଯ୍ୟତଃ ( ଯସ୍ୟ ଶ୍ରୀଚୈତନ୍ୟସ୍ୟ ପାଦାଶ୍ରୟବୀର୍ଯ୍ୟତଃ ପାଦାଶ୍ରୟପ୍ରଭାବାତ୍ ) ଅଜ୍ଞଃ ଆକରବ୍ରାତାତ୍ ( ଆକରବ୍ରାତଃ ଶାସ୍ତ୍ରରୂପଖଣିସମୂହଃ ତସ୍ମାତ୍ ) ସିଦ୍ଧାନ୍ତସନ୍ମଣୀନ୍ ( ସିଦ୍ଧାନ୍ତ ରତ୍ନାନ୍ ପ୍ରେମରହସ୍ୟସିଦ୍ଧାନ୍ତାନ୍ ବା ) ସଂଗୃହ୍ଣାତି (ତଂ) ଶ୍ରୀଚୈତନ୍ୟପ୍ରଭୁଂ ବନ୍ଦେ । [ ୧ମ ଶ୍ଳୋକଃ ]

୨ୟ ଶ୍ଳୋକ ୧ମ ପରିଚ୍ଛେଦର ୪ର୍ଥ ଶ୍ଳୋକରେ ଦ୍ରଷ୍ଟବ୍ୟ ।

ଚତୁର୍ଥଶ୍ଳୋକସ୍ୟାର୍ଥଂ ପ୍ରକାଶୟିତୁଂ ଆଦୌ ତସ୍ୟା-ଭାସ-ମାହ " ପୂର୍ଣ୍ଣଭଗବାନ୍ " ଇତ୍ୟାଦି " ଯଥେଷ୍ଟ ବିହରି " ଇତ୍ୟନ୍ତଂ । ଅତ୍ର ସହିତ-ପଦେନ ନିତ୍ୟବିହରଣ-କ୍ରିୟା-ସେଷ୍ୟା ଅଧୀନଂଗତ ସାହିତ୍ୟଂ ମନ୍ତବ୍ୟଂ ଗୋଲୋକେ ବ୍ରଜେ ଚ ନିତ୍ୟବିହାର ଇତ୍ୟର୍ଥଃ । ବନୈକତ୍ୱପ୍ରଦୃଷ୍ଟିଂ ବୈ ପ୍ରକାଶତ୍ୱଂ ନ ସିଦ୍ଧ୍ୟତି । ଇତି ଗୋକୁଳ—ଗୋଲୋକନାଥୈକତ୍ୱପ୍ରଦର୍ଶନଂ । ଭାଗବତାମୃତେ ଚ । ଯତ୍ତୁ ଗୋଲୋକନାମ ସ୍ୟାତ୍ତଚ୍ଚ ଗୋକୁଲବୈଭବଂ । ତଦାତ୍ମ—ବୈଭବତ୍ୱଞ୍ଚ ତସ୍ୟ ତନ୍ମହିମୋନ୍ନତେଃ । ତସ୍ୟ ଗୋଲୋକସ୍ୟ ମହିମା ଉନ୍ନତେ ହେତୋଃ । କ୍ୱଚିଦୈଶ୍ୱର୍ଯ୍ୟସାମ୍ୟେନ ଧାମ୍ନୋଃ ପ୍ରଥମତୁର୍ଯ୍ୟୟୋଃ । ଐକ୍ୟଂ ଦର୍ଶିତମିନ୍ଦ୍ରାଦ୍ୟୈର୍ମାଧୁର୍ଯ୍ୟନାମକୋବିଦୈଃ କ୍ୱଚିତ୍ ହରିବଂଶେ—ମାଧୁର୍ଯ୍ୟଂ ତାବତ୍ ସ୍ୱର୍ଣ୍ଣମୁଦ୍ରା ସଦୃଶଂ । ଐଶ୍ୱର୍ଯ୍ୟଂ ରଜତମୁଦ୍ରା ସଦୃଶଂ । ବ୍ରଜମପି ମାଧୁର୍ଯ୍ୟୈଶ୍ୱର୍ଯ୍ୟବଲିତଂ । ଗୋଲୋକଂ କେବଲୈଶ୍ୱର୍ଯ୍ୟରୂପଂ । ଅତଏବ ଚତୁର୍ଭୁଜାଦୈଶ୍ୱର୍ଯ୍ୟବତ୍ତ୍ୱେନ ବ୍ରଜଗୋଲୋକୟୋଃ ସାମ୍ୟଂ । ତସ୍ମାଦୈଶ୍ୱର୍ଯ୍ୟସାମ୍ୟେନ ଗୋଲୋକେଽପି ଶ୍ରୀକୃଷ୍ଣସ୍ୟ ପୂର୍ଣ୍ଣତମତ୍ୱଂ । ଅତଏବ ଗୋକୁଳନାଥ-ଗୋଲୋକ-ନାଥୟୋ-ରେକାତ୍ମବ୍ୟଞ୍ଜିକା ଲୀଳା ସ୍ପଷ୍ଟା । ଅତ୍ର ସ୍ପଷ୍ଟଲୀଳା ଦ୍ୱିବିଧା ଗୋଲୋକଗତା ବ୍ରଜଗତା ଚେତି । ତତ୍ର ଗୋଲୋକଗତା କେବଲ କୈଶୋରତ୍ୱେନ ଏକବିଧା । ବ୍ରଜଗତା ତୁ ତ୍ରିବିଧା ବାଲ୍ୟଗତା, ପୌଗଣ୍ଡଗତା, କୈଶୋରଗତା ଇତି । ଅତଏବ ଗୋଲୋକନାଥସ୍ୟ ନନ୍ଦନନ୍ଦନାବେଶଃ ।୩।୪। ବି, ଚ,

ଯାହାଙ୍କର ଶ୍ରୀଚରଣାଶ୍ରୟ ପ୍ରଭାବରୁ ଅଜ୍ଞ ବ୍ୟକ୍ତି ମଧ୍ୟ ଶାସ୍ତ୍ରରୂପ ଖଣିସମୂହରୁ ସିଦ୍ଧାନ୍ତସ୍ୱରୂପ ଉତ୍କୃଷ୍ଟ ମଣିସମୂହ ସଂଗ୍ରହ କରିବାକୁ ସକ୍ଷମ ହୁଅନ୍ତି ସେହି ଶ୍ରୀକୃଷ୍ଣଚୈତନ୍ୟପ୍ରଭୁଙ୍କୁ ମୁଁ ବନ୍ଦନା କରେଁ । [ ୧ମ ଶ୍ଳୋକାର୍ଥ ]

ଚିରକାଳ ଧରି ଅର୍ଥାତ୍ ଅନାଦିକାଳରୁ ଯାହା ଅର୍ପିତ ହୋଇନାହିଁ ଏପରି ଉନ୍ନତ ( ଶ୍ରେଷ୍ଠ ) ଉଜ୍ଜ୍ୱଳରସ ( ମଧୁରରସ ) ପରିପୁଷ୍ଟ ନିଜ ଭକ୍ତି ସମ୍ପତ୍ତି ( ପ୍ରେମଭକ୍ତିରୂପ ଉପାସନା ସମ୍ପତ୍ତି ) ଦାନ କରିବା ନିମିତ୍ତ କଳିଯୁଗରେ ଯେ କୃପାପୂର୍ବକ ଅବତୀର୍ଣ୍ଣ ଏବଂ ଯାହାଙ୍କର କାନ୍ତି ଗଳିତସୁବର୍ଣ୍ଣର କାନ୍ତିଠାରୁ ଅଧିକତର ଶୋଭନୀୟ ସେହି ଶ୍ରୀଶଚୀନନ୍ଦନ ହରି ଆପଣମାନଙ୍କର ହୃଦୟକନ୍ଦରରେ ସଦା ବିରାଜ କରନ୍ତୁ । [ ୨ୟ ଶ୍ଳୋକାର୍ଥ ]

ସତ୍ୟ, ତ୍ରେତା, ଦ୍ୱାପର, କଳି,—ଚାରି ଯୁଗ ଜାନି ।
ସେଇ ଚାରିଯୁଗେ 'ଦିବ୍ୟ ଏକ ଯୁଗ' ମାନି । ୬ ।
ଏକାତ୍ତର-ଚତୁର୍ଯୁଗେ—ଏକ ମନ୍ୱନ୍ତର ।
ଚୌଦ୍ଦ ମନ୍ୱନ୍ତର ବ୍ରହ୍ମାର ଦିବସ-ଭିତର । ୭ ।
ବୈବସ୍ୱତ-ନାମ ଏଇ ସପ୍ତମ ମନ୍ୱନ୍ତର ।
ସାତାଇଶ-ଚତୁର୍ଯୁଗ ତାହାର ଅନ୍ତର । ୭ ।
ଅଷ୍ଟାବିଂଶ-ଚତୁର୍ଯୁଗେ—ଦ୍ୱାପରେର ଶେଷେ ।
ବ୍ରଜେର ସହିତେ ହୟ କୃଷ୍ଣେର ପ୍ରକାଶେ । ୮ ।

ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଶୃଙ୍ଗାର,—ଚାରି ରସ ।
ଚାରିଭାବେର ଭକ୍ତ ଯତ କୃଷ୍ଣ ତାର ବଶ । ୯ ।
ଦାସ-ସଖା-ପିତା-ମାତା-କାନ୍ତାଗଣ ଲଞା ।
ବ୍ରଜେ କ୍ରୀଡ଼ା କରେ କୃଷ୍ଣ ପ୍ରେମାବିଷ୍ଟ ହୈଞା ।୧୦।
ଯଥେଷ୍ଟ ବିହରି କୃଷ୍ଣ କରି ଅନ୍ତର୍ଦ୍ଧାନ ।
ଅନ୍ତର୍ଦ୍ଧାନ କରି ମନେ କରେ ଅନୁମାନ— ।୧୧।
ଚିରକାଲ ନାହିଁ କରି ପ୍ରେମଭକ୍ତିଦାନ ।
ଭକ୍ତି ବିନା ଜଗତେର ନାହିଁ ଅବସ୍ଥାନ । ୧୨ ।

ବ୍ରହ୍ମୈକଦିନସ୍ୟ ପରିମାଣଂ କଥୟନ୍ ତତ୍ର ଚ କଦାବତରତୀତ୍ୟାହ "ସତ୍ୟ" ଇତି ଚତୁର୍ଭିଃ । ୬ । ୭ । ୭ । ବି, ଚ,

ଯଥୈକସ୍ୟ ଶ୍ରୀକୃଷ୍ଣବିଗ୍ରହସ୍ୟ ଅନେକ ବ୍ରହ୍ମାଣ୍ଡଗତତ୍ୱେନ ପ୍ରକାଶସ୍ତଥୈବ ବ୍ରଜସ୍ୟାପ୍ୟନେକ ବ୍ରହ୍ମାଣ୍ଡଗତ ପ୍ରକାଶୋ ମନ୍ତବ୍ୟ ଇତି ସଙ୍ଗମବଦାତଂ । ୮—୧୧ । ବି, ଚ,

"ଅନର୍ପିତଚରୀଂ ଚିରାତ୍" ଇତ୍ୟସ୍ୟାର୍ଥମାହ "ଚିରକାଲ" ଇତି । ତେନ ବା କ୍ରମାଗତଂ ଇତି ଅହ "ନାହିଁ ଅବସ୍ଥାନ" ଇତି ଅବସ୍ଥାନଂ ନ ଭବତି ପ୍ରେମଭକ୍ତିଂ ବିନା ମାଂ ନ ପ୍ରାପ୍ନୋତି ଇତିଭାବଃ । ୧୨ । ବି, ଚ,

ବ୍ରଜେନ୍ଦ୍ରନନ୍ଦନ କୃଷ୍ଣହିଁ ପୂର୍ଣ୍ଣ ଭଗବାନ୍ । ସେ ଗୋଲୋକ ଏବଂ ବ୍ରଜଧାମରେ ବ୍ରଜବାସୀ ଗୋ, ଗୋପୀ, ଗୋପମାନଙ୍କ ସହିତ ନିତ୍ୟ ବିହାର କରନ୍ତି ।

ଗୋଲୋକ—ଗୋକୁଳର ବୈଭବଧାମ ( ଐଶ୍ୱର୍ଯ୍ୟ ପ୍ରକାଶ )

ବ୍ରଜ—ଗୋକୁଳ, ମାଧୁର୍ଯ୍ୟଧାମ—( ସେଥିରେ ଐଶ୍ୱର୍ଯ୍ୟ ଲୁଚ୍ଚାଇରହିଅଛି )

ନିତ୍ୟ—ଅନବଚ୍ଛିନ୍ନ, କୌଣସିକାଳରେ ଯାହାର ବିରାମ ନାହିଁ ।

ଶ୍ରୀକୃଷ୍ଣଙ୍କର ଏ ବିହାର ଜୀବର ଇନ୍ଦ୍ରିୟଗ୍ରାହ୍ୟ ନୁହେ । ଏଣୁ ଜୀବପକ୍ଷରେ ଏହା ଅପ୍ରକଟ ବିହାର । କିନ୍ତୁ କରୁଣାମୟ ଶ୍ରୀକୃଷ୍ଣ ପତିତ ଜୀବକୁ ନିଜର ମାଧୁର୍ଯ୍ୟରସ ଆସ୍ୱାଦନ କରାଇବା କାରଣ ବ୍ରହ୍ମାଙ୍କର ଏକଦିନରେ ଥରେ ଜୀବର ଇନ୍ଦ୍ରିୟଗୋଚରୀଭୂତ ପ୍ରକଟ ବିହାର କରିବାପାଇଁ ଏହି ଧରାଧାମରେ ଅବତୀର୍ଣ୍ଣ ( ପ୍ରକାଶ ) ହୁଅନ୍ତି । ୩ । ୪ ।

ଗ୍ରନ୍ଥକାର ବ୍ରହ୍ମାଙ୍କର ଏକଦିନର ପରିମାଣ ଦେଉଅଛନ୍ତି । ଯଥା—ସତ୍ୟ, ତ୍ରେତା, ଦ୍ୱାପର ଓ କଳି ମନୁଷ୍ୟର ଏହି ଚାରିଯୁଗ ଦେବତାମାନଙ୍କର ଏକଯୁଗ ( ଦିବ୍ୟଯୁଗ ) ଅଟେ । ଏକସ୍ତରୀ ଚତୁର୍ଯୁଗ ( ଦିବ୍ୟଯୁଗ ) ରେ ଏକ ମନ୍ୱନ୍ତର ଅର୍ଥାତ୍ ଏକଜଣ ମନୁଙ୍କର ପରମାୟୁ ଏକସ୍ତରୀ ଚତୁର୍ଯୁଗ ଅଟେ । ବ୍ରହ୍ମାଙ୍କର ଏକଦିନରେ ଏହିପରି ଚଉଦଗୋଟି ମନ୍ୱନ୍ତର ହୁଏ ଅର୍ଥାତ୍ ତାହା ନଅଶତ ଚଉରାନବେ ଚତୁର୍ଯୁଗ (ଦିବ୍ୟଯୁଗ) ଏବଂ ଚାରିହଜାର ନଶତ ଛସ୍ତରୀ ମନୁଷ୍ୟଯୁଗ ଅଟେ । ଏହା ସାଧାରଣତଃ ଚାରିହଜାର ଧରାଯାଏ । ବର୍ତ୍ତମାନ ବୈବସ୍ୱତ ମନ୍ୱନ୍ତର ଏବଂ ଏହା ସପ୍ତମ ଅଟେ । ବୈବସ୍ୱତ ମନୁଙ୍କର ଏକସ୍ତରୀ ଚତୁର୍ଯୁଗ ମଧ୍ୟରୁ ଅଷ୍ଟାବିଂଶତି ଚତୁର୍ଯୁଗସ୍ଥ ଦ୍ୱାପରଯୁଗର ଶେଷରେ ଶ୍ରୀକୃଷ୍ଣଚନ୍ଦ୍ର ଅମ୍ଭମାନଙ୍କର ଏହି ପୃଥିବୀର ମଳିନ ଜୀବମାନଙ୍କର ଇନ୍ଦ୍ରିୟଗ୍ରାହ୍ୟ ହୋଇ ବ୍ରଜଲୀଳା କରିଥିଲେ । ଅର୍ଥାତ୍ ଗୋ, ଗୋପ, ଗୋପୀସମୂହ ( ପିତା, ମାତା, ଭ୍ରାତା, କାନ୍ତାଗଣ ଓ ଦାସ, ଦାସୀସହ ) ଏ ଧରାଧାମସ୍ଥ ବ୍ରଜମଣ୍ଡଳରେ ପ୍ରକଟ ହୋଇ ବିହାର କରିଥିଲେ । ୬—୮ ।

ସକଲ ଜଗତେ ମୋରେ କରେ ବିଧି-ଭକ୍ତି ।
ବିଧିଭକ୍ତ୍ୟେ ବ୍ରଜଭାବ ପାଇତେ ନାହିଁ ଶକ୍ତି ।୧୩।
ଐଶ୍ୱର୍ଯ୍ୟଜ୍ଞାନେତେ ସବ ଜଗତ ମିଶ୍ରିତ ।
ଐଶ୍ୱର୍ଯ୍ୟଶିଥିଲ-ପ୍ରେମେ ନାହିଁ ମୋର ପ୍ରୀତ ।୧୪।

ଐଶ୍ୱର୍ଯ୍ୟଜ୍ଞାନେ ବିଧି-ଭଜନ କରିୟା ।
ବୈକୁଣ୍ଠକେ ଯାୟ ଚତୁର୍ବିଧ ମୁକ୍ତି ପାଞା ।୧୫।
ସାର୍ଷ୍ଟି, ସାରୂପ୍ୟ, ଆର ସାମୀପ୍ୟ, ସାଲୋକ୍ୟ ।
ସାଯୁଜ୍ୟ ନା ଲୟ ଭକ୍ତ—ଯାତେ ବ୍ରହ୍ମ-ଐକ୍ୟ ।୧୬।

" ଜନ୍ମତୋକ୍ଷ୍ଣଲରସାଂ " ଇତ୍ୟନ୍ୟାର୍ଥମାହ " ସକଲ " ଇତି । ଅତ୍ର ବ୍ରଜଭାବ ଏବ ଉଜ୍ଜ୍ୱଲରସଃ ପରାକରସ ଇତ୍ୟର୍ଥଃ । ବିଧିଭକ୍ତିର୍ଯଥା ଯତ୍ର ରାଗାନବାପ୍ତତ୍ୱାତ୍ ପ୍ରବୃତ୍ତିରୁପଜାୟତେ । ଶାସନେନୈବ ଶାସ୍ତ୍ରସ୍ୟ ସାବୈଧୀଭକ୍ତିରୁଚ୍ୟତେ । ୧୩ । ଚ, ଚ,

ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର (ମଧୁର) ଏହି ଚାରି ରସଦ୍ୱାରା ରାଗମାର୍ଗର ଭକ୍ତମାନେ ଏହି ଚାରିଭାବରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି ଏବଂ ଶ୍ରୀକୃଷ୍ଣ ଭକ୍ତର ଭାବ ଅନୁଯାୟୀ ବଶ ହୁଅନ୍ତି । ଏହି ଚାରିରସର ପାତ୍ରମାନଙ୍କ ସହିତ ଅର୍ଥାତ୍ ଦାସ୍ୟର ଦାସ, ସଖ୍ୟର ସଖା, ବାତ୍ସଲ୍ୟର ପିତା ମାତା ଓ ଶୃଙ୍ଗାରର କାନ୍ତାମାନଙ୍କ ସହିତ ଶ୍ରୀକୃଷ୍ଣ ପ୍ରେମାବିଷ୍ଟ ହୋଇ ବ୍ରଜମଣ୍ଡଳରେ ପ୍ରକଟଲୀଳା କରନ୍ତି । ଏହିପ୍ରକାର ପ୍ରକଟଲୀଳା ସମାପନ କରି ଜଗତରେ ଅପ୍ରକଟ ହେଲା ପରେ ଶ୍ରୀକୃଷ୍ଣ ମନେ ମନେ ଆଲୋଚନା କଲେ ଯେ ଅନାଦିକାଳରୁ ଜଗତକୁ ( ଜଗଜ୍ଜୀବଙ୍କୁ ) ପ୍ରେମଭକ୍ତି ଦାନ କରି ହୋଇନାହିଁ । ଜଗତ ପ୍ରେମଭକ୍ତି ବୀଜ ଉପରେ ରହିଅଛି, କିନ୍ତୁ ତାହା ( ପ୍ରେମଭକ୍ତି ) ଅନାଦିକାଳରୁ ଜଗଜ୍ଜୀବଙ୍କୁ ସେମାନଙ୍କର ନିଜସ୍ୱ ବୋଲି ମୁଁ ( ଶ୍ରୀକୃଷ୍ଣ ) ଦାନ କରିନାହିଁ । ତେଣୁ ଜଗଜ୍ଜୀବ ସ୍ୱଚ୍ଛନ୍ଦତା ଅନୁଭବ କରୁନାହାନ୍ତି । ଏହାର ଭାବ ଏହି ଯେ ପ୍ରେମଭକ୍ତି ବିନା କୃଷ୍ଣପ୍ରାପ୍ତି ହୁଏ ନା । ୯—୧୨ ।

ଜଗଜ୍ଜୀବମାନେ ସାଧାରଣତଃ ମୋ ପ୍ରତି ବିଧିନିଷେଧରୂପ ଅନୁଶାସନ ଅନୁସାରେ ଭକ୍ତି କରୁଅଛନ୍ତି କିନ୍ତୁ ଏପ୍ରକାର ଅନୁଶାସନ ପଦ୍ଧତିରେ ଭକ୍ତିଦ୍ୱାରା ମୋର ବ୍ରଜଭାବ ( ପ୍ରେମଭକ୍ତି ) ଲାଭ କରିବା ଜୀବମାନଙ୍କର ଆୟତ୍ତାଧୀନ ନୁହେ । ୧୩ ।

ମୁଁ ସର୍ବାଭୀଷ୍ଟଫଳଦାତା, ମୋର ଏହି ଐଶ୍ୱର୍ଯ୍ୟଜ୍ଞାନରେ ଜଗଜ୍ଜୀବମାନେ ମୋତେ ଭଜନ କରନ୍ତି; ଏପ୍ରକାର ଐଶ୍ୱର୍ଯ୍ୟଜ୍ଞାନଦ୍ୱାରା ପ୍ରେମ ସଙ୍କୁଚିତ ହୁଏ ଅର୍ଥାତ୍ ମୋ ପ୍ରତି ଭକ୍ତର ଶୁଦ୍ଧ ଅନୁରାଗ ହୁଏନାହିଁ ତେଣୁ ଏପ୍ରକାର ଭକ୍ତିଦ୍ୱାରା ମୁଁ ପ୍ରୀତ ହୁଏନାହିଁ । ୧୪ ।

ଏହି ଭକ୍ତମାନେ ଐଶ୍ୱର୍ଯ୍ୟଜ୍ଞାନ ମିଶ୍ରା ଶାସ୍ତ୍ର ଅନୁଶାସନାତ୍ମକ ଭକ୍ତି ଯାଜନ କରି ସର୍ବତୋଭାବରେ ମୁକ୍ତି ପ୍ରାର୍ଥୀ ହୁଅନ୍ତି ଏବଂ ସେମାନଙ୍କର କାମନା ଅନୁସାରେ ଚତୁର୍ବିଧ ମୁକ୍ତି ପାଇ ବୈକୁଣ୍ଠ ଲାଭ କରନ୍ତି । ୧୫ ।

ଚତୁର୍ବିଧ ମୁକ୍ତି ଯଥା—୧ ସାର୍ଷ୍ଟି, ( ସମାନ ଐଶ୍ୱର୍ଯ୍ୟପ୍ରାପ୍ତି ) ୨—ସାରୂପ୍ୟ (ସମାନରୂପପ୍ରାପ୍ତି) ୩—ସାମୀପ୍ୟ ( ସମୀପରେ ଅବସ୍ଥିତି, ପାର୍ଷଦତ୍ୱ ଲାଭ ) ୪—ସାଲୋକ୍ୟ ( ସମାନ ଲୋକରେ ବାସ ବୈକୁଣ୍ଠ ବାସ ) ।

ସାଯୁଜ୍ୟ—ବ୍ରହ୍ମସାଯୁଜ୍ୟ, ଭକ୍ତମାନେ ଏ ମୁକ୍ତିର ପ୍ରାର୍ଥୀ ନୁହନ୍ତି, କାରଣ ତଦ୍ୱାରା ବ୍ରହ୍ମଙ୍କ ସଙ୍ଗେ ଐକ୍ୟଭାବହେତୁ ଭକ୍ତମାନଙ୍କର ଘୃଣାର ବିଷୟ ଅଟେ । ୧୬ ।

ଯୁଗଧର୍ମ ପ୍ରବର୍ତ୍ତାଇମୁ ନାମସଙ୍କୀର୍ତ୍ତନ ।
ଚାରିଭାବ-ଭକ୍ତି ଦିୟା ନାଚାଇମୁ ଭୁବନ । ୧୭ ।
ଆପନେ କରିବ ଭକ୍ତଭାବ ଅଙ୍ଗୀକାରେ ।
ଆପନି ଆଚରି ଭକ୍ତି ଶିଖାଇମୁ ସଭାରେ । ୧୮ ।
ଆପନେ ନା କୈଲେ ଧର୍ମ ଶିଖାନ ନା ଯାୟ ।
ଏଇ ତ ସିଦ୍ଧାନ୍ତ ଗୀତା-ଭାଗବତେ ଗାୟ । ୧୯ ।

ତଥାହି ଗୀତାୟାମ୍ ( ୪।୮ )—
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ॥୭॥ *
ତତ୍ରୈବ ( ୩।୨୪ )—
ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହମ୍ ।
ସଙ୍କରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ ॥୮॥ *

ପ୍ରକୃତମନୁସରନ୍ " ସ୍ୱଭକ୍ତିଶ୍ରିୟଂ ସମର୍ପୟିତୁଂ କରୁଣୟାବତୀର୍ଣ୍ଣଃ କଲୌ " ଇତ୍ୟସ୍ୟାର୍ଥମାହ " ଯୁଗଧର୍ମ " ଇତି " ଏତଭାବ " ଇତ୍ୟନ୍ତଂ । ୧୭ । ୧୮ । ୧୯ । ବି, ଚ,

ସାଧୂନାଂ ( ମଦ୍ରୂପଗୁଣନିରତାନାଂ ମତ୍ସାକ୍ଷାତ୍କାରମାକାଙ୍କ୍ଷତାଂ ) ପରିତ୍ରାଣାୟ ( ତେନ ବିନାତିବ୍ୟଗ୍ରାଣାଂ ତଦ୍ବୈୟଗ୍ର୍ୟରୂପାତ୍ ଦୁଃଖାତ୍ ପରିତ୍ରାଣାୟାତିମନୋଜ୍ଞସ୍ୱରୂପସାକ୍ଷାତ୍କାରେଣ ) ଦୁଷ୍କୃତାଂ (ଦୁଷ୍କର୍ମକାରିଣାଂ ;—ମଦନୈୟରବଧ୍ୟାନାଂ-ଭକ୍ତଦ୍ରୋହିଣାଂ) ବିନାଶାୟ ଧର୍ମସଂସ୍ଥାପନାର୍ଥାୟ ( ଧର୍ମସ୍ୟ ମଦେକାନ୍ତିକଧ୍ୟାନାଦିଲକ୍ଷଣସ୍ୟ ଶୁଦ୍ଧଭକ୍ତିଯୋଗସ୍ୟ ବୈଦିକସ୍ୟାପି ମଦ୍ଭକ୍ତୈଃ ପ୍ରଚାରୟିତୁମଶକ୍ୟସ୍ୟ ସଂସ୍ଥାପନାର୍ଥାୟ ସପ୍ରଚାରାର୍ଥାୟ ଇତି ) ଚ ଯୁଗେ ଯୁଗେ ( ତତ୍ତତ୍ସମୟେ ) ସମ୍ଭବାମି । [ ୭ମ ଶ୍ଳୋକଃ ]

ଅହଂ ( ସର୍ବଶ୍ରେଷ୍ଠଃ ) ଚେତ୍ (ଶାସ୍ତ୍ରୋକ୍ତଂ) କର୍ମ ନ କୁର୍ଯ୍ୟାଂ ( ତର୍ହି ) ଇମେ ଲୋକାଃ ଉତ୍ସୀଦେୟୁଃ ( ବିଭ୍ରଷ୍ଟମର୍ଯ୍ୟାଦାଃ ସ୍ୟୁଃ ) ସଙ୍କରସ୍ୟ ଚ ( ତଦ୍ ବିଭ୍ରଂଶେ ଯେ ଯଃ ସଙ୍କରଃ ସ୍ୟାତ୍ ତସ୍ୟାପି ଅହଂ ଏବ ) କର୍ତ୍ତା ସ୍ୟାମ୍ ଇମାଃ ପ୍ରଜାଃ ଉପହନ୍ୟାଂ । [ ୮ମ ଶ୍ଳୋକଃ ]

ବର୍ତ୍ତମାନ ଯୁଗଧର୍ମ ପ୍ରବର୍ତ୍ତନର ସମୟ ହୋଇଅଛି । ଏହା କଳିଯୁଗ । ଏ ଯୁଗର ଧର୍ମ ଶ୍ରୀନାମସଂକୀର୍ତ୍ତନ । ବର୍ତ୍ତମାନ ମୁଁ ଜଗତରେ ପ୍ରକଟ ହୋଇ ଯୁଗଧର୍ମ (ନାମସଂକୀର୍ତ୍ତନ) ପ୍ରବର୍ତ୍ତନ କରିବି ଏବଂ ସେଥିସହିତ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହି ଚାରି ବ୍ରଜଭାବର ଭକ୍ତି ଜଗଜ୍ଜୀବଙ୍କୁ ଦାନ କରି ଆନନ୍ଦରେ ନୃତ୍ୟ କରାଇବି । ୧୭ ।

ଏ କାର୍ଯ୍ୟ କରିବାକୁ ଗଲେ ମୋତେ ଭକ୍ତଭାବ ଗ୍ରହଣ କରିବାକୁ ହେବ ଏବଂ ତଦ୍ଭକ୍ତି ଧର୍ମ ନିଜେ ଆଚରଣ କରି ଜଗଜ୍ଜୀବଙ୍କୁ ଗୁରୁରୂପେ ଶିକ୍ଷା ଦାନ କରିବି । କାରଣ ନିଜେ ଧର୍ମ ଆଚରଣ ନ କଲେ ଅପରକୁ ଶିକ୍ଷା ଦିଆଯାଇ ନ ପାରେ ଏହା ଶ୍ରୀମଦ୍ଭଗବଦ୍ଗୀତା ଏବଂ ଶ୍ରୀମଦ୍ଭାଗବତର ସିଦ୍ଧାନ୍ତ ଅଟେ । ୧୮ । ୧୯ ।

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଅଛନ୍ତି—ଧର୍ମପରାୟଣ ଲୋକମାନଙ୍କର ରକ୍ଷାନିମିତ୍ତ ; ସେମାନଙ୍କ ଅନିଷ୍ଟକାରୀ ଅଧାର୍ମିକମାନଙ୍କ ବିନାଶନିମିତ୍ତ ଓ ତଦ୍ଦ୍ୱାରା ଧର୍ମସଂସ୍ଥାପନନିମିତ୍ତ ମୁଁ ସମୟ ସମୟରେ ( ପ୍ରୟୋଜନ ଅନୁସାରେ ) ଅବତୀର୍ଣ୍ଣ ହୁଏଁ । ଅର୍ଥାତ୍ ମତ୍ପରାୟଣ ଭକ୍ତମାନେ ଯେତେବେଳେ ପାଷଣ୍ଡମାନଙ୍କଦ୍ୱାରା ବିଶେଷରୂପେ ଉତ୍ପୀଡ଼ିତ ହୁଅନ୍ତି ଏବଂ ଭକ୍ତମାନେ ତଦ୍ଧେତୁ ଓ ସ୍ୱାଭାବିକ ଉତ୍କଣ୍ଠାହେତୁ ନିଜ ନିଜ ଭାବାନୁଯାୟୀ ମୋତେ ଇନ୍ଦ୍ରିୟଗ୍ରାହ୍ୟରୂପରେ ଆସ୍ୱାଦ କରିବାସକାଶେ ବ୍ୟାକୁଳ ହୁଅନ୍ତି, ସେମାନଙ୍କର ଏବମ୍ବିଧ ଦୁଃଖରୁ ସେମାନଙ୍କୁ ଉଦ୍ଧାର କରିବାସକାଶେ ଓ ସେମାନଙ୍କ ପୀଡ଼ନକାରିମାନଙ୍କୁ ଓ ଧର୍ମଦ୍ରୋହିମାନଙ୍କୁ ବିନାଶ କରିବାସକାଶେ ଏବଂ ତଦ୍ଦ୍ୱାରା ସନାତନଧର୍ମର ଅର୍ଥାତ୍ ମୋର ଭକ୍ତିଯୋଗର ସ୍ଥାନ କାରଣ ମୁଁ ପ୍ରୟୋଜନ ଅନୁସାରେ ସମୟେ ପ୍ରକଟରୂପରେ ଅବତୀର୍ଣ୍ଣ ହୁଏଁ । [ ୭ମ ଶ୍ଳୋକାର୍ଥ ]

ତତ୍ରୈବ ( ୩।୨୧ )—
ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।
ସ ଯତ୍ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥୫॥ *

ଯୁଗଧର୍ମ୍ମ ପ୍ରବର୍ତ୍ତନ ହୟ ଅଂଶ ହିତେ ।
ଆମା ବିନା ଅନ୍ୟେ ନାରେ ବ୍ରଜପ୍ରେମ ଦିତେ ।୨୦।

[ତଥାହି ଲଘୁଭାଗବତାମୃତେ, ପୂର୍ବଖଣ୍ଡେ (୫।୩୭)—
ସନ୍ତ୍ୱବତାରା ବହବଃ, ପଙ୍କଜନାଭସ୍ୟ ସର୍ବତୋଭଦ୍ରାଃ ।
କୃଷ୍ଣାଦନ୍ୟଃ କୋ ବା, ଲତାସ୍ୱପି ପ୍ରେମଦୋ ଭବତି ॥ ୬ ॥ *

ତାହାତେ ଆପନ ଭକ୍ତଗଣ କରି ସଙ୍ଗେ ।
ପୃଥିବୀତେ ଅବତରି କରିମୁ ନାନା ରଙ୍ଗେ ।୨୧।

ଏତ ଭାବି କଲିକାଲେ ପ୍ରଥମ-ସନ୍ଧ୍ୟାୟ ।
ଅବତୀର୍ଣ୍ଣ ହୈଲା କୃଷ୍ଣ ଆପନି ନଦୀୟାୟ ।୨୨।

ଚୈତନ୍ୟସିଂହେର ନବଦ୍ୱୀପେ ଅବତାର ।
ସିଂହଗ୍ରୀବ ସିଂହବୀର୍ଯ୍ୟ ସିଂହେର ହୁଙ୍କାର ।୨୩।

ସେଇ ସିଂହ ବସୁକ ଜୀବେର ହୃଦୟ-କନ୍ଦରେ ।
କଲ୍ମଷ-ଦ୍ୱିରଦ ନାଶେ ଯାହାର ହୁଙ୍କାରେ ।୨୪।

ଶ୍ରେଷ୍ଠଃ (ମହତ୍ତମଃ) ଯତ୍ ( କର୍ମ୍ମ ) ଯଥା ଆଚରତି ତତ୍ ( କର୍ମ୍ମ ) ତଥା ଏବ ଇତରଃ ( କନିଷ୍ଠଃ ) ଜନଃ ( ଅପି ଆଚରତି ) ସଃ ( ଶ୍ରେଷ୍ଠଃ ତସ୍ମିନ୍ କର୍ମ୍ମଣି ) ଯତ୍ ( ଶାସ୍ତ୍ରଂ ) ପ୍ରମାଣଂ କୁରୁତେ ( ମନ୍ୟତେ ) ଲୋକଃ ( କନିଷ୍ଠଃ ଅପି ତଦନୁଯାୟୀ ) ତତ୍ ( ତଦେବ ) ଅନୁବର୍ତ୍ତତେ ( ଅନୁସରତି ) । [ ୫ମ ଶ୍ଳୋକଃ ]

ପୁଷ୍କରନାଭସ୍ୟ ( ଅପ୍ରକଟପ୍ରକାଶଗତସ୍ୟ ସ୍ୱୟଂ ଭଗବତଃ ) ସର୍ବତଃ ଭଦ୍ରା ବହବଃ ଅବତାରାଃ ସନ୍ତୁ । କୃଷ୍ଣାତ୍ ଅନ୍ୟ କୋ ବା ଲତାସୁ ଅପି ପ୍ରେମଦଃ ଭବତି । [ ୬ଷ୍ଠ ଶ୍ଳୋକଃ ]

ତତ୍ପ୍ରେମପ୍ରଦାନନ୍ତୁ ତ୍ୱଦଂଶେନ ଯୁଗାବତାରେଣୈବ ଭବିଷ୍ୟତି କିଂ ତଦାବତାରେଣ ଇତି ଚେତ୍ତତ୍ରାହ "ଯୁଗଧର୍ମ୍ମ" ଇତି । ବ୍ରଜପ୍ରେମପ୍ରଦାନାର୍ଥଂ ଅବତରିଷ୍ୟାମ ଇତ୍ୟର୍ଥଃ ।୨୦।୨୧।୨୨। ବି,ଚ,

" ଶଚୀନନ୍ଦନଃ ହରିଃ " ଇତ୍ୟସ୍ୟାର୍ଥମାହ " ଚୈତନ୍ୟ " ଇତି । ୨୩ । ବି, ଚ,

" ସଦା ହୃଦୟକନ୍ଦରେ ସ୍ଫୁରତୁ ବଃ " ଇତ୍ୟସ୍ୟାର୍ଥମାହ " ସେଇ " ଇତି ।୨୪। ବି, ଚ,

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଅଛନ୍ତି—ମୁଁ କର୍ମ୍ମ ଅନୁଷ୍ଠାନ ନ କଲେ ଏହି ସମସ୍ତ ଲୋକ କର୍ମ୍ମଶୂନ୍ୟ ହୋଇ ନଷ୍ଟ ହେବେ । ତେଣୁ ମୁଁ ବର୍ଣ୍ଣସଙ୍କରର ପ୍ରବର୍ତ୍ତକ ହୋଇ ପ୍ରଜାନାଶର କାରଣ ହେବି । [ ୪ର୍ଥ ଶ୍ଳୋକାର୍ଥ ]

ପ୍ରଧାନ ବ୍ୟକ୍ତି ଯେପରି ଆଚରଣ କରନ୍ତି ତାଙ୍କର ଅନୁଗତବ୍ୟକ୍ତିମାନେ ତାହା ଅନୁକରଣ କରନ୍ତି । ପ୍ରଧାନ ବ୍ୟକ୍ତି ଯାହା ପ୍ରାମାଣ୍ୟ ବୋଲି ସ୍ୱୀକାର କରନ୍ତି ତାହାଙ୍କର ଅନୁଗତବ୍ୟକ୍ତିମାନେ ତାହାରି ଅନୁବର୍ତ୍ତୀ ହୁଅନ୍ତି । [ ୫ମ ଶ୍ଳୋକାର୍ଥ ]

ପଦ୍ମନାଭ ହରିଙ୍କର ସର୍ବମଙ୍ଗଳପ୍ରଦ ବହୁ ବହୁ ଅବତାର ଅଛନ୍ତି କିନ୍ତୁ ଶ୍ରୀକୃଷ୍ଣଙ୍କ ବ୍ୟତୀତ କେହି ଲତାପର୍ଯ୍ୟନ୍ତ ପ୍ରେମଦାନ କରିବାକୁ ସମର୍ଥ ନୁହନ୍ତି ଅର୍ଥାତ୍ ଶ୍ରୀକୃଷ୍ଣ ଅବତାରୀ ତେଣୁ ସେ ସ୍ଥାବର ଜଙ୍ଗମପର୍ଯ୍ୟନ୍ତ ସମସ୍ତ ଜୀବଙ୍କୁ ପ୍ରେମଦାନ କରିବାକୁ ସମର୍ଥ । [ ୬ଷ୍ଠ ଶ୍ଳୋକାର୍ଥ ]

୪ର୍ଥ ଓ ୫ମ ଶ୍ଳୋକର ତାତ୍ପର୍ଯ୍ୟ ।

ଭଗବାନ୍ ସ୍ୱୟଂ କର୍ମ୍ମର ଅତୀତ ହେଲେ ମଧ୍ୟ ଅର୍ଥାତ୍ ତାଙ୍କୁ କର୍ମ୍ମ ସ୍ପର୍ଶ ନ କଲେ ମଧ୍ୟ ଜଗଜ୍ଜୀବମାନଙ୍କ ପ୍ରତି କୃପାପରବଶ ହୋଇ ସେମାନଙ୍କୁ ବିଧିନିଷେଧମାର୍ଗରେ ଚଳାଇବା କାରଣ ସ୍ୱୟଂ ଆବିର୍ଭୂତ ହୋଇ ଜଗଦ୍‌ଗୁରୁରୂପରେ କର୍ମ୍ମ କରନ୍ତି ଏବଂ ଅନୁଶାସନାତ୍ମକ ଆଜ୍ଞା ପ୍ରଦାନ କରନ୍ତି । ତେଣୁ ଜଗଜ୍ଜୀବ ତାହାଙ୍କର ପ୍ରବର୍ତ୍ତିତ କର୍ମ୍ମ ଏବଂ ଆଜ୍ଞା ଅନୁସରଣପୂର୍ବକ ବିଧିନିଷେଧର ମର୍ଯ୍ୟାଦା ପାଳନ କରନ୍ତି ।

ପ୍ରଥମଲୀଳାୟ ତାଁର 'ବିଶ୍ୱମ୍ଭର' ନାମ ।
ଭକ୍ତିରସେ ଭରିଲ ଧରିଲ ଭୂତଗ୍ରାମ । ୧୫ ।
'ଡୁ ଭୃଞ୍' ଧାତୁର ଅର୍ଥ—ପୋଷଣ ଧାରଣ ।
ପୁଷିଲ ଧରିଲ ପ୍ରେମ ଦିୟା ତ୍ରିଭୁବନ । ୧୬ ।
ଶେଷ ଲୀଳାୟ ନାମ ଧରେ 'ଶ୍ରୀକୃଷ୍ଣଚୈତନ୍ୟ' ।
ଶ୍ରୀକୃଷ୍ଣ ଜାନାୟେ ସବ ବିଶ୍ୱ କୈଲ ଧନ୍ୟ । ୧୭ ।
ତାଁର ଯୁଗାବତାର ଜାନି ଗର୍ଗ ମହାଶୟ ।
କୃଷ୍ଣେର ନାମକରଣେ କରିୟାଛେ ନିର୍ଣ୍ଣୟ । ୧୮ ।

ନନ୍ଦନନ୍ଦନଃ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଃ ସ୍ୱଭକ୍ତିଶ୍ରିୟଂ ସମର୍ପୟିତୁଂ କଲୌ ଅବତୀର୍ଣ୍ଣଃ ତତ୍ର କେନ ନାମ୍ନା ଖ୍ୟାତୋଽଭୂତ୍ ଇତି । ଅଥବା "ଗୁଣକର୍ମାନୁରୂପାଣି" ଇତି ଭାଗବତୀୟ ଶ୍ରୀକୃଷ୍ଣ-ନାମକରଣୋକ୍ତଦିଶା ଅସ୍ମିନ୍ନବତାରେଽପି ତସ୍ୟ ଗୁଣକର୍ମାନୁରୂପାଣି ନାମାନି ଆହ "ପ୍ରଥମଲୀଳାୟ" ଇତି । ୧୫ । ୧୬ । ୧୭ । ଚ, ଚ,

କଲିଯୁଗେ ଅବତାରୋ ନାସ୍ତି ପ୍ରମାଣାଭାବାତ୍ ଇତି କେଷାଞ୍ଚିନ୍ମତଂ ନିବାରୟିତୁଂ ଶ୍ରୀକୃଷ୍ଣସ୍ୟ କଲିଯୁଗାବତାରତାୟାଂ ଶ୍ରୀଭାଗବତୀୟଂ ଗର୍ଗବାକ୍ୟଂ ପ୍ରମାଣୟତି "ତାଁର" ଇତି । ଯୁଗେ ଅବତାରତା ଯୁଗାବତାରତା ନ ତୁ ପାରିଭାଷିକ ଯୁଗାବତାରତା ନଚେତ୍ତତ୍ତେ ସ୍ୱୟଂ ଭଗବତ୍ତା ନ ସ୍ୟାତ୍ । ୧୮ । ଚ, ଚ,

ଶ୍ରୀକୃଷ୍ଣ ମନେ କଲେ ଯେଉଁ ଯେଉଁ ଯୁଗରେ ଜଗଜ୍ଜୀବମାନଙ୍କର ଯେଉଁ ଯେଉଁ ପ୍ରକାର ଧର୍ମ ଆଚରଣୀୟ, ଯଥା କଳିର ନାମ ସଂକୀର୍ତ୍ତନ; ତାହା ଯୁଗାବତାରଙ୍କ ( ଅଂଶ ବା କଳା ) ଦ୍ୱାରା ସାଧିତ ହୁଏ । କିନ୍ତୁ ବ୍ରଜପ୍ରେମ ( ପ୍ରେମଭକ୍ତି ) ଦାନକାର୍ଯ୍ୟ ସ୍ୱୟଂ ଭଗବାନଙ୍କ ( ଶ୍ରୀକୃଷ୍ଣଙ୍କ ) ବ୍ୟତୀତ ଅନ୍ୟ କାହାରିଦ୍ୱାରା ହୋଇ ନ ପାରେ । ୨୦

ଶ୍ରୀକୃଷ୍ଣ ପୂର୍ବୋକ୍ତ ପ୍ରକାରରେ ବିଚାର କରି ସ୍ଥିର କଲେ ଯେ ନିତ୍ୟସିଦ୍ଧ ଭକ୍ତମାନଙ୍କୁ ସଙ୍ଗରେ ଘେନି ପୃଥିବୀରେ ଅବତୀର୍ଣ୍ଣ ହୋଇ ନାନାପ୍ରକାରରେ ପ୍ରକଟଲୀଳା କରିବେ । ଏହା ଭାବି ସେ କଳିଯୁଗର ପ୍ରଥମଭାଗରେ ନବଦ୍ୱୀପରେ ଅବତୀର୍ଣ୍ଣ ହେଲେ । ୨୧ । ୨୨ । ୨୩ ।

ଶ୍ରୀକୃଷ୍ଣଚୈତନ୍ୟଙ୍କୁ ସିଂହ ବୋଲି କୁହା ହୋଇଅଛି । କାରଣ ତାହାଙ୍କର ଗ୍ରୀବା ସିଂହଗ୍ରୀବାତୁଲ୍ୟ ଉନ୍ନତ, ତାହାଙ୍କର କାର୍ଯ୍ୟ ସିଂହତୁଲ୍ୟ ଅପ୍ରମେୟ ଏବଂ ତାହାଙ୍କର ହୁଙ୍କାର ମଧ୍ୟ ସିଂହର ହୁଙ୍କାରତୁଲ୍ୟ ଗମ୍ଭୀର । ସ୍ୱାଭାବିକ ସିଂହ ଯେପରି ଗିରିକନ୍ଦରରେ ବାସ କରେ ଏବଂ ହସ୍ତିମାନଙ୍କୁ ନାଶ କରେ ସେହିପରି ଶ୍ରୀକୃଷ୍ଣଚୈତନ୍ୟରୂପୀ ସିଂହ ଜୀବର ତମଃସଙ୍କୁଳ ହୃଦୟକନ୍ଦରରେ ବାସ କରି ହୁଙ୍କାରଦ୍ୱାରା ତତ୍ରତ୍ୟ କଲୁଷରୂପୀ ହସ୍ତିକୁଳକୁ ବିନାଶ କରନ୍ତି । ଅର୍ଥାତ୍ ଜୀବର ହୃଦୟନିହିତ କାମନା ଆଦି ରିପୁବର୍ଗଙ୍କୁ ବିନାଶ କରି ଜୀବହୃଦୟର ଅନ୍ଧକାର ଦୂର କରନ୍ତି । ବା ଜୀବହୃଦୟରେ ନାମରୂପରେ ସ୍ୱପ୍ରକାଶ ହୋଇ ଜୀବର ଦୁର୍ବାସନା ନାଶ କରନ୍ତି । ୨୩ । ୨୪ ।

ଶ୍ରୀକୃଷ୍ଣଚୈତନ୍ୟ ଶ୍ରୀନବଦ୍ୱୀପଧାମରେ ଅବତୀର୍ଣ୍ଣ ହେଲାରୁ ତାହାଙ୍କର ନାମ "ବିଶ୍ୱମ୍ଭର" ରଖା ହୋଇଥିଲା । ଶ୍ରୀକୃଷ୍ଣପ୍ରେମଭକ୍ତି ଦାନ କରିବା ସକାଶେ କଳିଯୁଗରେ ଅବତୀର୍ଣ୍ଣ ହୋଇ ଗୁଣକର୍ମ ଅନୁସାରେ କେଉଁ କେଉଁ ନାମ ଧାରଣ କଲେ ସେ ବିଷୟ କହୁଅଛନ୍ତି ।

ଆଦି ( ଗାର୍ହସ୍ଥ୍ୟଲୀଳାରେ ) ମହାପ୍ରଭୁ "ବିଶ୍ୱମ୍ଭର" ନାମରେ ଅଭିହିତ । "ବିଶ୍ୱମ୍ଭର" ଏହି ନାମ "ଡୁ ଭୃଞ୍" ଧାତୁରୁ ଉତ୍ପନ୍ନ ଏବଂ ଏହି ଧାତୁର ଅର୍ଥ ଧାରଣ, ପୋଷଣ । ମହାପ୍ରଭୁ ଆଶ୍ରୟତତ୍ତ୍ୱହେତୁ ସମସ୍ତ ଜଗତକୁ ଧାରଣ କରିଅଛନ୍ତି ଏବଂ ଭକ୍ତିରସ ଦାନଦ୍ୱାରା ପୋଷଣ କରୁଥିବାରୁ ତାଙ୍କର "ବିଶ୍ୱମ୍ଭର" ନାମ ସିଦ୍ଧ ହୋଇଅଛି ।

ତଥାହି ( ଭାଃ ୧୦।୮।୧୩ )—
ଆସନ୍ ବର୍ଣ୍ଣାସ୍ତ୍ରୟୋ ହ୍ୟସ୍ୟ ଗୃହ୍ଣତୋଽନୁଯୁଗଂ ତନୂଃ ।
ଶୁକ୍ଳୋ ରକ୍ତସ୍ତଥା ପୀତ ଇଦାନୀଂ କୃଷ୍ଣତାଂ ଗତଃ ॥୭॥*
ଶୁକ୍ଳ-ରକ୍ତ-ପୀତବର୍ଣ୍ଣ ଏଇ ତିନ ଦ୍ୟୁତି ।
ସତ୍ୟ-ତ୍ରେତା-କଳିକାଳେ ଧରେନ ଶ୍ରୀପତି ।୨୯।

ଇଦାନୀଂ ଦ୍ୱାପରେ ତେହୋଁ ହୈଲା କୃଷ୍ଣବର୍ଣ୍ଣ ।
ଏଇ ସବ ଶାସ୍ତ୍ରାଗମ-ପୁରାଣେର ମର୍ମ । ୩୦ ।
ତଥାହି ( ଭାଃ ୧୧।୫।୨୭ )—
ଦ୍ୱାପରେ ଭଗବାନ୍ ଶ୍ୟାମଃ ପୀତବାସା ନିଜାୟୁଧଃ ।
ଶ୍ରୀବତ୍ସାଦିଭିରଙ୍କୈଶ୍ଚ ଲକ୍ଷଣୈରୁପଲକ୍ଷିତଃ ।୮॥*

---

ଅନୁଯୁଗଂ ( ଯୁଗେଯୁଗେ ବାରଂବାରଂ ) ତନୂଃ ଗୃହ୍ଣତଃ ଅସ୍ୟ ( ତବ ପୁତ୍ରସ୍ୟ ) ଶୁକ୍ଳଃ ରକ୍ତଃ ତଥା ( ଗୋଲୋକେ, ଯଦ୍ୱା ଯଥା ଇଦାନୀଂ—ଦ୍ୱାପରାନ୍ତେ କୃଷ୍ଣତାଂ ଗତଃ, ତଥୈବ ଭବିଷ୍ୟନ୍ନିର୍ଦ୍ଦେଶବାକ୍ୟେନ ବୈବସ୍ୱତମନ୍ୱନ୍ତରଗତାଷ୍ଟାବିଂଶଚତୁର୍ଯୁଗୀୟକଲିଯୁଗସ୍ୟ ପ୍ରଥମେ ) ପୀତଃ ( ପୀତବର୍ଣ୍ଣଃ ଭବିଷ୍ୟତି ) ତ୍ରୟଃ ବର୍ଣ୍ଣାଃ ଆସନ୍ । ଇଦାନୀଂ ହି ( ବୈବସ୍ୱତମନ୍ୱନ୍ତରଗତାଷ୍ଟାବିଂଶ-ଚତୁର୍ଯୁଗୀୟଦ୍ୱାପରାନ୍ତେ ତତ୍ର ପୁତ୍ରତ୍ୱେ ତୁ ) କୃଷ୍ଣତାଂ ( ନବଜଳଧରଶ୍ୟାମବର୍ଣ୍ଣତାଂ ଏବ ଅୟଂ ) ଗତଃ ( ପ୍ରାପ୍ତଃ ) । [ ୭ମ ଶ୍ଳୋକଃ ]

" ଆସନ୍ " ଇତି ଶ୍ଳୋକସ୍ୟାର୍ଥମାହ " ଶୁକ୍ଳ " ଇତି ଦ୍ୱାଭ୍ୟାଂ । ୨୯ । ୩୦ । ଚ, ଚ,

ଦ୍ୱାପରେ ( ଦ୍ୱାପରାନ୍ତେ ) ଭଗବାନ୍ ( ଭଗଃ ବିଦ୍ୟତେ ଯସ୍ୟ ସଃ ) ଶ୍ୟାମଃ ( ଅତସୀ-ପୁଷ୍ପସଙ୍କାଶଃ ) ପୀତବାସାଃ ( ପୀତଂ ବାସଃ ଯସ୍ୟ ସଃ ) ନିଜାୟୁଧଃ ( ନିଜାନି ସ୍ୱସ୍ୱରୂପଭୂତାନି ଆୟୁଧାନି ଚକ୍ରାଦୀନି ଯସ୍ୟ ସଃ ) ଶ୍ରୀବତ୍ସାଦିଭିଃ ( ଶ୍ରୀବତ୍ସଃ ନାମ ବକ୍ଷସଃ ଦକ୍ଷିଣଭାଗେ ରୋମ୍ଣାଂ ପ୍ରଦକ୍ଷିଣାବର୍ତ୍ତଃ ସ ଆଦିର୍ଯେଷାଂ କରଚରଣାଦିଗତପଦ୍ମାଦୀନାଂ ତୈଃ ) ଅଙ୍କୈଃ ( ଆଙ୍ଗିକୈଃ ଚିହ୍ନୈଃ ) ଲକ୍ଷଣୈଃ ( ବାହ୍ୟୈଃ କୌସ୍ତୁଭାଦିଭିଃ ପତାକାଦିଭିଃ ) ଚ ଉପଲକ୍ଷିତଃ । [ ୮ମ ଶ୍ଳୋକଃ ]

---

ଶେଷଲୀଳାରେ ( ସନ୍ନ୍ୟାସଲୀଳାରେ ) ମହାପ୍ରଭୁ " ଶ୍ରୀକୃଷ୍ଣଚୈତନ୍ୟ " ନାମ ଧାରଣ କରିଥିଲେ ଅର୍ଥାତ୍ ସେ ଶ୍ରୀକୃଷ୍ଣଙ୍କ ପ୍ରତି ଜୀବର ଚୈତନ୍ୟ ଉତ୍ପାଦନ କରି କିମ୍ବା ଅନାଦି ବହିର୍ମୁଖ ଜୀବକୁ ଶ୍ରୀକୃଷ୍ଣ ଅନ୍ତର୍ମୁଖୀ କରାଇ ଜଗତର କଲ୍ୟାଣସାଧନ କରିଥିଲେ । ୨୫ । ୨୬ । ୨୭ ।

ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ଯେ କି ବ୍ରଜଧାମରେ ପ୍ରକଟ ହୋଇଥିଲେ ସେ ପୁନରାୟ ତତ୍ପରବର୍ତ୍ତୀ କଳିଯୁଗରେ ପ୍ରକଟ ହେବେ ଏହା ଜାଣିପାରି ଶ୍ରୀଗର୍ଗାଚାର୍ଯ୍ୟ ମହାଶୟ ଶ୍ରୀକୃଷ୍ଣଙ୍କ ନାମକରଣ ସମୟରେ ଭଙ୍ଗିପୂର୍ବକ ଶ୍ରୀ ନନ୍ଦ ମହାରାଜାଙ୍କୁ କହିଥିଲେ । ୨୮ ।

ଶ୍ରୀକୃଷ୍ଣଙ୍କର ନାମକରଣ ସମୟରେ ମହର୍ଷି ଗର୍ଗାଚାର୍ଯ୍ୟ ଶ୍ରୀ ନନ୍ଦ ମହାରାଜାଙ୍କୁ କହିଥିଲେ, ତୁମ୍ଭର ଏହି ପୁତ୍ର ଯୁଗେ ଯୁଗେ ଶରୀର ଗ୍ରହଣ କରି ଶୁକ୍ଳ, ରକ୍ତ ଓ ପୀତ ତିନିବର୍ଣ୍ଣ ହୋଇଥିଲେ । ସମ୍ପ୍ରତି ଏ କୃଷ୍ଣ ହୋଇଅଛନ୍ତି । [ ୭ମ ଶ୍ଳୋକାର୍ଥ ]

ଶ୍ରୀପତି ( ଶ୍ରୀକୃଷ୍ଣ ) ସତ୍ୟ, ତ୍ରେତା ଓ କଳିକାଳରେ ଶୁକ୍ଳ, ରକ୍ତ ଓ ଗୌରବର୍ଣ୍ଣ ହୁଅନ୍ତି । ବର୍ତ୍ତମାନ ଦ୍ୱାପରରେ ଏ କୃଷ୍ଣବର୍ଣ୍ଣ ହୋଇଅଛନ୍ତି । ଏହାହିଁ ବେଦ ଓ ପୁରାଣାଦିର ମର୍ମ ଅଟେ ।୨୯।୩୦।

ଦ୍ୱାପରଯୁଗରେ ଭଗବାନ୍ ଶ୍ୟାମବର୍ଣ୍ଣ, ପୀତବସନ, ଚକ୍ରାଦି ଆୟୁଧଧାରୀ, ଶ୍ରୀବତ୍ସନାମକ ଲକ୍ଷ୍ମୀରେଖାଯୁକ୍ତ, ଧ୍ୱଜବଜ୍ରାଦି ଚିହ୍ନରେ ଅଙ୍କିତ ଓ କୌସ୍ତୁଭାଦି ଅଳଙ୍କାରରେ ଭୂଷିତ ହୋଇ ଅବତୀର୍ଣ୍ଣ ହୁଅନ୍ତି । [ ୮ମ ଶ୍ଳୋକାର୍ଥ ]

କଳିକାଳେ ଯୁଗଧର୍ମ୍ମ—ନାମେର ପ୍ରଚାର ।
ତଥି ଲାଗି ପୀତବର୍ଣ୍ଣ ଚୈତନ୍ୟାବତାର । ୩୧ ।
ତପ୍ତହେମ-ସମ କାନ୍ତି—ପ୍ରକାଣ୍ଡ ଶରୀର ।
ନବମେଘ ଜିନି କଣ୍ଠ-ଧ୍ୱନି ଯେ ଗମ୍ଭୀର । ୩୨ ।
ଦୈର୍ଘ୍ୟ-ବିସ୍ତାରେ ଯେଇ ଆପନାର ହାତ ।
ଚାରିହସ୍ତ ହୟ ମହାପୁରୁଷ ବିଖ୍ୟାତ । ୩୩ ।
'ନ୍ୟଗ୍ରୋଧପରିମଣ୍ଡଲ' ହୟ ତାର ନାମ ।
ନ୍ୟଗ୍ରୋଧପରିମଣ୍ଡଲ-ତନୁ ଚୈତନ୍ୟ ଗୁଣଧାମ ।୩୪।
ଆଜାନୁଲମ୍ବିତ ଭୁଜ—କମଲଲୋଚନ ।
ତିଲଫୁଲ ଜିନି ନାସା—ସୁଧାଂଶୁବଦନ । ୩୫ ।

ଶାନ୍ତ, ଦାନ୍ତ, କୃଷ୍ଣଭକ୍ତି-ନିଷ୍ଠାପରାୟଣ ।
ଭକ୍ତବତ୍ସଲ, ସୁଶୀଲ, ସର୍ବଭୂତେ ସମ । ୩୬ ।

ଚନ୍ଦନେର ଅଙ୍ଗଦ ବାଲା, ଚନ୍ଦନ-ଭୂଷଣ ।
ନୃତ୍ୟକାଳେ ପରି କରେନ କୃଷ୍ଣସଙ୍କୀର୍ତ୍ତନ ।୩୭।

ଏଇ ସବ ଗୁଣ ଲଞା ମୁନି ବୈଶମ୍ପାୟନ ।
ସହସ୍ରନାମେ କୈଲ ତାଁର ନାମେର ଗଣନ ।୩୮।

ଦୁଇ ଲୀଳା ଚୈତନ୍ୟେର—ଆଦି, ଆର ଶେଷ ।
ଦୁଇ ଲୀଳାୟ ଚାରି ଚାରି ନାମ ବିଶେଷ । ୩୯ ।

କଲିଯୁଗେ ଶ୍ରୀକୃଷ୍ଣସ୍ୟ ଶ୍ରୀଚୈତନ୍ୟାବତାରତ୍ୱଂ ଶ୍ରୀମହାଭାରତଶ୍ରୀମଦ୍ଭାଗବତବାକ୍ୟେନ ପ୍ରତିପାଦୟିତୁଂ ପୁନଃ ପ୍ରକରଣମାରଭତେ "କଲିକାଲେ" ଇତ୍ୟାଦି "ଭାଗବତଭାରତ" ଇତ୍ୟନ୍ତଂ । ତତ୍ର କଲିଯୁଗ-ଯୁଗଧର୍ମପ୍ରଚାରେ ପୀତବର୍ଣ୍ଣସ୍ୟାବଶ୍ୟକତ୍ୱେନୈବ ଅଂଶାବତାରଃ ପୀତବର୍ଣ୍ଣୋ ଭବତି କିନ୍ତୁ ବ୍ରଜପ୍ରେମ ପ୍ରଦାତୁଂ ସ୍ୱୟମବତୀର୍ଣ୍ଣସ୍ୟ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ତଦନାବଶ୍ୟକତ୍ୱେଽପି ଯତ୍ତୁ ପୀତତ୍ୱଂ ତତ୍ର କାରଣମାହ "କଲିକାଲେ" ଇତି । କଲିଯୁଗେ ଯଃ ପୀତବର୍ଣ୍ଣଶ୍ଚୈତନ୍ୟାବତାରଃ ତସ୍ୟ ପ୍ରକଟନମେବ ତସ୍ୟ ଶ୍ରୀଚୈତନ୍ୟସ୍ୟ ପୀତତ୍ୱେ କାରଣଂ । କଲିଯୁଗାବତାରତ୍ୱମେବ ପ୍ରକଟୟିତୁଂ ପୀତବର୍ଣ୍ଣ ଇତି ଭାବଃ । "ତଥି ଲାଗି" ଇତି ନାମ ପ୍ରଚାର ନିମିତ୍ତଂ ପୀତବର୍ଣ୍ଣୋ ଯୁଗାବତାରଃ ଯଶ୍ଚୈତନ୍ୟସ୍ତସ୍ୟାବତାରଂ ପ୍ରକଟୟିତୁଂ ପୀତବର୍ଣ୍ଣଃ ଇତ୍ୟେବାର୍ଥଃ ନ ତୁ ନାମପ୍ରଚାରନିମିତ୍ତଂ ପୀତବର୍ଣ୍ଣେନାବତାରଃ ନଚେତ୍ତୁ ତତ୍ତ୍ୱେ ଯୁଗାବତାରତା ସ୍ୟାତ୍ତୁ ।୩୧। ବି, ଚ,

"ପୁରଟସୁନ୍ଦରଦ୍ୟୁତି କଦମ୍ବ ସନ୍ଦୀପିତଃ" ଇତ୍ୟସ୍ୟାର୍ଥଂ କୁର୍ବନ୍ ଶ୍ରୀଚୈତନ୍ୟଂ ବର୍ଣ୍ଣୟତି "ତପ୍ତହେମ" ଇତି । ୩୨—୩୫ । ବି, ଚ,

କଲିଯୁଗରେ ଶ୍ରୀକୃଷ୍ଣ ଅନର୍ପିତ ବ୍ରଜପ୍ରେମ ଦାନକରିବାସକାଶେ ଯଦି ଅବତୀର୍ଣ୍ଣ ହେଲେ ତେବେ ତାଙ୍କର ଏହି କାର୍ଯ୍ୟସକାଶେ ପୀତବର୍ଣ୍ଣ ହେବାର କି ପ୍ରୟୋଜନ ଏହି ଆଶଙ୍କା ନିବାରଣ ସକାଶେ କହୁଅଛନ୍ତି—

କଲିଯୁଗର ଯୁଗଧର୍ମ ହରିନାମ ପ୍ରଚାର କରିବା ଏବଂ ସେହି ହରିନାମ ପ୍ରଚାର କରିବା-ସକାଶେ ଭଗବାନ୍ ପୀତବର୍ଣ୍ଣ ଧାରଣ କରି ଯୁଗାବତାର ହୁଅନ୍ତି । ଅଧୁନା ବ୍ରଜପ୍ରେମଦାନ ଏବଂ ତତ୍ସହିତ ଯୁଗଧର୍ମ ଶ୍ରୀହରିନାମସଂକୀର୍ତ୍ତନପ୍ରଚାର ଏ ଉଭୟ କାର୍ଯ୍ୟ ସ୍ୱୟଂ ଭଗବାନଙ୍କୁ କରିବାକୁ ହେବାରୁ ସେ ଯୁଗଧର୍ମପ୍ରଚାରର କାର୍ଯ୍ୟସକାଶେ ତଦୁପଯୋଗୀ ପୀତବର୍ଣ୍ଣ ଗ୍ରହଣ କଲେ । ୩୧ ।

ଅଙ୍ଗଦ—ବାହୁରେ ପିନ୍ଧିବା ଅଳଙ୍କାର ଯଥା—ଅନନ୍ତବୃତ୍ତ । ବାଲା—ଖଡୁ । ୩୭ ।

ମହାଭାରତେ, ଦାନଧର୍ମ୍ମେ,

ବିଷ୍ଣୁସହସ୍ରନାମସ୍ତୋତ୍ରେ (୮୦;୭୩)—

ସୁବର୍ଣ୍ଣବର୍ଣ୍ଣୋ ହେମାଙ୍ଗୋ ବରାଙ୍ଗଶ୍ଚନ୍ଦନାଙ୍ଗଦୀ ।
ସନ୍ନ୍ୟାସକୃଚ୍ଛମଃ ଶାନ୍ତୋ ନିଷ୍ଠାଶାନ୍ତିପରାୟଣଃ ॥୯॥ *

ବ୍ୟକ୍ତ କରି ଭାଗବତେ କହେ ଆରବାର ।
କଲିଯୁଗେ ଧର୍ମ୍ମ—ନାମସଙ୍କୀର୍ତ୍ତନ ସାର । ୪୦ ।

ତଥାହି ( ଭାଃ ୧୧।୫।୩୧,୩୨ )—

ଇତି ଦ୍ୱାପରଉର୍ବ୍ବୀଶ ସ୍ତୁବନ୍ତି ଜଗଦୀଶ୍ୱରମ୍ ।
ନାନାତନ୍ତ୍ରବିଧାନେନ କଲାବପି ଯଥା ଶୃଣୁ ॥୧୦॥*

ସୁବର୍ଣ୍ଣଂ—ସୁନ୍ଦରବର୍ଣ୍ଣଂ କୃଷ୍ଣବର୍ଣ୍ଣମିତ୍ୟର୍ଥଃ ।

ସୁବର୍ଣ୍ଣବର୍ଣ୍ଣଂ ତଂ ବର୍ଣ୍ଣୟତି ଇତି ।

ହେମାଙ୍ଗଃ ( ହେମବତ୍ ଅଙ୍ଗମ୍ ଯସ୍ୟ ସଃ ) ବରାଙ୍ଗଃ ( ମହାପୁରୁଷବୋଧକଂ ଅଙ୍ଗମ୍ ଯସ୍ୟ ସଃ ) ଚନ୍ଦନାଙ୍ଗଦୀ ( ଚନ୍ଦନାକ୍ତିତେ ଅଙ୍ଗଦେ ବିଦ୍ୟେତେ ଯସ୍ୟ ସଃ ) ସନ୍ନ୍ୟାସକୃତ୍ ( ଚତୁର୍ଥାଶ୍ରମସେବୀ ) ଶମଃ ( ନିଗୃହୀତାନ୍ତଃକରଣଃ ) ଶାନ୍ତଃ ( କୃଷ୍ଣୈକନିଷ୍ଠଚିତ୍ତଃ ) ନିଷ୍ଠାଶାନ୍ତି-ପରାୟଣଃ ( ନିଷ୍ଠା ଚିତ୍ତୈକାଗ୍ର୍ୟଂ ଶାନ୍ତିଃ ସମସ୍ତାବିଦ୍ୟା ନିବୃତ୍ତିଶ୍ଚ ନିଷ୍ଠାଶାନ୍ତୀ ପରଂ ଅୟନଂ ଆଶ୍ରୟଃ ଯସ୍ୟ ସଃ ) । [ ୯ମ ଶ୍ଳୋକଃ ]

ଶ୍ରୀକୃଷ୍ଣସ୍ୟ ଶ୍ରୀଚୈତନ୍ୟାବତାରତ୍ୱେ ଶ୍ରୀଭାରତଂ ପ୍ରମାଣୟତି " ସୁବର୍ଣ୍ଣ " ଇତି । ସୁବର୍ଣ୍ଣଂ ସୁନ୍ଦରବର୍ଣ୍ଣଂ କୃଷ୍ଣବର୍ଣ୍ଣମିତ୍ୟର୍ଥଃ । ତଂ ବର୍ଣ୍ଣୟତି ଇତି ସୁବର୍ଣ୍ଣବର୍ଣ୍ଣଃ ବରାଙ୍ଗଃ ଶ୍ରେଷ୍ଠାଙ୍ଗଃ, ଶମଃ ଭଗବନ୍ନିଷ୍ଠିତାବୁଦ୍ଧିଃ, ଶାନ୍ତିପରାୟଣଃ ନିବୃତ୍ତିପରାୟଣଃ । ୯ । ବି, ଚ,

ଶ୍ରୀକୃଷ୍ଣସ୍ୟ ଶ୍ରୀଚୈତନ୍ୟାବତାରତ୍ୱେ ଶ୍ରୀମଦ୍ଭାଗବତଂ ପ୍ରମାଣୟିତୁମାହ "ବ୍ୟକ୍ତ" ଇତି ।୪୦। ବି,ଚ,

ହେ ଉର୍ବ୍ବୀଶ (ଭୂପତେ) ଇତି ( ଏବଂ ) ଦ୍ୱାପରେ ଜଗଦୀଶ୍ୱରଂ ସ୍ତୁବନ୍ତି କଲୌ ଅପି ନାନା ତନ୍ତ୍ରବିଧାନେନ ( ତନ୍ତ୍ରୋକ୍ତ ପ୍ରକାରେଣ ) ତଂ ଯଥା ଯଜନ୍ତି ତଥା ଶୃଣୁ । [୧୦ମ ଶ୍ଳୋକଃ

ମହାଭାରତର ବିଷ୍ଣୁସହସ୍ରନାମସ୍ତୋତ୍ରମଧ୍ୟରେ ଏହି ଅଷ୍ଟନାମ ଶ୍ରୀକୃଷ୍ଣଚୈତନ୍ୟ ଅବତାରେ ନାମ ଅଟେ । ଯଥା—

୧ । ସୁବର୍ଣ୍ଣବର୍ଣ୍ଣ—ସୁ ଉତ୍ତମ ବର୍ଣ୍ଣବିଶିଷ୍ଟ ଯେ ଶ୍ରୀକୃଷ୍ଣ ତାଙ୍କୁ ଯେ ବର୍ଣ୍ଣନ କରନ୍ତି ।

୨ । ହେମାଙ୍ଗ—ହେମତୁଲ୍ୟ ରୂପଗୁଣସମ୍ପନ୍ନ ଶରୀର ବା ହିରଣ୍ମୟ ପୁରୁଷ ।

୩ । ବରାଙ୍ଗ—ସର୍ବଚିତ୍ତାକର୍ଷକ ମହାପୁରୁଷଲକ୍ଷଣାନ୍ୱିତ ଶରୀର ।

୪ । ଚନ୍ଦନାଙ୍ଗଦୀ—ଚନ୍ଦନ ଅଙ୍ଗଦ ବ୍ୟବହାରକାରୀ ।

ଏହି ଚାରି ନାମ ମହାପ୍ରଭୁଙ୍କର ଆଦିଲୀଳା ସମ୍ପର୍କୀୟ ଅଟେ ।

୫ । ସନ୍ନ୍ୟାସକୃତ୍—ସନ୍ନ୍ୟାସୀ ।

୬ । ଶମ—ନିଗୃହୀତାନ୍ତଃକରଣ ।

୭ । ଶାନ୍ତ—କୃଷ୍ଣୈକନିଷ୍ଠଚିତ୍ତ ।

୮ । ନିଷ୍ଠାଶାନ୍ତିପରାୟଣ—ଚିତ୍ତ ଏକାଗ୍ରତାହେତୁ ସମସ୍ତ ଅବିଦ୍ୟା ନିବୃତ୍ତିକିମ୍ବା ଯାହାଙ୍କ-ଠାରେ ସର୍ବତୋଭାବେ ଆଶ୍ରୟ କରିଅଛି ।

ଏହି ଶେଷ ଚାରି ନାମ ଶେଷଲୀଳା ସମ୍ପର୍କୀୟ ଅଟେ । [ ୯ମ ଶ୍ଳୋକାର୍ଥ ]

ଚୌର୍ଣ୍ଣସିଂହ ଛପା ଗ୍ରନ୍ଥରେ ନିମ୍ନଲିଖିତ ପୟାର ବ୍ୟକ୍ତ ଅଛି ।

ବ୍ୟକ୍ତ କରି ଭାଗବତେ କହେ ଆରବାର,
କଲିଯୁଗେର ଯୁଗଧର୍ମ୍ମ ଯୁଗ ଅବତାର । ୪୦ ।

| | |
|---|---|
| କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦମ୍ । | 'କୃଷ୍ଣ' ଏଇ ଦୁଇ ବର୍ଣ୍ଣ ସଦା ଯାଁର ମୁଖେ । |
| ଯଜ୍ଞୈଃ ସଙ୍କୀର୍ତ୍ତନପ୍ରାୟୈର୍ଯଜନ୍ତି ହି ସୁମେଧସଃ ॥୧୧॥ | ଅଥବା କୃଷ୍ଣକେ ତେଁହୋ ବର୍ଣ୍ଣେ ନିଜେ ସୁଖେ ॥୫୨ |
| ଶୁନ ଭାଇ ! ଏଇ ସବ ଚୈତନ୍ୟ-ମହିମା । | କୃଷ୍ଣବର୍ଣ୍ଣ-ଶବ୍ଦେର ଅର୍ଥ ଦୁଇ ତ ପ୍ରମାଣ । |
| ଏଇ ଶ୍ଲୋକେ କହେ ତାଁର ମହିମାର ସୀମା ॥୫୧ | କୃଷ୍ଣ ବିନୁ ତାଁର ମୁଖେ ନାହିଁ ଆଇସେ ଆନ ॥୫୩ |

ସୁମେଧସଃ ( ବିବେକିନଃ ) ହି ( ନିଶ୍ଚିତଂ ) ତ୍ୱିଷା ( କାନ୍ତ୍ୟା ) ଅକୃଷ୍ଣଂ ( ପୀତବର୍ଣ୍ଣଂ ) କୃଷ୍ଣବର୍ଣ୍ଣଂ ( କୃଷ୍ଣଂ ବର୍ଣ୍ଣୟତି ସ୍ୱୟଂ ଗାୟତି ଯଃ ସଃ ଯଦ୍ୱା କୃଷ୍ଣଂ ବର୍ଣ୍ଣୟତି ସ୍ୱଭଶେଷାତ୍ ବିଶେଷେଣ ଏବ ଉପଦିଶତି ଯଃ ତଂ ) ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦଂ ( ଅଙ୍ଗେ ଶ୍ରୀମନ୍ନିତ୍ୟାନନ୍ଦାଦ୍ୱୈତୌ, ଉପାଙ୍ଗାନି ଶ୍ରୀବାସ ଗଦାଧରଦାସାଦୟଃ ତାନି ଏବ ଅସ୍ତ୍ରାଣି ଅଥବା ଅସ୍ତ୍ରାଣି ଅବିଦ୍ୟା ଚ୍ଛେତ୍ତୃତ୍ୱାତ୍ ଭଗବନ୍ନାମାନି, ପାର୍ଷଦାଃ ଶ୍ରୀବାସାଦୟଃ ତେ ଏବ ସୈନିକାଃ ଯସ୍ୟ ତଂ ଶ୍ରୀକୃଷ୍ଣଚୈତନ୍ୟଦେବ) ସଙ୍କୀର୍ତ୍ତନପ୍ରାୟୈଃ (ସଙ୍କୀର୍ତ୍ତନଂ ବହୁଭିଃ ମିଳିତ୍ୱା ଉଚ୍ଚୈଃ ଗାନଂ ତତ୍ର ପ୍ରଧାନୈଃ) ଯଜ୍ଞୈଃ ଯଜନ୍ତି । [ ୧୧ଶ ଶ୍ଲୋକଃ ]

ସାଙ୍ଗୋପାଙ୍ଗାସ୍ତ୍ର ପାର୍ଷଦଂ ( ଏହାର ଅପର ଅନ୍ୱୟ )

ଅଙ୍ଗାନ୍ୟେବ ପରମ ମନୋହରତ୍ୱାଦୁପାଙ୍ଗାନି ଭୂଷଣାଦୀନି, ମହାପ୍ରଭାବତ୍ୱାତ୍ ତାନି ଏବ ଅସ୍ତ୍ରାଣି ସର୍ବଦୈବୈକାନ୍ତବାସିତ୍ୱାତ୍ ତାନି ଏବ ପାର୍ଷଦାଃ ବହୁଭିର୍ମହାନୁଭାବୈରସକୃଦେବ ତଥା ଦୃଷ୍ଟୋଽସାବିତି ଗୌଡ଼ବାରେନ୍ଦ୍ର ବଙ୍ଗୋତ୍କଳାଦି ଦେଶୀୟାନାଂ ମହାପ୍ରସିଦ୍ଧେଃ । [ ୧୧ଶ ଶ୍ଲୋକଃ ]

ଉକ୍ତ " କୃଷ୍ଣବର୍ଣ୍ଣଂ " ଇତି ପଦ୍ୟସ୍ୟାର୍ଥଂ ଦୃଢ଼ୟନ୍ନାହ "ଶୁନହ" ଇତି । ତଏ "କୃଷ୍ଣବର୍ଣ୍ଣଂ" ଇତ୍ୟସ୍ୟାର୍ଥମାହ " କୃଷ୍ଣ ଏଇ " ଇତି । କୃଷ୍ଣୌ ବର୍ଣ୍ଣୌ ଯସ୍ୟ ସ କୃଷ୍ଣବର୍ଣ୍ଣଃ ଅଥବା କୃଷ୍ଣଂ ବର୍ଣ୍ଣୟତୀତି । ୫୧ । ୫୨ । ୫୩ । ବି, ଚ,

ଯୋଗେନ୍ଦ୍ର ଶ୍ରୀକରଭାଜନ ନିମିରାଜାଙ୍କୁ କହୁଅଛନ୍ତି, ହେ ଭିତପତେ ! ଦ୍ୱାପରଯୁଗରେ ଜଗଦୀଶ୍ୱରଙ୍କୁ ପୂର୍ବୋକ୍ତପ୍ରକାରରେ ସ୍ତବ କରନ୍ତି କିନ୍ତୁ କଳିଯୁଗରେ ନାନାବିଧ ତନ୍ତ୍ରୋକ୍ତପ୍ରକାରରେ ତାହାଙ୍କୁ ଯେପରି ଆରାଧନା କରନ୍ତି ତାହା ଶୁଣ । [ ୧୦ମ ଶ୍ଲୋକାର୍ଥ ]

କଳିଯୁଗରେ ଯେଉଁ ବ୍ୟକ୍ତିମାନେ ବିବେକୀ ହୁଅନ୍ତି ସେମାନେ ନାମସ୍ୟ ସଙ୍କୀର୍ତ୍ତନ ପ୍ରଧାନ ଯଜ୍ଞଦ୍ୱାରା ଅଙ୍ଗଉପାଙ୍ଗ ରୂପ ଅସ୍ତ୍ର ଓ ପାର୍ଷଦରୂପ ସୈନ୍ୟପରିବେଷ୍ଟିତ ଗୌରବର୍ଣ୍ଣ କୃଷ୍ଣନାମ ଗ୍ରହଣକାରୀ ଓ କୃଷ୍ଣଉପଦେଶକାରୀ ମହାପୁରୁଷ ଶ୍ରୀକୃଷ୍ଣଚୈତନ୍ୟଙ୍କୁ ଆରାଧନା କରନ୍ତି ।

କାହାରି ମତରେ ଶ୍ରୀକୃଷ୍ଣଚୈତନ୍ୟଙ୍କ ଶ୍ରୀଅଙ୍ଗହିଁ ଅଙ୍ଗଉପାଙ୍ଗ ଅସ୍ତ୍ର ଓ ପାର୍ଷଦର କାର୍ଯ୍ୟ କରୁଅଛି ଅର୍ଥାତ୍ ପରମମନୋହର ଶ୍ରୀଅଙ୍ଗର କର ଚରଣ ଶ୍ରୀମୁଖାଦି ଉପାଙ୍ଗମାନେ ଭୂଷଣସ୍ୱରୂପ ହୋଇ ପରମ ମନୋହାରିତ୍ୱ ପ୍ରସ୍ଫୁଟିତ କରୁଅଛନ୍ତି; ଶ୍ରୀଅଙ୍ଗର ମହାପ୍ରଭାବସମ୍ପନ୍ନ ଛଟା ଅସ୍ତ୍ରରି କାର୍ଯ୍ୟ କରୁଅଛି ଏବଂ ସେ ସର୍ବଦା ନିର୍ଜ୍ଜନବାସୀହେତୁ ତାଙ୍କର ଶ୍ରୀଅଙ୍ଗହିଁ ତାଙ୍କର ପାର୍ଷଦ । ନାନାଦେଶୀୟ ମହାନୁଭବବ୍ୟକ୍ତିମାନେ ଶ୍ରୀମନ୍ମହାପ୍ରଭୁଙ୍କୁ ଏହିପରି ଦର୍ଶନ କରିଅଛନ୍ତି ଅର୍ଥାତ୍ କେହି ବା ଶ୍ରୀମନ୍ମହାପ୍ରଭୁଙ୍କର ଶ୍ରୀମୂର୍ତ୍ତି ଦର୍ଶନମାତ୍ର ଅଭିମାନଶୂନ୍ୟ ହୋଇ, କେହି ବା ତାହାଙ୍କର ସକରୁଣ ଦୃଷ୍ଟିସମ୍ପନ୍ନ ଶ୍ରୀମୁଖ ଦର୍ଶନ କରି ଆତ୍ମହରା ହୋଇ, କେହି ବା ତାହାଙ୍କର ରୂପରେ ମୋହିତ ହୋଇ, ବା ନାମ ଶ୍ରବଣ କରି ଏବଂ କେହି ବା ତାଙ୍କର ଅପୂର୍ବ ତ୍ୟାଗବ୍ୟଞ୍ଜକ ସନ୍ନ୍ୟାସରେ ବାଧ୍ୟ ହୋଇ ତାହାଙ୍କର ଶ୍ରୀଚରଣ ଆଶ୍ରୟ କରିଅଛନ୍ତି । [ ୧୧ଶ ଶ୍ଲୋକାର୍ଥ ]

ପୂର୍ବୋକ୍ତ " କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ " ଶ୍ଲୋକର ଗ୍ରନ୍ଥକର୍ତ୍ତା ଅର୍ଥ କରୁଅଛନ୍ତି ଯଥା—

କେହୋ ତାଁରେ ବୋଲେ ଯଦି 'କୃଷ୍ଣବରଣ' ।
ଆର ବିଶେଷଣେ ତାର କରେ ନିବାରଣ ।୪୪।
ଦେହକାନ୍ତ୍ୟେ ହୟ ତେଁହ ଅକୃଷ୍ଣବରଣ ।
ଅକୃଷ୍ଣବରଣେ କହେ—ପୀତ-ବରଣ । ୪୫ ।
ଅତଏବ ଶ୍ରୀରୂପଗୋସ୍ୱାମିଚରଣୈଃ ସ୍ତବମାଳାୟାଂ
( ୨୧ ) ନିର୍ଣ୍ଣୀତମସ୍ତି—
କଲୌ ଯଂ ବିଦ୍ୱାଂସଃ ସ୍ଫୁଟମଭିଯଜନ୍ତେ ଦ୍ୟୁତିଭରା-
ଦକୃଷ୍ଣାଙ୍ଗଂ କୃଷ୍ଣଂ ମଖବିଧିଭିରୁତ୍କୀର୍ତ୍ତନମୟୈଃ ।
ଉପାସ୍ୟଞ୍ଚ ପ୍ରାହୁର୍ଯମଖିଲଚତୁର୍ଥାଶ୍ରମଜୁଷାଂ,
ସ ଦେବଶ୍ଚୈତନ୍ୟାକୃତିରତିତରାଂ ନଃ
କୃପୟତୁ ॥ ୧୨ ॥ *

ପ୍ରତ୍ୟକ୍ଷ ତାଁହାର ତପ୍ତକାଞ୍ଚନେର ଦ୍ୟୁତି ।
ଯାହାର ଛଟାୟ ନାଶେ ଅଜ୍ଞାନ-ତମସ୍ତତି । ୪୬ ।
ଜୀବେର କଲ୍ମଷ-ତମୋ ନାଶ କରିବାରେ ।
ଅଙ୍ଗ-ଉପାଙ୍ଗ ନାମ ନାନା ଅସ୍ତ୍ର ଧରେ । ୪୭ ।

"ତ୍ୱିଷାକୃଷ୍ଣଂ" ଇତ୍ୟସ୍ୟାର୍ଥମାହ "ଦେହକାନ୍ତ୍ୟେ" ଇତି । ୪୫ । ବି, ଚ,

କଲୌ ସ୍ଫୁଟଂ ( ବ୍ୟକ୍ତଂ ) ଦ୍ୟୁତିଭରାତ୍ (କାନ୍ତ୍ୟାଧିକ୍ୟାତ୍ ବହିଃ) ଅକୃଷ୍ଣାଙ୍ଗମ୍ ( ଗୌରଂ ପୀତବର୍ଣ୍ଣଂ ) କୃଷ୍ଣଂ ( ଅନ୍ତଃ ଇନ୍ଦ୍ରନୀଲମଣିବତ୍ ଶ୍ୟାମଳାବୟବଂ ) ବିଦ୍ୱାଂସଃ ( ପଣ୍ଡିତାଃ ) ଉତ୍କୀର୍ତ୍ତନମୟୈଃ ( ଉଚ୍ଚୈଃ ସଂକୀର୍ତ୍ତନ ପ୍ରଚୁରୈଃ ) ମଖବିଧିଭିଃ ( ଯଜ୍ଞବିଧାନୈଃ ) ଅଭିଯଜନ୍ତେ । ଯଂ ଚ ଅଖିଳଚତୁର୍ଥାଶ୍ରମଜୁଷାଂ ( ସକଳସନ୍ନ୍ୟାସିନାଂ ) ଉପାସ୍ୟଂ ( ପୂଜ୍ୟଂ ) ପ୍ରାହୁଃ ସଃ ଚୈତନ୍ୟାକୃତିଃ ଦେବଃ ନଃ ( ଅସ୍ମାନ୍ ) ଅତିତରାଂ ( ଅତ୍ୟଧିକଂ ) କୃପୟତୁ । [ ୧୨ଶ ଶ୍ଳୋକଃ ]

"ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦଂ" ଇତ୍ୟସ୍ୟାର୍ଥମାହ "ଜୀବେର" ଇତି "ପାଷଣ୍ଡଦଳନବାନା" ଇତ୍ୟନ୍ତଂ । ୪୭ । ବି, ଚ,

"କୃଷ୍ଣ" ଏହି ଦୁଇବର୍ଣ୍ଣ ଯାହାଙ୍କ ମୁଖରେ ସର୍ବଦା ରହିଅଛି ( ଯେ କି ସର୍ବଦା କୃଷ୍ଣନାମ ଗ୍ରହଣ କରୁଅଛନ୍ତି ) ଅଥବା ସେ ସର୍ବଦା ନିଜାନନ୍ଦରେ କୃଷ୍ଣଙ୍କ ବିଷୟ ବର୍ଣ୍ଣନା କରୁଅଛନ୍ତି କିମ୍ବା ଉପଦେଶ ଦେଉଅଛନ୍ତି । ୪୨ ।

କୃଷ୍ଣବର୍ଣ୍ଣ ଶବ୍ଦର ଏହି ଦୁଇ ଅର୍ଥ ପ୍ରମାଣିତ ହେଲା । ସ୍ଥୂଳତଃ ଏହି ଦୁଇ ଅର୍ଥଦ୍ୱାରା ତାହାଙ୍କ ଶ୍ରୀମୁଖରୁ "କୃଷ୍ଣ" ଏହି ଶବ୍ଦ ବିନା ଆଉ କିଛି ନିର୍ଗତ ହୁଏ ନା । ୪୩ ।

"କୃଷ୍ଣବର୍ଣ୍ଣଂ" ଏହି ଶବ୍ଦର ଯଦି କେହି "କୃଷ୍ଣରୂପ" ଅର୍ଥ କରନ୍ତି ତାହା ଶ୍ଳୋକସ୍ଥ ଅପର ବିଶେଷଣଦ୍ୱାରା ( ତ୍ୱିଷାକୃଷ୍ଣ ) ଅପ୍ରମାଣିତ ହେଉଅଛି । କାରଣ ତାହାଙ୍କର ଶ୍ରୀଅଙ୍ଗର କାନ୍ତି ବା ରୂପ ଅକୃଷ୍ଣ ଅର୍ଥାତ୍ ପୀତବର୍ଣ୍ଣ ଏବଂ ନିମ୍ନୋକ୍ତ ଶ୍ଳୋକଦ୍ୱାରା ଅକୃଷ୍ଣ ଶବ୍ଦର ଅର୍ଥ ପୀତବର୍ଣ୍ଣ ପ୍ରମାଣ କରିଅଛନ୍ତି । ୪୪ । ୪୫ ।

ଶ୍ରୀକୃଷ୍ଣ ଯେ କି କଳିଯୁଗରେ ଗୌରକାନ୍ତି ଗ୍ରହଣ କରି ଅବତୀର୍ଣ୍ଣ ହୋଇଅଛନ୍ତି, ଯେ ଗୌରାଙ୍ଗଙ୍କୁ ଶାସ୍ତ୍ରବେତ୍ତା ମହାନୁଭବ ବ୍ୟକ୍ତିମାନେ ଉଚ୍ଚସଂକୀର୍ତ୍ତନବହୁଳ ଯଜ୍ଞବିଧିଦ୍ୱାରା ଅର୍ଚ୍ଚନା କରୁଅଛନ୍ତି ଓ ଯାହାଙ୍କୁ ସକଳ ସନ୍ନ୍ୟାସିମାନେ ଉପାସନା କରୁଅଛନ୍ତି ସେହି ଶ୍ରୀକୃଷ୍ଣଚୈତନ୍ୟ ନାମଧେୟ ମହାପ୍ରଭୁ ଆମ୍ଭମାନଙ୍କ ପ୍ରତି ଅତିଶୟ କୃପା କରନ୍ତୁ । [ ୧୨ଶ ଶ୍ଳୋକାର୍ଥ ]

ପ୍ରତ୍ୟକ୍ଷ—ସାକ୍ଷାତ୍, ତପ୍ତକାଞ୍ଚନ—ଗଳିତସୁବର୍ଣ୍ଣ, ତତି—ସମୂହ ।

"କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ" ଏହି ଦଶମ ଶ୍ଳୋକର ପୂର୍ବେ ଯେଉଁ ଦୁଇଅର୍ଥ କରାହୋଇଅଛି ଗ୍ରନ୍ଥକାରଙ୍କର ୪୬ ରୁ ୫୨ ପୟାରର ପ୍ରଥମପାଦପର୍ଯ୍ୟନ୍ତ ପୟାରଗୁଡ଼ିକ ସେଥିମଧ୍ୟରୁ ପ୍ରଥମ ଅର୍ଥ ସାପେକ୍ଷ ।

ଭକ୍ତିର ବିରୋଧୀ କର୍ମ—ଧର୍ମ ବା ଅଧର୍ମ ।
ତାହାର 'କଲ୍ମଷ' ନାମ—ସେଇ ମହାତମ ।୪୮।
ବାହୁ ତୁଲି 'ହରି' ବଲି ପ୍ରେମଦୃଷ୍ଟ୍ୟେ ଚାୟ ।
କରିୟା କଲ୍ମଷ-ନାଶ ପ୍ରେମେତେ ଭାସାୟ ।୪୯।
ତଥାହି ତତ୍ରୈବ (୨।୮)—

ସ୍ମିତାଲୋକଃ ଶୋକଂ ହରତି ଜଗତାଂ ଯସ୍ୟ ପରିତୋ,
ଗିରାନ୍ତୁ ପ୍ରାରମ୍ଭଃ କୁଶଲପଟଲୀଂ ପଲ୍ଲବୟତି ।
ପଦାଲମ୍ଭଃ କଂ ବା ପ୍ରଣୟତି ନ ହି ପ୍ରେମନିବହଂ;
ସ ଦେବଶ୍ଚୈତନ୍ୟାକୃତିରତିତରାଂ ନଃ କୃପୟତୁ ॥ ୧୩ ॥ *

ଶ୍ରୀଅଙ୍ଗ ଶ୍ରୀମୁଖ ଯେଇ କରେ ଦରଶନ ।
ତାର ପାପ କ୍ଷୟ ହୟ, ପାୟ ପ୍ରେମଧନ । ୫୦ ।
ଅନ୍ୟ ଅବତାରେ ସବ ସୈନ୍ୟ-ଶସ୍ତ୍ର ସଙ୍ଗେ ।
ଚୈତନ୍ୟକୃଷ୍ଣେର ସୈନ୍ୟ ଅଙ୍ଗ-ଉପାଙ୍ଗେ ।୫୧।

ଯସ୍ୟ ( ଚୈତନ୍ୟଦେବସ୍ୟ ) ସ୍ମିତାଲୋକଃ (ମନ୍ଦହାସକଟାକ୍ଷଃ) ଜଗତାଂ (ସର୍ବପ୍ରାଣିନାଂ) ପରିତଃ ( ସର୍ବତୋଭାବେନ ) ଶୋକଂ ( ଅଭଦ୍ରଂ ) ହରତି ( ବିନାଶୟତି ) ଗିରାନ୍ତୁପ୍ରାରମ୍ଭଃ ( ବାକ୍ୟୋପକ୍ରମଃ ) କୁଶଲପଟଲୀଂ ( କଲ୍ୟାଣମାଲାଂ ) ପଲ୍ଲବୟତି ( ବିସ୍ତାରୟତି ) ପଦାଲମ୍ଭଃ ( ଚରଣାଶ୍ରୟଃ ) କଂ ବା ପ୍ରେମନିବହଂ ( ପ୍ରେମସକଲଂ ) ନ ହି ପ୍ରଣୟତି ( ପ୍ରାପୟତି ) ସଃ ଚୈତନ୍ୟାକୃତିଃ ଦେବଃ ନଃ ( ଅସ୍ମାନ୍ ) ଅତିତରାଂ କୃପୟତୁ । [ ୧୩ଶ ଶ୍ଳୋକଃ ]

ଶ୍ରୀକୃଷ୍ଣଚୈତନ୍ୟଙ୍କ ରୂପ ସାକ୍ଷାତ୍ ଗଳିତ ସୁବର୍ଣ୍ଣତୁଲ୍ୟ ଏବଂ ସେହିରୂପର ଆଲୋକରେ ଜୀବମାନଙ୍କର ଅଜ୍ଞାନରୂପ ଅନ୍ଧକାରରାଶି ଦୂର ହୁଏ । ୪୬ ।

ଜୀବମାନଙ୍କର କଲ୍ମଷରୂପ ଅବିଦ୍ୟା ନାଶ କରିବାନିମିତ୍ତ ଅଙ୍ଗ ( ଶ୍ରୀମୂର୍ତ୍ତି ) ଉପାଙ୍ଗ ( ଶ୍ରୀମୂର୍ତ୍ତିଙ୍କର କରଚରଣାଦି ଅବୟବ ) ନାମ ( ଶ୍ରୀକୃଷ୍ଣଚୈତନ୍ୟ ଗୌରାଦି ନାମ କିମ୍ବା ତନ୍ମୁଖ ନିଃସୃତ ହରିକୃଷ୍ଣ ଗୋବିନ୍ଦାଦି ନାମ ) ଏହିପ୍ରକାର ନାମ ଅସ୍ତ୍ର ସେ ଧାରଣ କରିଅଛନ୍ତି । ୪୭ ।

ଏହି ପୟାରରେ ଗ୍ରନ୍ଥକାର କଲ୍ମଷ ଶବ୍ଦର ଅର୍ଥ କରୁଅଛନ୍ତି । ଯେଉଁ କର୍ମ ଭକ୍ତିକୁ ବାଧା ଦିଏ ବା ଭକ୍ତିଶୂନ୍ୟ କର୍ମ ତାହା ଧର୍ମୋତ୍ପାଦକ ହେଉ ବା ଅଧର୍ମୋତ୍ପାଦକ ହେଉ ତାହାକୁ କଲ୍ମଷ କୁହାଯାଏ । ସେହି କଲ୍ମଷହିଁ ମହାତମ ବା ଅବିଦ୍ୟା ।

ଶ୍ରୀମନ୍ମହାପ୍ରଭୁ ହସ୍ତୋତ୍ତୋଳନପୂର୍ବକ ହରି ହରି କହି ପ୍ରେମଦୃଷ୍ଟିରେ ଚାହିଁଲେ ତାହାଙ୍କର ଦୃଷ୍ଟିପଥସ୍ଥ ଜୀବମାନଙ୍କର କଲ୍ମଷ ( ଅବିଦ୍ୟା ) ନାଶ ହୁଏ ଏବଂ ସେମାନେ ପ୍ରେମଭକ୍ତି ଲାଭ କରନ୍ତି । ୪୮ । ୪୯ ।

ଯାହାଙ୍କର ନୟନକମଳର ମନ୍ଦହାସ୍ୟଯୁକ୍ତ ଦୃଷ୍ଟି ଜଗଜ୍ଜୀବର ଶୋକ ସମ୍ପୂର୍ଣ୍ଣରୂପେ ଦୂର କରେ । ଯାହାଙ୍କର ଶ୍ରୀମୁଖନିଃସୃତ ବାକ୍ୟ ଆରମ୍ଭ ମାତ୍ର କୁଶଲସମୂହ ବିସ୍ତାର କରେ, ତାହାଙ୍କର ଶ୍ରୀଚରଣାଶ୍ରୟ କେଉଁ ଜୀବକୁ ଅବା ପ୍ରେମସମୂହ ପ୍ରଦାନ ନ କରେ; ଅର୍ଥାତ୍ ତାଙ୍କର ଶ୍ରୀଚରଣାଶ୍ରୟ ମାତ୍ର ସମସ୍ତ ଜୀବ ପ୍ରେମ ଭକ୍ତି ପ୍ରାପ୍ତ ହୁଅନ୍ତି । ସେହି ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁ ଆମ୍ଭମାନଙ୍କ ପ୍ରତି ଅତିଶୟ କୃପା କରନ୍ତୁ । [ ୧୩ଶ ଶ୍ଳୋକାର୍ଥ ]

ଶ୍ରୀମନ୍ମହାପ୍ରଭୁଙ୍କର କେହି କେହି ଶ୍ରୀମୂର୍ତ୍ତି ଦର୍ଶନ କରି କେହି ବା ଶ୍ରୀମୁଖ ଅଥବା ଅନ୍ୟ କୌଣସି ଅବୟବ ( ଉପାଙ୍ଗ ) ଦର୍ଶନ କରି ନିଷ୍ପାପ ହୋଇ ପ୍ରେମଭକ୍ତି ଲାଭ କରନ୍ତି । ୫୦ ।

ଶ୍ରୀକୃଷ୍ଣଙ୍କର ଅପରାପର ଅବତାରମାନେ ସୈନ୍ୟ ଓ ଶସ୍ତ୍ର ଯୋଗେ ଦୁଷ୍କୃତକାରୀମାନଙ୍କୁ ଦୁଷ୍କୃତସହ ବିନାଶ କରୁଥିଲେ କିନ୍ତୁ ଶ୍ରୀକୃଷ୍ଣଚୈତନ୍ୟଙ୍କ ଶ୍ରୀଅଙ୍ଗ ଓ ଉପାଙ୍ଗମାନେ ଦର୍ଶନ ଦାନ ଜନିତ ପ୍ରଭାବଦ୍ୱାରା ଦୁଷ୍କୃତକାରିମାନଙ୍କୁ ନାଶ ନ କରି ସେମାନଙ୍କର ଦୁଷ୍କୃତ ( କଲ୍ମଷ ) ନାଶ କରିଅଛନ୍ତି । ୫୧ ।

ତଥାହି ଶ୍ରୀଚୈତନ୍ୟଦେବସ୍ୟ ସ୍ତବେ (୧)—
ସଦୋପାସ୍ୟଃ ଶ୍ରୀମାନ୍ ଧୃତମନୁଜକାୟୈଃ ପ୍ରଣୟିତାଂ,
ବହଦ୍ଭିର୍ଗୀର୍ବାଣୈର୍ଗିରିଶପରମେଷ୍ଠିପ୍ରଭୃତିଭିଃ ।
ସ୍ୱଭକ୍ତେଭ୍ୟଃ ଶୁଦ୍ଧାଂ ନିଜଭଜନମୁଦ୍ରାମୁପଦିଶନ୍,
ସ ଚୈତନ୍ୟଃ କିଂ ମେ ପୁନରପି ଦୃଶୋର୍ଯାସ୍ୟତି
ପଦମ୍ ॥ ୧୪ ॥ *

ଅଙ୍ଗୋପାଙ୍ଗ ଅସ୍ତ୍ର କରେ ସ୍ୱକାର୍ଯ୍ୟ-ସାଧନ ।
'ଅଙ୍ଗ'-ଶବ୍ଦେର ଅର୍ଥ ଆର ଶୁନ ଦିୟା ମନ ।୫୬।

'ଅଙ୍ଗ'-ଶବ୍ଦେ ଅଂଶ କହେ ଶାସ୍ତ୍ର-ପରମାଣ ।
ଅଙ୍ଗେର ଅବୟବ 'ଉପାଙ୍ଗ' ବ୍ୟାଖ୍ୟାନ । ୫୭ ।

ତଥାହି ( ଭାଃ ୧୦।୧୪।୧୪ )—
ନାରାୟଣସ୍ତ୍ୱଂ ନ ହି ସର୍ବଦେହିନା-
ମାତ୍ମାସ୍ୟଧୀଶାଖିଲଲୋକସାକ୍ଷୀ ।
ନାରାୟଣୋଽଙ୍ଗଂ ନରଭୂଜଲାୟନା-
ତ୍ତଚ୍ଚାପି ସତ୍ୟଂ ନ ତବୈବ ମାୟା ॥ ୧୫ ॥ *

ପ୍ରଣୟିତାଂବହଦ୍ଭିଃ ସ୍ୱାନୁରାଗପୋଷଣପରୈଃ ଧୃତମନୁଜକାୟୈଃ ( ଗୃହୀତନରଶରୀରୈଃ ) ଗିରିଶପରମେଷ୍ଠି ପ୍ରଭୃତିଭିଃ ( ଶିବଚତୁର୍ମୁଖାଦିଭିଃ ) ଗୀର୍ବାଣୈଃ ( ଦେବୈଃ ) ସଦା ( ନିତ୍ୟଂ ) ଉପାସ୍ୟଃ ( ପୂଜ୍ୟଃ ) ସ୍ୱଭକ୍ତେଭ୍ୟଃ ( ସ୍ୱରୂପରାମାନନ୍ଦାଦିନିଜଜନେଭ୍ୟଃ ) ଶୁଦ୍ଧାଂ ( ନିର୍ମଳାଂ ଅନ୍ୟାଭିଲାଷିତାଶୂନ୍ୟାଂ କର୍ମଜ୍ଞାନାଦ୍ୟନାବୃତାଂ ) ନିଜଭଜନମୁଦ୍ରାଂ (ସ୍ୱଭଜନପରିପାଟୀଂ) ଉପଦିଶନ୍ ସ ( ଶ୍ରୀମାନ୍ ଚୈତନ୍ୟଃ ) କିଂ ପୁନଃ ଅପି ମେ ମମ ଦୃଶୋଃ ପଦଂ ଯାସ୍ୟତି । [ ୧୪ଶ ଶ୍ଳୋକଃ ]

୧୫ଶ ଶ୍ଳୋକ ଅନ୍ୱୟ ଦ୍ୱିତୀୟ ପରିଚ୍ଛେଦର ୯ମ ଶ୍ଳୋକ ଦ୍ରଷ୍ଟବ୍ୟ ।

ଶ୍ରୀରୂପ ଗୋସ୍ୱାମିଙ୍କ ସ୍ତବ—

ଶିବ ବ୍ରହ୍ମାପ୍ରଭୃତି ଦେବତାମାନେ ମନୁଷ୍ୟ ଶରୀର ଧାରଣ କରି ପ୍ରୀତିପୂର୍ବକ ଯାହାଙ୍କୁ ଉପାସନା କରୁଅଛନ୍ତି ସେହି ଅପୂର୍ବ ରୂପସମ୍ପନ୍ନ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ନିଜର ଅନ୍ତରଙ୍ଗ ( ସ୍ୱରୂପଦାମୋଦରାଦି ) ଭକ୍ତମାନଙ୍କୁ ନିଜର ବିଶୁଦ୍ଧ ଭଜନପ୍ରଣାଳୀ ଉପଦେଶ କରୁ କରୁ ତାହାଙ୍କର ଶ୍ରୀଚରଣ କି ମୋତେ ପୁନରାୟ ଦର୍ଶନ କରାଇବେ । [ ୧୪ଶ ଶ୍ଳୋକାର୍ଥ ]

ଶ୍ରୀମନ୍ମହାପ୍ରଭୁ ପୂର୍ବକଥିତରୂପେ ସ୍ୱୟଂ ଅଙ୍ଗ ଉପାଙ୍ଗରୂପ ଅସ୍ତ୍ରଦ୍ୱାରା ସ୍ୱକାର୍ଯ୍ୟ ସାଧନ ( ଜୀବର କଲ୍ମଷନାଶପୂର୍ବକ ପ୍ରେମଭକ୍ତି ଦାନ ) କରିଅଛନ୍ତି, ବର୍ତ୍ତମାନ ଅଙ୍ଗ ଶବ୍ଦର ଅପର ଅର୍ଥ ମନ ଦେଇ ଶ୍ରବଣ କରନ୍ତୁ ।

ନିମ୍ନଲିଖିତ କେତେକ ପୟାରଦ୍ୱାରା ଗ୍ରନ୍ଥକାର ଏକାଦଶ ଶ୍ଳୋକର ଦ୍ୱିତୀୟ ଅର୍ଥ ବ୍ୟାଖ୍ୟା କରୁଅଛନ୍ତି । ୫୬ ।

ଶାସ୍ତ୍ର ପ୍ରମାଣଦ୍ୱାରା ଦେଖାଯାଏ ଅଙ୍ଗ ଶବ୍ଦର ଅର୍ଥ ଅଂଶ ଏବଂ ଅଙ୍ଗର ଅବୟବ ( ପ୍ରତ୍ୟଙ୍ଗ ) ଶବ୍ଦର ଅର୍ଥ ଉପାଙ୍ଗ ସେଥିର ଉଦାହରଣ ଯଥା,—

ଆପଣ ଦେହିମାନଙ୍କର ପରମାତ୍ମାହେତୁ ଆପଣ କି ନାରାୟଣ ନୁହନ୍ତି କାରଣ ନାର ଶବ୍ଦର ଅର୍ଥ ଜୀବସମୂହ ଅୟନ ଶବ୍ଦର ଅର୍ଥ ଆଶ୍ରୟ । ଜୀବସମୂହ ଯାହାଙ୍କର ଆଶ୍ରୟ ସେହି ପରମାତ୍ମାହିଁ ନାରାୟଣଶବ୍ଦବାଚ୍ୟ । ଅତଏବ ଆପଣ ପରମାତ୍ମାହେତୁ ନାରାୟଣ ଅଟନ୍ତି । ପୁଣି ଆପଣ ଅଧୀଶ୍ୱର ଅର୍ଥାତ୍ ସର୍ବପ୍ରବର୍ତ୍ତକହେତୁ ନାରାୟଣ ଅଟନ୍ତି । କାରଣ ନାର ଶବ୍ଦର ଅର୍ଥ ଜୀବସମୂହ ବା ତତ୍ତ୍ୱସମୂହ ସେଥିର ପ୍ରବର୍ତ୍ତକ ଈଶ୍ୱରଙ୍କୁ ନାରାୟଣ କୁହାଯାଏ । ପୁଣି ଆପଣ ସର୍ବଲୋକସାକ୍ଷୀହେତୁ ନାରାୟଣ ଅଟନ୍ତି । କାରଣ ଯେ ଲୋକସମୂହଙ୍କୁ ଜାଣନ୍ତି ବା ସାକ୍ଷାତ୍ ଦର୍ଶନ କରନ୍ତି ତାହାଙ୍କୁ ନାରାୟଣ କୁହାଯାଏ । ପୁନଶ୍ଚ ନର ଅର୍ଥାତ୍ ପରମାତ୍ମାଙ୍କଠାରୁ ଉଦ୍ଭୂତ ଯେ ଚତୁର୍ବିଂଶତିତତ୍ତ୍ୱ ଏବଂ ସେଥିରୁ ଜାତ

ଅନ୍ୱୟାର୍ଥଃ—

ଜଲଶାୟୀ ଅନ୍ତର୍ଯାମୀ ଯେଇ ନାରାୟଣ ।
ସେହୋ ତୋମାର ଅଂଶ, ତୁମି ମୂଲ ନାରାୟଣ ।୫୪।
'ଅଙ୍ଗ'-ଶବ୍ଦେ ଅଂଶ କହେ, ସେହୋ ସତ୍ୟ ହୟ ।
ମାୟା-କାର୍ଯ୍ୟ ନହେ,—ସବ ଚିଦାନନ୍ଦମୟ ।୫୫।
ଅଦ୍ୱୈତ ନିତ୍ୟାନନ୍ଦ—ଚୈତନ୍ୟେର ଦୁଇ ଅଙ୍ଗ ।
ଅଙ୍ଗେର ଅବୟବଗଣ କହୟେ 'ଉପାଙ୍ଗ' ।୫୬।
ଅଙ୍ଗୋପାଙ୍ଗ ତୀକ୍ଷ୍ଣ ଅସ୍ତ୍ର ପ୍ରଭୁର ସହିତେ ।
ସେଇ ସବ ଅସ୍ତ୍ର ହୟ ପାଷଣ୍ଡ ଦଲିତେ ।୫୭।
ନିତ୍ୟାନନ୍ଦଗୋସାଇଁ—ସାକ୍ଷାତ୍ ହଲଧର ।
ଅଦ୍ୱୈତ-ଆଚାର୍ଯ୍ୟଗୋସାଇଁ—ସାକ୍ଷାତ୍ ଈଶ୍ୱର ।୫୮।
ଶ୍ରୀବାସାଦି ପାରିଷଦ-ସୈନ୍ୟ ସଙ୍ଗେ ଲଞା ।
ଦୁଇ ସେନାପତି ବୁଲେ କୀର୍ତ୍ତନ କରିଞା ।୫୯।
ପାଷଣ୍ଡଦଲନବାନା ନିତ୍ୟାନନ୍ଦରାୟ ।
ଆଚାର୍ଯ୍ୟ-ହୁଙ୍କାରେ ପାପ-ପାଷଣ୍ଡୀ ପଲାୟ ।୬୦।

ଯେ ଜଳ ଏହି ଦୁଇଟି ଯାହାଙ୍କର ଆଶ୍ରୟ ସେହି ପ୍ରସିଦ୍ଧ ନାରାୟଣ ଆପଣଙ୍କର ଅଂଶ ଅର୍ଥାତ୍ ମୂର୍ତ୍ତିବିଶେଷ । ଏହେତୁ ସେ ଆପଣଙ୍କଠାରୁ ଭିନ୍ନ ନୁହନ୍ତି । ତେବେ ସେହି ନାରାୟଣଙ୍କର ଯେ ତାଦୃଶ ପରିଚ୍ଛିନ୍ନତ୍ୱ ତାହା ସତ୍ୟ ନୁହେଁ । କେବଳ ଆପଣଙ୍କର ଲୀଳା ଅଟେ ।-ଅଥବା ନାରାୟଣରୂପ ଆପଣଙ୍କର ସେହି ମୂର୍ତ୍ତି ସତ୍ୟ ଅଟେ । ତାହା ମାୟିକ ନୁହେ । [ ୧୪ଶ ଶ୍ଳୋକାର୍ଥ ]

ଜଳଶାୟୀ ( କାରଣାବ୍ଧିଶାୟୀ ) ଅନ୍ତର୍ଯାମୀ ( ପ୍ରକୃତିର ଅନ୍ତର୍ଯାମୀ ) ଯେଉଁ ନାରାୟଣ ସେ ତୁମ୍ଭର ଅଙ୍ଗ ( ଅଂଶୀ ) ଯେହେତୁ ତୁମ୍ଭେ ମୂଳକାରଣ ଅବତାରୀ । ୫୪ ।

ଉପରୋକ୍ତ ଅଙ୍ଗ ଶବ୍ଦର ଅର୍ଥ ଅଂଶ ଏହା ପ୍ରକୃତ କିନ୍ତୁ ଏହି ଅଂଶାଂଶୀସମ୍ବନ୍ଧ ମାୟାକାର୍ଯ୍ୟବିଶିଷ୍ଟ ଅର୍ଥାତ୍ ଭୌତିକ ଶରୀରଧାରୀମାନଙ୍କର ତୁଲ୍ୟ ନୁହେ । ଏ ସମସ୍ତ ଅଂଶ ଅଂଶୀତୁଲ୍ୟ ଚିଦାନନ୍ଦମୟ ।୫୫।

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଓ ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ଏ ଦୁହେଁ ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁଙ୍କର ( ଅଙ୍ଗ (ଅଂଶ) ବା କଳାସମୂର୍ତ୍ତି ) ଏମାନଙ୍କର ଅବୟବ ( ପରିକର ) ମାନଙ୍କୁ ଉପାଙ୍ଗ କୁହାଯାଏ । ଶ୍ରୀବାସାଦି ଭକ୍ତମାନେ ମହାପ୍ରଭୁଙ୍କର ଉପାଙ୍ଗ । ୫୬ ।

ଶ୍ରୀମନ୍ ମହାପ୍ରଭୁଙ୍କର ପୂର୍ବୋକ୍ତପ୍ରକାର ଅଙ୍ଗଉପାଙ୍ଗମାନେ ତୀକ୍ଷ୍ଣ ଅସ୍ତ୍ରରୂପ ଅଟନ୍ତି; ସେହି ସମସ୍ତ ଅସ୍ତ୍ର ( ଅଙ୍ଗ ଉପାଙ୍ଗ ) ପାଷଣ୍ଡ ( କୃଷ୍ଣବହିର୍ମୁଖଜନ ) ଦଳନ କରନ୍ତି । ୫୭ ।

ଦ୍ୱାପରଯୁଗର ପ୍ରଭୂତବଳଶାଳୀ ହଳଧର ଶ୍ରୀବଳରାମ ସ୍ୱୟଂ ଶ୍ରୀନିତ୍ୟାନନ୍ଦପ୍ରଭୁ ଅଟନ୍ତି, ଜୀବର ଈଶ୍ୱର କାରଣାବ୍ଧିଶାୟୀ ଶ୍ରୀମହାବିଷ୍ଣୁ ସ୍ୱୟଂ ଶ୍ରୀଅଦ୍ୱୈତାଚାର୍ଯ୍ୟ ଅଟନ୍ତି । ୫୮ ।

ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀବାସାଦି ପାର୍ଷଦଗଣ ସୈନ୍ୟରୂପୀ ଅଟନ୍ତି । ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ଓ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟପ୍ରଭୁ ଶ୍ରୀମନ୍ ମହାପ୍ରଭୁଙ୍କର ଏହି ଦୁଇ ଅଙ୍ଗ ଦୁଇ ସେନାପତିରୂପ ଅଟନ୍ତି; ତେଣୁ ଏହି ଦୁଇ ସେନାପତି ସୈନ୍ୟରୂପୀ ପାର୍ଷଦମାନଙ୍କ ସହ ଶ୍ରୀହରିନାମ ସଂକୀର୍ତ୍ତନ କରି ବୁଲନ୍ତି; ଏହି ହରିନାମ ସଂକୀର୍ତ୍ତନହିଁ ପାଷଣ୍ଡମାନଙ୍କ ସହ ଯୁଦ୍ଧରୂପୀ ଅଟନ୍ତି । ୫୯ ।

ଯୁଦ୍ଧରେ ଜୟବାନା ( ପତାକା ) ପ୍ରୟୋଜନ; ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ପ୍ରଧାନ ସେନାପତି ସ୍ୱୟଂ ପାଷଣ୍ଡଦଳନର ଜୟପତାକା ଅଟନ୍ତି ଅର୍ଥାତ୍ ଯୁଦ୍ଧ ଜୟ ପରେ ବିଜିତକ୍ଷେତ୍ରରେ ଜୟପତାକା ସ୍ଥାପନ କରାଯାଏ କିନ୍ତୁ ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁ ସ୍ୱୟଂ ଜୟପତାକାସ୍ୱରୂପ ଏଣୁ ସେ ଯେଉଁ କ୍ଷେତ୍ରରେ ଉପସ୍ଥିତ ହୁଅନ୍ତି ତାହା ତତ୍କାଳୀନ ଶ୍ରୀହରିନାମସଂକୀର୍ତ୍ତନଦ୍ୱାରା ବିଜିତ ହୁଏ । ଏହାର ଭାବ ଏହି ଯେ ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁଙ୍କର ଦର୍ଶନମାତ୍ର ପାଷଣ୍ଡମାନଙ୍କର କଳ୍ମଷ ନାଶ ହୋଇ ପ୍ରେମଭକ୍ତି ଲାଭ ହୁଏ । ଶ୍ରୀମନ୍ନିତ୍ୟାନନ୍ଦପ୍ରଭୁଙ୍କର ଏହି ପ୍ରଭାବ ଶ୍ରୀମନ୍ମହାପ୍ରଭୁଙ୍କର ପ୍ରଭାବତୁଲ୍ୟ ଅଟେ । ଗ୍ରନ୍ଥକାରଙ୍କର ଅନ୍ୟତ୍ର ଲିଖିତ " ଦୁଇଭାଇ ଏକ ତନୁ ସମ ପରକାଶ " ପଦଦ୍ୱାରା ଏହା ପ୍ରମାଣିତ ।

ସଙ୍କୀର୍ତ୍ତନ-ପ୍ରବର୍ତ୍ତକ ଶ୍ରୀକୃଷ୍ଣଚୈତନ୍ୟ ।
ସଙ୍କୀର୍ତ୍ତନ-ଯଜ୍ଞେ ତାଁରେ ଭଜେ—ସେ-ଇ ଧନ୍ୟ ।୭୧।

ସେ-ଇ ତ ସୁମେଧା, ଆର କୁବୁଦ୍ଧି ସଂସାର ।
ସର୍ବଯଜ୍ଞ ହୈତେ କୃଷ୍ଣନାମଯଜ୍ଞ ସାର । ୭୨ ।

କୋଟି ଅଶ୍ୱମେଧ ଏକ-କୃଷ୍ଣନାମସମ ।
ଯେଇ କହେ, ସେ ପାଷଣ୍ଡୀ, ଦଣ୍ଡେ ତାରେ ଯମ ।୭୩।

ଶ୍ରୀଭାଗବତସନ୍ଦର୍ଭ-ଗ୍ରନ୍ଥେର ମଙ୍ଗଲାଚରଣେ ।
ଏଇଶ୍ଲୋକ ଜୀବଗୋସାଇଁ କରିଛାଛେନ
ବ୍ୟାଖ୍ୟାନେ । ୭୪ ।

ତଥାହି ଭାଗବତସନ୍ଦର୍ଭେ ( ୧।୨ )—
ଅନ୍ତଃକୃଷ୍ଣଂ ବହିର୍ଗୌରଂ ଦର୍ଶିତାଙ୍ଗାଦ୍ୟବୈଭବମ୍ ।
କଲୌ ସଙ୍କୀର୍ତ୍ତନାଦ୍ୟୈଃ ସ୍ମ
କୃଷ୍ଣଚୈତନ୍ୟମାଶ୍ରିତାଃ ॥ ୧୨ ॥ *

" ସାଙ୍ଗୋପାଙ୍ଗାସ୍ତ୍ରପାର୍ଷଦଂ " ଇତ୍ୟସ୍ୟାର୍ଥମାହ "ଜୀବେର" ଇତି " ପାଷଣ୍ଡଦଳନବାନା "
ଇତ୍ୟନ୍ତଂ । ୪୨—୭୧ । ବ, ଚ,

" ଯଜ୍ଞୈଃ ସଂକୀର୍ତ୍ତନପ୍ରାୟୈର୍ଯଜନ୍ତି ହି ସୁମେଧସଃ " ଇତ୍ୟସ୍ୟାର୍ଥମାହ " ସଂକୀର୍ତ୍ତନ "
ଇତି ଦ୍ୱୟେନ । ୭୨—୭୨ । ବ, ଚ,

ଯଃ ଅନ୍ତଃ କୃଷ୍ଣଂ ( ଶ୍ରୀନନ୍ଦନନ୍ଦନରୂପଂ ) ବହିର୍ଗୌରଂ ( କସ୍ୟଚିତ୍ ପ୍ରିୟଜନସ୍ୟ ଅଙ୍ଗକାନ୍ତ୍ୟା ଗୌରଂ ) ଗୌରବର୍ଣ୍ଣଂ ଦର୍ଶିତଂ (ଆବିର୍ଭାବିତଂ) ଅଙ୍ଗାଦ୍ୟାନାଂ (ନିତ୍ୟାନନ୍ଦାଦ୍ୱୈତାଦ୍ୟାନାଂ) ବୈଭବଂ ( ପାଷଣ୍ଡଦଳନ ପ୍ରେମପ୍ରଚାରରୂପଂ ) ଯେନ ତଂ ଦର୍ଶିତାଙ୍ଗାଦ୍ୟବୈଭବଂ ଶ୍ରୀକୃଷ୍ଣଚୈତନ୍ୟଂ କଲୌ ସଂକୀର୍ତ୍ତନାଦ୍ୟୈଃ (ସଂକୀର୍ତ୍ତନପ୍ରଧାନୈଃ) ଅର୍ଚ୍ଚନୈଃ (ବୟଂ) ଆଶ୍ରିତାଃ ସ୍ମ । [ ୧୨ଶ ଶ୍ଳୋକଃ ]

ଅଙ୍ଗଃ ଶ୍ରୀନିତ୍ୟାନନ୍ଦାଦ୍ୱୈତଃ ଆଦ୍ୟଶବ୍ଦେନ ଶ୍ରୀବାସାଦୟଃ ଦର୍ଶିତୋଽଙ୍ଗାଦ୍ୟାନାଂ ସାଙ୍ଗୋପାଙ୍ଗାନାଂ ବୈଭବ ଐଶ୍ୱର୍ଯ୍ୟଂ ଯେନ ଯଦ୍ୱା ଦର୍ଶିତୋଽଙ୍ଗାଦ୍ୟେଭ୍ୟୋ ବୈଭବୋ ଯେନ । ସ୍ୟୁଃ ଇତି ପାଠେ ବଲ୍ଲଜନାଃ ଶ୍ରୀକୃଷ୍ଣଚୈତନ୍ୟଂ ଆଶ୍ରିତାଃ । ଇତି ତଂ । ଅନ୍ତଃ କୃଷ୍ଣମିତି । ବୟଂ ଆଶ୍ରିତାଃ ସ୍ମ ଭବାମଃ ଇତ୍ୟର୍ଥଃ ।
। ୧୨ଶ ଶ୍ଳୋକ । ବ, ଚ,

ପ୍ରଭୁ ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କର ନାମକୀର୍ତ୍ତନରୂପୀ ହୁଙ୍କାରଦ୍ୱାରା ପାଷଣ୍ଡମାନଙ୍କର ପାପ ପଳାଯ଼ନ କଲା ଅର୍ଥାତ୍ ପାଷଣ୍ଡମାନେ ଶ୍ରୀମନ୍ ଅଦ୍ୱୈତପ୍ରଭୁଙ୍କର ହୁଙ୍କାର ଶୁଣି ନିଷ୍ପାପ ହୁଅନ୍ତି । ୭୦ ।

ଶ୍ରୀମନ୍ମହାପ୍ରଭୁ ଶ୍ରୀକୃଷ୍ଣଚୈତନ୍ୟ ଶ୍ରୀହରିନାମସଂକୀର୍ତ୍ତନର ପ୍ରବର୍ତ୍ତକ ( ଜନକ ବା ଆବିଷ୍କାରକ ) । ଏହି ଶ୍ରୀହରିନାମସଂକୀର୍ତ୍ତନରୂପ ଯଜ୍ଞଦ୍ୱାରା ଶ୍ରୀମନ୍ମହାପ୍ରଭୁଙ୍କୁ ଯେଉଁମାନେ ଭଜନ କରନ୍ତି ସେମାନେ ଧନ୍ୟ ହୁଅନ୍ତି ଏବଂ ସେମାନଙ୍କୁ ବସ୍ତୁତଃ ସୁମେଧା ( ସୁବୁଦ୍ଧି ) ବା ଚତୁର କୁହାଯାଏ । ଏତଦ୍ୱ୍ୟତୀତ ଅପର ବ୍ୟକ୍ତିମାନଙ୍କୁ କୁବୁଦ୍ଧି କୁହାଯାଏ । କୃଷ୍ଣନାମ ଯଜ୍ଞହିଁ ସାରବସ୍ତୁ । ବେଦପ୍ରବର୍ତ୍ତିତ ଯଜ୍ଞମାନେ କେହି ଏହା ସହିତ ତୁଳନୀୟ ନୁହନ୍ତି । ଯଦି କେହି କହେ କୋଟି ଅଶ୍ୱମେଧଯଜ୍ଞ ( କୋଟି ବହୁତ୍ୱପ୍ରକାଶହେତୁ ଅସଂଖ୍ୟ ବାଚୀ ) ଏକ ଶ୍ରୀକୃଷ୍ଣନାମର ସମାନ, ସେ ବ୍ୟକ୍ତି ନିଶ୍ଚୟ ପାଷଣ୍ଡ ଏବଂ ତେଣୁ ଯମଦଣ୍ଡାର୍ହ ଅର୍ଥାତ୍ ନାମନାମିର ଅଭେଦତ୍ୱହେତୁ ଶ୍ରୀକୃଷ୍ଣ ନାମ ଅସମୋର୍ଦ୍ଧ୍ୱ । ତେଣୁ କୌଣସି ଶୁଭାଶୁଭ କର୍ମର ପରିମାଣ ଯେତେ ହେଉ ନା କାହିଁକି ତାହା ନାମର ସମାନ ହୋଇ ନ ପାରେ । ୭୧—୭୩ ।

ଏହି ଶ୍ଳୋକ ( କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ ) ର ବ୍ୟାଖ୍ୟା ଶ୍ରୀମନ୍ ଜୀବଗୋସ୍ୱାମୀ ତାହାଙ୍କ ରଚିତ ଶ୍ରୀଭାଗବତ ସନ୍ଦର୍ଭଗ୍ରନ୍ଥର ( ଶ୍ରୀମଦ୍ଭାଗବତର କ୍ରମ ସନ୍ଦର୍ଭ ଟୀକାର ) ମଙ୍ଗଳାଚରଣରେ ଲେଖିଅଛନ୍ତି । ପରବର୍ତ୍ତୀ ଶ୍ଳୋକଟି ସେହି ବ୍ୟାଖ୍ୟା ଅଟେ ।

ଉପପୁରାଣେହ ଶୁନ ଶ୍ରୀକୃଷ୍ଣବଚନ ।
କୃପା କରି ବ୍ୟାସ-ପ୍ରତି କହିଯାଛେନ କଥନ ।୭୫।

ତଥାହି ଉପପୁରାଣେ—

ଅହମେବ କ୍ୱଚିଦ୍ବ୍ରହ୍ମନ୍ ସନ୍ନ୍ୟାସାଶ୍ରମମାଶ୍ରିତଃ ।
ହରିଭକ୍ତିଂ ଗ୍ରାହୟାମି କଲୌ ପାପହତାନ୍ନରାନ୍ ॥୧୭॥ *

ଭାଗବତ ଭାରତ ଶାସ୍ତ୍ର ଆଗମ ପୁରାଣ ।
ଚୈତନ୍ୟକୃଷ୍ଣ-ଅବତାରେର ପ୍ରକଟ ପ୍ରମାଣ ।୭୬।
ପ୍ରତ୍ୟକ୍ଷ ଦେଖହ ନାନା ପ୍ରକଟ ପ୍ରଭାବ ।
ଅଲୌକିକ କର୍ମ୍ମ, ଅଲୌକିକ ଅନୁଭାବ ।୭୭।
ଦେଖିଯା ନା ଦେଖେ ଯତ ଅଭକ୍ତେର ଗଣ ।
ଉଲୂକେ ନା ଦେଖେ ଯେନ ସୂର୍ଯ୍ୟେର କିରଣ ।୭୮।

---

ହେ ବ୍ରହ୍ମନ୍ ( ହେ ବ୍ୟାସ ) ଅହଂ ( ସ୍ୱୟଂ ଭଗବାନ୍ ) ଏବ କ୍ୱଚିତ୍ ( ବୈବସ୍ୱତ-ମନ୍ୱନ୍ତରୀୟାଷ୍ଟାବିଂଶଚତୁର୍ଯୁଗୀୟେ ) କଲୌ ସନ୍ନ୍ୟାସାଶ୍ରମଂ ( ଚତୁର୍ଥାଶ୍ରମଂ ) ଆଶ୍ରିତଃ ସନ୍ ପାପହତାନ୍ ନରାନ୍ ହରିଭକ୍ତିଂ ଗ୍ରାହୟାମି । ଗ୍ରାହୟିଷ୍ୟାମି । [ ୧୭ଶ ଶ୍ଳୋକଃ ]

କ୍ୱଚିତ୍ କଲାବତି ସମ୍ବନ୍ଧଃ । ୧୭ଶ ଶ୍ଳୋକଃ । ଚ, ଚ,

ଶ୍ରୀକୃଷ୍ଣ ଏବ କଲୌ ଗୌରବର୍ଣ୍ଣ ଇତି ଶ୍ରୀଭାଗବତାଦୟଃ ବଦନ୍ତି ତଦପି ଯେ କେଚିତ୍ ତଂ ନ ମନ୍ୟନ୍ତେ ତେ ତୁ ଅଭକ୍ତା ଏବ ଇତି ବଦନ୍ ସ୍ୱୟଂ ଭଗବତସ୍ତସ୍ୟ କଲିଯୁଗାବତାରତ୍ୱେ ପ୍ରସିଦ୍ଧାନ୍ତମୁପସଂହରତି "ଭାଗବତ" ଇତ୍ୟାଦି । ଶ୍ରୀକୃଷ୍ଣସ୍ୟ ଶ୍ରୀଚୈତନ୍ୟାବତାରେ ଭାଗବତାଦୟଃ ଯଥା ସ୍ପଷ୍ଟଂ ପ୍ରମାଣଂ ତଥାଦ୍ୟଲୁଂ ତତ୍ର ପ୍ରଭାବାଦକମପି ତବ ପ୍ରତ୍ୟକ୍ଷଂ ପ୍ରମାଣଂ । ତଦପି ସୂର୍ଯ୍ୟକିରଣ ମୂଲୂକବତ୍ ଅଭକ୍ତା ସ୍ତଂ ନ ପଶ୍ୟନ୍ତି ନ ଜାନନ୍ତୀତ୍ୟର୍ଥଃ । ଏତେ ନୈତଦସ୍ୟୁକ୍ତଂ ଭବତି ଯଥା ଉଲୂକାନ୍ ଏବ ସୂର୍ଯ୍ୟକିରଣଂ ପଶ୍ୟନ୍ତଃ ଧର୍ମକର୍ମାଦିନା ତତ୍ରୈବ ଦୁଃଖମନୁଭବନ୍ତି ପେଚକାସ୍ତୁ ବୃକ୍ଷ-କୋଟରମବଲମ୍ବ୍ୟ କେବଳମନ୍ଧକାରଦୁଃଖମନୁଭବତି ତଥା ଶ୍ରୀଚୈତନ୍ୟକୃଷ୍ଣପ୍ରଭାବାଦକଂ ଜାନନ୍ତଃ ଭକ୍ତା ଏବ ହରିସଂକୀର୍ତ୍ତନସଂକ୍ଳିଷ୍ଟଂ ସନ୍ତଃ ପରମମନନ୍ଦମୋକ୍ଷଂ ସୁଖମନୁଭବନ୍ତି ଅଭକ୍ତାସ୍ତୁ ଗୃହମବଲମ୍ବ୍ୟ କେବଳଂ ସଂସାରଦୁଃଖମନୁଭବନ୍ତି । ୭୭।୭୮ । ଚ, ଚ,

---

ଯେ ଅଭ୍ୟନ୍ତରରେ କୃଷ୍ଣ ଅର୍ଥାତ୍ ଶ୍ରୀନନ୍ଦନନ୍ଦନରୂପ ଏବଂ ବାହ୍ୟରେ ଗୌରବର୍ଣ୍ଣ ଅର୍ଥାତ୍ କୌଣସି ଅତ୍ୟନ୍ତ ପ୍ରିୟଜନର ଅଙ୍ଗକାନ୍ତିଦ୍ୱାରା ଗୌରବର୍ଣ୍ଣ ଏବଂ ଯେ ଅଙ୍ଗାଦିର ଅର୍ଥାତ୍ ଶ୍ରୀମନ୍ନିତ୍ୟାନନ୍ଦ ଏବଂ ଅଦ୍ୱୈତାଦିଙ୍କର ବୈଭବ ( ପାଷଣ୍ଡଦଳନ ଓ ପ୍ରେମପ୍ରଚାର ) ଲୋକମଧ୍ୟରେ ଦେଖାଉଅଛନ୍ତି, କଳିଯୁଗରେ ସଂକୀର୍ତ୍ତନରୂପ ଅର୍ଚ୍ଚନାଦ୍ୱାରା ସେହି ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁଙ୍କୁ ଆମ୍ଭେମାନେ ଆଶ୍ରୟ କରୁଅଛୁଁ । [ ୧୭ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣ କହୁଅଛନ୍ତି, ହେ ବ୍ରହ୍ମନ୍ ମୁଁ କୌଣସି କଳିଯୁଗରେ ( ବୈବସ୍ୱତମନ୍ୱନ୍ତରର ଅଷ୍ଟାବିଂଶଚତୁର୍ଯୁଗୀୟ କଳିର ପ୍ରଥମ ସନ୍ଧ୍ୟାରେ ) ସନ୍ନ୍ୟାସାଶ୍ରମ ଗ୍ରହଣ କରି ପାପହତଲୋକମାନଙ୍କୁ ଶ୍ରୀହରିଭକ୍ତି ପ୍ରଦାନ କରିବି । [ ୧୭ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣ ଯେ ଶ୍ରୀକୃଷ୍ଣଚୈତନ୍ୟ ହୋଇଅଛନ୍ତି ଗ୍ରନ୍ଥକାର ଏହା ପ୍ରମାଣ କରି ଉପସଂହାରରେ କହୁଅଛନ୍ତି ଶ୍ରୀମଦ୍ଭାଗବତ, ମହାଭାରତ, ଆଗମ, ପୁରାଣ ଓ ଶାସ୍ତ୍ରଦ୍ୱାରା (ଅର୍ଥାତ୍ "ଆସନ୍ ବର୍ଣ୍ଣାସ୍ତ୍ରୟୋହ୍ୟସ୍ୟ କୃଷ୍ଣବର୍ଣ୍ଣଂ ତ୍ୱିଷାକୃଷ୍ଣଂ" ଶ୍ରୀମଦ୍ଭାଗବତୀୟ ଶ୍ଳୋକଦ୍ୱାରା " ସୁବର୍ଣ୍ଣବର୍ଣ୍ଣୋହେମାଙ୍ଗଃ " ଶ୍ରୀମହାଭାରତୀୟ ଶ୍ଳୋକଦ୍ୱାରା ଏବଂ " ଅହମେବ କ୍ୱଚିଦ୍ ବ୍ରହ୍ମନ୍ " ଉପପୁରାଣୀୟ ଶ୍ଳୋକଦ୍ୱାରା) ପ୍ରମାଣୀକୃତ ହେଲା ଯେ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ କଳିଯୁଗରେ ଶ୍ରୀଶଚୀନନ୍ଦନ ଶ୍ରୀକୃଷ୍ଣଚୈତନ୍ୟ ହୋଇ ଅବତୀର୍ଣ୍ଣ ହୋଇଅଛନ୍ତି ।

ତଥାହ ଯାମୁନାଚାର୍ଯ୍ୟସ୍ତୋତ୍ରେ (୧୫)—

ତ୍ୱାଂ ଶୀଳରୂପଚରିତୈଃ ପରମପ୍ରକୃଷ୍ଟୈଃ,
ସତ୍ତ୍ୱେନ ସାତ୍ତ୍ୱିକତୟା ପ୍ରବଳୈଶ୍ଚ ଶାସ୍ତ୍ରୈଃ ।
ପ୍ରଖ୍ୟାତଦୈବପରମାର୍ଥବିଦାଂ ମତୈଶ୍ଚ,
ନୈବାସୁରପ୍ରକୃତୟଃ ପ୍ରଭବନ୍ତି ବୋଦ୍ଧୁମ୍ ॥୧୮॥ *

ଆପନା ଲୁଚାଇତେ ପ୍ରଭୁ ନାନା ଯତ୍ନ କରେ ।
ତଥାପି ତାଁହାର ଭକ୍ତ ଜାନୟେ ତାଁହାରେ ।୬୯

ତଥାହ ତତ୍ରୈବ (୧୮)—

ଉଲ୍ଲଙ୍ଘିତତ୍ରିବିଧସୀମ-ସମାତିଶାୟି-
ସମ୍ଭାବନଂ ତବ ପରିବ୍ରଢ଼ିମସ୍ୱଭାବମ୍ ।
ମାୟାବଳେନ ଭବତାପି ନିଗୁହ୍ୟମାନଂ
ପଶ୍ୟନ୍ତି କେଚିଦନିଶଂ ତ୍ୱଦନନ୍ୟଭାବାଃ ॥୧୯॥ *

( ହେ ଭଗବନ୍ ) ପରମପ୍ରକୃଷ୍ଟୈଃ ( ସର୍ବୋତ୍କୃଷ୍ଟତମୈଃ ) ଶୀଳରୂପଚରିତୈଃ ( ଶୀଳଂ ସ୍ୱଭାବଃ ଚ ରୂପାଣି ଚ ଚରିତାନି ଚ ତୈଃ ) ସତ୍ତ୍ୱେନ ( ଅଲୌକିକ ପ୍ରଭାବେନ ) ସାତ୍ତ୍ୱିକତୟା ( ସତ୍ତ୍ୱ ପ୍ରଧାନତୟା ) ପ୍ରବଳୈଃ ଶାସ୍ତ୍ରୈଃ ଚ ପ୍ରଖ୍ୟାତଦୈବପରମାର୍ଥବିଦାଂ ( ପ୍ରଖ୍ୟାତଂ ପ୍ରସିଦ୍ଧଂ ଦୈବଂ ପରମାର୍ଥଂ ଚ ବିଦନ୍ତି ଯେ ତେଷାଂ ପରିଶଳ୍ପାନାଂ ) ମତୈଃ ଚ ଆସୁରପ୍ରକୃତୟଃ ତ୍ୱାଂ ବୋଦ୍ଧୁଂ ( ଜ୍ଞାତୁଂ ) ନ ପ୍ରଭବନ୍ତି ( ସମର୍ଥାଃ ଭବନ୍ତି ) [ ୧୮ଶ ଶ୍ଳୋକଃ ] ।

ଉଲ୍ଲଙ୍ଘିତ-ତ୍ରିବିଧସୀମ-ସମାତିଶାୟି ସମ୍ଭାବନଂ—ଉଲ୍ଲଙ୍ଘିତା-ଅତିକ୍ରାନ୍ତା ତ୍ରିବିଧା ଦେଶକୃତ ପରିଚ୍ଛେଦ-କାଳକୃତପରିଚ୍ଛେଦୌ ପରିମାଣଂ ଚ ତେଷାଂ ସୀମା ସମା ଅତିଶାୟିନୀ ଚ ସମ୍ଭାବନା ଚ ଯେନ ତଂ ) ଭବତାମାୟାବଳେନ ( ସ୍ୱଯୋଗମାୟା ପ୍ରଭାବେନ ) ନିଗୁହ୍ୟମାନଂ ଅପି ତବ ପରିବ୍ରଢ଼ିମ ସ୍ୱଭାବଂ ( ପରିବ୍ରଢ଼ିମ୍ନଃ ପ୍ରଭୁତ୍ୱସ୍ୟ ସ୍ୱଭାବ-ସ୍ୱରୂପଂ ) କେଚିତ୍ ତ୍ୱଦନନ୍ୟଭାବାଃ ( ତ୍ୱୟି ଅନନ୍ୟଭାବାଃ ଏକାନ୍ତଭକ୍ତାଃ ) ଅନିଶଂ ( ନିରନ୍ତରଂ ) ପଶ୍ୟନ୍ତି । [୧୯ଶ ଶ୍ଳୋକଃ]

( " ଯଦା ପଶ୍ୟ ପଶ୍ୟତେ ରୁକ୍ମବର୍ଣ୍ଣଂ " ) ଇତ୍ୟାଦି ବେଦବାକ୍ୟ ଶ୍ରୀକୃଷ୍ଣଚୈତନ୍ୟଙ୍କ ଅବତାରର ଏକ ପ୍ରମାଣ ବୋଲି କୌଣସି କୌଣସି ଟୀକାକାର ଲେଖିଅଛନ୍ତି ।

ଏ ସମସ୍ତ ଶାସ୍ତ୍ରୀୟ ପ୍ରମାଣ ।

ଶ୍ରୀକୃଷ୍ଣ ଚୈତନ୍ୟ ଅଲୌକିକ କର୍ମ ଅର୍ଥାତ୍ ଐଶୀଶକ୍ତିସମ୍ପନ୍ନ କର୍ମ ଏବଂ ଐଶୀଶକ୍ତି ସମ୍ପନ୍ନ ମହିମାଦି ନାନାପ୍ରକାର ଭଗବଦୈଶ୍ୱର୍ଯ୍ୟ ଦେଖାଇଥିଲେ ( ପ୍ରକଟ କରିଥିଲେ ) । ତାହା ଲୋକେ ସାକ୍ଷାତରେ ଦେଖିଅଛନ୍ତି । ତଥାପି ଅଭକ୍ତମାନେ ( ଭକ୍ତିଦ୍ରୋହିମାନେ ) ତାହାଙ୍କର ଭଗବଦୈଶ୍ୱର୍ଯ୍ୟ ଦର୍ଶନ କରି ମଧ୍ୟ ଦେଖିନାହାନ୍ତି । ଅର୍ଥାତ୍ ତାହାଙ୍କୁ ଶ୍ରୀ ଭଗବାନ ବୋଲି ସେ ଗ୍ରହଣ କରିନାହାନ୍ତି ଏହାର କାରଣ ଉଦାହରଣ ଦ୍ୱାରା କହୁଅଛନ୍ତି । ସୂର୍ଯ୍ୟ ମହାତେଜସ୍ୱୀ ଓ କିରଣଜାଳଦ୍ୱାରା ଜଗତକୁ ବ୍ୟାପ୍ତ କଲେ ମଧ୍ୟ ସୂର୍ଯ୍ୟଦ୍ରୋହୀ ଉଲ୍ଲୁକମାନେ ସୂର୍ଯ୍ୟଙ୍କୁ ଦେଖନ୍ତି ନାହିଁ ଏବଂ କୋଟରରେ ଲୁଚିରହି ଅନ୍ଧକାରରେ ଦୁଃଖ ଅନୁଭବ କରନ୍ତି ଅର୍ଥାତ୍ ଭକ୍ତମାନେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ପ୍ରଭାବ ଜାଣି ସଙ୍କୀର୍ତ୍ତନ ଯଜ୍ଞଦ୍ୱାରା ତାଙ୍କୁ ଆରାଧନା କରି ଆନନ୍ଦମୟ ସୁଖ ଅନୁଭବ କରନ୍ତି ଏବଂ ଅଭକ୍ତମାନେ ସଂସାରରେ ମଜ୍ଜି କେବଳ ସଂସାର ଦୁଃଖ ଅନୁଭବ କରନ୍ତି । ୬୬।୬୯ ।

ଶ୍ରୀସମ୍ପ୍ରଦାୟର ଶ୍ରୀ ଯାମୁନାଚାର୍ଯ୍ୟକୃତ ଆଳବନ୍ଦାରସ୍ତୋତ୍ର ରତ୍ନର ୧୫ଶ ଶ୍ଳୋକଃ ।

ହେ ଭଗବନ୍ ! ଆପଣଙ୍କର ସ୍ୱଭାବ, ରୂପ, ଆଚରଣ ଓ ଅଲୌକିକ ପ୍ରଭାବ ଦର୍ଶନ କରି ଏବଂ ପ୍ରସିଦ୍ଧ ଦୈବଜ୍ଞ ଓ ପରମାର୍ଥ ତତ୍ତ୍ୱଜ୍ଞ ବ୍ୟାସାଦିଙ୍କକୃତ ସାତ୍ତ୍ୱିକ ପ୍ରବଳ ଶାସ୍ତ୍ର ଆଲୋଚନା କରି ମଧ୍ୟ ଅସୁରପ୍ରକୃତ ବ୍ୟକ୍ତିମାନେ ଆପଣଙ୍କୁ ଜାଣିପାରନ୍ତି ନାହିଁ । [ ୧୮ଶ ଶ୍ଳୋକାର୍ଥ ]

ଅସୁର-ସ୍ୱଭାବେ କୃଷ୍ଣେ କଭୁ ନାହିଁ ଜାନେ ।
ଲୁକାଇତେ ନାରେ କୃଷ୍ଣ ଭକ୍ତଜନସ୍ଥାନେ ।୭୦।

ତଥାହି ପାଦ୍ମେ ।—

ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍ ଦୈବ ଆସୁର ଏବଚ,
ବିଷ୍ଣୁଭକ୍ତଃ ସ୍ମୃତୋ ଦୈବ ଆସୁରସ୍ତଦ୍ ବିପର୍ଯ୍ୟୟଃ ॥୨୦॥*

ଅଦ୍ୱୈତଗୋସାଇଁ ପ୍ରଭୁର ଭକ୍ତ ଅବତାର ।
କୃଷ୍ଣ-ଅବତାର-ହେତୁ ଯାଁହାର ହୁଙ୍କାର । ୭୧ ।
କୃଷ୍ଣ ଯଦି ପୃଥିବୀତେ କରେନ ଅବତାର ।
ପ୍ରଥମେ କରେନ ଗୁରୁବର୍ଗେର ସଞ୍ଚାର । ୭୨ ।
ପିତା ମାତା-ଗୁରୁ-ଆଦି ଯତ ମାନ୍ୟଗଣ ।
ପ୍ରଥମେ କରେନ ସଭାର ପୃଥିବୀତେ ଜନମ ।୭୩।

---

ନନୁ ଭକ୍ତ୍ୟଭାବେନ ତଂ ନ ଜାନନ୍ତୁ ଏବ କିନ୍ତୁ ବସ୍ତୁଶକ୍ତ୍ୟା ବସ୍ତୁଜ୍ଞାନବତ୍ ତତ୍ ପ୍ରଭାବାଧୀନା ତଂ ଜାନନ୍ତୁ ଇତ୍ୟତ ଆହ "ଅସୁର ସ୍ୱଭାବେ" ଇତି । ପିତ୍ତଦୁଷ୍ଟରସନା-ସ୍ୱଭାବେନ ସିତ ଶର୍କରାବତ୍ ଅସୁରସ୍ୱଭାବେନ ପ୍ରଭାବାଦ୍ୟମନ୍ୟମପି ତଂ ଜ୍ଞାତୁଂ ନ ଶକ୍ନୁବନ୍ତି । ଭକ୍ତାସ୍ତୁ ସ୍ୱଭାବେନୈବ ତଂ ଜାନନ୍ତୀତ୍ୟର୍ଥଃ । ୭୦ । ଚ, ଚ,

ଅସ୍ମିନ୍ ( ମାନୁଷେ ) ଲୋକେ ଦୈବଃ ଆସୁରଃ ଚ ଏବ ( ଇତି ) ଦ୍ୱୌ ଭୂତସର୍ଗୌ ପ୍ରାଣିସୃଷ୍ଟୀ, ତତ୍ର ) ବିଷ୍ଣୁଭକ୍ତଃ ଦୈବଃ ସ୍ମୃତଃ ତଦ୍ ବିପର୍ଯ୍ୟୟଃ ( ବିଷ୍ଣୁଭକ୍ତିବିହୀନଃ ) ଆସୁରଃ ଏବ ( ସ୍ମୃତଃ ) [୨୦ଶ ଶ୍ଳୋକ] ।

---

ପ୍ରଭୁ ଲୀଳାବିଗ୍ରହ ଧାରଣ ପୂର୍ବକ ମନୁଷ୍ୟରୂପରେ ପ୍ରକଟ ହୋଇ ମନୁଷ୍ୟୋଚିତ ଆଚରଣ ଓ କାର୍ଯ୍ୟଦ୍ୱାରା ଆତ୍ମଗୋପନ କଲେହେଁ, ତାହାଙ୍କର ଐକାନ୍ତିକ ଭକ୍ତମାନେ ତାହାଙ୍କର ଅଲୌକିକ କର୍ମ ଓ ଅଲୌକିକ ମହିମାଆଦି ଐଶ୍ୱର୍ଯ୍ୟ ଦର୍ଶନ କରି ତାହାଙ୍କୁ ପ୍ରଭୁ ବୋଲି ଜାଣିପାରନ୍ତି । ୬୯ ।

ହେ ଭଗବନ୍ ! ଯାହା ଦେଶ, କାଳ, ବସ୍ତୁ ଏହି ତ୍ରିବିଧ ପରିଚ୍ଛେଦର ସୀମାକୁ ଅତିକ୍ରମ କରିଅଛି ଏବଂ ଯାହାର କେହି ସମାନ ବା ଯାହାଠାରୁ କେହି ଅଧିକ ହେବାର ସମ୍ଭାବନା ନାହିଁ ଏମନ୍ତ ଯେ ଆପଣଙ୍କର ପ୍ରଭୁତ୍ୱମୟ ସ୍ୱରୂପ ( ନିଜରୂପ ) ତାହା ଆପଣ ନିଜର ଯୋଗମାୟା ପ୍ରଭାବଦ୍ୱାରା ଗୋପନ କଲେ ହେଁ, ଆପଣଙ୍କର କେହି କେହି ଏକାନ୍ତଭକ୍ତ ସେହି ସ୍ୱରୂପକୁ ନିରନ୍ତର ଦର୍ଶନ କରନ୍ତି । [ ୧୯ଶ ଶ୍ଳୋକାର୍ଥଃ ]

ଅସୁର ପ୍ରକୃତିର ଲୋକମାନେ ଶ୍ରୀକୃଷ୍ଣଙ୍କୁ କଦାପି ଜାଣିପାରନ୍ତି ନାହିଁ କିନ୍ତୁ ସେ ନିଜ ଚରଣାଶ୍ରିତ ଅନନ୍ୟଶରଣ ଭକ୍ତମାନଙ୍କ ନିକଟ ଆତ୍ମଗୋପନ କରିପାରନ୍ତି ନାହିଁ । ଯଦି କୁହ ଭକ୍ତି-ଅଭାବରୁ ଅଭକ୍ତମାନେ ଶ୍ରୀକୃଷ୍ଣଙ୍କୁ ଜାଣିପାରିଲେ ନାହିଁ କିନ୍ତୁ ବସ୍ତୁଶକ୍ତି ଦେଖି ଯେପରି ବସ୍ତୁ ଜ୍ଞାନହୁଏ ସେହିପରି ଶ୍ରୀକୃଷ୍ଣଙ୍କର ପ୍ରଭାବ ଦେଖି ଅଭକ୍ତମାନେ ତାଙ୍କୁ ତ ଜାଣିବେ । ଏହାର ଉତ୍ତରରେ କହୁଅଛନ୍ତି ଯେ ଯେଉଁମାନେ ଅସୁର ସ୍ୱଭାବ ସେମାନେ ତାହାଙ୍କର ପ୍ରଭାବ ଦେଖି ମଧ୍ୟ ତାହାଙ୍କୁ ଜାଣିପାରନ୍ତି ନାହିଁ, ଯେପରି ଶର୍କରା ସ୍ୱାଭାବିକ ସ୍ୱାଦୁଗୁଣବିଶିଷ୍ଟ ହେଲେହେଁ ପିତ୍ତରୋଗୀ ତାହା ବୁଝିପାରେ ନାହିଁ । ୭୦ ।

ଏହି ଜଗତରେ ଦୁଇପ୍ରକାର ସୃଷ୍ଟି; ଏକ ଦୈବ ଓ ଅପର ଆସୁର । ଯେଉଁମାନେ କୃଷ୍ଣଭକ୍ତ ସେମାନେ ଦୈବ ଓ ଯେଉଁମାନେ ତଦ୍ବିପରୀତ ଅର୍ଥାତ୍ ବିଷ୍ଣୁଭକ୍ତିବିହୀନ ସେମାନେ ଅସୁର-ପ୍ରକୃତି ଅଟନ୍ତି । [ ୨୦ଶ ଶ୍ଳୋକାର୍ଥ ]

ଶ୍ରୀମତ୍ ଅଦ୍ୱୈତାଚାର୍ଯ୍ୟ ଗୋସାଇଁ ଶ୍ରୀକୃଷ୍ଣଙ୍କର ଭକ୍ତରୂପ । ଅଂଶାବତାର ସେ କି ଶ୍ରୀକୃଷ୍ଣଙ୍କୁ ପୃଥିବୀରେ ଅବତୀର୍ଣ୍ଣ କରାଇବା ନିମିତ୍ତ ହୁଙ୍କାର କରିଥିଲେ । ୭୧ ।

| | |
|---|---|
| ମାଧବ-ଈଶ୍ୱର-ପୁରୀ, ଶଚୀ, ଜଗନ୍ନାଥ ; ଅଦ୍ୱୈତଆଚାର୍ଯ୍ୟ ପ୍ରକଟ ହୋଇଲ୍ସ ସେଇ-ସାଥ ।୭୪। | ଲୋକଗତି ଦେଖି ଆଚାର୍ଯ୍ୟ କରୁଣ-ହୃଦୟ । ବିଚାର କରେନ—ଲୋକେର କୈଛେ ହିତ ହୟ ? ।୭୭। |
| ପ୍ରକଟିୟା ଦେଖେ ଆଚାର୍ଯ୍ୟ—ସକଲ ସଂସାର । କୃଷ୍ଣଭକ୍ତିଗନ୍ଧହୀନ ବିଷୟବ୍ୟବହାର । ୭୫ । | ଆପନି ଶ୍ରୀକୃଷ୍ଣ ଯଦି କରେନ ଅବତାର । ଆପନେ ଆଚରି ଭକ୍ତି କରେନ ପ୍ରଚାର । ୭୮ । |
| କେହୋ ପାପେ କେହୋ ପୁଣ୍ୟେ କରେ ବିଷୟଭୋଗ । ଭକ୍ତିଗନ୍ଧ ନାହିଁ—ଯାତେ ଯାୟ ଭବରୋଗ ।୭୬। | ନାମ ବିନୁ କଲିକାଲେ ଧର୍ମ ନାହିଁ ଆର । କଲିକାଲେ କୈଛେ ହବେ କୃଷ୍ଣ-ଅବତାର ? ।୭୯। |

କରୁଣହୃଦୟ ଦ୍ରବେବ ଲୋକହିତବିଚାରେ କାରଣଂ । ୭୭ । ବି, ଚ,

"ବିଚାରମନୁବଦତି" "ଆପନେ" ଇତି ଶ୍ରୀକୃଷ୍ଣଃ ସ୍ୱୟଂ ଯଦ୍ୟପ୍ୟବତରେତ୍ତ ତଦା ଚ ସ୍ୱୟମାଚାର୍ୟଃ ଯଦି ଭକ୍ତିଂ ପ୍ରଚରଯେତ୍ତ ତଦୈବ ଲୋକାନାଂ ହିତଂ ଭବେଦିତି । ଭକ୍ତ୍ୟପଦେନାସ୍ତ ତଦଙ୍ଗମ୍ ନାମୈବୋଚ୍ୟତେ "ନାମବିନେ କଲିକାଲେ ଧର୍ମ ନାହି ଆର" ଇତ୍ୟୁକ୍ତତ୍ୱାତ୍ତ ।୭୮।୭୯।୮ ·

ବି, ଚ,

ଶ୍ରୀକୃଷ୍ଣ ଯେତେବେଳେ ଏହି ଧରାଧାମରେ ନରଲୀଳାସାପେକ୍ଷ ବିଗ୍ରହଧାରଣ କରି ଅବତୀର୍ଣ୍ଣ ହୁଅନ୍ତି, ସେ ତତ୍ପୂର୍ବେ ତଲ୍ଲୀଳାସାପେକ୍ଷ ଗୁରୁଜନମାନଙ୍କୁ ପ୍ରକଟ କରାନ୍ତି । ଯଥା ପିତା, ମାତା, ମନ୍ତ୍ରଗୁରୁ ଶିକ୍ଷାଗୁରୁ ଇତ୍ୟାଦି । ୭୨।୭୩ ।

ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ଶ୍ରୀମନ୍ ମାଧବେନ୍ଦ୍ରପୁରୀ ଗୋସ୍ୱାମୀ ପରମଗୁରୁ । ତାହାଙ୍କର ଶିଷ୍ୟ ଶ୍ରୀମନ୍ ଈଶ୍ୱରପୁରୀ ଗୋସ୍ୱାମୀ ମହାପ୍ରଭୁଙ୍କର ମନ୍ତ୍ରଗୁରୁ । ଶ୍ରୀମତୀ ଶଚୀଦେବୀ ମାତା, ଶ୍ରୀ ଜଗନ୍ନାଥ ମିଶ୍ର ପୁରନ୍ଦର ପିତା । ଏମାନଙ୍କ ସହିତ ପ୍ରଭୁ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ମହାପ୍ରଭୁଙ୍କ ମାନ୍ୟବ୍ୟକ୍ତିରୂପେ ପ୍ରକଟ ହୋଇଥିଲେ । ୭୪ ।

ପ୍ରଭୁ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପୃଥିବୀକୁ ଆସି ଦେଖିଲେ ଯେ ଲୋକେ ସଂସାରରେ ଯେ ବିଷୟ ବ୍ୟବହାର କରୁଅଛନ୍ତି ତାହା କୃଷ୍ଣଭକ୍ତିଶୂନ୍ୟ । ଅର୍ଥାତ୍ତ କେହି ପାପାଚରଣ ( ନିଷିଦ୍ଧକାର୍ଯ୍ୟ ) ଦ୍ୱାରା ବିଷୟ ଭୋଗ କରୁଅଛନ୍ତି ଏବଂ କେହି ବା ପୁଣ୍ୟକାର୍ଯ୍ୟଦ୍ୱାରା ( ବିଧିକର୍ମଦ୍ୱାରା ) ବିଷୟ ଭୋଗ କରୁଅଛନ୍ତି, କିନ୍ତୁ ଉଭୟବିଧ କାର୍ଯ୍ୟ ଭକ୍ତିଶୂନ୍ୟ ହେତୁ ତଦ୍ଦ୍ୱାରା ଭବରୋଗ ( ଜନ୍ମ ଜରା, ମୃତ୍ୟୁରୂପୀ ଦୁଃଖ ବା ତ୍ରିତାପ ) ନାଶ ହେଉ ନାହିଁ । ୭୫।୭୬ ।

ଲୋକମାନଙ୍କର ଏହିପରି ଦୁର୍ଗତି ଦେଖି କୃପାଳୁ ଆଚାର୍ଯ୍ୟ ପ୍ରଭୁ ମନେ୨ ବିଚାର କଲେ "କଅଣ କଲେ ଏମାନଙ୍କର ମଙ୍ଗଳ ହେବ" । ୭୭ ।

ସେ ଭାବିଲେ ମୋଦ୍ୱାରା କିମ୍ବା ଅପର କାହାରିଦ୍ୱାରା ଜୀବମାନଙ୍କର ଏ ଦୁର୍ଗତି ନଷ୍ଟ ହେବ ନାହିଁ; କାରଣ ଏମାନେ କଲି ଘୋରତମରେ ଅଛନ୍ତି । ଅତଏବ ଯଦି ଶ୍ରୀକୃଷ୍ଣ ସ୍ୱୟଂ ଅବତୀର୍ଣ୍ଣ ହୋଇ ଭକ୍ତିଯଜନ କରି ଆଦର୍ଶ ଦେଖାନ୍ତି ଓ ତାହା ପ୍ରଚାର କରାନ୍ତି ତାହାହେଲେ ଲୋକମାନଙ୍କର ମଙ୍ଗଳ ହେବ । ୭୮ ।

ପୁଣି ସେ ଭାବିଲେ କଲିକାଳରେ ହରି ନାମ ସଂକୀର୍ତ୍ତନହିଁ ଯୁଗଧର୍ମ । ଯୁଗାବତାରଙ୍କଦ୍ୱାରା ଯୁଗଧର୍ମ ପ୍ରବର୍ତ୍ତିତ ହୋଇଥାଏ କିନ୍ତୁ ଏ କଳିଯୁଗର ଲୋକମାନେ ଯେପରି ମୋହାଚ୍ଛନ୍ନ, ସେମାନଙ୍କର ଉଦ୍ଧାର ଯୁଗାବତାରଙ୍କଦ୍ୱାରା ହେବ ନାହିଁ । ଏହା ବିଚାର କରି ଆଚାର୍ଯ୍ୟଗୋସାଇଁ ସ୍ଥିର କଲେ ଯେ ଶ୍ରୀକୃଷ୍ଣ ( ସ୍ୱୟଂ ଭଗବାନ୍ ) ଅବତୀର୍ଣ୍ଣ ନ ହେଲେ ଏ କଲିହତ ଜୀବମାନେ ଉଦ୍ଧାର ହେବେ

ଶ୍ରଦ୍ଧାଭାବେ କରିବ କୃଷ୍ଣେର ଆରାଧନ ।
ନିରନ୍ତର ସଦୈନ୍ୟେ କରିବ ନିବେଦନ ।୮୦।

ଆନିଯା କୃଷ୍ଣେରେ କରୋଁ କୀର୍ତ୍ତନସଞ୍ଚାର ।
ତବେ ସେ 'ଅଦ୍ୱୈତ' ନାମ ସଫଲ ଆମାର ।୮୧।

କୃଷ୍ଣ ବଶ କରିବେନ କୋନ୍ ଆରାଧନେ ? ।
ବିଚାରିତେ ଏକ ଶ୍ଳୋକ ଆଇଲ ତାଁର ମନେ ।୮୨।

ତଥାହି ଭକ୍ତିରସାମୃତସିନ୍ଧୌ (୨।୧।୬୨)
ଗୌତମୀୟତନ୍ତ୍ରବଚନମ୍ ।
ତୁଳସୀଦଳମାତ୍ରେଣ ଜଲସ୍ୟ ଚୁଲୁକେନ ବା ।
ବିକ୍ରୀଣୀତେ ସ୍ୱମାତ୍ମାନଂ ଭକ୍ତେଭ୍ୟୋ
ଭକ୍ତବତ୍ସଲଃ ॥ ୨୧ ॥ *

ଏଇ ଶ୍ଳୋକାର୍ଥ ଆଚାର୍ଯ୍ୟ କରେନ ବିଚାରଣ ।
କୃଷ୍ଣକେ ତୁଳସୀ-ଜଲ ଦେୟ ଯେଇ ଜନ ।୮୩।

ନ ବଦ୍ୟତେ ପ୍ରଭାବତ୍ତ୍ୱେନ ଦ୍ୱୈତଂ ଯସ୍ମାତ୍ ଯସ୍ୟ ଭଜନପ୍ରଭାବେନ ଶ୍ରୀଚୈତନ୍ୟାବତାର ଇତି ଭାବଃ । ୮୧ । ୯୧ । ବି, ଚ,

ଭକ୍ତବତ୍ସଲଃ ( ଭଗବାନ୍ ) ତୁଳସୀଦଳମାତ୍ରେଣ ( ମନ୍ତ୍ରଚନ୍ଦନାଦିବିରହିତେନ କେବଳ ତୁଳସୀପତ୍ରେଣ ତଦଭାବେ ବା ତଦ୍ରହିତ ) ଜଲସ୍ୟ ଚୁଲୁକେନ ( ଗଣ୍ଡୂଷେଣ ) ବା ଭକ୍ତେଭ୍ୟଃ ଆତ୍ମାନଂ ବିକ୍ରୀଣୀତେ ( ତଦାୟତ୍ତଂ କରୋତି ) [ ୨୧ଶ ଶ୍ଳୋକଃ ] । ବିକ୍ରୀଣୀତେ—ବଶ୍ୟଂ କରୋତି ।

ନାହିଁ; ଏହା ସ୍ଥିରକରି ପରମକାରୁଣିକ ଆଚାର୍ଯ୍ୟଗୋସାଇଁ ଚିନ୍ତା କରିବାକୁ ଲାଗିଲେ, କି ଉପାୟ କଲେ ଶ୍ରୀକୃଷ୍ଣ ନିଶ୍ଚୟ ଶୀଘ୍ର ଅବତୀର୍ଣ୍ଣ ହେବେ । ତହୁଁ ସେ ଭାବିଲେ ଶ୍ରଦ୍ଧାଭାବରେ ଶ୍ରୀକୃଷ୍ଣଙ୍କର ଆରାଧନା କରିବି ଏବଂ ସର୍ବଦା ଦୈନ୍ୟଭାବରେ ମୋର ପ୍ରାର୍ଥନା ତାହାଙ୍କୁ ଜଣାଇବି । ଏହି ପ୍ରକ୍ରିୟା-ଦ୍ୱାରା ଯଦି ଶ୍ରୀକୃଷ୍ଣଙ୍କୁ ଘୋର କଳିପ୍ରପୀଡ଼ିତ ଏହି ଧରାଧାମରେ ପ୍ରକଟ କରାଇ ତାଙ୍କଦ୍ୱାରା ନାମ-ସଂକୀର୍ତ୍ତନ ପ୍ରବର୍ତ୍ତନ କରାଏଁ ତାହା ହେଲେ ମୋର ଅଦ୍ୱୈତନାମ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ସହିତ ଅଂଶାଂଶୀରୂପେ ଦ୍ୱୟତାରହିତ୍ୟ ବା ହରିଭକ୍ତମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେତୁ ଦ୍ୱୟତାରହିତ୍ୟ ନାମର ( ଅଦ୍ୱୈତ ନାମର ) ଯେ ଗୁଣ ଓ କ୍ରିୟା ତାହା ସଫଳ ହେବ । ଅର୍ଥାତ୍ ମୁଁ କୃଷ୍ଣାଂଶ ଭକ୍ତରୂପେ ଅବତୀର୍ଣ୍ଣ ହୋଇ ସୁଦ୍ଧା କିମ୍ବା ମୁଁ ଭକ୍ତଶ୍ରେଷ୍ଠ ହୋଇ ସୁଦ୍ଧା ଏହି କଳିହତ ଜୀବମାନଙ୍କୁ ଶ୍ରୀହରି ନାମ-କୀର୍ତ୍ତନରେ ଅନୁରକ୍ତ କରିପାରିଲି ନାହିଁ କିନ୍ତୁ ଶ୍ରୀକୃଷ୍ଣ ନିଜେ ଅବତୀର୍ଣ୍ଣ ହେଲେ ତାହାଙ୍କ ଆଶ୍ରୟରେ ମୋର ଏ କାର୍ଯ୍ୟ ସଫଳ ହେବ, ତେବେ ମୋର ନାମର ସତ୍ୟତା ପ୍ରତିପାଦିତ ହେବ । ୭୯ରୁ ୮୧ ।

ପୁନରାୟ ସେ ( ଶ୍ରୀ ଅଦ୍ୱୈତାଚାର୍ଯ୍ୟ ) ଭାବିଲେ ଯେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଓ ପରମ ସ୍ୱତନ୍ତ୍ର, ମୁଁ କି ପ୍ରକ୍ରିୟା କଲେ ସେ ମୋର ପ୍ରାର୍ଥନାର ପରତନ୍ତ୍ର ହେବେ ଅର୍ଥାତ୍ ମୋର ପ୍ରାର୍ଥନାନୁଯାୟୀ ଶ୍ରୀବିଗ୍ରହଧାରଣ କରି ଅବତୀର୍ଣ୍ଣ ହେବେ । ଏହିପରି ଭାବୁଁ ଭାବୁଁ ଗୌତମୀୟତନ୍ତ୍ରର ଗୋଟିଏ ଶ୍ଳୋକ ତାଙ୍କର ସ୍ମରଣ ହେଲା । ଯଥା ୮୨ ।

ଭକ୍ତବତ୍ସଳ ଭଗବାନ୍ ଭକ୍ତପ୍ରଦତ୍ତ କେବଳ ତୁଳସୀପତ୍ର ବା ଗଣ୍ଡୂଷେ ପାଣିଦ୍ୱାରା ସେମାନଙ୍କ ନିକଟ ଆପଣାକୁ ବିକ୍ରୟ କରନ୍ତି । [ ୨୧ଶ ଶ୍ଳୋକାର୍ଥ ]

୮୩ ଠାରୁ ୮୫ ପଯ୍ୟାରଲିଖିତ ଭାବର ବିଚାର କରି ଶ୍ରୀକୃଷ୍ଣ ଆରାଧନାର ପ୍ରଣାଳୀ ସ୍ଥିର କଲେ; ତେଣୁ ସର୍ବଦା ଶ୍ରୀକୃଷ୍ଣଙ୍କର ଶ୍ରୀଚରଣ ଭାବି ତହିଁରେ ଗଙ୍ଗାଜଳ ଓ ତୁଳସୀମଞ୍ଜରୀ ସମର୍ପଣ ଓ ଉଚ୍ଚ ନାମକୀର୍ତ୍ତନରୂପ ହୁଙ୍କାରଦ୍ୱାରା ଶ୍ରୀକୃଷ୍ଣଙ୍କୁ କିଛିକାଳ ଆରାଧନା କଲାରୁ ଶ୍ରୀକୃଷ୍ଣ ଗୌରରୂପରେ ଅବତୀର୍ଣ୍ଣ ହେଲେ ।

ତାର ଋଣ ଶୋଧିତେ କୃଷ୍ଣ କରେନ ଚିନ୍ତନ— ।
'ଜଲ-ତୁଲସୀର ସମ କିଛୁ ଆର ନାହିଁ ଧନ' ॥ ୮୪ ॥
ତବେ ଆତ୍ମା ବେଚି କରେ ଋଣେର ଶୋଧନ ।
ଏତ ଭାବି ଆଚାର୍ଯ୍ୟ କରେନ ସେଇ ଆରାଧନ ॥ ୮୫ ॥
ଗଙ୍ଗାଜଲ ତୁଲସୀମଞ୍ଜରୀ ଅନୁକ୍ଷଣ ।
କୃଷ୍ଣପାଦପଦ୍ମ ଭାବି କରେନ ସମର୍ପଣ ॥ ୮୬ ॥
କୃଷ୍ଣେର ଆହ୍ୱାନ କରେ କରିଯା ହୁଙ୍କାର ।
ଏମତେ କୃଷ୍ଣେରେ କରାଇଲ ଅବତାର ॥ ୮୭ ॥
ଚୈତନ୍ୟେର ଅବତାରେ ଏଇ ମୁଖ୍ୟ ହେତୁ— ।
ଭକ୍ତେର ଇଚ୍ଛାୟ ଅବତରେ ଧର୍ମସେତୁ ॥ ୮୮ ॥

ତଥାହି ( ଭାଃ ୩।୯।୧୧ )—

ତ୍ୱଂ ଭକ୍ତିଯୋଗପରିଭାବିତହୃତ୍ସରୋଜ-
ଆସ୍ସେ ଶ୍ରୁତେକ୍ଷିତପଥୋ ନନୁ ନାଥ ପୁଂସାମ୍ ।
ଯଦ୍ ଯଦ୍ଧିୟା ତ ଉରୁଗାୟ ବିଭାବୟନ୍ତି,
ତତ୍ତଦ୍ୱପୁଃ ପ୍ରଣୟସେ ସଦନୁଗ୍ରହାୟ ॥ ୧୨ ॥ *

ଏଇ ଶ୍ଳୋକେର ଅର୍ଥ କହି ସଂକ୍ଷେପେର ସାର— ।
ଭକ୍ତେର ଇଚ୍ଛାୟ କୃଷ୍ଣେର ସର୍ବ ଅବତାର ॥ ୮୯ ॥
ଚତୁର୍ଥ-ଶ୍ଳୋକେର ଅର୍ଥ ହୈଲ ସୁନିଶ୍ଚିତେ— ।
ଅବତୀର୍ଣ୍ଣ ହୈଲା ଗୌର ପ୍ରେମ ପ୍ରକାଶିତେ ॥ ୯୦ ॥
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ॥ ୯୧ ॥

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଲୀଲାୟାଂ-
ଆଶୀର୍ବାଦ-ମଙ୍ଗଲାଚରଣେ ଚୈତନ୍ୟା-
ବତାର-ସାମାନ୍ୟକାରଣଂ ନାମ
ତୃତୀୟପରିଚ୍ଛେଦଃ ॥ ୩ ॥

—*—

ନନୁ (ଭୋଃ) ନାଥ ! ଶ୍ରୁତେକ୍ଷିତପଥଃ ( ଶ୍ରୁତେନ ଭଗବତ୍ପ୍ରତିପାଦକବେଦବୈଦିକଶାସ୍ତ୍ର-ବାକ୍ୟଶ୍ରବଣେନ ଈକ୍ଷିତଃ ପନ୍ଥା ଯସ୍ୟ ସଃ ) ତ୍ୱଂ ପୁଂସାଂ ( ଭକ୍ତାନାଂ ) ଭକ୍ତିଯୋଗପରିଭାବିତହୃତ୍ସରୋଜେ (ଭକ୍ତିଯୋଗେନ ପ୍ରେମ୍ଣା ପରିଭାବିତଂ ଯୋଗ୍ୟତାଂ ଆପାଦିତଂ ଯତ୍ ହୃତ୍ସରୋଜଂ ତସ୍ମିନ୍) ଆସ୍ସେ (ତିଷ୍ଠସି) (ତେ ଭକ୍ତାଃ) ଧିୟା ଯଦ୍ଯଦ୍ ବିଭାବୟନ୍ତି (ଚିନ୍ତୟନ୍ତି) (ହେ) ଉରୁଗାୟ (ବେଦେନ ତ୍ୱଂ ଉରୁଧା ଏବଂ ଗୀୟସେ ଇତି ) ସଦନୁଗ୍ରହାୟ ( ସତାଂ ତେଷାଂ ଭକ୍ତାନାଂ ଅନୁଗ୍ରହାୟ ) ତତ୍ତତ୍ ବପୁଃ ପ୍ରଣୟସେ ( ପ୍ରକର୍ଷେଣ ତତ୍ସମୀପେ ନୟସି ପ୍ରକଟୟସି ) [ ୧୨ଶ ଶ୍ଳୋକଃ ]

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁଙ୍କର ଉପରଲକ୍ଷିତ ଆରାଧନା ଓ ପ୍ରାର୍ଥନାହିଁ ଶ୍ରୀକୃଷ୍ଣ ଚୈତନ୍ୟ ମହାପ୍ରଭୁଙ୍କର ଅବତାରର ପ୍ରଧାନ କାରଣ ।

ଧର୍ମସେତୁ ଶ୍ରୀଭଗବାନ ତାହାଙ୍କର ଭକ୍ତମାନଙ୍କର ଇଚ୍ଛାନୁରୂପ ପ୍ରାର୍ଥନାଦ୍ୱାରା ସେମାନଙ୍କ ଭାବନାମୟୀ ଶ୍ରୀବିଗ୍ରହଧାରଣ କରି ଅବତୀର୍ଣ୍ଣ ହୁଅନ୍ତି । ୮୩।୮୮ ।

ହେ ନାଥ ! ଶାସ୍ତ୍ରଶ୍ରବଣଦ୍ୱାରା ଯାହାଙ୍କର ମାର୍ଗ ମିଳେ ଏପରି ଯେ ତୁମ୍ଭେ, ଭକ୍ତମାନଙ୍କର ପ୍ରେମପରିପୂର୍ଣ୍ଣହୃଦୟରେ ସର୍ବଦା ବାସ କର । ସେହି ଭକ୍ତମାନେ ବୁଦ୍ଧିଦ୍ୱାରା ତୁମ୍ଭର ଯେଉଁ ଯେଉଁ ରୂପ ଚିନ୍ତା କରନ୍ତି, ହେ ଉରୁଗାୟ ! ( ବହୁରୂପ ! ) ତୁମ୍ଭେ ସେମାନଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ ପୂର୍ବକ ସେହି ସେହି ମୂର୍ତ୍ତିରେ ସେମାନଙ୍କ ନିକଟ ପ୍ରକଟ ହୁଅ ବା ସେମାନଙ୍କୁ ସୁଖଦେବା କାରଣ ସେହି ସେହି ଶରୀର ଧାରଣ କର । [ ୧୨ଶ ଶ୍ଳୋକାର୍ଥ ]

ଏହି ଶ୍ଳୋକର ସାରାର୍ଥ ଏହି ଯେ ଶ୍ରୀକୃଷ୍ଣଙ୍କର ସମସ୍ତ ଅବତାରମାନେ ଭକ୍ତମାନଙ୍କର ଇଚ୍ଛାନୁଯାୟୀ ସ୍ୱରୂପରେ ପ୍ରକଟ ହୁଅନ୍ତି । ୮୯ ।

ଚତୁର୍ଥ ଶ୍ଳୋକର ( ଅନର୍ପିତଚରୀଂ ) ଶ୍ଳୋକର ଅର୍ଥ ପୂର୍ବୋକ୍ତରୂପେ ବିଚାର କରିବାଦ୍ୱାରା ସୁନିଶ୍ଚିତ ହେଲା ଯେ ଶ୍ରୀମନ୍ ମହାପ୍ରଭୁ ଗୌରଚନ୍ଦ୍ର ପୃଥିବୀରେ ପ୍ରେମଦାନ କରିବା ନିମିତ୍ତ ଅବତୀର୍ଣ୍ଣ ହେଲେ । ୯୦ । ୯୧ ।

ତୃତୀୟ ପରିଚ୍ଛେଦ ସମାପ୍ତ ।

—oOo—

## ଚତୁର୍ଥ ପରିଚ୍ଛେଦ ।

ଶ୍ରୀଚୈତନ୍ୟପ୍ରସାଦେନ ତଦ୍ରୂପସ୍ୟ ବିନିର୍ଣ୍ଣୟମ୍ ।
ବାଲୋଽପି କୁରୁତେ ଶାସ୍ତ୍ରଂ ଦୃଷ୍ଟ୍ବା
ବ୍ରଜବିଲାସିନଃ ॥ ୧ ॥ *

ଜୟ ଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଚତୁର୍ଥ-ଶ୍ଳୋକେର ଅର୍ଥ କୈଲ ବିବରଣ ।
ପଞ୍ଚମ-ଶ୍ଳୋକେର ଅର୍ଥ ଶୁନ ଭକ୍ତଗଣ । ୨ ।
ମୂଳ ଶ୍ଳୋକେର ଅର୍ଥ କରିତେ ପ୍ରକାଶ ।
ଅର୍ଥ ଲାଗାଇତେ ଆଗେ କହିୟେ ଆଭାସ । ୩ ।
ଚତୁର୍ଥ-ଶ୍ଳୋକେର ଅର୍ଥ ଏଇ କୈଲ ସାର— ।
ପ୍ରେମ-ନାମ ପ୍ରଚାରିତେ ଏଇ ଅବତାର । ୪ ।
ସତ୍ୟ ଏଇ ହେତୁ, କିନ୍ତୁ ଏହୋ ବହିରଙ୍ଗ ।
ଆର ଏକ ହେତୁ ଶୁନ ଆଛେ ଅନ୍ତରଙ୍ଗ— । ୫
ପୂର୍ବେ ଯେନ ପୃଥ୍ବୀର ଭାର ହରିବାରେ ।
କୃଷ୍ଣ ଅବତୀର୍ଣ୍ଣ ହୈଲା—ଶାସ୍ତ୍ରେତେ ପ୍ରଚାରେ । ୬ ।

---

ବାଲୋଽପି ( ଅଜ୍ଞୋଽପି ) ଶ୍ରୀଚୈତନ୍ୟପ୍ରସାଦେନ ( ଗୌରକୃପାଲେଶେନ ) ଶାସ୍ତ୍ରଂ ଦୃଷ୍ଟ୍ବା ( ସୁଚାରୁରୂପେଣ ଅବଲୋକ୍ୟ ) ବ୍ରଜବିଲାସିନଃ ( ଶ୍ରୀନନ୍ଦନନ୍ଦନସ୍ୟ ) ତଦ୍ରୂପସ୍ୟ ( ତସ୍ୟ କଲିପାବନ ଶ୍ରୀଗୌରରୂପସ୍ୟ ) ବିନିର୍ଣ୍ଣୟଂ—( ବସ୍ତୁତତ୍ତ୍ୱନିରୂପଣଂ ) କୁରୁତେ । [ ୧ମ ଶ୍ଳୋକଃ ]

ଆଭାସ ମେବାହ "ଚତୁର୍ଥ" ଇତି ଦ୍ୱାଭ୍ୟାଂ । ବହିରଙ୍ଗ ଗୌଣଃ ଅନ୍ତରଙ୍ଗ ପ୍ରଧାନଂ । ୪ । ୫ ।
ବି, ଚ,

ପ୍ରେମନାମ ପ୍ରଦାନଞ୍ଚ ଶ୍ରୀଚୈତନ୍ୟାବତାରେ ବହିରଙ୍ଗକାରଣଂ
ଇତ୍ୟେତତ୍ ପ୍ରତିପାଦୟିତୁଂ ଶ୍ରୀକୃଷ୍ଣାବତାର ବହିରଙ୍ଗକାରଣଂ
ଦୃଷ୍ଟାନ୍ତେନ ଦର୍ଶୟତି "ପୂର୍ବେ ଯୈଛେ" ଇତ୍ୟାଦି "ଅନୁଷଙ୍ଗ" ଇତ୍ୟନ୍ତଂ ।

ପୃଥ୍ବୀଭାରହରଣାଦ୍ୟ ଶ୍ରୀକୃଷ୍ଣାବତାର ଇତଶାସ୍ତ୍ରସ୍ୟଂ ପ୍ରତିଲେହୋଽର୍ଥଃ ସାଧାରଣୋଽର୍ଥଃ ନତୁ ବାସ୍ତବଃ ଅସ୍ମୃଭାବଃ ପୃଥ୍ବୀଭାରହରଣଂ ଯଥା ଶ୍ରୀକୃଷ୍ଣାବତାରେ ବହିରଙ୍ଗକାରଣଂ ତଦ୍ବଦେବ ପ୍ରେମନାମ ପ୍ରଦାନଂ । ଶ୍ରୀଚୈତନ୍ୟସ୍ୟ ସ୍ୱୟଂ ଶ୍ରୀକୃଷ୍ଣତ୍ୱେନ ତଦବତାର କାରଣ ମେବାହ ଦୃଷ୍ଟାନ୍ତୀକୃତଂ । ୬ । ବି, ଚ,

---

ଶ୍ରୀଚୈତନ୍ୟଚନ୍ଦ୍ରଙ୍କର କିଞ୍ଚିତ୍ ଅନୁଗ୍ରହ ହେଲେ ଅଜ୍ଞବ୍ୟକ୍ତି ମଧ୍ୟ ସୁଚାରୁ ଶାସ୍ତ୍ର ଦୃଷ୍ଟିରେ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କର କଳିପାବନ ଶ୍ରୀଗୌରରୂପ ହେବାର କାରଣ ନିରୂପଣ କରି ପାରନ୍ତି । ଶ୍ରୀଗ୍ରନ୍ଥକାର ଏହି ଭାବରେ ଭାବିତ ହୋଇ ଚତୁର୍ଥ ପରିଚ୍ଛେଦ ରଚନା କରିଅଛନ୍ତି ।
[ ୧ମ ଶ୍ଳୋକାର୍ଥ ]

ଚତୁର୍ଥ ଶ୍ଳୋକ ଅର୍ଥାତ୍ ( " ଅନର୍ପିତ ଚରୀଂ ଇତି" )
ପଞ୍ଚମ ଶ୍ଳୋକ "ରାଧାକୃଷ୍ଣ ପ୍ରଣୟ ବିକୃତିଃ" । ୨ ।

ଏହି ମୂଳ ଅର୍ଥାତ୍ ପଞ୍ଚମ ଶ୍ଳୋକକୁ ବ୍ୟାଖ୍ୟା କରିବା ପୂର୍ବରୁ ତହିଁର ଆଭାସ ଅର୍ଥାତ୍ ଭାବ ପ୍ରକାଶ କରୁଅଛି । ୩ ।

ପୂର୍ବୋକ୍ତ ଚତୁର୍ଥ ଶ୍ଳୋକରେ ନାମ ପ୍ରେମ ପ୍ରଚାରସକାଶେ ଶ୍ରୀକୃଷ୍ଣଚୈତନ୍ୟଙ୍କ ଅବତାର ନିରୂପଣ କରାହୋଇଅଛି । ଜଗତ ପକ୍ଷରେ ଏ କାରଣ ସତ୍ୟ ଅଟେ । ମାତ୍ର ମହାପ୍ରଭୁଙ୍କ ପକ୍ଷରେ ଏହା ବହିରଙ୍ଗ ଅର୍ଥାତ୍ ଆନୁଷଙ୍ଗିକ କିନ୍ତୁ ତାଙ୍କ ଅନ୍ତରଙ୍ଗ ଅର୍ଥାତ୍ ପ୍ରଧାନ କାରଣ ଯାହା ତାହା କହୁଅଛି ଶୁଣ । ୪।୫ ।

ସ୍ୱୟଂ ଭଗବାନେର କର୍ମ୍ମ ନହେ ଭାର-ହରଣ ।
ସ୍ଥିତିକର୍ତ୍ତା ବିଷ୍ଣୁ କରେ ଜଗତପାଳନ ॥ ୭ ॥
କିନ୍ତୁ କୃଷ୍ଣେର ଯେଇ ହୟ ଅବତାରକାଳ ।
ଭାରହରଣକାଳ ତାତେ ହଇଲ ମିଶାଲ ॥ ୮ ॥
ପୂର୍ଣ୍ଣ ଭଗବାନ୍ ଅବତରେ ଯେଇକାଲେ ।
ଆର ସବ ଅବତାର ତାତେ ଆସି ମିଲେ ॥ ୯ ॥
ନାରାୟଣ ଚତୁର୍ବ୍ୟୂହ ମତ୍ସ୍ୟାଦ୍ୟବତାର ।
ଯୁଗମନ୍ୱନ୍ତରାବତାର ଯତ ଆଛେ ଆର ॥ ୧୦ ॥
ସଭେ ଆସି କୃଷ୍ଣ-ଅଙ୍ଗେ ହୟ ଅବତୀର୍ଣ୍ଣ ।
ଐଛେ ଅବତରେ କୃଷ୍ଣ ଭଗବାନ୍ ପୂର୍ଣ୍ଣ ॥ ୧୧ ॥
ଅତଏବ ବିଷ୍ଣୁ ତଖନ କୃଷ୍ଣେର ଶରୀରେ ।
ବିଷ୍ଣୁଦ୍ୱାରେ କରେ କୃଷ୍ଣ ଅସୁର ସଂହାରେ ॥ ୧୨ ॥

ତଦେବ ପ୍ରତିପାଦୟନ୍ ତତ୍ର ହେତୁମାହ "ସ୍ୱୟଂ" ଇତି । ଭୂଭାରହରଣଂ ବିନା ଜଗତଃ ସ୍ଥିତିପାଳନାଭାବେନ ସ୍ଥିତିପାଳନାୟାବତୀର୍ଣ୍ଣସ୍ୟ ବିଷ୍ଣୋରେବ ତତ୍ତୁ ଭାରହରଣଂ କର୍ମ୍ମ ନତୁ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ଅତସ୍ତତ୍ତସ୍ୟ ବହିରଙ୍ଗକାରଣମିତ୍ୟର୍ଥଃ । ୭ । ବି, ଚ,

ନନୁ ଭୂଭାରହରଣଂ ଯଦି ନ କୃଷ୍ଣସ୍ୟ କର୍ମ୍ମ ତଦା କଥଂ ତସ୍ମିନ୍ ତସ୍ୟ ବହିରଙ୍ଗତ୍ୱଂ ତତ୍ସମ୍ବନ୍ଧାଭାବାତ୍ । ତଥା ଯଦି ତନ୍ନ ତସ୍ୟ କର୍ମ୍ମ ତଦା ତତ୍କଥମ୍ମା ତସ୍ମିନ୍ ଦୃଶ୍ୟତେ ଇତ୍ୟତ ଆହ "କିନ୍ତୁ" ଇତି ପଦ୍ୟଦ୍ୱୟେ । ସ୍ଥିତିକର୍ତ୍ତ୍ରା ବିଷ୍ଣୁନୈବ ଭୂଭାରହରଣଂ କରୋତି ନ ତୁ ଶ୍ରୀକୃଷ୍ଣଃ କିନ୍ତୁ ଶ୍ରୀକୃଷ୍ଣାବତାରକାଳାନ୍ତର୍ଭୂତତ୍ୱାତ୍ ଶ୍ରୀବିଷ୍ଣୁକୃତଭୂଭାରହରଣକାଳସ୍ୟ ପାର୍ଥକ୍ୟାଭାବେନ ତଥା ପୂର୍ଣ୍ଣପୁରୁଷ-ଶ୍ରୀକୃଷ୍ଣାବତାର-କାଳେ ତଦଙ୍ଗାନ୍ତର୍ଭୂତତ୍ୱାତ୍ ଶ୍ରୀନାରାୟଣାଦି—ସର୍ବାବତାରାଣାଂ ପାର୍ଥକ୍ୟାଭାବେନ ବିଷ୍ଣୁରପି ତଦଙ୍ଗେ ତିଷ୍ଠତି ନ ତୁ ପୃଥକ୍ ଇତି ବିଷ୍ଣୁନା ସହ ଆଧାରାଧେୟସମ୍ବନ୍ଧେନ ତସ୍ମିନ୍ ତତ୍ସମ୍ବନ୍ଧଃ ଅତସ୍ତତ୍ ବହିରଙ୍ଗକାରଣଂ । ତଥା ନିଜାଙ୍ଗାନ୍ତର୍ଭୂତେନ ବିଷ୍ଣୁନା ଏବ ଶ୍ରୀକୃଷ୍ଣଃ ଭୂଭାରଂ ହରତି ସାଧାରଣ-ଦୃଷ୍ଟ୍ୟା ତୁ ସ ଏବ କରୋତି ଇତି ଦୃଶ୍ୟତେ ନିତ୍ୟେତତ୍ ପ୍ରକରଣାର୍ଥଃ । ଅସ୍ୟାଂ ଭାବାଃ ନିଜାଙ୍ଗାନ୍ତର୍ଭୂତ-ବିଷ୍ଣୁସମ୍ବନ୍ଧେ ନୈବ ତସ୍ମିନ୍ ତତ୍ସମ୍ବନ୍ଧଃ ନତୁ ସାକ୍ଷାତ୍ ଅତସ୍ତତ୍ ବହିରଙ୍ଗକାରଣଂ ତଥା ନିଜାଙ୍ଗାନ୍ତର୍ଭୂତ ବିଷ୍ଣୁକୃତଂ ଭୂଭାରହରଣଂ କୃଷ୍ଣକୃତଂ ଦୃଶ୍ୟତେ । ୮ । ବି, ଚ,

"ପୂର୍ଣ୍ଣ" ଇତି । ପୂର୍ଣ୍ଣଭଗବତୋଽବତାରକାଳେ ସର୍ବେଽବତାରାଃ ତେନ ସଂଗଚ୍ଛନ୍ତି । ଅତଃ ପୂର୍ଣ୍ଣଭଗବତଃ ଶ୍ରୀକୃଷ୍ଣସ୍ୟାବତାରକାଳେ ନାରାୟଣାଦୟଃ ସର୍ବେ ସ୍ୱସ୍ୱଧାମ୍ନ ଆଗତ୍ୟ ତଦଙ୍ଗେଽବତରନ୍ତି ଏତଦ୍ରୂପେଣ ଶ୍ରୀକୃଷ୍ଣୋଽବତରତି ଯତଃ ସଃ ପୂର୍ଣ୍ଣଃ ଭଗବାନ୍ । ନାରାୟଣାଦିଭିଃ ସର୍ବୈଃ ସଂଯୁକ୍ତଃ ଶ୍ରୀକୃଷ୍ଣୋଽବତରତି ପୂର୍ଣ୍ଣତ୍ୱାଦିତି ଭାବଃ । ତଥାହି ଲଘୁଭାଗବତାମୃତେ । ସ୍ୱୟଂମହାତ୍ମ୍ୟୋଽତି ପରମ-ମହତ୍ତ୍ୱମତସ୍ମା ସ୍ମୃତାଃ । ତେ ପରବ୍ୟୋମନାଥସ୍ୟ ବ୍ୟୂହାଶ୍ଚ ବସୁସଂଖ୍ୟକାଃ । ବାସୁଦେବାଦୟୋ ବ୍ୟୂହାଃ ପରବ୍ୟୋମେଶ୍ୱରସ୍ୟ ଯେ । ତେଭ୍ୟୋ ସ୍ୟୁରୁତ୍କର୍ଷଭାଜୋଽମୀ କୃଷ୍ଣବ୍ୟୂହାଃ ସତାଂ ମତାଃ । ଇତ୍ୟେତେ ପରମବ୍ୟୋମନାଥ-ବ୍ୟୂହୈଃ ସହୈକତାଂ । ଦ୍ୱାରକାପୌରିବାଦ୍ୟେତ୍ୟ ପ୍ରାଦୁର୍ଭାବ ମୁପାଗତାଃ । ଅଂଶା ମୁଖ୍ୟାବତାରା ଯେ ପ୍ରଦିଷ୍ଟା ପୁରୁଷାଦୟଃ । ତଥା ଶ୍ରୀଜାନକୀନାଥନୃସିଂହକ୍ରୋଡ଼ବାମନାଃ । ନାରାୟଣ ନରସଖୋ ହୟଶୀର୍ଷାଜିତାଦୟଃ । ଏତୈର୍ଯୁକ୍ତଃ ସଦାଯୋଗ ମବାପ୍ୟାସ୍ମି-ନବସ୍ଥିତଃ ଇତି । ଅସ୍ମିନ୍ ଶ୍ରୀକୃଷ୍ଣେ । ଅସ୍ୟ ବିଶେଷଃ ମୂଲେ ଦ୍ରଷ୍ଟବ୍ୟଃ । ଏତଦପ୍ୟେକଂ ପୂର୍ଣ୍ଣସ୍ୟ ଲକ୍ଷଣଂ ଜ୍ଞେୟଂ । ୯।୧୦।୧୧ । ବି, ଚ,

ଅତଏବ ଇତି । ଯତଃ ଶ୍ରୀକୃଷ୍ଣାବତାରକାଳେ ଶ୍ରୀନାରାୟଣାଦୟଃ ସର୍ବ୍ବ ଏବ ତଦଙ୍ଗେଽବତିଷ୍ଠନ୍ତେ ଅତଏବ ଏତେନୈବ ହେତୁନା ଶ୍ରୀବିଷ୍ଣୁରପି ତଦା ତଦଙ୍ଗେ ତିଷ୍ଠତି । ତେନ ନିଜାଙ୍ଗସ୍ଥିତେନ ବିଷ୍ଣୁନା ଶ୍ରୀକୃଷ୍ଣୋଽସୁରାନ୍ ସଂହରତି ଭୂଭାରଂ ହରତୀତ୍ୟର୍ଥଃ । ଅତସ୍ତତ୍ ଭୂଭାରହରଣଂ ଆନୁଷଙ୍ଗିକଂ କର୍ମ୍ମ ଏତେନ ତସ୍ୟ ବହିରଙ୍ଗତ୍ୱଂ । ଯଦ୍ୱା ଅନୁ ଅନୁ ଗତସ୍ୟ ସ୍ଥିତସ୍ୟ ଇତ୍ୟାଦିବତ୍ ବିଷ୍ଣୋଃ କର୍ମ୍ମ ଇତି ଆନୁଷଙ୍ଗିକଂ ଅଙ୍ଗାତ୍ ସ୍ୱରୂପାତ୍ ନନ୍ଦନନ୍ଦନରୂପାତ୍ ଇତ୍ୟାଦିବତ୍ ବହିଃ ଭବନସ୍ୟ ବିଷ୍ଣୋରବତାରେ

| | |
|---|---|
| ଆନୁଷଙ୍ଗ କର୍ମ ଏଇ ଅସୁର-ମାରଣ । | ପ୍ରେମରସ-ନିର୍ଯ୍ୟାସ କରିତେ ଆସ୍ୱାଦନ । |
| ଯେ ଲାଗି ଅବତାର, କହି ସେ ମୂଳ କାରଣ ।୧୩। | ରାଗମାର୍ଗ-ଭକ୍ତି ଲୋକେ କରିତେ ପ୍ରଚାରଣ । ୧୪। |

କାରଣଂ ଇତି ବହିରଙ୍ଗମିତ୍ୟର୍ଥଃ ଏତଦେବ ଉକ୍ତଂ ଲଘୁଭାଗବତାମୃତେ ଯଥା "ତଥାଭୂସ୍ୱଲ୍ପରତରୈଃ ପୀଡ୍ୟମାନେଷୁ ଦାନବୈଃ । ପ୍ରିୟେଷୁ କରୁଣାପୂର୍ଣ୍ଣ ହେତୁରିତ୍ୟୁକ୍ତମେବ ହି । ଭୂମିଭାରାପହାରାର୍ଥ ବ୍ରହ୍ମାଦିଦେବାଦିଦଶେନ୍ଦ୍ରୈଃ । ଅଭ୍ୟର୍ଥନନ୍ତୁ ଯତ୍ତସ୍ୟ ତଦ୍ଭବେଦାନୁଷଙ୍ଗିକଂ" । ଇତ । ୧୨ । ବି, ଚ,

ଶ୍ରୀକୃଷ୍ଣାବତାରେ ବହିରଙ୍ଗକାରଣ ମୁକ୍ତ୍ୱା ଅନ୍ତରଙ୍ଗଂ ମୂଳକାରଣଂ କଥୟିତୁମାହ ଦ୍ୱୌ ତତ୍ର-ଲକ୍ଷଣମାହ " ଯେ ଲାଗି " ଇତି । ଯେ ଲାଗି ଯଦର୍ଥଂ ସ୍ୱୟଂ ନନ୍ଦକର୍ତ୍ତୃ ଅବତରତି ତଦେବ ତଦବ-ତାରେ ମୂଳକାରଣ ମିତ୍ୟର୍ଥଃ । ୧୩ । ବି, ଚ,

ତଦବତାରସ୍ତୁ ଶ୍ରୀକୃଷ୍ଣାବତାରେ ମୂଳକାରଣମାହ "ପ୍ରେମରସ" ଇତି । " ଦୁଇ ଇଚ୍ଛାର ଉଦ୍ଗମ " ଇତି ପରପଦ୍ୟାନ୍ୱୟେନ ଇଚ୍ଛା ଶବ୍ଦେନ ଅବାପି ଇଚ୍ଛାପଦେଽଧ୍ୟାହାର୍ଯ୍ୟଃ ତେନ ଚ ପ୍ରେମରସ ନିର୍ଯ୍ୟାସ ଐଶ୍ୱର୍ଯ୍ୟାଦ୍ୟଜ୍ଞାନବତ୍ପ୍ରାନଃ ନିର୍ମଳ ପ୍ରେମରସ ଇତ୍ୟର୍ଥଃ ତମାସ୍ୱାଦୟିତୁଂ ଯା ଇଚ୍ଛା ତଥା ତତ୍ ପ୍ରେମରସାସ୍ୱାଦନଦ୍ୱାରା ଲୋକେ ରାଗଭକ୍ତିଂ ପ୍ରଚାରୟିତୁଂ ଯା ଇଚ୍ଛା ଏତଦିଚ୍ଛାଦ୍ୱୟମେବ ଶ୍ରୀକୃଷ୍ଣାବତାରେ ମୂଳକାରଣଂ । ୧୪ । ବି, ଚ,

ଶ୍ରୀଚୈତନ୍ୟ ଅବତାରର ମୂଳକାରଣ କହିବା ପୂର୍ବରୁ ଶ୍ରୀକୃଷ୍ଣ ଅବତାରର ଆନୁଷଙ୍ଗିକ ଓ ମୂଳକାରଣ ଗ୍ରନ୍ଥକାର ଉଦାହରଣ ସ୍ୱରୂପ କହୁଅଛନ୍ତି ।

ଶ୍ରୀମଦ୍ଭାଗବତାଦି ଶାସ୍ତ୍ରରେ ଦେଖାଯାଏ ଯେ ବିଗତ ଦ୍ୱାପରଯୁଗରେ ଶ୍ରୀକୃଷ୍ଣ ପୃଥିବୀର ଭାର ହରଣ କରିବା ସକାଶେ ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ଭୂଭାର ହରଣ କରିବା ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କର କାର୍ଯ୍ୟ ନୁହେ । ତାହା ସୃଷ୍ଟିପାଳନକର୍ତ୍ତା ପୁରୁଷାବତାର ବିଷ୍ଣୁଙ୍କର କାର୍ଯ୍ୟ । ତେବେ ଶ୍ରୀକୃଷ୍ଣ ଯେ ଭାର ହରଣ କରିବା ସକାଶେ ଅବତୀର୍ଣ୍ଣ ହୋଇଥିଲେ ଏ କଥା ଶାସ୍ତ୍ରରେ କାହିଁକି ଉଲ୍ଲେଖ ହୋଇଅଛି ? ତାହାର କାରଣ ଏହି ଯେ କୌଣସି କାରଣବଶତଃ ଶ୍ରୀକୃଷ୍ଣ ସ୍ୱୟଂ ଏହି ଧରାଧାମରେ ଅବତୀର୍ଣ୍ଣ ହେବା ସମୟରେ ଭାର ହରଣର କାଳ ଅର୍ଥାତ୍ ପାଳନକର୍ତ୍ତା ବିଷ୍ଣୁଙ୍କର ଅବତାରର କାଳ ଆସି ଉପସ୍ଥିତ ହୋଇଥିଲା, ଅତଏବ ସ୍ୱୟଂ ଶ୍ରୀକୃଷ୍ଣଙ୍କର ଅବତାରକାଳରେ ଭାର ହରଣକାଳ ଏକାଙ୍ଗ ମିଳିଥିବାରୁ ଭାର ହରଣ ପାଇଁ ଶ୍ରୀକୃଷ୍ଣଙ୍କର ଅବତାର ଏହା କୁହାଯାଇଅଛି ।

( ଏ ସ୍ଥଳେ ଆଶଙ୍କା ହୋଇପାରେ ଯେ ବିଷ୍ଣୁ କାହିଁକି ଅବତୀର୍ଣ୍ଣ ହେଲେ ନାହିଁ ଓ କୃଷ୍ଣ ଆପେ ଉକ୍ତ ଭାର ହରଣ କାର୍ଯ୍ୟ କଲେ କାହିଁକି ? ) ଏହି ଆଶଙ୍କାକୁ ଲକ୍ଷକରି ଗ୍ରନ୍ଥକାର କହୁଅଛନ୍ତି ଶ୍ରୀକୃଷ୍ଣ ଯେ କି ଭଗବତ୍ତାରେ ପୂର୍ଣ୍ଣ ଅର୍ଥାତ୍ ଆଉ ସମସ୍ତ ଭଗବାନମାନେ ଯାହାଙ୍କର ଅଂଶ ଓ କଳା ଯଥା ଚତୁର୍ବ୍ୟୂହରୂପୀ ନାରାୟଣ ( ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ) ମତ୍ସ୍ୟ, କୂର୍ମ, ରଘୁନାଥାଦି ଲୀଳାବତାରମାନେ, ନରସଖା ନାରାୟଣ, କପିଳାଦି ଯୁଗାବତାରମାନେ ଓ ଋଷଭ ଓ ଯଜ୍ଞଆଦି ମନ୍ୱନ୍ତରାବତାରମାନେ ଓ ଅପରାପର ଅସଂଖ୍ୟ ଅବତାରମାନେ ସମସ୍ତେ ଏହାନନ୍ଦମୟହେତୁ ଶ୍ରୀକୃଷ୍ଣଙ୍କର ଅଙ୍ଗୀଭୂତ; ତେଣୁ ଶ୍ରୀକୃଷ୍ଣ ଭଗବତ୍ତାରେ ପୂର୍ଣ୍ଣ; ଏହି ହେତୁ ପ୍ରତ୍ୟେକ ବା ସମସ୍ତ ଅବତାରର କାର୍ଯ୍ୟ ଏକ ଶ୍ରୀକୃଷ୍ଣଙ୍କଦ୍ୱାରା ପ୍ରୟୋଜନ ଅନୁସାରେ ସାଧିତ ହୁଏ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଶରୀରସ୍ଥିତ ଅବତାରମାନେ ସେମାନଙ୍କର ପ୍ରତ୍ୟେକଙ୍କର କାର୍ଯ୍ୟ ଶ୍ରୀକୃଷ୍ଣଙ୍କ ଶରୀରକୁ ଅବଲମ୍ବନ କରି ସମ୍ପାଦନ କରନ୍ତି ଏଣୁ ଲୋକେ ସମସ୍ତ କାର୍ଯ୍ୟ ଶ୍ରୀକୃଷ୍ଣ କଲେ ବୋଲି ଅନୁଭବ କରନ୍ତି । ଅତଏବ ଦ୍ୱାପରଯୁଗରେ ଅସୁରସଂହାରକାର୍ଯ୍ୟ ଶ୍ରୀକୃଷ୍ଣ ତାହାଙ୍କ ଶରୀରସ୍ଥ ବିଷ୍ଣୁ କଳାଦ୍ୱାରା

ରସିକଶେଖର କୃଷ୍ଣ ପରମ-କରୁଣ ।
ଏଇ ଦୁଇ ହେତୁ ହୈତେ ଇଚ୍ଛାର ଉଦ୍ଗମ । ୧୫ ।
ଐଶ୍ୱର୍ଯ୍ୟଜ୍ଞାନେତେ ସବ ଜଗତ ମିଶ୍ରିତ ।
ଐଶ୍ୱର୍ଯ୍ୟଶିଥିଲ-ପ୍ରେମେ ନାହି ମୋର ପ୍ରୀତ । ୧୬ ।

ଆମାରେ ଈଶ୍ୱର ମାନେ—ଆପନାକେ ହୀନ ।
ତାର ପ୍ରେମେ ବଶ ଆମି ନା ହଇ ଅଧୀନ । ୧୭ ।
ଆମାକେ ତ ଯେ ଯେ ଭକ୍ତ ଭଜେ ଯେଇ ଭାବେ ।
ତାରେ ସେ-ସେ-ଭାବେ ଭଜି-ଏ ମୋର ସ୍ୱଭାବେ । ୧୮ ।

କଥଂ ତଦ୍‌ବାଞ୍ଛାଦ୍ୱୟଂ ଜାତମିତ୍ୟତ୍ର ହେତୁମାହ "ରସିକ" ଇତି । ରସିକଶେଖରତ୍ୱଂ ପରମକାରୁଣିକତ୍ୱଞ୍ଚ ଇତି ଦ୍ୱୟଂ ତଦ୍‌ବାଞ୍ଛାଦ୍ୱୟୋଦ୍‌ଗମେ ପ୍ରାଦୁର୍ଭାବେ ହେତୁଃ । ରସିକଶେଖରତ୍ୱେନ ପ୍ରେମରସନିର୍ଯ୍ୟାସାସ୍ୱାଦନେ ତଥା ପରମକାରୁଣିକତ୍ୱେନ ଚ ରାଗଭକ୍ତିପ୍ରଚାରଣେ ଇଚ୍ଛା ଜାତା ଇତ୍ୟର୍ଥଃ । ୧୫ । ବି, ଜ,

ଶ୍ରୀକୃଷ୍ଣ ସ୍ୱତପ୍ରେମରସନିର୍ଯ୍ୟାସାସ୍ୱାଦନଂ କେନ ପ୍ରକାରେଣ କରିଷ୍ୟତୀତ୍ୟତ୍ର ନିତ୍ୟସିଦ୍ଧାନ୍ ବ୍ରଜପରିବାରାନ୍ ମାଦାଦୀନ୍ ଭକ୍ତାନବତାରୟିତ୍ୱା ତୈରେବ ତଦାସ୍ୱାଦନଂ କରିଷ୍ୟତୀତି ତତ୍ର ପ୍ରକାରଂ ବକ୍ତୁମାଦୌ ତତ୍ର ନନୁ ଜଗତି ବହୁଷୁ ଭକ୍ତେଷୁ ସତ୍ସୁ ତେଷାଂ ମାଦାଦୀନାମବତାରଣେନ କି ମିତ୍ୟାଶଙ୍କ୍ୟାଂ ଶ୍ରୀକୃଷ୍ଣବାକ୍ୟେନ ପରିହରତି "ଐଶ୍ୱର୍ଯ୍ୟ" ଇତି ଦ୍ୱାଭ୍ୟାଂ । ପ୍ରେମେ ବଶ ଆମି ପ୍ରେମବଶୋ ଽହଂ ତଦଧୀନୋ ନ ଭବାମୀତ୍ୟର୍ଥଃ । ଐଶ୍ୱର୍ଯ୍ୟଜ୍ଞାନୀଭକ୍ତ ଏବ ମଦଧୀନ ଅତଃ କଥଂ "ବଶ ଆମି" ସ୍ୱବଶୋଽହଂ ତଦଧୀନୋ ଭବାମୀତ୍ୟାହ । ଅନ୍ତାତ୍ପ୍ରମାଣସ୍ୟ ପ୍ରୀତ୍ୟଧୀନତ୍ୱେନୈବ ପ୍ରେମରସ ନିର୍ଯ୍ୟାସାସ୍ୱାଦନଂ ଭବେତ୍ କିନ୍ତୁ ଐଶ୍ୱର୍ଯ୍ୟମିଶ୍ରିତପ୍ରେମ୍ଣି ତତ୍ ପ୍ରତ୍ୟଭାବେନ ତଦଧୀନତ୍ୱାଭାବାତ୍ ଅତଃ ଶୁଦ୍ଧାଂ ଐଶ୍ୱର୍ଯ୍ୟଜ୍ଞାନରହିତାନାଂ ତେଷାଂ ମାଦାଦିଭକ୍ତାନାମାଧୀନ୍ୟେନ ତଦାସ୍ୱାଦନଂ ଭବିଷ୍ୟତି ଇତି । ଏତତ୍ ପ୍ରକରଣଂ ସର୍ବମେବ ଅପ୍ରକଟବ୍ରଜବିହାରିଶ୍ରୀକୃଷ୍ଣବଚନ ମିତି ଜ୍ଞେୟଂ । ୧୬।୧୭ । ବି, ଚ,

ନନୁ କୃଷ୍ଣସ୍ୟ ସ୍ୱାଧୀନତ୍ୱେନ କୁତ୍ରଚିଦଧୀନତ୍ୱେନ ଚ ଦ୍ୱୈବିଧ୍ୟେ ବୈଷମ୍ୟମାପନ୍ନମିତ୍ୟତ୍ରାହ "ଆମାକେତ" ଇତି । କଳ୍ପତରୁବତ୍ ତତ୍‌ଭଜନାଧୀନ-ସ୍ୱଭାବେନ ସ୍ୱାଧୀନାଧୀନୋ ଭବାମୀତି ନ ତଦ୍ଦୋଷ ପ୍ରସଙ୍ଗ ଇତ୍ୟର୍ଥଃ । ୧୮ । ବି, ଚ,

---

ସମ୍ପାଦନ କରିଥିଲେ । ଏ କାର୍ଯ୍ୟ ଶ୍ରୀକୃଷ୍ଣ କରିଥିବାର ବୋଧ ହେଲେ ମଧ୍ୟ ଏହା ଶ୍ରୀକୃଷ୍ଣଙ୍କର ଆନୁଷଙ୍ଗିକ କାର୍ଯ୍ୟ ଅପଣାର ସ୍ୱକାର୍ଯ୍ୟ ବା ମୂଳକାର୍ଯ୍ୟ ନୁହେ । ଅତଏବ ଶ୍ରୀକୃଷ୍ଣ ଯେଉଁ ମୂଳକାରଣ ବା ସ୍ୱକାର୍ଯ୍ୟ ସକାଶେ ଅବତୀର୍ଣ୍ଣ ହୋଇଥିଲେ ତାହା ଗ୍ରନ୍ଥକାର ନିମ୍ନ ପୟାରମାନଙ୍କରେ କହିଅଛନ୍ତି । ୬—୧୩ ।

ରସିକବ୍ୟକ୍ତିମାନଙ୍କର ରସ ଆସ୍ୱାଦନ କରିବା ଓ ଦୟାଳୁବ୍ୟକ୍ତିମାନଙ୍କର ଦୟା ପ୍ରକାଶ କାର୍ଯ୍ୟ କରିବାକୁ ବଳବତୀ ଇଚ୍ଛା ହୁଏ । କିନ୍ତୁ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ରସିକଶେଖର ହେତୁ ପ୍ରେମରସ ନିର୍ଯ୍ୟାସ ( ସାର ) ଆସ୍ୱାଦନ କରିବା ଓ ସେ ପରମକାରୁଣ ଅର୍ଥାତ୍ ଶ୍ରେଷ୍ଠ ଦୟାଳୁ ହେତୁ ଜୀବମାନଙ୍କୁ କୃତାର୍ଥ କରିବା କାରଣ ରାଗମାର୍ଗୀୟ ଭକ୍ତି ( ବିଶୁଦ୍ଧ ପ୍ରେମଭକ୍ତି ) ପ୍ରଚାର କରିବା ଏହି ଦୁଇ ଇଚ୍ଛା ତାହାଙ୍କର ହୋଇଥିଲା; ଏହି ଦୁଇ ଇଚ୍ଛା ହେତୁ ସେ ଦ୍ୱାପରଯୁଗରେ ଶ୍ରୀନନ୍ଦନନ୍ଦନ ହୋଇ ସାବରଣରେ ଅବତୀର୍ଣ୍ଣ ହୋଇଥିଲେ । ୧୪।୧୫ ।

ନିତ୍ୟ ବ୍ରଜପରିକରମାନଙ୍କୁ ଅବତୀର୍ଣ୍ଣ କରାଇ ଶ୍ରୀକୃଷ୍ଣ ସେମାନଙ୍କଦ୍ୱାରା ପ୍ରେମରସ ଆସ୍ୱାଦନ କରିବେ ଏବଂ ସେହି ଲୀଳାଦ୍ୱାରା ଜଗତରେ ରାଗମାର୍ଗର ଭକ୍ତି ପ୍ରଚାର କରିବେ । କାରଣ ଜଗତବାସି-ମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ଐଶ୍ୱର୍ଯ୍ୟଜ୍ଞାନର ସହିତ ଭଜନ କରନ୍ତି, ସେ ପ୍ରକାର ଐଶ୍ୱର୍ଯ୍ୟମିଶ୍ର ପ୍ରେମଦ୍ୱାରା ଶ୍ରୀକୃଷ୍ଣ ପ୍ରୀତି ନୁଅନ୍ତି ନାହିଁ କାରଣ ଜଗତବାସିଭକ୍ତମାନେ ଶ୍ରୀକୃଷ୍ଣଙ୍କୁ ଈଶ୍ୱର ବୋଲି ଜାଣନ୍ତି

ତଥାହି ଗୀତାସୁ ( ୪।୧୧ )—
ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ
ସର୍ବଶଃ ॥ ୨ ॥ *

ମୋର ପୁତ୍ର ମୋର ସଖା ମୋର ପ୍ରାଣପତି ।
ଏଇ ଭାବେ କରେ ଯେଇ ମୋତେ ଶୁଦ୍ଧଭକ୍ତି ।୧୯।
ଆପନାକେ ବଡ଼ ମାନେ—ଆମାରେ ସମ ହୀନ ।
ସେଇ-ଭାବେ ଆମି ହଇ ତାହାର ଅଧୀନ । ୨୦ ।

ହେ ଶ୍ରୀକୃଷ୍ଣ କସ୍ୟ ତ୍ୱମଧୀନୋ ଭବସୀତ୍ୟାହ "ମୋର ପୁତ୍ର" ଇତ୍ୟାଦ୍ୱାଭ୍ୟାଂ । ଶୁଦ୍ଧଭକ୍ତିଃ ଐଶ୍ୱର୍ଯ୍ୟଜ୍ଞାନରହିତା କେବଲା ରତିଃ ନିର୍ମ୍ମଲପ୍ରେମ ଇତ୍ୟର୍ଥଃ । ତୟା ରତ୍ୟା ଯୋମାମଧୀନଂ ମନ୍ୟତେ ତସ୍ୟାହମଧୀନଇତ୍ୟର୍ଥଃ । ଦେବକ୍ୟାଦୀନାଂ ଐଶ୍ୱର୍ଯ୍ୟମିଶ୍ରିତରତିନିବାରଣାର୍ଥମେବ ଶୁଦ୍ଧରତି ରିତ୍ୟୁକ୍ତଂ । ୧୯।୨୦ । ଚ, ଚ,

ହେ ପାର୍ଥ ! ନନୁ ନିତ୍ୟାନନ୍ଦାଦ୍ୟମୋକ୍ଷଃ ସର୍ବେଶ୍ୱରସ୍ତ୍ୱଂ ମଯ୍ୟାବଗତଃ କୃଚିତ୍ତ୍ୱଂଖ୍ୟ ମାଜାଦ୍ୟରପୀତ୍ୟରେ ଜନ୍ମାଦ୍ୟଶୂନ୍ୟଃ ଶ୍ରୂୟତେ ତତ୍ରୁକ୍ତଂ ତବ ଭୃଜ୍ଯୁପାସକସ୍ୟ ଚ ବୈବିଧ୍ୟଂ ଭବେଦତ ଏତଦେବାମିତ୍ୟାହ ଯେ ଯଥେତି । ଯେ ଭକ୍ତା ମାମେକଂ ବୈଦୂର୍ଯ୍ୟମେବ ବହୁରୂପଂ । ସର୍ବେଶ୍ୱରଂ— ଯଥା ଯେନ ପ୍ରକାରେଣ ଭାବେନେତ ଯାବତ୍ ପ୍ରପଦ୍ୟନ୍ତେ ଭଜନ୍ତି ତାନହଂ ତାଦୃଶସ୍ତଥୈବ ତଦ୍ଭାବାନୁସାରିଣା ରୂପେଣ ଭାବେନ ଚ ଭଜାମି, ସାକ୍ଷାତ୍ଭଜନୈରନୁଗୃହ୍ଣାମି । ନ୍ୟୂନତାମେବ କାପିଲେ ନାବର୍ତ୍ତିସ୍ତି । ଅତୋ ମମୈକସ୍ୟୈବ ବହୁରୂପସ୍ୟ ବର୍ତ୍ମ ବହୁବିଧମୁପାସନମାର୍ଗମେନାଦ୍ୟପ୍ରବୃତ୍ତ ତଦ୍ଭୁ- ପାସକପରମ୍ପରାନୁକମ୍ପିତା ମନୁଷ୍ୟାଃ ସର୍ବେ ଅନୁବର୍ତ୍ତନ୍ତେ ଅନୁସରନ୍ତି ଅସ୍ୟମର୍ଥଃ । ଯେ ମତ୍ପ୍ରଭୋ ର୍ଜ୍ଞାନ କର୍ମ୍ମଣୀ ନିତ୍ୟେ ଏତେନେତି ମନସି କୁର୍ବାଣା ସ୍ତତ୍ର୍ଲୀଳାପ୍ରାପ୍ତମେବ କୃତମନୋରଥାବଶେଷାଃ ମାଂ ଭଜନ୍ତେଃ ସୁଖପୂର୍ବ୍ବ ଅହମପି ଈଶ୍ୱରତ୍ୱାତ୍ କର୍ତ୍ତୁମକର୍ତ୍ତୁମନ୍ୟଥା କର୍ତ୍ତୁମପି ସାମର୍ଥ୍ୟେସ୍ତେଷାମପି ଜାନ୍ନ କର୍ମ୍ମଣୋ ର୍ନିତ୍ୟତ୍ୱଂ କର୍ତ୍ତୁଂ ତାନ୍ ସ୍ୱପାର୍ଷଦୀକୃତ୍ୟ ତୈଃ ସାର୍ଦ୍ଧଂ ଏବ ଯଥା ସମୟସ୍ୱବତରନ୍ନନ୍ତର୍ଦ୍ଧାନଶ୍ଚ ତାନ୍ ପ୍ରତିକ୍ଷଣମନୁଗୃହ୍ଣନ୍ନେବ ତଦ୍ଭଜନଫଲଂ ପ୍ରେମାଣମେବ ଦଦାମି । ଯେ ଜ୍ଞାନପ୍ରଭୃତୟୋ ମଜ୍ଜନ୍ନ- କର୍ମ୍ମଣୋର୍ନଶ୍ୱରତ୍ୱଂ ମଦ୍ବିଗ୍ରହସ୍ୟ ମାୟାମୟତ୍ୱଞ୍ଚ ମନ୍ୟମାନାଃ ମାଂ ପ୍ରପଦ୍ୟନ୍ତେ ଅହମପି ତାନ୍ ପୁନଃ ପୁନର୍ନଶ୍ୱରଜନ୍ମକର୍ମବତୋ ମାୟାପାଶପତିତାନେବ କୁର୍ବାଣଃ ତତ୍ପ୍ରତିଫଲଂ ଜନ୍ମମୃତ୍ୟୁଦୁଃଖମେବ ଦଦାମି । ଯେ ତୁ ମଜ୍ଜନ୍ମକର୍ମଣୋ ର୍ନିତ୍ୟତ୍ୱଂ ମଦ୍ବିଗ୍ରହସ୍ୟ ଚ ସଚ୍ଚିଦାନନ୍ଦତ୍ୱଂ ମନ୍ୟମାନାଃ ଜ୍ଞାନିନଃ ଜ୍ଞାନସିଦ୍ଧ୍ୟର୍ଥଂ ମାଂ ପ୍ରପଦ୍ୟନ୍ତେ ତେଷାଂ ସ୍ୱଦେହଦ୍ୱୟଭଙ୍ଗମେବେଚ୍ଛତାଂ ମୁମୁକ୍ଷୂଣାମନଶ୍ୱରଂ ବ୍ରହ୍ମାନନ୍ଦମେବ ସଞ୍ଜାଦୟନ୍ ଭଜନଫଲମାବଦ୍ୟକଜନ୍ମମୃତ୍ୟୁଧ୍ୱଂସମେବ ଦଦାମି । ତସ୍ମାନ୍ନ କେବଲଂ ମଦ୍ଭକ୍ତା ଏବ ମାଂ ପ୍ରପଦ୍ୟନ୍ତେ ଅପିତୁ ସର୍ବଶଃ ସର୍ବେଽପି ମନୁଷ୍ୟାଃ ଜ୍ଞାନିନଃ କର୍ମିଣଃ ଯୋଗିନଶ୍ଚ ଦେବତାନ୍ତରୋପାସକାଶ୍ଚ ମମ ବର୍ତ୍ମ ଅନୁବର୍ତ୍ତନ୍ତେ । ମମ ସର୍ବସ୍ୱରୂପତ୍ୱାତ୍ ଜ୍ଞାନକର୍ମାଦିକଂ ସର୍ବଂ ମାମକମେବ ବର୍ତ୍ମେତିଭାବଃ ।

* କରନ୍ତି । ସୁତରାଂ ଶ୍ରୀକୃଷ୍ଣ ଯେମାନଙ୍କର ଏ ପ୍ରକାର ଈଶ୍ୱର ଜ୍ଞାନର ଭଜନରେ ବଶହୁଅନ୍ତି ଅର୍ଥାତ୍ ଯେମାନଙ୍କର ଅଭୀଷ୍ଟଫଳ ଦାନ କରନ୍ତି କିନ୍ତୁ ସେମାନଙ୍କର ଅଧୀନ ହୁଅନ୍ତି ନାହିଁ । ୧୬।୧୭ ।

ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଅତଏବ ସେ ସ୍ୱାଧୀନ । ସେ ଅଧୀନ ହେବେ କିପରି, ଏହି ହେତୁ ଶ୍ରୀକୃଷ୍ଣ କହୁଅଛନ୍ତି ଯେ ମୋର ଏହାହିଁ ସ୍ୱଭାବ ଯେ ଯେଉଁ ଭକ୍ତ ମୋତେ ଯେଉଁ ଭାବରେ ଭଜନ କରେ ମୁଁ ତାକୁ ସେହି ଭାବରେ ମିଳେଁ । ୧୮ ।

ହେ ପାର୍ଥ ! ମୁଁ ଏକ ହୋଇ ମଧ୍ୟ ବହୁରୂପୀ ଏବଂ ସର୍ବେଶ୍ୱର । ଯେଉଁ ମନୁଷ୍ୟ ମୋର ଯେଉଁ ରୂପକୁ ଯେଉଁ ଭାବରେ ଭଜନ କରେ ମୁଁ ସେହିରୂପରେ ତାହାର ସେହି ଭାବ ଅନୁସାରୀ

| | |
|---|---|
| ତଥାହି ( ଭାଃ ୧୦।୮୨।୪୪ )— | ମାତା ମୋତେ ପୁତ୍ରଭାବେ କରେନ ବନ୍ଧନ । |
| ମୟି ଭକ୍ତିର୍ହି ଭୂତାନାମମୃତତ୍ୱାୟ କଳ୍ପତେ । | ଅତି ହୀନଜ୍ଞାନେ କରେ ଲାଳନ-ପାଳନ । ୨୧ । |
| ଦିଷ୍ଟ୍ୟା ଯଦାସୀନ୍ମତ୍ସ୍ନେହୋ ଭବତୀନାଂ | ସଖା ଶୁଦ୍ଧ-ସଖ୍ୟେ କରେ ସ୍କନ୍ଧେ ଆରୋହଣ । |
| ମଦାପନଃ ॥ ୩ ॥ | ତୁମି କୋନ ବଡ଼ଲୋକ ?—ତୁମି ଆମି ସମ ।୨୨। |

ଏବଂ ଶ୍ରୀକୃଷ୍ଣ କସ୍ୟ ବ୍ୟମୀନୋ ଭବନ୍ତୀତ୍ୟାହ "ମୋର ପୁତ୍ର" ଇତି ଦ୍ୱାଭ୍ୟାଂ । ଶୁଦ୍ଧଭକ୍ତାଃ ଐଶ୍ୱର୍ଯ୍ୟଜ୍ଞାନଶୂନ୍ୟା କେବଳା ତେଃ ନିର୍ମଳପ୍ରେମ ଇତ୍ୟର୍ଥଃ । ତସ୍ମା ରତ୍ୟା ଯୋ ସାମଧାନଂ ମନ୍ୟତେ ତଦ୍ୟାହ୍ୱମଧୀନ ଇତ୍ୟର୍ଥଃ । ଦେବକ୍ୟାଦୀନାଂ ଐଶ୍ୱର୍ଯ୍ୟମିଶ୍ରିତରତିନାବାନେଣାର୍ଥମନ୍ତ ଶୁଦ୍ଧରତ ରିତ୍ୟକ୍ତଂ । ୧୯।୨୦ ।

ମୟି ଭକ୍ତିଃ ( ନବବିଧାନା ଏକାପି ) ଭୂତାନାଂ ( ସର୍ବେଷାମପି ପ୍ରାଣିନାଂ ଇତ୍ୟଧିକାର୍ଯ୍ୟପେକ୍ଷା ନିରସ୍ତା ) ଅମୃତତ୍ୱାୟ ( ଅମୃତାଃ ନିତ୍ୟପାର୍ଷଦାଃ ତେଷାଂ ଭାବଃ ଅମୃତତ୍ୱଂ ତସ୍ମୈ ) କଳ୍ପତେ ( ସମର୍ଥାଯୋଗ୍ୟା ବା ଭବତି ) ଯତ୍ତୁ ଭବତୀନାଂ ମତ୍‌ସ୍ନେହ ଆସୀତ୍ ଦିଷ୍ଟ୍ୟା ( ମଭାଗ୍ୟେ-ନୈବାଭଦନ୍ଦେବ ) । ଯତୋ ( ତତ୍ସ୍ନେହଃ ) ମଦାପନଃ ( ମାଂ ଯତ୍କୁତ୍ରାପି ସ୍ଥିତଂ ଅପସୃତ ବଳାଦାକର୍ଷ୍ୟତ ସ୍ୱକ୍ତରସମୀପମାନୟତି ) । [ ୩ୟ ଶ୍ଳୋକଃ ]

"ମାତା ମୋରେ" ଇତ୍ୟାଦି ଶିରଃପଦ୍ୟେଷୁ ପୁତ୍ରଭାବାଦ ନିବିଧତ୍ୱାଦ୍‌ବେତ୍ତେବୋଧାୟ ବନ୍ଧନାଦ ଭକ୍ତିବିଧ୍ୟବହାରୋ ପ୍ରଦର୍ଶିତଃ । ୨୧ । ୨୨ । ୨୩ । ବି, ଚ,

ଅନୁଗ୍ରହ କରେଁ । ଅତଏବ ମନୁଷ୍ୟମାନେ ସର୍ବପ୍ରକାରେ ସର୍ବମାର୍ଗଦ୍ୱାରା ମୋତେହିଁ ଭଜନ କରନ୍ତୁ । ଅଭିପ୍ରାୟ ଏହି ଯେ ମନୁଷ୍ୟମାନେ ସ୍ୱର୍ଗାଦିଭୋଗ କାମନାରେ ସୂର୍ଯ୍ୟ, ଇନ୍ଦ୍ରାଦି ଦେବତା-ରୂପରେ ମୋତେ ( ଶ୍ରୀକୃଷ୍ଣଙ୍କ ) ଭଜନ କଲେ ମୁଁ ସେହି୨ ଦେବତାରୂପରେ ଭଜନକାରୀଙ୍କୁ ପ୍ରାର୍ଥିତ ଫଳ ପ୍ରଦାନ କରେଁ ଅର୍ଥାତ୍ ଇନ୍ଦ୍ରାଦି ଦେବତାମାନଙ୍କର ପରମାତ୍ମାରୂପରେ ମୁଁ ବର୍ତ୍ତମାନ ଥିବାରୁ ସେମାନଙ୍କର ଭଜନଫଳ ପ୍ରଦାନ କରେ ।

ମୂଳତଃ ମନୁଷ୍ୟମାନେ ଯେଉଁ୨ ମାର୍ଗରେ ଯେଉଁ୨ ଅଭିଳାଷରେ ଯେଉଁ୨ ଦେବତାଙ୍କୁ ଭଜନ କରନ୍ତି ସେମାନେ ସମସ୍ତରୂପରେ କେବଳ ମୋତେହିଁ ଭଜନ କରନ୍ତି ଏବଂ ସେମାନଙ୍କୁ ଅଭିଳଷିତ ଫଳ କେବଳ ମୁହିଁ ଦେଇଥାଏଁ । [ ୨ୟ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣ ଯେବେ ଐଶ୍ୱର୍ଯ୍ୟଜ୍ଞାନମିଶ୍ର ଭକ୍ତମାନଙ୍କର ଅଧୀନ ହୁଅନ୍ତି ନାହିଁ ତେବେ କାହାର ଅଧୀନ ହୁଅନ୍ତି ଏହାର ପରିଚୟ ଦେଉଅଛନ୍ତି । ଯେଉଁମାନେ ମୋତେ ଐଶ୍ୱର୍ଯ୍ୟଜ୍ଞାନଶୂନ୍ୟ ନିର୍ମଳ-ପ୍ରେମରେ ମୋର ପୁତ୍ର, ମୋର ସଖା, ବା ମୋର ପ୍ରାଣନାଥ ବୋଲି ଭଜନ କରନ୍ତି, ମାତାଦି ଆପଣାକୁ ବଡ଼ ମନେକରି ମୋତେ ଲଘୁଭାବରେ ହୀନ ଜ୍ଞାନ କରନ୍ତି, ସଖାମାନେ ସମଜ୍ଞାନ କରନ୍ତି ଏବଂ କାନ୍ତାମାନେ ସ୍ୱାମୀ ଜ୍ଞାନ କରନ୍ତି ଏହିଭାବରେ ନିର୍ମଳପ୍ରେମରେ ଭଜନଶୀଳଭକ୍ତମାନଙ୍କର ମୁଁ ଅଧୀନ ହୁଏଁ । ୧୯।୨୦ ।

ଶ୍ରୀକୃଷ୍ଣ ଗୋପୀମାନଙ୍କୁ କହୁଅଛନ୍ତି ପ୍ରାଣିମାନେ ମୋର ନବବିଧା ଭକ୍ତିମଧ୍ୟରୁ ଯେକୌଣସି ଏକ ଅଙ୍ଗ ଭକ୍ତିଦ୍ୱାରା ସଂସାର ମୋକ୍ଷ ଲାଭକରି ମୋ ଲୋକକୁ ଯାଆନ୍ତି, କିନ୍ତୁ ତୁମ୍ଭମାନଙ୍କର ମୋ ପ୍ରତି ଯେଉଁ ସ୍ନେହ ତଦ୍ୱାରା ମୁଁ ଆପଣାକୁ ଭାଗ୍ୟବାନ୍ ମନେକରେ କାରଣ ମୁଁ ଯେଉଁଠାରେ ଥାଏଁ ତା-ହାକୁହିଁ ସେ ସ୍ନେହ ମୋତେ ବଳପୂର୍ବକ ଆଣି ତୁମ୍ଭମାନଙ୍କ ସହିତ ମିଳିତ କରାଏ ।

ପ୍ରିୟା ଯଦି ମାନ କରି କରଯେ ଭର୍ତ୍ସନ ।
ବେଦସ୍ତୁତି ହୈତେ ହରେ ସେଇ ମୋର ମନ ।୨୩।
ଏଇ ଶୁଦ୍ଧଭକ୍ତ ଲଞା କରିମୁ ଅବତାର ।
କରିବ ବିବିଧବିଧ ଅଦ୍ଭୁତ ବିହାର ।୨୪।

ବୈକୁଣ୍ଠାଦ୍ୟେ ନାହି ଯେ-ଯେ ଲୀଳାର ପ୍ରଚାର ।
ସେ-ସେ ଲୀଳା କରିବ, ଯାତେ ମୋର
ଚମତ୍କାର ।୨୫।

"ଏଇ ଶୁଦ୍ଧ" ଇତି । ଲୋକେ ଐଶ୍ୱର୍ଯ୍ୟମିଶ୍ରିତ ପ୍ରେମତ୍ୱାତ୍ ତାଦୃଶ ଶୁଦ୍ଧଭକ୍ତାନାମ-ଭାବେନ । ତଥା "ଲଞା" ଇତି ପଦେନ ଚ ଏତେ ମାଧୁର୍ଯ୍ୟଃ ନିତ୍ୟମେବ ଅପ୍ରକଟ ବ୍ରଜବିହାରି-ବିରାଜମାନା ଇତ୍ୟାୟାତଂ । ଏତେନ ଚ ପ୍ରେମରସନିର୍ଯ୍ୟାସ ମାସ୍ୱାଦୟିତୁଂ ନିତ୍ୟପରିକରୈଃ ସାନ୍ଦ୍ରାନନ୍ଦଭାଃ ସହାବତରଣ ମିତ୍ୟୁକ୍ତଂ । ନନୁ ନିତ୍ୟପରିକରାଣାଂ ସାନ୍ଦ୍ରାନନ୍ଦାନାଂ ଯଦି ତଦାସ୍ୱାଦନଂ କରିଷ୍ୟତି ତର୍ହି ତାବାବତରଣେନ କିଂ ତତ୍ର ଅପ୍ରକଟବ୍ରଜବିହାରେ ତତ୍ସମ୍ପଦ୍ୟତ ଏବ ଅତଏବ ତତ୍ରାହ "କରିମୁ" ଇତି । ବିବିଧାଭୂତବିହାରେଣ ବିନା ତଦାସ୍ୱାଦନଂ ନ ଭବେଦତସ୍ତଦ୍ବିହାରିତ୍ୱାର୍ଥ୍ୟ ତଦାସ୍ୱାଦୟିତୁମବତରିଷ୍ୟାମୀତ୍ୟର୍ଥଃ ।୨୪। ବି, ଚ,

ନନୁ ତତ୍ରୈବ ଅପ୍ରକଟବିହାରେ ତଦ୍ବିହାରୋ କ୍ରିୟତାମିତ୍ୟତ୍ରାହ ତତ୍ର ଭବେ-ଦିତ୍ୟାହ "ବୈକୁଣ୍ଠାଦ୍ୟେ" ଇତି । ବୈକୁଣ୍ଠାଦୌ ଯଦ୍ୟଦ୍ବିହାରୋ ନ ସମ୍ପଦ୍ୟତେ ତଦର୍ଥ-ମବତରିଷ୍ୟାମୀତି ଭାବଃ ।୨୫। ବି, ଚ,

ଏହାର ତାତ୍ପର୍ଯ୍ୟ ଏହି ଯେ ଯେଉଁମାନେ ମୋତେ ଈଶ୍ୱରଜ୍ଞାନରେ ସମ୍ଭ୍ରମସହିତ ଭକ୍ତି କରନ୍ତି ସେମାନଙ୍କୁ ମୋର ଅଧୀନ କରି ମୋର ଲୋକକୁ ନିଏଁ, କିନ୍ତୁ ଯେଉଁମାନେ ମୋତେ ପରମ ଆତ୍ମୀୟଭାବରେ ରାଗମାର୍ଗରେ ଭକ୍ତି କରନ୍ତି ମୁଁ ସେମାନଙ୍କଦ୍ୱାରା ଆକୃଷ୍ଟ ହୋଇ ସେମାନଙ୍କର ଅଧୀନ ହୁଏ । [ ୬ଷ୍ଠ ଶ୍ଳୋକାର୍ଥ ]

୧୯ଶ ଓ ୨୦ଶ ପୟାରଲିଖିତ ( ପୁତ୍ର, ସଖା, ପ୍ରାଣପତି, ସମ, ହୀନ ) ଏମାନଙ୍କର କ୍ରିୟାର ଉଦାହରଣସ୍ୱରୂପ ୨୧ଶ, ୨୨ଶ ଓ ୨୩ଶ ପୟାର ଲେଖା ହୋଇଅଛି । ୨୧ ରୁ ୨୩ ।

ପ୍ରିୟା ଯଦି ମାନ କରି ମାନପ୍ରକାଶକ ଅକପଟ ଭର୍ତ୍ସନା କରେ ତାହା ପରମ ଆତ୍ମୀୟତାର ଜ୍ଞାପକହେତୁ ବେଦସ୍ତୁତି ଅପେକ୍ଷା ଅର୍ଥାତ୍ ସମ୍ଭ୍ରମସହକୃତ ଅପେକ୍ଷା ମୋର ଅଧିକତର ମନୋ-ହାରୀ ହୁଏ । ୨୩ ।

ଶ୍ରୀକୃଷ୍ଣ ମନେ କଲେ ଉପରୋକ୍ତ ପ୍ରକାରରେ ଭକ୍ତର ଅଧୀନ ହୋଇ ପ୍ରକଟଲୀଳାରେ ପ୍ରେମରସ ନିର୍ଯ୍ୟାସ ଆସ୍ୱାଦନକାରୀ ଜାଗତିକ ଭକ୍ତମାନଙ୍କଠାରୁ ଘଟିପାରିବ ନାହିଁ, କାରଣ ସେମାନଙ୍କର ପ୍ରେମ ଐଶ୍ୱର୍ଯ୍ୟ ଜ୍ଞାନମିଶ୍ରିତ । ଅତଏବ ଗୋଲୋକସ୍ଥ ନିତ୍ୟପରିକରମାନଙ୍କ ସହିତ ମୁଁ ଏ ଧରାଧାମରେ ଅବତୀର୍ଣ୍ଣ ହେବି ଏବଂ ନାନାବିଧ ଅଦ୍ଭୁତ ବିହାର ଅର୍ଥାତ୍ ଯେ ପ୍ରକାର ବିହାର ବା ଲୀଳା ଗୋଲୋକାଦିରେ ଜାତ ନାହିଁ ସେହିପ୍ରକାର ଲୀଳା କରିବି । ଯଦ୍ଦ୍ୱାରେ କି ମୁଁ ନିଜେ ସର୍ବଜ୍ଞ ହୋଇ ସୁଦ୍ଧା ଆଶ୍ଚର୍ଯ୍ୟ ଚମତ୍କୃତ ହେବି ।୨୪।୨୫ ।

ମୋ ବିଷୟେ ଗୋପୀଗଣେର ଉପପତିଭାବେ ।
ଯୋଗମାୟା କରିବେକ ଆପନ ପ୍ରଭାବେ । ୨୬ ।
ଆମିହ ନା ଜାନି ତାହା—ନା ଜାନେ ଗୋପୀଗଣ ।
ଦୁହାଁର ରୂପ-ଗୁଣେ ଦୁହାଁର ନିତ୍ୟ ହରେ ମନ ।୨୭।

କା ନାମ ସା ଲୀଳା କଥମ୍ବା ତତ୍ର ସମ୍ପଦ୍ୟତ ଇତ୍ୟତ୍ର କଥୟିତୁ ଯଦ୍ୟପି ତତ୍ର ଅନ୍ୟୋନ୍ୟେ ବିହାରଃ ସମ୍ପଦ୍ୟତେ କିନ୍ତୁ ପ୍ରକଟଲୀଳାୟାଂ ଯୋଗମାୟା ମୟି ନିତ୍ୟସ୍ୱକାନ୍ତଭାବଭାବିତାନ୍ତଃକରଣାନାଂ ନିତ୍ୟପ୍ରେୟସୀନାଂ ତାସାଂ ଗୋପୀନାଂ ସ୍ୱକାନ୍ତଭାବମାବୃତ୍ୟ ଉପପତିଭାବଂ ପ୍ରକଟୟିଷ୍ୟତି ଇତି ତଦ୍ଭାବଭାବିତଲୀଳାଦିକଂ ବୈକୁଣ୍ଠାଦୌ କୁତ୍ରାପି ନ ସମ୍ପଦ୍ୟତେ ତତ୍ର ନିତ୍ୟ ସ୍ୱକୀୟଭାବତ୍ୱା-ଦିତ୍ୟାଶୟେନାହ "ମୋ ବିଷୟେ" ଇତି । ମଦ୍ବିଷୟେ ଗୋପୀନାମୁପପତିଭାବୋ ଭବିଷ୍ୟତି ଇତି ଶେଷଃ । ନନୁ ନିତ୍ୟପତିଭାବବତୀନାଂ ତାସାଂ କଥମାଗନ୍ତୁକଉପପତିଭାବଜଭବିଷ୍ୟତୀତି ଚେତ୍ତତ୍ର ଯୋଗମାୟାପ୍ରଭାବେଣୈବ ଭବିଷ୍ୟତୀତ୍ୟାହ "ଯୋଗମାୟା" ଇତି । ଯୋଗମାୟା ଅଘଟନଘଟନ-ପଟୀୟସୀ ଶକ୍ତିଃ ମୟି ଗୋପୀନାମୁପପତିଭାବମଘଟମାନମପି ନିଜମହିମ୍ନା ସ୍ୱଶକ୍ତ୍ୟା କରିଷ୍ୟତି କାରୟିଷ୍ୟତୀତ୍ୟର୍ଥଃ "ପରକୀୟାଭାବେ ଅତିଶୟେର ଉଲ୍ଲାସ" ଇତ୍ୟେତତ୍ତୁ ପରକୀୟ ପରମ-ପ୍ରେମ-ରସ-ସାର ମାମାସ୍ୱାଦୟିତୁଂ ତତ୍ତୁ କରିଷ୍ୟତୀତି ଭାବଃ ।

ଅତ୍ର ଉପପତିଭାବ କରିଷ୍ୟତୀତି ଭବିଷ୍ୟନ୍ନିର୍ଦ୍ଦେଶେନ ତଥା କର୍ତ୍ତୃସାଧନେନ ଚ ତସ୍ୟ ଭାବସ୍ୟ ଜନ୍ୟତ୍ୱମାୟାତଂ ତେନାଗନ୍ତୁକ ବିବେଚନୀୟଂ ଭାବେନୈବ ଶ୍ରୀକୃଷ୍ଣଃ ତାସାମୁପପତିଃ ନତୁ ବାସ୍ତବଃ ନିତ୍ୟପତିର୍ଜନ୍ୟୋପପତିତ୍ୱାସମ୍ଭବାତ୍ତୁ ତଥା "ଯାର ପତିବ୍ରତା ଧର୍ମ ବାଞ୍ଛେ ଅରୁନ୍ଧତୀ" ଇତ୍ୟାଦିଗ୍ରନ୍ଥକୃଦ୍ବାକ୍ୟେନ ପରମପତିବ୍ରତାନାଂ "ଶ୍ରିୟଃ କାନ୍ତାଃ କାନ୍ତଃ" ଇତି ବ୍ରହ୍ମସଂହିତାଦି-ବାକ୍ୟେନ ଚ ଶ୍ରୀକୃଷ୍ଣନିତ୍ୟକାନ୍ତାନାଂ ତାସାଂ ପତ୍ୟନ୍ତରକଳ୍ପନାସମ୍ଭବାତ୍ତୁ ନିତ୍ୟକାନ୍ତାତ୍ୱହାନ୍ୟା-ପତ୍ତେଶ୍ଚ । ତଥା ଶ୍ରୀ ଗୋପାଳଚମ୍ପୂବର୍ଣ୍ଣିତ ବୃନ୍ଦାଯୋଗମାୟାସମ୍ବାଦବାକ୍ୟପ୍ରମାଣେନ ଅନ୍ୟପୁରୁଷୈଃ ସହ ତାସାଂ ପାଣିଗ୍ରହଣଂ ମୂଳତଃ ନାସୀତ୍ତୁ ଯେନ ଶ୍ରୀକୃଷ୍ଣସ୍ତାସାମୁପପତିର୍ଭବେତ୍ତୁ । ତଥାଚ ଉଜ୍ଜ୍ୱଳ-ନୀଳମଣୌ "ମାୟାକଳ୍ପିତ ତାଦୃକ୍‌ସ୍ତ୍ରୀ-ଶୀଳନେ ନାନୁସୂୟତେ । ନଜାତୁ ବ୍ରଜଦେବୀନାଂ ପତିଭିଃ ସହ ସଙ୍ଗମଃ । ଟୀକାଚ ଗୈର୍ଗୋପୈର୍ଜାତୁ କଦାଚଦପି ନ ସଙ୍ଗମଃ ନ ପାଣିଗ୍ରହଣସମ୍ବନ୍ଧ ଇତ୍ୟର୍ଥଃ । ଇତ୍ୟେଷା । ଯତ୍ତୁ କ୍ୱଚିତ୍ତୁ ତାସାମନ୍ୟଃପତିଃ ଶ୍ରୂୟତେ ସତ୍ତୁ ଯୋଗମାୟାକଳ୍ପିତ ଏବ । ତଥାହି ଦଶମେ "ନାସୂୟନ୍ ଖଳୁ କୃଷ୍ଣାୟ ମୋହିତାସ୍ତସ୍ୟ ମାୟୟା । ମନ୍ୟମାନାଃ ସ୍ୱପାର୍ଶ୍ୱସ୍ଥାନ୍ ସ୍ୱାନ୍ ସ୍ୱାନ୍ ଦାରାନ୍ ବ୍ରଜୌକସଃ ଇତି । ସବିସ୍ତର ମେତତ୍ତୁ ବୈଷ୍ଣବତୋଷଣ୍ୟାଦୌ ଦ୍ରଷ୍ଟବ୍ୟଂ । ଉପପତିର୍ଯଥା ଉଜ୍ଜ୍ୱଳନୀଳମଣୌ । ରାଗେଣୋଲ୍ଲଙ୍ଘୟନ୍ ଧର୍ମଂ ପରକୀୟାବଳାର୍ଥିନା । ତଦୀୟପ୍ରେମସର୍ବସ୍ୱୋ ବୁଧୈ-ରୁପପତିଃ ସ୍ମୃତଃ । ପରକୀୟା ଯଥା ତତ୍ରୈବ । ରାଗେଣୈବାର୍ପିତାତ୍ମାନୋ ଲୋକଯୁଗ୍ମାନପେକ୍ଷିଣା । ଧର୍ମେଣାସ୍ୱୀକୃତା ଯାସ୍ତୁ ପରକୀୟା ଭବନ୍ତି ତାଃ । ଇତି । ୨୬ । ବି, ଟି,

ନନୁ ଉପପତିଭାବେ ଅବାସ୍ତବେ ସତି କଥଂ ତଦ୍ରସସ୍ୟ ପ୍ରକୃତମାସ୍ୱାଦନଂ ଭବିଷ୍ୟତି ଏତଦ ବାସ୍ତବମିତି ଜ୍ଞାନସଦ୍ଭାବାଦିତି ଚେଦିତ୍ୟାହ "ଆମିହ" ଇତି ଏଷ ଉପପତିଭାବଃ ନ ବାସ୍ତବ ଇତ୍ୟହଂ ନ ଜ୍ଞାସ୍ୟାମି ତଥା ଗୋପ୍ୟୋଽପି ନ ଜ୍ଞାସ୍ୟନ୍ତି କିନ୍ତୁ ବାସ୍ତବ ଏବ ଇତି ପ୍ରକୃତଜ୍ଞାନେନ ତସ୍ୟ ପ୍ରକୃତ-ମାସ୍ୱାଦନଂ ଭବିଷ୍ୟତି ଇତିଭାବଃ । ତଥାହି ଲଳିତମାଧବେ "ଚନ୍ଦ୍ରାବଳୀ..." ଭବିଷ୍ୟତି । ତଥାହି ଆହ୍ନିକକୌମୁଦ୍ୟାଂ "ଛାୟାକାନ୍ତକୁଳଂ ବଧ୍ୱାସ୍ତୁ ସୃଜନ୍ତୀ ଭର୍ତ୍ତୀନ୍ ଗୁରୂନପ୍ୟଟ ସ୍ୱସ୍ୱାଭ୍ୟାସଗତା ଇବ ପ୍ରବିଭ୍ରୁଷଃ ସମ୍ମୋହୟନ୍ତୀ ମିଥଃ । ସାହାଯ୍ୟଂ କୁରୁତେତୟୋଂ ଭଗବତୀ ଶ୍ରୀଯୋଗମାୟୈବ ସା ତାସାଂ ତାସ୍ତୁ ନ ତଦ୍ୱିଦନ୍ତି ତଦହୋ ଜାନାତୁ କୋଽନ୍ୟୋଽନୁଜ୍ଞସା ଇତି । ସ୍ମରନ୍ନୁପସର୍ଗସ୍ୟ "ଆମିହ ନାଜାନିମ୍" ଇତି ବାକ୍ୟାମନୁପପନ୍ନମିତି ନାଶଙ୍କନୀୟଂ ଯତଃ

ଧର୍ମ୍ମ ଛାଡ଼ି ରାଗେ ଦୁହେଁ କରଯେ ମିଳନ ।
କଭୁ ମିଳେ, କଭୁ ନା ମିଳେ,—ଦୈବେର
ଘଟନ । ୨୮ ।

ଏଇ ସବ ରସନିର୍ଯ୍ୟାସ କରିବ ଆସ୍ୱାଦ ।
ଏଇ-ଦ୍ୱାରେ କରିବ ସବ ଭକ୍ତେରେ ପ୍ରସାଦ ।୨୯।
ବ୍ରଜେର ନିର୍ମ୍ମଲ ରାଗ ଶୁନି ଭକ୍ତଗଣ ।
ରାଗମାର୍ଗେ ଭଜେ ଯେନ ଛାଡ଼ି ଧର୍ମ୍ମକର୍ମ୍ମ । ୩୦ ।

ନରଲୀଳାରସଃ ସର୍ବଥା ରକ୍ଷଣୀୟଃ । ଅତଏବ ଯୋଗମାୟୟୈବ ବିନା ସ ଲୀଳାରସଃ ରକ୍ଷିତୁମଶକ୍ୟଃ । ତେନଚ ଉଭୟୋଃ ରୂପଗୁଣେ ଉଭୟୋ ର୍ମନଃ ନିତ୍ୟଂ ହରତି । ୨୭ । ବି, ଚ,

ଅତ ଉପପତିଭାବ ଇତି କର୍ତ୍ତୃପଦଂ ଉଭୟଂ ଧର୍ମଂ ତ୍ୟାଜୟିତ୍ୱା ମିଳନଂ କାରୟିଷ୍ୟତୀ-ତ୍ୟର୍ଥଃ । ୨୮ । ବି, ଚ,

"ପ୍ରେମରସନିର୍ଯ୍ୟାସ" ଇତି ଯଦୁକ୍ତଂ ତଦୁପସଂହରତି "ଏଇସବ" ଇତି । ଏତେଷାଂ ସର୍ବେଷାଂ ବାତ୍ସଲ୍ୟାଦୀନାଂ ରସାନାଂ ନିର୍ଯ୍ୟାସଃ ପରମୋତ୍କର୍ଷଃ ଏତଦେବ ଶ୍ରୀକୃଷ୍ଣାବତାରେ ପ୍ରଥମ-କାରଣ ମତ୍ର ମିତି ଜ୍ଞେୟଂ । ୨୯ । ବି, ଚ,

ପ୍ରେମରସନିର୍ଯ୍ୟାସାସ୍ୱାଦନଂ ବିବୃତ୍ୟ ରାଗଭକ୍ତିପ୍ରଚାରଂ ବିବୃଣୋତି "ଏଇ" ଇତି । ଏଇଦ୍ୱାରେ ଏତେନ ରସନିର୍ଯ୍ୟାସାସ୍ୱାଦନ-ଦ୍ୱାରେଣେତ୍ୟର୍ଥଃ । ୩୦ । ପ୍ରସାଦମେବାହ "ବ୍ରଜେର" ଇତି । ଭଜେ ଯେନ ମଂ ଯଥା ଅବଶ୍ୟଂ ଭଜେଦିତ୍ୟର୍ଥଃ । ୩୧ । ବି, ଚ,

ଶ୍ରୀକୃଷ୍ଣଙ୍କର ନିତ୍ୟଧାମରେ ( ଗୋଲୋକଧାମରେ ) ଗୋ, ଗୋପ, ଗୋପୀମାନେ ନିତ୍ୟ-ପରିକର । ଶ୍ରୀକୃଷ୍ଣ ସେମାନଙ୍କର ଏକମାତ୍ର ଭଜନୀୟହେତୁ ସେମାନେ ସମସ୍ତେ ଶ୍ରୀକୃଷ୍ଣଙ୍କର ଭକ୍ତ । ସେମାନେ ପୁଣି ଶ୍ରୀକୃଷ୍ଣଙ୍କର ଲୀଳାରସ ଆସ୍ୱାଦନର ବିଷୟ ହେତୁ ମାତା, ପିତା, ଭ୍ରାତା, ସଖା, ସଖୀ, କାନ୍ତା ଓ ଦାସ, ଦାସୀଭାବରେ ଶ୍ରୀକୃଷ୍ଣଙ୍କୁ ଭଜନ କରନ୍ତି । କାନ୍ତାମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ପତିଭାବ ନିତ୍ୟ ଏବଂ ସ୍ୱତଃସିଦ୍ଧ । ତେଣୁ ଏହି ଅନବଚ୍ଛିନ୍ନ ଦାମ୍ପତ୍ୟପ୍ରଣୟରେ ଅଜ୍ଞତାବଶତଃ ଉପପତି ଓ ପରକୀୟାଭାବର ଯେ ରସ ତାହାର ଉପଭୋଗ ଗୋଲୋକଧାମରେ ହୋଇପାରେ ନା । ତେଣୁ ଶ୍ରୀକୃଷ୍ଣ ଭାବିଲେ ଯେ ମୁଁ ନିତ୍ୟପରିକରମାନଙ୍କ ସହିତ ପୃଥିବୀରେ ପ୍ରକଟଲୀଳା କରି ମୋର ସ୍ୱରୂପଶକ୍ତି ଯୋଗମାୟାଙ୍କ ପ୍ରଭାବଦ୍ୱାରା ଅର୍ଥାତ୍ ଅଘଟନଘଟନପଟୀୟସୀ ଶକ୍ତିଦ୍ୱାରା ଆମ୍ଭେମାନେ ସମସ୍ତେ ଆବୃତ ହୋଇ ଅଜ୍ଞବତ୍ ମୋର ପ୍ରେୟସୀମାନଙ୍କ ସହିତ ମୁଁ ଉପପତିରୂପେ ଏବଂ ସେମାନେ ପରକୀୟାରୂପେ ମଧୁରରସ ଆସ୍ୱାଦନ କରିବୁଁ । ୨୭ ।

ଅଘଟନଘଟନପଟୀୟସୀ ଯୋଗମାୟାଙ୍କଦ୍ୱାରା ଆମ୍ଭେମାନେ ଏପରି ବିମୋହିତ ହେବୁଁ ଯେ ଗୋପୀମାନେ ଯେ ମୋର ନିତ୍ୟ ପ୍ରିୟା ତାହା ମୁଁ ଜାଣି ପାରିବିନାହିଁ କିମ୍ବା ମୁଁ ଯେ ସେମାନଙ୍କର ପତି ସେମାନେ ମଧ୍ୟ ତାହା ଜାଣି ପାରିବେନାହିଁ କିନ୍ତୁ ଆମ୍ଭେମାନେ ପରସ୍ପର ପରସ୍ପରଙ୍କ ରୂପଗୁଣଦ୍ୱାରା ସର୍ବଦା ବିମୋହିତ ହୋଇ ଆକୃଷ୍ଟ ହେବୁଁ । ତେଣୁ ଯୋଗମାୟା ଆମ୍ଭମାନଙ୍କୁ ବିଧିମାର୍ଗର ଧର୍ମ ପ୍ରତି-ପାଦିତ ପତିପତ୍ନୀଭାବରେ ଆବଦ୍ଧ ନ କରି ଶୁଦ୍ଧ ଅନୁରାଗଦ୍ୱାରା ଆମ୍ଭମାନଙ୍କର ମିଳନ କରାଇବେ; ଏପରି ମିଳନ ଦୈବଘଟନାତୁଲ୍ୟ କେତେବେଳେ ସଂଘଟିତ ହେବ କେତେବେଳେ ବା ନ ହେବ । ଅର୍ଥାତ୍ ଆମ୍ଭେମାନେ ଯୋଗମାୟାଙ୍କଦ୍ୱାରା ଏପରି ଭାବରେ ମୋହିତ ହେବୁଁ ଯେ ଆମ୍ଭେମାନେ ସାଧା-ରଣ ଜୀବତୁଲ୍ୟ ମିଳନ ବା ବିଚ୍ଛେଦକୁ ଦୈବର ଅନୁଗ୍ରହ ବା ନିଗ୍ରହ ବୋଲି ମନେ କରିବୁଁ । ଯୋଗମାୟାଙ୍କ ଦ୍ୱାରା ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର ଏପ୍ରକାର ମୋହ ନରଲୀଳାର ସହାୟକାରୀ । ୨୭।୨୮।

ତଥାହି ( ଭାଃ ୧୦।୩୩।୩୬ )—
ଅନୁଗ୍ରହାୟ ଭକ୍ତାନାଂ ମାନୁଷଂ ଦେହମାଶ୍ରିତଃ ।
ଭଜତେ ତାଦୃଶୀଃ କ୍ରୀଡ଼ାଃ ଯାଃ ଶ୍ରୁତ୍ୱା
ତତ୍ପରୋ ଭବେତ୍ ॥ ୪ ॥

ଭବେତ୍ କିମ୍ବା ବିଧିଲିଙ୍ ସେଇ ଇହା କୟ—
କର୍ତ୍ତବ୍ୟ ଅବଶ୍ୟ ଏଇ, ଅନ୍ୟଥା ପ୍ରତ୍ୟବାୟ ।୩୧।
ଏଇ ବାଞ୍ଛା ଯୈଛେ କୃଷ୍ଣ-ପ୍ରାକଟ୍ୟ-କାରଣ ।
ଅସୁର-ସଂହାର ଆନୁଷଙ୍ଗ ପ୍ରୟୋଜନ । ୩୨ ।

(ଭଗବାନ୍) ଭକ୍ତାନାଂ (ପ୍ରପଞ୍ଚଗତାନାଂ ଅପି ଭକ୍ତଶରେନ ବ୍ରଜଦେବୋ ବ୍ରଜଜନାଶ୍ଚ ସର୍ବେ କାଳବସ୍ତୁହସ୍ତକନୋଽନ୍ୟେ ବୈଷ୍ଣବାଶ୍ଚ ଗୃହୀତାଃ ବ୍ରଜଦେବାନାଂ ପୂର୍ବରାଗାଦ୍ଭିଃ ବ୍ରଜଜନାନାଂ କ୍ରନ୍ଦନଭରଅନ୍ୟେଷାଞ୍ଚ ଶ୍ରବଣାଦଭିରପୂର୍ବସ୍ଫୁରଣାତ୍ ) ଅନୁଗ୍ରହାୟ ମାନୁଷଂ (ମର୍ତ୍ତ୍ୟଲୋକରୂଢଂ—ବରାଡ଼୍ଦେହାଂଶଂ) ଦେହଂ (ଶରୀରଂ) ଆଶ୍ରିତଃ (ତତ୍ର ପ୍ରକଟୋଽଭୂତ୍) ତାଦୃଶୀଃ (ସର୍ବଚିତ୍ତାକର୍ଷିଣୀଃ) କ୍ରୀଡ଼ାଃ ଭଜତେ (କରୋତି) ଯାଃ କ୍ରୀଡ଼ାଃ (ତାଦୃଶଭକ୍ତପ୍ରସଙ୍ଗେନ) ଶ୍ରୁତ୍ୱା ( ଭକ୍ତେଭ୍ୟୋଽନ୍ୟୋଽପି ଜନଃ ) ତତ୍ପରଃ ( ଶ୍ରୀ ଭଗବତ୍କଥାଶ୍ରବଣକୀର୍ତ୍ତନାଦିପରାୟଣଃ ) ଭବେତ୍ । ଶ୍ଳୋକାର୍ଥଃ ଯଥା । "ଭକ୍ତାନାଂ ଅନୁଗ୍ରହାୟ ତାଦୃଶୀଃ କ୍ରୀଡ଼ାଃ ଭଜତେ ମାନୁଷଂ ଦେହଂ ଆଶ୍ରିତଃ (ଜୀବଃ) ଯାଃ (କ୍ରୀଡ଼ାଃ) ଶ୍ରୁତ୍ୱା ତତ୍ପରଃ (ତଦ୍ବିଷୟକ ଶ୍ରଦ୍ଧାବାନ୍) ଭବେତ୍ । [୪ ର୍ଥ ଶ୍ଳୋକ]

ଜଗୁପ୍ସିତଂ କମତଃପ୍ରାୟଂ କୃତବାନତ ଦ୍ୱିତୀୟପ୍ରଶ୍ନସ୍ୟୋତ୍ତରମାହ ଅନ୍ୱିତି । ଭକ୍ତାନାମନୁଗ୍ରହାୟ ତାଦୃଶୀଃ କ୍ରୀଡ଼ାଃ ଭଜତେ ଯାଃ ଶ୍ରୁତ୍ୱା ମାନୁଷଂ ଦେହମାଶ୍ରିତୋ ଜୀବଃ ତତ୍ପରଃ ତଦ୍ବିଷୟକଶ୍ରଦ୍ଧାବାନ୍ ଭବେଦତ କ୍ରୀଡ଼ାନ୍ତରତୋ ବୈଲକ୍ଷଣ୍ୟେନ ମଧୁରରସମୟ୍ୟାଃ ଅସ୍ୟାଃ କ୍ରୀଡ଼ାୟା ସ୍ତାଦୃଶୀ ମନ୍ତ୍ରି-ମନ୍ତ୍ର-ମହୌଷଧାନାମିବ କାଚଦର୍ତ୍ତକ୍ୟା ଶକ୍ତିରସ୍ତୀତ୍ୟବଗମ୍ୟତେ । ତଥୈବ ମାନୁଷ୍ୟଦେହବତୈବ ତଭକ୍ତାବଧିକାରତ୍ୱଂ ମୁଖ୍ୟମିତ୍ୟପି ପ୍ରତଂ । "ବନ୍ଦିତଦ୍ୟଂ ଶମିଚ୍ଛଭିଃ ଭକ୍ତଦନ୍ନତ୍ର କୃଷ୍ଣବତ୍ । ଚିତ୍ତ୍ୟସ୍ତଂ ଭକ୍ତିଶାସ୍ତ୍ରାଣାଂ ତାତ୍ପର୍ଯ୍ୟସ୍ୟ ବିନଶ୍ୱଶ୍ୟଃ" । ଇତ୍ୟାଦ ସିଦ୍ଧାନ୍ତତସ୍ମା ତତ୍ପରୋଭବେଦିତ୍ୟସ୍ୟ ତତ୍କ୍ରୀଡ଼ାଶ୍ରବଣ-ପରୋଭବେତ୍ ଇତ୍ୟେବାର୍ଥଃ ନତୁ ଅନ୍ୟୋ ଦୁଷ୍ଟାର୍ଥଃ । ୪ । ବି, ଚ,

ଶ୍ଳୋକୋକ୍ତ " ଭଗବତ୍ " ଇତ୍ୟସ୍ୟାର୍ଥମାହ " ଭବେ " ଇତି । ବିଧିଲିଙ୍ ଅକରଣେ ପ୍ରତ୍ୟବାୟୋ ବୋଧ୍ୟଃ । ୩୧ । ବି, ଚ,

ଏଇ ବାଞ୍ଛା ରାଗଭକ୍ତିପ୍ରଚାରେଚ୍ଛା ଇତି ଶ୍ରୀକୃଷ୍ଣାବତାରେ ଦ୍ୱିତୀୟକାରଣମୁକ୍ତମିତି ଜ୍ଞେୟଂ । ୩୨ । ବି, ଚ,

ଏହି ପ୍ରକାର ବିଶୁଦ୍ଧ ଅନୁରାଗଜନିତ ନିର୍ମଳ ମଧୁର ରସର ସାର ଆସ୍ୱାଦନ କରିବି ଏବଂ ଏହି ପ୍ରକାର ଲୀଳାଦ୍ୱାରା ଭକ୍ତମାନଙ୍କୁ ଅନୁଗ୍ରହ କରିବି ଅର୍ଥାତ୍ ଭକ୍ତମାନେ ମୋର ଏହି ଶ୍ରୀବୃନ୍ଦାବନ-ଲୀଳା ଶ୍ରବଣ ଓ ଆଲୋଚନା ଦ୍ୱାରା ତଦ୍ଭାବରେ ଭାବିତ ହୋଇ ଧର୍ମକର୍ମ (କାମ୍ୟ କାମନା ସମ୍ବନ୍ଧ) ଓ ଜ୍ଞାନ ଛାଡ଼ି ମୋପ୍ରତି ବିଶୁଦ୍ଧ ଅନୁରାଗମୟୀ ଭକ୍ତି କରିବେ, ଅର୍ଥାତ୍ ରାଗମାର୍ଗରେ ଭଜନ କରିବେ । ୨୯।୩୦ ।

ଶ୍ରୀ ପରୀକ୍ଷିତ ମହାରାଜା ଶ୍ରୀ ଶୁକଦେବ ଗୋସ୍ୱାମୀଙ୍କୁ ଶ୍ରୀମଦ୍ ଭାଗବତର ୧୦ମ ୩୩–୨୮ଶ ଶ୍ଳୋକଦ୍ୱାରା ପ୍ରଶ୍ନ କରିଅଛନ୍ତି ଯେ ଶ୍ରୀକୃଷ୍ଣ ଆପ୍ତକାମ ହୋଇ କି ସକାଶେ ରାସଲୀଳା କରିଥିଲେ । ଏହି ସନ୍ଦେହ ମୋଚନ କରିବା ହେଉନ୍ତୁ । ତାହାର ଉତ୍ତରସ୍ୱରୂପ ଶ୍ରୀ ଶୁକଦେବ ଗୋସ୍ୱାମୀ ଏହି ଶ୍ଳୋକ କହିଅଛନ୍ତି ।

ଶ୍ରୀକୃଷ୍ଣ ଭକ୍ତମାନଙ୍କ ପ୍ରତି ଅନୁଗ୍ରହ କରିବାସକାଶେ ମନୁଷ୍ୟରୂପରେ ପ୍ରକଟ ହୋଇ ସର୍ବଚିତ୍ତାକର୍ଷକ ବିବିଧ ଲୀଳା କରିଥିଲେ, ଯେ ଲୀଳା ବିଷୟ ଶ୍ରବଣ କରି ମନୁଷ୍ୟମାନେ ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରକ୍ତ ହେବେ ।

ଏଇମତ ଚୈତନ୍ୟକୃଷ୍ଣ ପୂର୍ଣ୍ଣ ଭଗବାନ ।
ଯୁଗଧର୍ମ-ପ୍ରବର୍ତ୍ତନ ନହେ ତାଁର କାମ । ୩୩ ।
କୋନ କାରଣେ ଯବେ ହୈଲ ଅବତାରେ ମନ ।
ଯୁଗଧର୍ମ କାଲ ହୈଲ ସେ-କାଲେ ମିଲନ । ୩୪ ।

ଶ୍ରୀକୃଷ୍ଣାବତାର କାରଣ ମୁକ୍ତ୍ୱା ଶ୍ରୀଚୈତନ୍ୟାବତାରମୁଖ୍ୟକାରଣଂ ବକ୍ତୁମାଦୌ ଗୌଣ-କାରଣମାହ "ଏଇମତେ" ଇତି । ଏଇ ମତେ ଶ୍ରୀକୃଷ୍ଣାବତାର ପ୍ରକାରେଣ ସ୍ୱୟଂ ପୂର୍ଣ୍ଣ ଭଗବତ୍‌କୃଷ୍ଣତ୍ୱେନ ଶ୍ରୀଚୈତନ୍ୟସ୍ୟ ନ କାର୍ଯ୍ୟଂ ଯୁଗଧର୍ମପାଳନଂ । "ସ୍ଥିତିକର୍ତ୍ତା ବିଷ୍ଣୁ କରେ ଜଗତ୍‌ପାଳନ" ଇତି ପ୍ରମାଣତସ୍ତୁ ତତ୍‌ପଦସ୍ୟାବତାରଣେନ ବିଷ୍ଣୁନୈବ ତତ୍ କର୍ତ୍ତବ୍ୟମିତି ତତ୍ତୁ ଗୌଣକାରଣମିତି ଭାବଃ । ୩୩ । ବି, ଚ,

"କିନ୍ତୁ କୃଷ୍ଣେର ଯେଇ ହୟ ଅବତାର କାଲ" ଇତ୍ୟାଦି ପଦ୍ୟେନ ଶ୍ରୀକୃଷ୍ଣାବତାରେ ଯଦ୍‌ଯଦ୍ ଯୁଗାବତାରାଣାଂ ତଥା ତମସ୍ୟାଦୀନାଂ ମିଳନାଦିକମଭବତ୍ ତଦାଦିକଞ୍ଚ ଶ୍ରୀଚୈତନ୍ୟାବତାରେଽପି ନଚେତ୍ ଯୁଗାବତାରକୃତଂ ଯୁଗଧର୍ମପ୍ରବର୍ତ୍ତନଂ ନ ଭବେତ୍ । କିନ୍ତୁ ପୂର୍ବସ୍ମିନ୍ନକଥନେ ପୁନରୁକ୍ତତା ସ୍ୟାଦିତ୍ୟତ୍ର ସ୍ମାରୟିତୁଂ ତଦିତ୍ୟମାବଂ ଦର୍ଶୟତି "କୋନ" ଇତି । କୋନ କାରଣେ ଇତ୍ୟେବ ପଦନିର୍ଦ୍ଦିଷ୍ଟକାରଣଂ ତଦେବାହ ଗୃହ୍ୟତେ । ଶ୍ରୀକୃଷ୍ଣାବତାରବତ୍ ଶ୍ରୀଚୈତନ୍ୟାବତାରେଽପି ଯୁଗାବତାରାଦୀନାଂ ସର୍ବେଷାଂ ତତ୍ରମିଳନଂ ଭବେଦତଃ ନନ୍ଦାନ୍ତର୍ଭୂତେନ ଶ୍ରୀବିଷ୍ଣୁନୈବ ଶ୍ରୀଚୈତନ୍ୟଃ ଯୁଗଧର୍ମଂ ପ୍ରବର୍ତ୍ତୟତି ଏତେନ କଳିଯୁଗଧର୍ମପ୍ରବର୍ତ୍ତନଂ ଶ୍ରୀଚୈତନ୍ୟାବତାରେ ଆନୁଷଙ୍ଗିକଂ କାରଣମିତି ଭାବଃ । ୩୪ । ବି, ଚ,

---

ଅଥବା ଶ୍ରୀକୃଷ୍ଣ ଭକ୍ତମାନଙ୍କୁ ଅନୁଗ୍ରହ କରିବା ସକାଶେ ଯେଉଁ ମନୋହର ଲୀଳା କରିଥିଲେ ଯେଉଁ ଲୀଳାବିଷୟ ଶ୍ରବଣକରି ମନୁଷ୍ୟଦେହଧାରୀ ଜୀବମାନେ ଶ୍ରୀକୃଷ୍ଣ ଓ ତାହାଙ୍କର ଲୀଳାବିଷୟରେ ଶ୍ରଦ୍ଧାବାନ୍ ହେବେ ।

ଏହି ଶ୍ଳୋକର ଭାବ ଏହି ଯେ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଓ ଏକମାତ୍ର ସେବ୍ୟ ଏବଂ ତାହାଙ୍କର ନିତ୍ୟପରିକର ମାତା, ପିତା, ସଖା ଓ କାନ୍ତାମାନେ ତାହାଙ୍କୁ ନିତ୍ୟସ୍ଥାନର ପୁତ୍ର, ସଖା ଓ ପତିରୂପରେ ଭଜନ କଲେ ସୁଦ୍ଧା ନିତ୍ୟସ୍ଥାନ ଚିନ୍ମୟ ହେତୁ ଏବଂ ଉପରୋକ୍ତ ପରିକରମାନେ ଚିନ୍ମୟ ହେତୁ ସେମାନଙ୍କର ଶ୍ରୀକୃଷ୍ଣଙ୍କପ୍ରତି ସେବ୍ୟଜ୍ଞାନ ସ୍ୱତଃସିଦ୍ଧ ଥାଏ । ତେଣୁ ଶ୍ରୀକୃଷ୍ଣ ଓ ପରିକରମାନଙ୍କ ମଧ୍ୟରେ ଆତ୍ୟନ୍ତିକ ମମତାଜନକ ବିହାର ଅର୍ଥାତ୍ ପ୍ରତ୍ୟେକ ପ୍ରତ୍ୟେକର ଅପରିଚିତପରି ଅଥଚ ପ୍ରତ୍ୟେକେ ପ୍ରତ୍ୟେକର ରୂପଗୁଣଦ୍ୱାରା ଆକୃଷ୍ଟ ହୋଇ ଯେ ଲୀଳା କରାଯାଏ ତାହା ଗୋଲୋକରେ ହୋଇ ପାରେ ନା । ତେଣୁ ଶ୍ରୀକୃଷ୍ଣ ସମସ୍ତ ପରିକର ସହିତ ଶ୍ରୀବୃନ୍ଦାବନଧାମରେ ଅବତୀର୍ଣ୍ଣ ହୋଇ ଯୋଗମାୟାଙ୍କଦ୍ୱାରା ସମସ୍ତଙ୍କର ଚିନ୍ମୟତ୍ୱ ଆଚ୍ଛନ୍ନ କରି ମନୁଷ୍ୟବିଗ୍ରହ ଧାରଣକଲେ । ଏ ପ୍ରକାର ମନୁଷ୍ୟବିଗ୍ରହ ଧାରଣ କରିବାଦ୍ୱାରା ଶ୍ରୀକୃଷ୍ଣ ନିତ୍ୟଲୋକର ଭକ୍ତମାନଙ୍କୁ ସେମାନଙ୍କର ଭାବଅନୁଯାୟୀ ଯେଉଁ ଲୀଳାରସ ଆସ୍ୱାଦନ କରାଇଲେ । ଅର୍ଥାତ୍ ସେମାନଙ୍କର ଶ୍ରୀକୃଷ୍ଣଙ୍କପ୍ରତି ସେବ୍ୟସେବକ ଜ୍ଞାନ ନ ଥିଲା ଅଥଚ ଶ୍ରୀକୃଷ୍ଣଙ୍କ ମନୁଷ୍ୟବିଗ୍ରହ ସ୍ୱୀକୃତ ରୂପଗୁଣଦ୍ୱାରା ସେମାନେ ଆକୃଷ୍ଟ ହୋଇ ଧର୍ମକର୍ମ ତ୍ୟାଗକରି ଶ୍ରୀକୃଷ୍ଣସେବାରେ ବିଶୁଦ୍ଧ ଅନୁରାଗର ସହିତ ସର୍ବଦା ରତହେଲେ । ଏହି ଲୀଳାମାନଙ୍କର ଅଭିନୟଦ୍ୱାରା ଶ୍ରୀକୃଷ୍ଣ ସାଧକ ଭକ୍ତମାନଙ୍କୁ ଅନୁଗ୍ରହ କରିଅଛନ୍ତି । ଅର୍ଥାତ୍ ସାଧକ ଭକ୍ତମାନେ ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଲୀଳାବିଷୟ ଶ୍ରବଣକରି ତଦନୁଗ ଲୀଳାପରିକରମାନଙ୍କ ଆନୁଗତ୍ୟରେ ଯେଉଁ ରସଦ୍ୱାରା ଶ୍ରୀକୃଷ୍ଣଙ୍କୁ ଧର୍ମକର୍ମ ଛାଡ଼ି ଭଜନ କରିବେ ବା ଭଜନ କାର୍ଯ୍ୟରେ ଉଦ୍ୟୋଗୀ ହେବେ । ଏହି ପ୍ରକାରରେ ପ୍ରଥମେ ଶ୍ରଦ୍ଧା ପରେ ରତି ଓ ତତ୍ପରେ ପ୍ରେମଭକ୍ତି ଉଦୟ ହେବ । ଏ ଶ୍ଳୋକର ଯେ ଅନ୍ୟ

| | |
|---|---|
| ଦୁଇ ହେତୁ ଅବତରି ଲଞା ଭକ୍ତଗଣ । | ସେଇ-ଦ୍ୱାରେ ଆଚଣ୍ଡାଲେ କୀର୍ତ୍ତନ ସଞ୍ଚାରେ । |
| ଆପନେ ଆସ୍ୱାଦେ ପ୍ରେମ ନାମସଙ୍କୀର୍ତ୍ତନ । ୩୫ । | ନାମପ୍ରେମ-ମାଲା ଗାନ୍ଥି ପରାଇଲ ସଂସାରେ । ୩୬ । |

ପ୍ରେମରସନିର୍ଯାସାସ୍ୱାଦନଂ ତଥା ଲୋକେ ରାଗଭକ୍ତିପ୍ରଚାରଣମିତି ଦ୍ୱୟଂ ଯଥା ଶ୍ରୀକୃଷ୍ଣାବତାରେ ମୁଖ୍ୟହେତୁରୁକ୍ତଃ ତଦ୍ୱତ୍ ତଦ୍ୱୈବ ଶ୍ରୀଚୈତନ୍ୟାବତାରେଽପି ମୁଖ୍ୟହେତୁଦ୍ୱୟମାହ "ଦୁଇ ହେତୁ" ଇତି । ତତ୍ର ଆତ୍ମନା ନାମ ପ୍ରେମାସ୍ୱାଦନଂ ତଦ୍ୱାରେଣୈବ ନାମ ସଙ୍କୀର୍ତ୍ତନପ୍ରେମ-ସଞ୍ଚାର ଇତିଦ୍ୱୟଂ ତଦବତାରେ ହେତୁଃ । ଯତ୍ତୁ "ଶ୍ରୀରାଧାୟାଃ ପ୍ରଣୟମହିମା" ଇତ୍ୟାଦ ହେତୁତ୍ରୟ-ମୁକ୍ତଂ ତଦପି ଆସ୍ୱାଦ୍ୟତ୍ୱେନ ପ୍ରେମାସ୍ୱାଦନାନ୍ତର୍ଭୂତତ୍ୱାତ୍ ପ୍ରେମାସ୍ୱାଦନଂ ଏକ ଏବ ହେତୁରୁକ୍ତଃ ଅଥବା "ଅତି ଗୂଢ଼ହେତୁ ସେଇ ତ୍ରିବିଧପ୍ରକାର" ଇତ୍ୟନେନ ଏକସ୍ୟୈବ ହେତୋଃ ପ୍ରକାରଭେଦଂ ତତ୍ତ୍ରୟଂ ଅତଃ ଅଗ୍ରହମଧ୍ୟେ ହେତୁମାତ୍ରମୁକ୍ତଂ କିନ୍ତୁ ବିଶିଷ୍ୟ ତନ୍ନୋକ୍ତଂ । କୀର୍ତ୍ତନ-ସଞ୍ଚାର ଇତ୍ୟତ୍ର ଯୁଗାବତାରତ୍ୱ ବିଶେଷମାହ "ନାମ" ଇତି । ନାମ ପ୍ରେମପ୍ରଚାରିତବାନିତ୍ୟର୍ଥଃ । ୩୫।୩୬ । ବି, ଚ,

କିନ୍ତୁ କୁତ୍ସିତ ଅର୍ଥ ନାହିଁ ଏହା ଶ୍ରୀମନ୍ ବିଶ୍ୱନାଥ ଚକ୍ରବର୍ତ୍ତୀ ମହାଶୟ ମଧ୍ୟ ଦେଖାଇ ଅଛନ୍ତି ।
[ ୪ର୍ଥ ଶ୍ଳୋକାର୍ଥ ]

ଉପରୋକ୍ତ ଶ୍ଳୋକସ୍ଥ "ସ୍ଫୁରତୁ ଭବେତ୍" ପଦର ଭବେତ୍ତ କ୍ରିୟା ବିଧିଲିଙ୍ । ଏହି ଶ୍ଳୋକରେ ଏହି କ୍ରିୟା ବ୍ୟବହୃତ ହେତୁ ଶ୍ରୀକୃଷ୍ଣଙ୍କର ଶ୍ରୀବୃନ୍ଦାବନ ଲୀଳା ବିଷୟ ଶ୍ରବଣ କରି ଭକ୍ତମାନେ ରାଗମାର୍ଗରେ ଶ୍ରୀକୃଷ୍ଣଙ୍କୁ ଭଜନ କରିବେ, ଏହା ଅବଶ୍ୟ କର୍ତ୍ତବ୍ୟ ବୋଲି ପ୍ରତିପାଦିତ ହୋଇଅଛି । ତାହା ନ କଲେ ପ୍ରେମ ଲାଭ ହେବ ନାହିଁ । ଏହାହିଁ ପ୍ରତ୍ୟବାୟ । ୩୧ ।

ପ୍ରେମରସନିର୍ଯାସଆସ୍ୱାଦନ ଏବଂ ରାଗମାର୍ଗଭକ୍ତିପ୍ରଚାରଣ ଏହି ଦୁଇବାଞ୍ଛା ଯେପରି ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦ୍ୱାପରଯୁଗୀୟ କୃଷ୍ଣ ଅବତାରର ମୁଖ୍ୟ କାରଣ ଏବଂ ଅସୁରସଂହାରଦ୍ୱାରା ପୃଥିବୀର ଭାରହରଣ ଗୌଣକାରଣ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଶରୀରସ୍ଥ ବିଷ୍ଣୁଙ୍କର ଅସୁରସଂହାର କରିବା କର୍ତ୍ତବ୍ୟ ହେତୁ ତାହା ଶ୍ରୀକୃଷ୍ଣଙ୍କର ନିଜକାର୍ଯ୍ୟ ନୁହେଁ, ସେହିପରି ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର କଳିଯୁଗୀୟ ଶ୍ରୀକୃଷ୍ଣ ଚୈତନ୍ୟ ଅବତାରଙ୍କର ଯୁଗଧର୍ମ ପ୍ରବର୍ତ୍ତନ ଅର୍ଥାତ୍ ଶ୍ରୀହରି ନାମ ପ୍ରଚାର ନିଜକାର୍ଯ୍ୟ ନୁହେଁ । ସେ ପୂର୍ଣ୍ଣ ଭଗବାନ୍ ହେତୁ ଏହା ତାଙ୍କର ଶରୀରସ୍ଥ ବିଷ୍ଣୁଙ୍କର କାର୍ଯ୍ୟ । ୩୨ । ୩୩ ।

ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ଦ୍ୱାପରଯୁଗୀୟ ଅବତାର ସମୟରେ ଯେପରି ଯୁଗାବତାର କାଳ ସେଥିରେ ମିଳିତ ହୋଇଥିଲା ସେହିପରି ତାହାଙ୍କର କୌଣସି ମୁଖ୍ୟକାରଣ ହେତୁ କଳି-ଯୁଗରେ ଶ୍ରୀଚୈତନ୍ୟରୂପରେ ଅବତୀର୍ଣ୍ଣ ହେବା ସମୟରେ ଯୁଗଧର୍ମ ପ୍ରବର୍ତ୍ତନର କାଳ ଆସି ମିଳିତ ହେଲା । ୩୪ ।

ଶ୍ରୀକୃଷ୍ଣ ଯେପରି ପୂର୍ବୋକ୍ତ ଦୁଇ ମୁଖ୍ୟ କାରଣ ବଶତଃ ନିତ୍ୟ ପରିକର ଭକ୍ତମାନଙ୍କ ସହ ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣରୂପରେ ଦ୍ୱାପରଯୁଗରେ ଅବତୀର୍ଣ୍ଣ ହୋଇଥିଲେ ସେ (ଶ୍ରୀକୃଷ୍ଣ) ସେହିପରି ଦୁଇ ମୁଖ୍ୟ କାରଣ ବଶତଃ ଭକ୍ତଗଣଙ୍କ ସହି ଶ୍ରୀକୃଷ୍ଣଚୈତନ୍ୟ ନାମ ଧାରଣ କରି କଳିଯୁଗରେ ଅବତୀର୍ଣ୍ଣ ହୋଇଥିଲେ । ସେହି ଦୁଇ ମୁଖ୍ୟ କାରଣ ଯଥାଃ—୧ମ ଆପଣାର ନାମସଙ୍କୀର୍ତ୍ତନଦ୍ୱାରା ପ୍ରେମ ଆସ୍ୱାଦନ ଅର୍ଥାତ୍ ନିଜ ନାମର (କୃଷ୍ଣନାମର) ପ୍ରେମାସ୍ୱାଦନ ।

୨ୟ—ନାମସଂକୀର୍ତ୍ତନ ଦ୍ୱାରା ଚଣ୍ଡାଳ ଆଦି ଅତି ନୀଚ ଜାତି ପର୍ଯ୍ୟନ୍ତ ମନୁଷ୍ୟମାନଙ୍କୁ ନାମସଙ୍କୀର୍ତ୍ତନରେ ପ୍ରବର୍ତ୍ତାଇ ପ୍ରେମଦାନ କରିବା ଏବଂ ଜଗତର ଅପରାପର ଜୀବମାନଙ୍କୁ ସୁଦ୍ଧା ନାମ-ରୂପୀ ପ୍ରେମମାଳା ପିନ୍ଧାଇ ସେମାନଙ୍କର ପ୍ରେମୋନ୍ମାଦନ କରିବା ।

ଏହିମତ ଭକ୍ତ-ଭାବ କରି ଅଙ୍ଗୀକାର ।
ଆପନି ଆଚରି ଭକ୍ତି କରିଲ ପ୍ରଚାର । ୩୭ ।
ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଆର ଯେ ଶୃଙ୍ଗାର ।
ଚାରି-ଭାବେର ଚତୁର୍ବିଧ ଭକ୍ତର ଆଧାର । ୩୮ ।
ନିଜନିଜ ଭାବ ସବେ ଶ୍ରେଷ୍ଠ କରି ମାନେ ।
ନିଜଭାବେ କରେ କୃଷ୍ଣସୁଖ-ଆସ୍ୱାଦନେ । ୩୯ ।
ତଟସ୍ଥ ହଇୟା ମନେ ବିଚାର ଯଦି କରି ।
ସବରସ ହୈତେ ଶୃଙ୍ଗାରେ ଅଧିକ ମାଧୁରୀ । ୪୦ ।

---

ନନୁ ପ୍ରେମ ତାବତ୍ ଭକ୍ତସ୍ୟୈବ ତତ୍ କଥଂ ଭଗବାନାସ୍ୱାଦନାନ୍ଦକଂ କୃତବାନ୍ ଇତ୍ୟତ ଆହ "ଏଇମତ" ଇତି । ଏଇମତ ଅନେକ ପ୍ରକାରେଣ ତଦେବାହ "ଭକ୍ତ" ଇତି । ଶ୍ରୀକୃଷ୍ଣଚୈତନ୍ୟ-ଶେଷଃ ଭକ୍ତିପଦେନାତ୍ର ନାମପ୍ରେମ ଏତଦ୍ଦ୍ୱୟସ୍ୟୈବୋକ୍ତତ୍ୱାତ୍ ଭକ୍ତଭାବାଙ୍ଗୀକାରେଣ ତତ୍ତତ୍ କୃତବାନିତ୍ୟର୍ଥଃ । ୩୭ । ବ, ଚ,

ଭାବଭେଦେନ ବହୁତରଭକ୍ତେଷୁ ସତ୍ସ୍ୱପି ସର୍ବୋତ୍ତମଭକ୍ତଭାବମାସ୍ୱାଦୟିତୁଂ ସର୍ବୋତ୍ତମେନ ଶ୍ରୀକୃଷ୍ଣେନ ସର୍ବରସୋତ୍ତମଶୃଙ୍ଗାରରସଭାବବତଭକ୍ତେଭ୍ୟଃ ସର୍ବୋତ୍ତମାୟାଃ ଶ୍ରୀରାଧାୟାଃ ସର୍ବୋତ୍ତମୋଭାବୋଽଙ୍ଗୀକୃତ ଇତି ପ୍ରତିପାଦୟିତୁମାଦୌ ଅପରରସେଭ୍ୟଃ ଶୃଙ୍ଗାରରସସ୍ୟ ସର୍ବୋତ୍ତମତ୍ୱମାହ "ଦାସ୍ୟ" ଇତି ଦ୍ୱିଭ୍ୟାଂ । ବ୍ରଜପରିକର-ଭାବକଥନେ ଶାନ୍ତଭକ୍ତସ୍ୟ ତତ୍ପରିକରତ୍ୱାଭାବେନ ତଦ୍ଭାବୋଽପି ନ ଗୃହୀତଃ । ଦାସ୍ୟାଦିରସେଭ୍ୟୋଽଧିକମଧୁରତ୍ୱେନ ଶୃଙ୍ଗାରରସସ୍ୟ ସର୍ବୋତ୍ତମତ୍ୱମିତ୍ୟର୍ଥଃ । ତସ୍ୟ ଲକ୍ଷଣଂ ଯଥା "ପୁଂସଃ ସ୍ତ୍ରିୟାଃ ସ୍ତ୍ରିୟାଃ ପୁଂସଃ ସଂଯୋଗଂ ପ୍ରତି ଯା ସ୍ପୃହା । ସ ଶୃଙ୍ଗାର ଇତି ଖ୍ୟାତୋ ରସାନାମୁତ୍ତମସ୍ତୁ ସଃ । ( ୩୮।୪୦ ) ବ, ଚ,

---

ପରବର୍ତ୍ତୀ "ଶ୍ରୀରାଧାୟାଃ ପ୍ରଣୟମହିମା" ଶ୍ଳୋକରେ ଯେ ତିନି ମୁଖ୍ୟ କାରଣ ବିଷୟ ଉଲ୍ଲେଖ ହୋଇଅଛି ସେ ତିନିହିଁ ନାମ ପ୍ରେମ ଆସ୍ୱାଦନର ଅନ୍ତର୍ଭୁକ୍ତ । ଅର୍ଥାତ୍ ସେ ତିନିର ସମଷ୍ଟି ନାମ ପ୍ରେମାସ୍ୱାଦନ । ୩୫।୩୭ ।

ଏଠାରେ ଆଶଙ୍କା ହୋଇପାରେ ନାମ ପ୍ରେମ ଆସ୍ୱାଦନ ଭକ୍ତମାନେ କରନ୍ତି କିନ୍ତୁ ସ୍ୱୟଂ ଭଗବାନ୍ ତାହା କିପରି ଆସ୍ୱାଦନ କରିବେ । ତେଣୁ ଗ୍ରନ୍ଥକାର କହୁଅଛନ୍ତି ଯେ ସେ ସ୍ୱୟଂ- ଭଗବାନ୍ ହେଲେହେଁ ନାମପ୍ରେମ ଆସ୍ୱାଦନ ସକାଶେ ଭକ୍ତଭାବ ଗ୍ରହଣ କରି ଅବତୀର୍ଣ୍ଣ ହୋଇଥିଲେ ଏବଂ ଆପେ ଭକ୍ତବତ୍ ଭକ୍ତିଯାଜନ କରି ଲୋକଶିକ୍ଷା ଦେଇଥିଲେ । ପରେ ଗ୍ରନ୍ଥକାର ଉଲ୍ଲେଖ କରିବେ ଯେ ଶ୍ରୀକୃଷ୍ଣଚୈତନ୍ୟ ଶ୍ରୀରାଧାଙ୍କର ଭାବ ଓ କାନ୍ତି ଗ୍ରହଣ କରି ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ପଞ୍ଚବିଧ ଭକ୍ତ ମଧ୍ୟରୁ ଅର୍ଥାତ୍ ଶାନ୍ତ, ଦାସ, ସଖା, ପିତାମାତା ଓ କାନ୍ତାମାନଙ୍କ ମଧ୍ୟରୁ ଆଉ କାହାରି ଭାବ କାନ୍ତି ଗ୍ରହଣ ନ କରି କେବଳ ଶ୍ରୀରାଧାଭାବକାନ୍ତି କିପାଇଁ ଗ୍ରହଣ କରିଥିଲେ, ତାହା ବୁଝାଇବା କାରଣ ଗ୍ରନ୍ଥକାର ଲେଖୁଅଛନ୍ତି ( ଶାନ୍ତ ଭକ୍ତମାନେ ବ୍ରଜପରିକର ହେବାର ଅଧିକାରୀ ନୁହନ୍ତି ବୋଲି ସେମାନଙ୍କ ବିଷୟ ଗ୍ରନ୍ଥକାର ଉଲ୍ଲେଖ ନ କରି କହୁଅଛନ୍ତି ) ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହି ଚତୁର୍ବିଧ ବ୍ରଜଭାବ ଉପରୋକ୍ତ ଚତୁର୍ବିଧ ଭକ୍ତମାନଙ୍କରେ ନ୍ୟସ୍ତ ଏବଂ ସେହି ସେହି ଭକ୍ତମାନେ ଆପଣା ଆପଣା ଭାବକୁ ଶ୍ରେଷ୍ଠ ମନେ କରି ତଦ୍ଦ୍ୱାରା ଶ୍ରୀକୃଷ୍ଣଙ୍କ ଭଜନ କରି ଶ୍ରୀକୃଷ୍ଣସେବାସୁଖ ଆସ୍ୱାଦନ କରନ୍ତି । କିନ୍ତୁ ଯଦି ନିରପେକ୍ଷଭାବରେ ଏହି ଚାରି ଭକ୍ତମାନଙ୍କର ଭାବ ବିଚାର କରାଯାଏ ତାହାହେଲେ ଦେଖାଯାଏ ଯେ ଶୃଙ୍ଗାରରସରେ ଅଧିକ ମାଧୁରୀ ଅଛି । ୩୭.୪୦ ।

ତଥାହି ଭକ୍ତିରସାମୃତସିନ୍ଧୌ ଦକ୍ଷିଣବିଭାଗେ
ସ୍ଥାୟିଭାବଲହର୍ଯ୍ୟାମ୍ ( ୧୯ )—
ଯଥୋତ୍ତରମସୌ ସ୍ୱାଦବିଶେଷୋଲ୍ଲାସମୟ୍ୟପି ।
ରତିର୍ବାସନୟା ସ୍ୱାଦ୍ୱୀ ଭାସତେ କାପି
କସ୍ୟଚିତ୍ ॥ ୫ ॥

ଅତଏବ 'ମଧୁରରସ' କହି ତାର ନାମ ।
ସ୍ୱକୀୟା ପରକୀୟା ଭାବେ ଦ୍ୱିବିଧ ସଂସ୍ଥାନ ॥ ୪୧ ॥

ପରକୀୟା-ଭାବେ ଅତି ରସେର ଉଲ୍ଲାସ ।
ବ୍ରଜ ବିନା ଇହାର ଅନ୍ୟତ୍ର ନାହି ବାସ ॥ ୪୨ ॥

ଅସୌ ( ପଞ୍ଚବିଧା ) ରତିଃ ଯଥୋତ୍ତରମ୍ ( ଉକ୍ତକ୍ରମେଣ ) ସ୍ୱାଦୁବିଶେଷୋଲ୍ଲାସମୟୀ ( ସ୍ୱାଦୁବିଶେଷସ୍ୟ ଉଲ୍ଲାସମୟୀ ଆଧିକ୍ୟବତୀ ) ଅପି ବାସନୟା ( ବାସନାଭେଦେନ ) କା ( ରତିଃ ) ଅପି କସ୍ୟଚିତ୍ ( ଭକ୍ତସ୍ୟ ) ସ୍ୱାଦ୍ୱୀ ( ଅଭିରୁଚିତା ) ଭାସତେ । [ ୫ମ ଶ୍ଳୋକଃ ]

ସକଳାହ୍ଲାଦକଲିତତୟା ଅସମୋର୍ଦ୍ଧ୍ୱତ୍ୱେନ ଶୃଙ୍ଗାରସ୍ୟ ରସରାଜତ୍ୱଂ ଅନ୍ୟେଷାଂ ରସାନାଂ ତଦନୁଗତ୍ୱଂ ଯଥା ରାଜ୍ଞାଂ ମୁଖ୍ୟତ୍ୱଗୌଣତ୍ୱାଭ୍ୟାଂ ତଦନୁଗାନାଂ ମୁଖ୍ୟତ୍ୱଗୌଣତ୍ୱେ ସ୍ୟାତାଂ ତଥା ସମର୍ଥା ସମଞ୍ଜସା ସାଧାରଣୀତ୍ୟାଦିରତିଭେଦାନାଂ ଶୃଙ୍ଗାରରସଭେଦାନାଂ ମୁଖ୍ୟତ୍ୱଗୌଣତ୍ୱାଭ୍ୟାମନ୍ୟେଷାଂ ତଦନୁଗାନାଂ ବ୍ରଜମଥୁରାଦ୍ୱାରକାଦିଗତାନାଂ ଦାସ୍ୟାଦିରସଭେଦାନାଂ ମୁଖ୍ୟତ୍ୱଗୌଣତ୍ୱେ ସ୍ୟାତାଂ [ ୫ମ ଶ୍ଳୋକଃ ] ବି, ଚ,

ଅତଏବ ଯଥୋତ୍ତରଂ ସ୍ୱାଦୁବିଶେଷତ୍ୱାଦେବ ଅଥବା ଅଧିକମଧୁରତ୍ୱାଦେବ ॥ ୪୧ ॥ ଶ୍ରୀ, ଚ,

ତତ୍ର ସ୍ୱକୀୟାଭାବାତ୍ ପରକୀୟାଭାବସ୍ୟ ଆଧିକ୍ୟମାହ "ପରକୀୟା" ଇତି ଅତ୍ୟୁଲ୍ଲାସତୟା ତସ୍ୟାଧିକ୍ୟମିତ୍ୟର୍ଥଃ । ତଥାଚୋକ୍ତଂ ଉଜ୍ଜ୍ୱଲନୀଲମଣୌ "ବହୁବାର୍ଯ୍ୟତେ ଯତଃ ଖଲୁ ଯତ୍ର ପ୍ରଚ୍ଛନ୍ନ-କାମୁକତ୍ୱଞ୍ଚ । ଯା ଚ ମିଥୋ ଦୁର୍ଲଭତା ସା ମନ୍ମଥସ୍ୟ ପରମା ରତିଃ" । ତଥା ତତ୍ରୈବ "ବାମତା ଦୁର୍ଲଭତ୍ୱଞ୍ଚ ସ୍ତ୍ରୀଣାଂ ଯା ଚ ନିବାରଣା । ତଦେବ ପଞ୍ଚବାଣସ୍ୟ ମନ୍ୟେ ପରମମାୟୁଧଂ । ଯତ୍ର ନିଷେଧ ବିଶେଷଃ ସୁଦୁର୍ଲଭତ୍ୱଞ୍ଚ ଯନ୍ମୃଗାକ୍ଷୀଣାଂ । ତତ୍ରୈବ ନାଗରାଣାଂ ନିର୍ଭରମାସଜ୍ୟତେ ହୃଦୟଂ" ଇତି । ନନୁ "ପରୋଢାଂ ବର୍ଜୟିତ୍ୱାତ୍ର" ଇତି ସାହିତ୍ୟଦର୍ପଣବଚନେନ ପରକୀୟାୟାଂ ତାବତ୍ ରସୋ ନ ଭବତି କୁତସ୍ତସ୍ୟାଧିକ୍ୟମିତ୍ୟତ ଆହ "ବ୍ରଜବିନୁ" ଇତି । ଅୟମାଶୟଃ ବ୍ରଜେ ରସବିଶେଷଂ ପରକୀୟାରସମାସ୍ୱାଦୟିତୁଂ ଶ୍ରୀକୃଷ୍ଣେନାବତାରିତାଃ ନିତ୍ୟସ୍ୱକାନ୍ତା ଏବ ଭବନ୍ତି ପରକୀୟାଃ ନତୁ ସ୍ୱରୂପତଃ ଅତଃ ନିତ୍ୟସ୍ୱରୂପତଃ ସ୍ୱକୀୟାତ୍ୱେନ ତାସୁ ପ୍ରଥମତଃ ରସୋଜାତସ୍ତତସ୍ତତ୍ସ୍ୱରୂପେ ପରକୀୟାଭାବେନ ତସ୍ୟ ଉଲ୍ଲାସଃ । ବ୍ରଜାଦନ୍ୟତ୍ରତୁ ସ୍ୱକୀୟାୟାଃ ପରକୀୟାଭାବାଭାବେନ ତଦଭାବଃ ପ୍ରାକୃତପରକୀୟାତ୍ୱାତ୍ । ଅତଃ ବ୍ରଜଂ ବିନା ନ ତସ୍ୟ ବାସଃ । ଏତେନ ତଦ୍ଦର୍ପଣକୃଦ୍ୱଚନଂ ବ୍ରଜପରକୀୟାଭିନ୍ନପରମିତି ଜ୍ଞେୟଂ । ତଥାଚୋକ୍ତଂ ଉଜ୍ଜ୍ୱଲନୀଲମଣୌ "ନେଷ୍ଟା ଯଦଙ୍ଗିନି ରସେ କବିଭିଃ ପରୋଢା ତଦ୍ଗୋକୁଲାମ୍ବୁଜଦୃଶାଂ କୁଲମନ୍ତରେଣ । ଆଶଂସୟା ରସବିଧେରବତାରିତାନାଂ କଂସାରିଣା ରସିକମଣ୍ଡଲଶେଖରେଣ" ଇତି ॥ ୪୨ ॥ ଚ, ଚ,

ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହି ପଞ୍ଚବିଧ ରତି ମଧ୍ୟରେ ପ୍ରଥମରୁ ପଞ୍ଚମ ପର୍ଯ୍ୟନ୍ତ କ୍ରମେ ସ୍ୱାଦୁର ଆଧିକ୍ୟ ହେଲେହେଁ ଅର୍ଥାତ୍ ଶାନ୍ତ ଅପେକ୍ଷା ଦାସ୍ୟରେ, ଦାସ୍ୟ ଅପେକ୍ଷା ସଖ୍ୟରେ, ସଖ୍ୟ ଅପେକ୍ଷା ବାତ୍ସଲ୍ୟରେ ଏବଂ ବାତ୍ସଲ୍ୟ ଅପେକ୍ଷା ଶୃଙ୍ଗାରରେ ସ୍ୱାଦୁର ବିଶେଷତ୍ୱ ହେଲେହେଁ, ଭକ୍ତମାନଙ୍କର ରୁଚିଭେଦରେ କେଉଁ ରତି କାହାକୁ ରୁଚିକର ହୋଇଥାଏ ।
[ ୫ମ ଶ୍ଳୋକ ଅର୍ଥ ]

ବ୍ରଜବଧୂଗଣରେ ଏଇ ଭାବ ନିରବଧି ।
ତାର ମଧ୍ୟେ ଶ୍ରୀରାଧାସ୍ଥ ଭାବେର ଅବଧି । ୪୩ ।
ପ୍ରୌଢ଼ ନିର୍ମ୍ମଲ ଭାବ ପ୍ରେମ ସର୍ବୋତ୍ତମ ।
କୃଷ୍ଣେର ମାଧୁର୍ଯ୍ୟ ଆସ୍ୱାଦନେର କାରଣ । ୪୪ ।
ଅତଏବ ସେଇ ଭାବ ଅଙ୍ଗୀକାର କରି ।
ସାଧିଲେନ ନିଜବାଞ୍ଛା ଗୌରାଙ୍ଗ ଶ୍ରୀହରି । ୪୫ ।

ତଥାହି ସ୍ତବମାଳାୟାଂ ୧ମ ଚୈତନ୍ୟସ୍ତବେ (୬)—
ସୁରେଶାନାଂ ଦୁର୍ଗଂ ଗତିରତିଶୟେନୋପନିଷଦାଂ,
ମୁନୀନାଂ ସର୍ବସ୍ୱଂ ପ୍ରଣତପଟଲୀନାଂ ମଧୁରିମା ।
ବିନିର୍ଯ୍ୟାସଃ ପ୍ରେମ୍ଣୋ ନିଖିଲପଶୁପାଲାମ୍ବୁଜଦୃଶାଂ,
ସ ଚୈତନ୍ୟଃ କିଂ ମେ ପୁନରପି ଦୃଶୋର୍ଯାସ୍ୟତି
ପଦମ୍ । ୬ । *

"ବ୍ରଜବଧୂ" ଇତି ଦ୍ୱୟେନାନ୍ୱୟଃ । ପ୍ରୌଢ଼ନିର୍ମ୍ମଲଭାବ ଏବ ଶ୍ରୀରାଧାଭାବସ୍ୟାବଧିଃ । ଶ୍ରୀକୃଷ୍ଣମାଧୁର୍ଯ୍ୟାସ୍ୱାଦନୈକକାରଣତ୍ୱେନ ବ୍ରଜବଧୂଗଣେଭ୍ୟଃ ଶ୍ରୀରାଧାଭାବ ଏବ ସର୍ବୋତ୍ତମ ଇତ୍ୟର୍ଥଃ । (୪୩—୪୫) ଚି, ଟୀ,

ସୁରେଶାନାଂ (ଇନ୍ଦ୍ରାଦୀନାଂ) ଦୁର୍ଗଂ (ଦୁର୍ଗମ୍ୟଂ ନିର୍ଭୟସ୍ଥାନଂ) ଉପନିଷଦାଂ (ଶ୍ରୁତିଶିରସାଂ) ଅତିଶୟେନ (ଏକା ଇବ) ଗତିଃ (ଲକ୍ଷ୍ୟଂ) ମୁନୀନାଂ ସର୍ବସ୍ୱଂ ପ୍ରଣତପଟଲୀନାଂ (ଭକ୍ତ ସମୂହାନାଂ) ମଧୁରିମା ନିଖିଲପଶୁପାଲାମ୍ବୁଜଦୃଶାଂ (ସମସ୍ତ ବ୍ରଜବନିତାନାଂ) ପ୍ରେମ୍ଣଃ ବିନିର୍ଯ୍ୟାସଃ (ସାରଃ) ସ ଚୈତନ୍ୟଃ ପୁନଃ ଅପି କିଂ ମେ ଦୃଶୋଃ ପଦଂ ଯାସ୍ୟତି । [ ୬ଷ୍ଠ ଶ୍ଲୋକଃ ]

ଉପରୋକ୍ତ ପଞ୍ଚମଶ୍ଳୋକରେ ଶୃଙ୍ଗାରରସର ସ୍ୱାଦୁର ପରାକାଷ୍ଠା ଦର୍ଶିତ ହୋଇଥିବାରୁ ଗ୍ରନ୍ଥକାର କହୁଅଛନ୍ତି ଏଣୁ ଶୃଙ୍ଗାରରସକୁ ମଧୁରରସ କୁହାଯାଏ ଅର୍ଥାତ୍ ମାଧୁର୍ଯ୍ୟର ପର୍ଯ୍ୟାପ୍ତି ସେଥିରେ ଅଛି ।

ସେହି ଶୃଙ୍ଗାରରସ ସ୍ୱକୀୟା ଓ ପରକୀୟାଭେଦରେ ଦୁଇପ୍ରକାର । ଯେଉଁ ସ୍ତ୍ରୀ ଶାସ୍ତ୍ରବିଧି ଅନୁସାରେ ବିବାହିତା ଓ ପତିବ୍ରତା ତାହାକୁ ସ୍ୱକୀୟା ବୋଲାଯାଏ, ଏବଂ ସେହି ସ୍ତ୍ରୀର ଭାବକୁ ସ୍ୱକୀୟାଭାବ ବୋଲାଯାଏ । ଅପରର ସ୍ତ୍ରୀଠାରେ କାମାସକ୍ତିଜନିତ ଯେ ଭାବ ତାହାକୁ ପରକୀୟା ବୋଲାଯାଏ । ପଣ୍ଡିତମାନେ କହୁଅଛନ୍ତି ଯେ ପରସ୍ତ୍ରୀରେ ରସ ଲାଭହୁଏ ନା, ତେଣୁ ତାହା ବର୍ଜ୍ଜନୀୟ । ଏପରି ସ୍ଥଳେ ଆଶଙ୍କା ହୋଇପାରେ ଯେ ଗ୍ରନ୍ଥକାର କି ନିମିତ୍ତ ପରକୀୟାଭାବର ଶ୍ରେଷ୍ଠତ୍ୱ ଦେଖାନ୍ତି ଅଛନ୍ତି । ତାହାର ତାତ୍ପର୍ଯ୍ୟ ଏହି ଯେ ଗ୍ରନ୍ଥକାର କହୁଅଛନ୍ତି, ଏକମାତ୍ର ବ୍ରଜ (ଶ୍ରୀବୃନ୍ଦାବନ) ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ଏହି ଜାତୀୟ ପରକୀୟାଭାବର ବାସ ନାହିଁ, କିମ୍ବା ଗନ୍ଧପର୍ଯ୍ୟନ୍ତ ନାହିଁ । ତାହାର କାରଣ ଏହି ଯେ ଶ୍ରୀକୃଷ୍ଣ ତାଙ୍କର ନିତ୍ୟକାନ୍ତାମାନଙ୍କର ସହିତ ସ୍ୱକୀୟାରସ ଆସ୍ୱାଦନ କରି ପରକୀୟାରସ ଆସ୍ୱାଦନ କରିବାକୁ ଇଚ୍ଛୁକ ହେଲେ କିନ୍ତୁ ସର୍ବଜନନିନ୍ଦିତ ପରସ୍ତ୍ରୀରେ ଈଶ୍ୱର ଅଭାବ ହେତୁ, ସେ ଇଚ୍ଛା ପୂରଣ କରିବା ସକାଶେ ଯୋଗମାୟାଙ୍କ ପ୍ରଭାବରେ ଶ୍ରୀବୃନ୍ଦାବନରେ ନିତ୍ୟସ୍ୱକାନ୍ତା-ମାନଙ୍କ ସହିତ ଅବତୀର୍ଣ୍ଣ ହୋଇ ଏହି ପରକୀୟାରସ ଆସ୍ୱାଦନ କଲେ । ବ୍ରଜ ଗୋପୀମାନେ ସ୍ୱରୂପତଃ ଶ୍ରୀକୃଷ୍ଣଙ୍କ ସ୍ୱକୀୟା ହେତୁ ପ୍ରଥମତଃ ସେମାନଙ୍କ ସହିତ ସ୍ୱରୂପଗତରସ ଉତ୍ପନ୍ନ ହେଲା । କିନ୍ତୁ ସେଥିରେ ଯୋଗମାୟାଙ୍କ ପ୍ରଭାବରୁ ପରକୀୟାଭାବ ଯୋଗ ହେବାରୁ ସ୍ୱକୀୟାଜନିତରସ ପରକୀୟାରେ ବିଶେଷ ବୃଦ୍ଧି ପ୍ରାପ୍ତ ହେଲା । ତେଣୁ ଶ୍ରୀକୃଷ୍ଣଙ୍କର ବୃନ୍ଦାବନଲୀଳାରେ ପରକୀୟାରସହିଁ ଶ୍ରେଷ୍ଠରସ, ଏବଂ ଏହା ବ୍ରଜ (ବୃନ୍ଦାବନ) ବ୍ୟତୀତ ଅନ୍ୟତ୍ର ସମ୍ଭବ ନୁହେଁ । ତେଣୁ ଉପରୋକ୍ତ ପଣ୍ଡିତମାନଙ୍କର ମତ ଅର୍ଥାତ୍ ପରସ୍ତ୍ରୀରେ ରସହୁଏ ନା ତାହା ଶ୍ରୀକୃଷ୍ଣଙ୍କ ବୃନ୍ଦାବନଲୀଳାକୁ ସ୍ପର୍ଶ କରୁନାହିଁ । ଅର୍ଥାତ୍ ତାହା ଶ୍ରୀକୃଷ୍ଣଙ୍କର ବୃନ୍ଦାବନଲୀଳା ବ୍ୟତୀତ ଅନ୍ୟତ୍ର ପ୍ରଯୋଜ୍ୟ, କାରଣ ଅନ୍ୟତ୍ର ଅମୂଳ୍ୟଜ୍ଞାନ ହେତୁରୁ ପରସ୍ତ୍ରୀ ବ୍ୟତୀତ ନିଜସ୍ତ୍ରୀଠାରେ ପରକୀୟାଭାବର ରସାସ୍ୱାଦନ ହୋଇପାରେ ନା । ୪୨।୪୬ ।

ତତ୍ରୈବ ଦ୍ୱିତୀୟପ୍ରସ୍ତବେ (ଗ)—
ଅପାରଂ କସ୍ୟାପି ପ୍ରଣୟିଜନବୃନ୍ଦସ୍ୟ କୁତୁକୀ,
ରସସ୍ତୋମଂ ହୃତ୍ୱା ମଧୁରମୁପଭୋକ୍ତୁଂ କମପି ଯଃ ।
ରୁଚଂ ସ୍ୱାମାବବ୍ରେ ଦ୍ୟୁତିମିହ ତଦୀୟାଂ ପ୍ରକଟୟନ୍
ସ ଦେବଶ୍ଚୈତନ୍ୟାକୃତିରତିତରାଂ ନଃ
କୃପୟତୁ ॥ ୭ ॥ *

ଭାବ-ଗ୍ରହଣ-ହେତୁ କୈଲ ଧର୍ମ୍ମ-ସ୍ଥାପନ ।
ମୂଲ ହେତୁ ଆଗେ ଶ୍ଲୋକେ କରି ବିବରଣ ।୪୬।
ଭାବଗ୍ରହଣେର ଏଇ ଶୁନହ ପ୍ରକାର ।
ତା-ଲାଗି ପଞ୍ଚମ-ଶ୍ଲୋକେର କରିୟେ ବିଚାର ।୪୭।
ଏଇ ତ ପଞ୍ଚମ-ଶ୍ଲୋକେର କହିଲ ଆଭାସ ।
ଏବେ କରି ସେଇ ଶ୍ଲୋକେର ଅର୍ଥ ପ୍ରକାଶ ।୪୮।

କୁତୁକୀ ( କୌତୁକୀ ) ଯଃ ( ଯୋ ଦେବଃ ଶ୍ରୀକୃଷ୍ଣଃ ) ପ୍ରଣୟିଜନବୃନ୍ଦସ୍ୟ ( ଗୋପୀଜନ-ବୃନ୍ଦସ୍ୟ ) ମଧ୍ୟେ କସ୍ୟାପି ( ଶ୍ରୀରାଧିକାଖ୍ୟସ୍ୟ ) କମପି ( ଅନିର୍ବଚନୀୟଂ ) ଅପାରଂ ମଧୁରଂ ରସସ୍ତୋମଂ ହୃତ୍ୱା ଉପଭୋକ୍ତୁଂ ( ସ୍ୱୟଂ ତଦ୍‌ଭାବେନ ଆସ୍ୱାଦୟିତୁଂ ) ଇହ ( ଜଗତି ) ତଦୀୟାଂ ଦ୍ୟୁତିଂ (କାନ୍ତିଂ) ପ୍ରକଟୟନ୍, ସ୍ୱାଂ ( ସ୍ୱକୀୟାଂ ) ରୁଚଂ ( ଶ୍ୟାମକାନ୍ତିଂ ) ଆବବ୍ରେ ( ଆବୃତବାନ୍ ) ସଃ ଚୈତନ୍ୟାକୃତିଃ ଦେବଃ ( ଶ୍ରୀକୃଷ୍ଣଃ ) ନଃ ( ଅସ୍ମାନ୍ ) ଅତିତରାଂ କୃପୟତୁ । [ ୭ମ ଶ୍ଲୋକ ]

ଭାବଗ୍ରହଣହେତୁ କୈଲ ଭାବଗ୍ରହଣସ୍ୟ ଶ୍ରୀରାଧାଭାବଗ୍ରହଣସ୍ୟ ହେତୁଃ ଜାତଃ ତଥା ଧର୍ମ୍ମସ୍ଥାପନଞ୍ଚ । ମୂଲହେତୁଃ ଯଦର୍ଥଂ ତଦ୍‌ଭାବଗ୍ରହଣଂ ଅଗ୍ରେ ଶ୍ଲୋକେ ଷଷ୍ଠଶ୍ଲୋକେ । ଭାବଗ୍ରହଣେର ଇତି କେନ ପ୍ରକାରେଣ ତଦ୍‌ଭାବ ଗୃହୀତବାନ୍ ତଚ୍ଛୃଣୁ । ୪୬ । ୪୭ । ୪୮ । ବି, ଚ,

ଏହିପ୍ରକାର ନିର୍ମ୍ମଳ ପରକୀୟାଭାବରେ ବ୍ରଜଗୋପୀମାନେ ସର୍ବଦା ଭାବିତ ଅର୍ଥାତ୍ ବ୍ରଜଗୋପୀମାନଙ୍କର ଏହାହିଁ ସ୍ଥାୟୀଭାବ । ସେମାନଙ୍କ ମଧ୍ୟରେ ଶ୍ରୀମତୀ ରାଧାଠାକୁରାଣୀଙ୍କ ଭାବ ସର୍ବୋତ୍କୃଷ୍ଟ । ଅର୍ଥାତ୍ ଅଧିରୂଢ଼ ହେତୁ ତାହା ଗୋପୀମାନଙ୍କ ଭାବ ମଧ୍ୟରେ ସର୍ବଶ୍ରେଷ୍ଠ ଅର୍ଥାତ୍ ଶ୍ରୀରାଧାଙ୍କର ଭାବ ପରକୀୟାଭାବର ପରାକାଷ୍ଠା । ତେଣୁ ଅସମୋର୍ଦ୍ଧ । ଅତଏବ ଶ୍ରୀକୃଷ୍ଣଙ୍କର ମାଧୁରୀ ଆସ୍ୱାଦନ ନିମିତ୍ତ ଗୋପୀଭାବ ମଧ୍ୟରେ ଶ୍ରୀରାଧାଭାବହିଁ ସର୍ବୋତ୍ତମ, ଏଣୁ ଶ୍ରୀକୃଷ୍ଣ ଚୈତନ୍ୟ ଶ୍ରୀରାଧାଭାବ ଗ୍ରହଣ ପୂର୍ବକ ଅବତୀର୍ଣ୍ଣ ହୋଇ ଆପଣାର ମୁଖ୍ୟବାଞ୍ଛା ( ନାମ ପ୍ରେମଆସ୍ୱାଦନ ଓ ତଦ୍ଦ୍ୱାରା ଜଗତରେ ନାମ ପ୍ରେମ ପ୍ରଚାର ) ପୂର୍ଣ୍ଣକଲେ । ୪୩।୪୪।୪୫ ।

ନିରବଦ୍ୟ—ସର୍ବଦା । ବା ସୀମା ଅପ୍ରାପ୍ତ
ଅବଧି—ସର୍ବଶ୍ରେଷ୍ଠ । ବା ସୀମାପ୍ରାପ୍ତ ।

ଯେ ଇନ୍ଦ୍ରାଦିଦେବ ଶ୍ରେଷ୍ଠମାନଙ୍କର ଅଭୀଷ୍ଟଦାତା, ଉପନିଷଦମାନଙ୍କର ଚରମଲକ୍ଷ୍ୟତତ୍ତ୍ୱ, ଯୋଗିମାନଙ୍କର ସର୍ବସ୍ୱ ( ଐହିକ ଓ ପାରତ୍ରିକ ଆଶ୍ରୟ ) ପ୍ରଣତଜନମାନଙ୍କର ( ଭକ୍ତମାନଙ୍କର ) ମାଧୁର୍ଯ୍ୟମୟମୂର୍ତ୍ତି ଏବଂ ସମସ୍ତ ଗୋପଲଲନାମାନଙ୍କର ପ୍ରେମସାରଦ୍ୱାରା ଗଠିତ ( ଗୋପୀ ପ୍ରେମସାର ଶ୍ରୀରାଧାଠାକୁରାଣୀହେତୁ ଶ୍ରୀରାଧାଭାବ କାନ୍ତିରେ ଗଠିତ ) ସେ ଶ୍ରୀକୃଷ୍ଣଚୈତନ୍ୟ କି ପୁନର୍ବାର ମୋର ଦୃଷ୍ଟିପଥାରୂଢ଼ ହେବେ ?

ଏହାର ଭାବ ଏହି ଯେ ଯାହାଙ୍କୁ କର୍ମ୍ମଯୋଗିମାନେ କର୍ମ୍ମଯୋଗଦ୍ୱାରା ଆରାଧନା କରି ଇନ୍ଦ୍ରାଦି ଶ୍ରେଷ୍ଠ ଦେବଯୋନି ଲାଭ କରି ନିର୍ଭୟରେ କର୍ମ୍ମଫଳ ଭୋଗ କରନ୍ତି, ଜ୍ଞାନଯୋଗିମାନେ ଶ୍ରୁତିପ୍ରତିପାଦ୍ୟ ଜ୍ଞାନମାର୍ଗରେ କେବଳମାତ୍ର ଯାହାଙ୍କୁ ଆଶ୍ରୟ କରନ୍ତି, ଯୋଗିମାନେ ଯୋଗସାଧନାଦ୍ୱାରା ଯାହାଙ୍କୁ ପରମାତ୍ମାରୂପରେ ଅନୁଭବ କରନ୍ତି, ଭକ୍ତମାନେ ନିଜ ନିଜ ଭାବନା ଅନୁଯାୟୀ ଯାହାଙ୍କର ସ୍ୱରୂପ କଳ୍ପନା କରି ମାଧୁର୍ଯ୍ୟରସ ଆସ୍ୱାଦନ କରନ୍ତି ଏବଂ ଯେ କି ଅଧୁନା ବ୍ରଜଗୋପୀମାନଙ୍କ ପ୍ରେମସର୍ବସ୍ୱ ଅର୍ଥାତ୍ ଶ୍ରୀରାଧାଭାବକାନ୍ତି ଗ୍ରହଣ କରି ଅବତୀର୍ଣ୍ଣ ହୋଇଅଛନ୍ତି ସେହି ଶ୍ରୀକୃଷ୍ଣଚୈତନ୍ୟଙ୍କୁ

| | |
|---|---|
| ତଥାହି ଶ୍ରୀରୂପଗୋସ୍ୱାମି-କଡ଼ଚାୟାମ୍— | ରାଧା କୃଷ୍ଣ ଏକ-ଆତ୍ମା, ଦୁଇ ଦେହ ଧରି । |
| ରାଧା କୃଷ୍ଣପ୍ରଣୟବିକୃତିର୍ହ୍ଲାଦିନୀ ଶକ୍ତିରସ୍ମା- | ଅନ୍ୟୋନ୍ୟେ ବିଲସେ ରସ ଆସ୍ୱାଦନ କରି ।୪୯। |
| ଦେକାତ୍ମାନାବପି ଭୁବି ପୁରା ଦେହଭେଦଂ ଗତୌ ତୌ | |
| ଚୈତନ୍ୟାଖ୍ୟଂ ପ୍ରକଟମଧୁନା ତଦ୍ଦ୍ୱୟଞ୍ଚୈକ୍ୟମାପ୍ତଂ, | ସେଇ ଦୁଇ ଏକ ଏବେ—ଚୈତନ୍ୟଗୋସାଇଁ । |
| ରାଧାଭାବଦ୍ୟୁତିସୁବଳିତଂ ନୌମି କୃଷ୍ଣସ୍ୱରୂପମ୍ ।।୮।। * | ଭାବ ଆସ୍ୱାଦିତେ ଦୋହେ ହୈଲା ଏକଠାଇଁ ।୫୦। |

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ପ୍ରେମବିକାରରୂପା ( ବିଳାସରୂପା ମୂର୍ତ୍ତିମତୀ ) ହ୍ଲାଦିନୀ ନାମ୍ନୀ ଶକ୍ତି । ଅତଏବ ଶ୍ରୀରାଧା ଓ ଶ୍ରୀକୃଷ୍ଣ ସ୍ୱରୂପତଃ ଅଭିନ୍ନ ହେଲେହେଁ ପୂର୍ବେ ( ଦ୍ୱାପର ଶେଷରେ ପ୍ରକଟରୂପରେ ) ଧରଣୀରେ ( ଶ୍ରୀବୃନ୍ଦାବନରେ ) ଦୁଇ ଶ୍ରୀବିଗ୍ରହ ଧାରଣ କରିଥିଲେ, ଅଧୁନା ସେ ଦୁଇ ଶ୍ରୀବିଗ୍ରହ ପୁଣି ଏକ ହୋଇ ଚୈତନ୍ୟନାମ ଧାରଣପୂର୍ବକ ପ୍ରକଟ ହୋଇଅଛନ୍ତି । ସେହି ଶ୍ରୀକୃଷ୍ଣ ଚୈତନ୍ୟ ଯେ କି ସ୍ୱରୂପତଃ ଶ୍ରୀକୃଷ୍ଣ ଆଉ ଶ୍ରୀରାଧାଙ୍କ ଭାବ ଓ କାନ୍ତିରେ ସୁବଳିତ ହୋଇଅଛନ୍ତି ତାଙ୍କୁ ପ୍ରଣାମ କରେଁ । [ ୮ମ ଶ୍ଳୋକଃ ]

ବିସ୍ତାରେଣ " ରାଧା " ଇତି ଶ୍ଳୋକାର୍ଥଂ କର୍ତ୍ତୁଂ ସୁଖବୋଧାୟାଦୌ ତଦଭିପ୍ରେତାର୍ଥମାହ "ରାଧାକୃଷ୍ଣ" ଇତି ଦ୍ୱାଭ୍ୟାଂ । ଏତେନୈତଦଧ୍ୟୁକ୍ତଂ ଭବତି ଶ୍ରୀରାଧାକୃଷ୍ଣୟୋରେକୀଭୂତଂ ଏବ ଶ୍ରୀଚୈତନ୍ୟରୂପଂ । ତତ୍ରହେତୁଃ " ଭାବ " ଇତି । ଏକାତ୍ମତୟା ଶ୍ରୀରାଧାକୃଷ୍ଣୟୋରେକତ୍ୱା ଏବ ଭାବଗ୍ରହଣେ ପ୍ରକାରୋ ଭବତୁ ଇତ୍ୟପି ଜ୍ଞେୟଂ । ୪୯ । ୫୦ । ବି, ଚ,

କି ମୁଁ ପୁନର୍ବାର ଦର୍ଶନ କରିବି ? ଏହା ଶ୍ରୀରୂପଗୋସ୍ୱାମୀ ଶ୍ରୀବୃନ୍ଦାବନରେ ଥାଇ ଶ୍ରୀପୁରୁଷୋତ୍ତମ-ନିବାସୀ ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁଙ୍କୁ ଲକ୍ଷ୍ୟ କରି କହୁଅଛନ୍ତି । [ ୬ଷ୍ଠ ଶ୍ଳୋକାର୍ଥ ]

ଭାବାସ୍ୱାଦନନିମିତ୍ତ କୌତୁକବଶତଃ ଯେ ଶ୍ରୀକୃଷ୍ଣ ପ୍ରଣୟିନୀ ଗୋପୀଜନମାନଙ୍କ ମଧ୍ୟରୁ ଶ୍ରୀରାଧାଙ୍କର ଅନିର୍ବଚନୀୟ ଅପାର ମଧୁରରସସମୂହ ହରଣ କରି ଉପଭୋଗ କରିବା ସକାଶେ ଏହି ଧନ୍ୟଧାମରେ ଶ୍ରୀରାଧାଙ୍କର କାନ୍ତି ପ୍ରକଟ କରି ତଦ୍ଦ୍ୱାରା ନିଜ ଶ୍ୟାମକାନ୍ତିକୁ ଆବରଣ କରିଅଛନ୍ତି ସେହି ଚୈତନ୍ୟାକୃତି ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ଅତିଶୟ କୃପା କରନ୍ତୁ । [ ୭ମ ଶ୍ଳୋକାର୍ଥ ]

୪୫ଶ ପଦ୍ୟୋକ୍ତ " ସେଇ ଭାବ ଅଙ୍ଗୀକାର କରି " ଏହା ଉପରୋକ୍ତ ଦୁଇ ଶ୍ଳୋକଦ୍ୱାରା ପ୍ରମାଣିତ ହେଲା, ଅର୍ଥାତ୍ ଶ୍ରୀକୃଷ୍ଣ ଶ୍ରୀରାଧାଭାବକାନ୍ତି ଗ୍ରହଣ କରି ଶ୍ରୀକୃଷ୍ଣଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଏଣୁ ଏହି ଭାବ ଗ୍ରହଣ କରିବା ମୂଳ ପ୍ରୟୋଜନ ଏବଂ ଧର୍ମସଂସ୍ଥାପନ କରିବା ତାହାର ଆନୁଷଙ୍ଗିକ ପ୍ରୟୋଜନ, ଏହା ପ୍ରତିପାଦନ କରି ଶ୍ରୀଗ୍ରନ୍ଥକାର ମହାଶୟ କହୁଅଛନ୍ତି, ଭାବଗ୍ରହଣ ଯେ ମୂଳହେତୁ ଅର୍ଥାତ୍ ଯେଉଁ କାରଣରୁ ଭାବଗ୍ରହଣ କଲେ ତାହା " ଆଗେ " ଅର୍ଥାତ୍ ଷଷ୍ଠ ଶ୍ଳୋକର ଅର୍ଥରେ ବିବୃତ ହେବ । କିନ୍ତୁ ଯେ ପ୍ରକାରରେ ଏହି ଭାବ ଗ୍ରହଣ କଲେ ତାହା ଏହି ପଞ୍ଚମ ଶ୍ଳୋକର ଅର୍ଥ ବର୍ଣ୍ଣନଦ୍ୱାରା ବୁଝାଯିବ । ୪୬ । ୪୭ ।

ଗ୍ରନ୍ଥକାର ପୂର୍ବୋକ୍ତମତେ ପଞ୍ଚମ ଶ୍ଳୋକର ଭାବ ପ୍ରକାଶ କଲେ ଏବଂ ପରେ ତାହାର ଅର୍ଥ ପ୍ରକାଶ କରୁଅଛନ୍ତି । ୪୮ ।

ପ୍ରଥମ ପରିଚ୍ଛେଦ—୫ମ ଶ୍ଳୋକ ( ୮ମ ଶ୍ଳୋକର ଅନ୍ୱୟ )

ଉପରୋକ୍ତ ଶ୍ଳୋକର ଭାବ ଏହି ଯେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ଏକାତ୍ମା ଅର୍ଥାତ୍ ଏକ ହୋଇ ସୁଦ୍ଧା, ଦୁଇ ଦେହ ଧରି ପରସ୍ପରର ପ୍ରେମରସ ଆସ୍ୱାଦନପୂର୍ବକ ବିଳାସ କରନ୍ତି, ସେ ଦୁହେଁ ( ଶ୍ରୀରାଧା ଓ ଶ୍ରୀକୃଷ୍ଣ ) ଏବେ (ବର୍ତ୍ତମାନ କଳିଯୁଗରେ ଏକ ( ଏକାତ୍ମା ) ଶ୍ରୀଚୈତନ୍ୟ ଗୋସାଇଁ ।

ଏଥି ଲାଗି ଆଗେ କରି ତାର ବିବରଣ ।
ଯାହା ହୈତେ ହୟ ଗୌରେର ମହିମା କଥନ ॥୫୧॥

ରାଧିକା ହୟେନ କୃଷ୍ଣେର ପ୍ରଣୟ-ବିକାର ।
ସ୍ୱରୂପଶକ୍ତି 'ହ୍ଲାଦିନୀ' ନାମ ଯାଁହାର ॥୫୨॥

ଇଥଂଲଗି ଶ୍ରୀ ରାଧାକୃଷ୍ଣୟୋରେକାତ୍ମତାଂ ପ୍ରତିପାଦୟିତୁଂ ତୟୋର୍ବ୍ୟାଖ୍ୟାଂ କରୋମି ସ୍ୱରୂପଂ ବର୍ଣ୍ଣୟାମୀତ୍ୟର୍ଥଃ । ନନୁ ଶ୍ରୀ ଚୈତନ୍ୟାବତାର-ପ୍ରସଙ୍ଗେ କଥଂ ଶ୍ରୀ ରାଧାସ୍ୱରୂପ-ବର୍ଣ୍ଣନମିତ୍ୟତାହ "ଯାହା" ଇତି । ଶ୍ରୀ ରାଧାକୃଷ୍ଣୟୋରେକତା ଏବ ଶ୍ରୀ ଚୈତନ୍ୟରୂପଂ ଅତସ୍ତୟୋର୍ବିବରଣେନ ଶ୍ରୀ ଚୈତନ୍ୟ-ମହିମକଥନଂ ସ୍ୟାଦିତି ତନ୍ନିର୍ଣ୍ଣୟେତି ଲକ୍ଷ୍ୟାର୍ଥଃ । ୫୧ । ଚ, ଚ,

ନନୁ "ଯେନ ହୁଇ ଏକ ଏବେ" ଇତ୍ୟାଦି ଯଦୁକ୍ତଂ ଶ୍ରୀ ରାଧାକୃଷ୍ଣୟୋରେକୀଭୂତଂ ଶ୍ରୀ ଚୈତନ୍ୟରୂପଂ ତଦ୍ ଭିନ୍ନରୂପୟୋଃ ଶ୍ରୀ ରାଧାକୃଷ୍ଣୟୋର୍ଭିନ୍ନରୂପତ୍ୱେ କଥମେକତ୍ୱଂ ସମ୍ଭବେଦିତି ଚେତ୍ ତତ୍ର ଶ୍ରୀରାଧା ତତ୍ତ୍ୱ-ନିରୂପଣେନ ତଦେକତାୟାଂ ହେତୁଂ ବଦନ୍ "ରାଧାକୃଷ୍ଣପ୍ରଣୟବିକୃତି-ର୍ହ୍ଲାଦିନୀ ଶକ୍ତି" ରିତ୍ୟସ୍ୟାର୍ଥମାହ "ରାଧିକା" ଇତି । ଶ୍ରୀକୃଷ୍ଣ-ପ୍ରଣୟ-ବିକାରତ୍ୱଂ ଚାସ୍ୟ ସ୍ୱରୂପଶକ୍ତିତ୍ୱ ମିତି ଚ ଶ୍ରୀ ରାଧିକାୟାଃ ତତ୍ତ୍ୱଂ ହ୍ଲାଦିନୀ ଇତି ନାମ "ହ୍ଲାଦିନୀର ସାର ପ୍ରେମ" ଇତ୍ୟାଦି ସନ୍ଦର୍ଭେ ପ୍ରଣୟବିକାର-ସ୍ୱରୂପଂ ବକ୍ଷ୍ୟନ୍ତି । ସ୍ୱରୂପଶକ୍ତିରିତି ତୟୋରେକତ୍ୱେ ହେତୁଃ । ଅୟଂ ଭାବଃ ସ୍ୱରୂପାଦଭିନ୍ନା ଯା ସ୍ୱରୂପାଦଭିନ୍ନା ଯା ଶକ୍ତିଃ ସା ସ୍ୱରୂପଶକ୍ତିଃ ସ୍ୱରୂପାଦଭିନ୍ନତ୍ୱାତ୍ ଶକ୍ତିଃ ଶକ୍ତିମତୋରଭେଦେ ନୈବ ତୟୋ-ରେକତ୍ୱଂ ଭବେତ୍ । ୫୨ । ଚ, ଚ,

ଏଠାରେ ଆଶଙ୍କା ହୋଇପାରେ ଯେ, ସେ ଦୁହେଁ ଏକ କାହିଁକି ହେଲେ ? ଏ ହେତୁ ଗ୍ରନ୍ଥକାର ମହାଶୟ କହୁଅଛନ୍ତି ଯେ, ଭାବ ଆସ୍ୱାଦନ କରିବା ସକାଶେ ଏକ ହେଲେ ଅର୍ଥାତ୍ ମିଳିତ ହେଲେ । ଏହାହିଁ ପୂର୍ବୋକ୍ତ ୪୭ ପଦ୍ୟୋକ୍ତ "ପ୍ରକାରର" ବିବରଣ । ଅର୍ଥାତ୍ ଶ୍ରୀକୃଷ୍ଣ ଭାବ ଆସ୍ୱାଦନ କରିବା ସକାଶେ ଶ୍ରୀରାଧାଙ୍କ ସହିତ ମିଳନରେ ଏକାତ୍ମା ଶ୍ରୀକୃଷ୍ଣ ଚୈତନ୍ୟ ହୋଇ ଭାବ ଆସ୍ୱାଦନ କଲେ । ୪୭।୪୮ ।

ଶ୍ରୀ ରାଧାକୃଷ୍ଣଙ୍କର ମିଳିତରୂପ ଶ୍ରୀକୃଷ୍ଣଚୈତନ୍ୟ ହେତୁ ତାହା ବୁଝାଇବା ପୂର୍ବରୁ ଆଗେ ଶ୍ରୀ ରାଧାକୃଷ୍ଣଙ୍କର ବିବରଣ ବର୍ଣ୍ଣନ କରୁଅଛନ୍ତି ଯାହାଦ୍ୱାରା ଶ୍ରୀ ଗୌରଚନ୍ଦ୍ରଙ୍କର ମହିମା ପ୍ରକାଶିତ ହେବ । ୫୧ ।

ଏଠାରେ ଆଶଙ୍କା ହୋଇପାରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ ପୃଥକରୂପ ହୋଇ ଏକ କିପରି ହେଲେ । ସେହି ହେତୁ ଶ୍ରୀରାଧା ଯେ ଶ୍ରୀକୃଷ୍ଣଙ୍କ ଅଭିନ୍ନାତ୍ମା ତାହା ପ୍ରତିପାଦନ କରିବା ସକାଶେ କହୁ-ଅଛନ୍ତି କହୁଅଛନ୍ତି । ଶ୍ରୀରାଧା ତତ୍ତ୍ୱତଃ ଶ୍ରୀକୃଷ୍ଣଙ୍କର ପ୍ରଣୟବିକାର (ପ୍ରେମସାରାଂଶ) ସ୍ୱରୂପ ଶକ୍ତି ଯାହାର ନାମ ହ୍ଲାଦିନୀ ଅର୍ଥାତ୍ ସେ ଶ୍ରୀକୃଷ୍ଣଙ୍କର ହ୍ଲାଦିନୀ ନାମା ସ୍ୱରୂପଶକ୍ତି । ସ୍ୱରୂପଶକ୍ତିର ଅର୍ଥ ଏହି ଯେ, ଯେଉଁ ଶକ୍ତି ସ୍ୱରୂପରୁ ଅବିଚ୍ଛିନ୍ନା ବା ସ୍ୱରୂପରୁ ଅଭିନ୍ନା । ତାହାହିଁ ସ୍ୱରୂପ ଶକ୍ତି । ତେଣୁ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ସ୍ୱରୂପ ଶକ୍ତି ହେତୁ ଶ୍ରୀକୃଷ୍ଣଙ୍କଠାରୁ ଅଭିନ୍ନ, ଏହାର ଭାବ ଏହି ଯେ ଶକ୍ତି ଓ ଶକ୍ତିମାନ ଅଭେଦ ହେତୁ ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ସ୍ୱରୂପରୁ ଅଭିନ୍ନା । ତେବେ ପୃଥକ୍ ହେବାର କାରଣ ଏହି ଯେ ଭଗବାନ-ଙ୍କର ସ୍ୱରୂପଶକ୍ତି ସ୍ୱରୂପରେ ସ୍ୱଭାବସମୟରେ ଅମୂର୍ତ୍ତ ଅର୍ଥାତ୍ ସ୍ୱତନ୍ତ୍ର ମୂର୍ତ୍ତିହୀନ । କିନ୍ତୁ ତନ୍ନାମକ ଶକ୍ତିର ଅଧିଷ୍ଠାତ୍ରୀରୂପରେ ମୂର୍ତ୍ତିମତୀ ହୋଇ ଶ୍ରୀକୃଷ୍ଣଙ୍କର ଆବରଣରୂପା ହୁଅନ୍ତି । ତେଣୁ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଅନ୍ତାହ୍ଲାଦିନୀ ଶକ୍ତିର ଅଧିଷ୍ଠାତ୍ରୀରୂପରେ ମୂର୍ତ୍ତିମତୀ ହୋଇ ଶ୍ରୀକୃଷ୍ଣଙ୍କ ସହିତ ବିଳାସ କରନ୍ତି । କିନ୍ତୁ ବର୍ତ୍ତ-ମାନ ଭାବ ଆସ୍ୱାଦନସକାଶେ ଶ୍ରୀରାଧା ସ୍ୱରୂପଶକ୍ତି ଗତ ଅମୂର୍ତ୍ତରୂପରେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାରୁ ଶ୍ରୀକୃଷ୍ଣ ସ୍ୱରୂପଶକ୍ତି ସମନ୍ୱିତ ଶ୍ରୀ ଗୌରରୂପରେ ପ୍ରକାଶ ହୋଇଅଛନ୍ତି । ୫୨ ।

| | |
|---|---|
| ହ୍ଲାଦିନୀ କରାୟ କୃଷ୍ଣେ ଆନନ୍ଦାସ୍ୱାଦନ । | ଆନନ୍ଦାଂଶେ ହ୍ଲାଦିନୀ, ସଦଂଶେ ସନ୍ଧିନୀ । |
| ହ୍ଲାଦିନୀ-ଦ୍ୱାରାୟ କରେ ଭକ୍ତେର ପୋଷଣ ।୫୩। | ଚିଦଂଶେ ସମ୍ବିତ୍—ଯାରେ 'ଜ୍ଞାନ' କରି ମାନି ।୫୫। |
| ସଚ୍ଚିଦାନନ୍ଦ-ପୂର୍ଣ୍ଣ କୃଷ୍ଣେର ସ୍ୱରୂପ । | ତଥାହି ବିଷ୍ଣୁପୁରାଣେ ( ୧।୧୨।୬୯ )— |
| ଏକଇ ଚିଚ୍ଛକ୍ତି ତାଁର ଧରେ ତିନ ରୂପ— ।୫୪। | ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ତ୍ୱଯ୍ୟେକା ସର୍ବସଂସ୍ଥିତୌ । |
| | ହ୍ଲାଦତାପକରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜ୍ଜିତେ ।୯। ✽ |

ସଂକ୍ଷେପାର୍ଥ ଅଗତ ଏବ ହ୍ଲାଦିନୀସ୍ୱରୂପୋଽହ "ହ୍ଲାଦିନୀ" ଇତି । ଶ୍ରୀକୃଷ୍ଣଂ ଶୃଙ୍ଗାରରସାନନ୍ଦ-ମନୁଭାବୟନ୍ତି ଶୃଙ୍ଗାରେରସାନନ୍ଦେନ ତମାହ୍ଲାଦୟନ୍ତୀତି ହ୍ଲାଦିନୀତ୍ୟର୍ଥଃ । ଭକ୍ତାନ୍ ହ୍ଲାଦୟନ୍ତ୍ୟା ଯୟାତ୍ର ଶ୍ରୀକୃଷ୍ଣୋ ନିଜଭକ୍ତାନ୍ହ୍ଲାଦଂ ହ୍ଲାଦୟତ୍ୟା ବର୍ଦ୍ଧୟତି ହ୍ଲାଦିନୀତ୍ୟର୍ଥଃ । ୫୩ । ଚ, ଚ,

ସ୍ୱରୂପ ଶକ୍ତେଃ ସ୍ୱରୂପମାହ "ସଚ୍ଚିଦାନନ୍ଦ" ଇତି ଦ୍ୱାଭ୍ୟାଂ । ଚିଚ୍ଛକ୍ତିଃ ସ୍ୱରୂପଶକ୍ତିଃ ଅସ୍ୟମର୍ଥଃ ସତ୍‌ଚିତ୍ ଆନନ୍ଦ ଇତି ନିତ୍ୟଃ ପୂର୍ଣ୍ଣସ୍ୟ ଶ୍ରୀକୃଷ୍ଣସ୍ୱରୂପସ୍ୟ ସଦ୍ଭାଗେନ ସନ୍ଧିନୀ ଚିଦ୍ଭାଗେନ ସମ୍ବିତ୍ ଆନନ୍ଦ-ଭାଗେନ ହ୍ଲାଦିନୀତି ରୂପତ୍ରୟଂ ଧତ୍ତେ ଯା ଚିଚ୍ଛକ୍ତିଃ ସା ସ୍ୱରୂପଶକ୍ତିଃ । ଅତ୍ର ନିର୍ଦ୍ଦେଶୋ ଉତ୍ତରୋତ୍ତର ଗୁଣୋତ୍କର୍ଷେଣ ସନ୍ଧିନୀ ସମ୍ବିଦ୍‌ହ୍ଲାଦିନୀତି କ୍ରମୋ ଜ୍ଞେୟଃ । ଅଥବା ନନ୍ଦାଂଶେନୈବ ପ୍ରାଧାନ୍ୟାଦିତ୍ୟତ୍ରୋକ୍ତଂ । ୫୪।୫୫ । ଚ, ଚ,

(ହେ ଭଗବନ୍) ଏକା (ମୁଖ୍ୟା ଅବ୍ୟଭିଚାରିଣୀ ସ୍ୱରୂପ ଭୂତା) ହ୍ଲାଦିନୀ (ଆହ୍ଲାଦକରୀ) ସନ୍ଧିନୀ (ସତ୍ତା) ସମ୍ବିତ୍ (ଚିଚ୍ଛକ୍ତିଃ) ସର୍ବସଂସ୍ଥିତୌ (ସର୍ବସ୍ୟ ସମ୍ୟକ୍ ସ୍ଥିତିର୍ଯସ୍ମାତ୍ ତସ୍ମିନ୍ ସର୍ବାଧିଷ୍ଠାନ-ଭୂତେ) ତ୍ୱୟି (ଏବ, ଅସ୍ତି ନ ତୁ ଜୀବେଷୁ) ହ୍ଲାଦକରୀ (ମନଃ ପ୍ରସାଦନୀ ସାତ୍ତ୍ୱିକୀ) ତାପକରୀ (ବିଷୟ-ବିୟୋଗାଦିଷୁ ତାପକରୀ ତାମସୀ) ମିଶ୍ରା (ତଦୁଭୟ ମିଶ୍ରା ବିଷୟଜନ୍ୟା ରାଜସୀ ଶକ୍ତିଃ) ଗୁଣବର୍ଜ୍ଜିତେ (ସତ୍ତ୍ୱାଦିଗୁଣବର୍ଜ୍ଜିତେ) ତ୍ୱୟି ନ (ବର୍ତ୍ତତେ, କିନ୍ତୁ ଜୀବେଷ୍ୱେବ) [ ୯ ଶ୍ଳୋକ ]

---

ଶ୍ରୀକୃଷ୍ଣଙ୍କର ହ୍ଲାଦିନୀ ନାମା ଶକ୍ତି ଶ୍ରୀକୃଷ୍ଣଙ୍କୁ ଶୃଙ୍ଗାର ରସାନନ୍ଦ ଅନୁଭବ କରାନ୍ତି ଏବଂ ଶ୍ରୀକୃଷ୍ଣ ସେହି ହ୍ଲାଦିନୀ ଶକ୍ତିଦ୍ୱାରା ଅନୁରାଗୀ ଭକ୍ତମାନଙ୍କର ଆନନ୍ଦ ବୃଦ୍ଧି କରାନ୍ତି । ୫୩ ।

ଶ୍ରୀ କବିରାଜ ଗୋସ୍ୱାମୀ ସ୍ୱରୂପଶକ୍ତିର ସ୍ୱରୂପ ବୁଝାଉଅଛନ୍ତି ।

ଶ୍ରୀକୃଷ୍ଣଙ୍କର ସ୍ୱରୂପହିଁ ସଚ୍ଚିଦାନନ୍ଦ ପୂର୍ଣ୍ଣ । (ଯୁଗପତ୍ ସତ୍, ଚିତ୍, ଆନନ୍ଦପୂର୍ଣ୍ଣ) ସେହି ସ୍ୱରୂପଶକ୍ତିର ଅପର ନାମ ଚିତ୍ ଶକ୍ତି । ସେହି ଚିତ୍ ଶକ୍ତି ସତ୍,ଚିତ୍ ଓ ଆନନ୍ଦ ଏହି ତିନିରୂପ ଧାରଣ କରେ । ସେହି ଚିତ୍ ଶକ୍ତିର ଆନନ୍ଦାଂଶଗତ ରୂପର ନାମ ହ୍ଲାଦିନୀ, ସଦଂଶଗତ ତିନିରୂପ ନାମ ସନ୍ଧିନୀ, ଚିଦଂଶଗତ ରୂପର ନାମ ସମ୍ବିତ୍ ଯାହାକୁ ଶ୍ରୀକୃଷ୍ଣଙ୍କର ଆତ୍ମଜ୍ଞାନ କୁହାଯାଏ । ଏଠାରେ ଉତ୍ତ-ରୋତ୍ତର ଗୁଣର ଉତ୍କର୍ଷ ହେତୁ ପ୍ରଥମେ ସନ୍ଧିନୀ (ସତ୍) ପରେ ସମ୍ବିତ୍ (ଚିତ୍) ଓ ତତ୍ପରେ ହ୍ଲାଦିନୀ (ଆନନ୍ଦ) ଏହିପରି କ୍ରମୋତ୍କର୍ଷ ବୁଝିବାକୁ ହେବ । ଆନନ୍ଦାଂଶର ପ୍ରାଧାନ୍ୟ ହେତୁ ସମ୍ଭବତଃ ଅଟଗ୍ରେ ହ୍ଲାଦିନୀର ନାମ ଉଲ୍ଲେଖ କରାହୋଇଅଛି । ୫୪ । ୫୫ ।

ହେ ଭଗବନ୍ ! ମୋକ୍ଷ ଅବ୍ୟଭିଚାରିଣୀ ଆପଣଙ୍କର ସ୍ୱରୂପଭୂତାହ୍ଲାଦିନୀ, ସନ୍ଧିନୀ ଓ ସମ୍ବିତ୍ ଏହି ଶକ୍ତିତ୍ରୟ ସର୍ବାଧିଷ୍ଠାନଭୂତ ଆପଣଙ୍କଠାରେ ବିରାଜ କରୁଅଛନ୍ତି । ତ୍ରିଗୁଣାତ୍ମକଶକ୍ତି ହ୍ଲାଦ କରି ଅର୍ଥାତ୍ ମନୋପ୍ରସାଦଜନକା ସାତ୍ତ୍ୱିକୀ ତାପ କରୀ ଅର୍ଥାତ୍ ବିଷୟ ବିୟୋଗାଦିରେ ତାପଦାୟିନୀ ତାମସୀ ଏବଂ ପ୍ରସାଦ ଓ ତାପ ଉଭୟମିଶ୍ରା ବିଷୟଜନ୍ୟା ରାଜସୀ ଏ ତିନିଶକ୍ତି ପ୍ରାକୃତ ସତ୍ତ୍ୱାଦିଗୁଣବର୍ଜ୍ଜିତ ଆପଣଙ୍କଠାରେ ନାହାନ୍ତି । ଅର୍ଥାତ୍ ତାହା ଜୀବମାନଙ୍କଠାରେ ରହିଅଛି ।

| | |
|---|---|
| ସନ୍ଧିନୀର ସାର ଅଂଶ—'ଶୁଦ୍ଧସତ୍ତ୍ୱ' ନାମ । | ମାତା ପିତା ସ୍ଥାନ ଗୃହ ଶଯ୍ୟାସନ ଆର । |
| ଭଗବାନେର ସତ୍ତା ହୟ ଯାହାତେ ବିଶ୍ରାମ ।୫୬। | ଏ ସବ କୃଷ୍ଣେର ଶୁଦ୍ଧସତ୍ତ୍ୱେର ବିକାର ।୫୭। |

ହ୍ଲାଦିନୀସାରକଥନେ କୃଷ୍ଣପ୍ରଣୟବିକାରସ୍ୟ ସ୍ୱରୂପଂ ବକ୍ଷ୍ୟନ୍ତି ହ୍ଲାଦିନୀର ସାର ପ୍ରେମ ଇତ୍ୟାଦିନା । ତଦ୍ ଭାବଭୂତୋପୋଦ୍ଘାତତ୍ୱେନ ସନ୍ଧିନ୍ୟାଦେଃ ସାରମାହ "ସନ୍ଧିନୀର" ଇତି । ତ୍ରୈଗୁଣ୍ୟକୃତମାୟିକସତ୍ତ୍ୱାତିରିକ୍ତଂ କେବଲଂ ସତ୍ତ୍ୱଂ ଶୁଦ୍ଧସତ୍ତ୍ୱଂ । ଯଥା "ସତ୍ତ୍ୱଂ ବିଶୁଦ୍ଧଂ ବସୁଦେବଶବ୍ଦିତଂ" ଇତ୍ୟସ୍ୟ ଟୀକାୟାଂ ଶ୍ରୀସ୍ୱାମିପାଦେନ ଯଦୁକ୍ତଂ "ସ୍ୱରୂପଶକ୍ତିବୃତ୍ତିତ୍ୱେନ ଜାଡ୍ୟାଂଶେନାପି ରହିତଂ" ତତ୍ ଶୁଦ୍ଧସତ୍ତ୍ୱଂ । ଭଗବାନେର ଇତି ଭଗବତ୍ ସତ୍ତାୟାଃ ଯତ୍ର ବିଶ୍ରାମ ଇତ୍ୟର୍ଥଃ ।୫୬।୫୭। ବ, ଚ,

ଏଠାରେ ଅଶଙ୍କା ହୋଇପାରେ ଯେ ସର୍ବାଧିଷ୍ଠାନଭୂତ ଭଗବାନଙ୍କଠାରେ ମାୟିକଶକ୍ତି ଆଦି ଯଦି ନ ରହନ୍ତି ତେବେ ସେ ସର୍ବାଧିଷ୍ଠାନଭୂତ କିରୂପେ ହେଲେ ? ଏହାର ସିଦ୍ଧାନ୍ତ ଏହି ଯେ ସ୍ୱରୂପଗତ ଶକ୍ତିସମୂହ ସ୍ୱରୂପରୁ ଅଭିନ୍ନ ହେତୁ ସେମାନେ ଯୁଗପତ୍ ତାହାଙ୍କ ସ୍ୱରୂପରେ ରହିଅଛନ୍ତି । କିନ୍ତୁ ମାୟାଶକ୍ତି ତାହାଙ୍କର ବହିରଙ୍ଗା ହେତୁ ମାୟିକତ୍ରିଗୁଣମୟୀ ଶକ୍ତି ତାହାଙ୍କ ସହିତ ଯୁକ୍ତ ହୁଅନ୍ତି ନାହିଁ। ଅଥଚ ତାହାଙ୍କର ଆଶ୍ରୟରେ ରହିଅଛନ୍ତି । ଏହାହିଁ ଶ୍ରୀଭଗବାନଙ୍କର ଭଗବତ୍ତା । କାରଣ ସେ ସ୍ୱୟଂ ଆନନ୍ଦଘନସ୍ୱରୂପ ହେତୁ ମାୟାଗୁଣବିଶିଷ୍ଟା ମିଶ୍ରା ସାତ୍ତ୍ୱିକୀ ଆଦି ଶକ୍ତିଦ୍ୱାରା ତାହାଙ୍କର ମନ ପ୍ରସାଦ କିପରି ହୋଇପାରେ, ଏହି ଶ୍ଳୋକରେ ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀରେ କ୍ରମେ ଉତ୍ତରୋତ୍ତର ଗୁଣୋତ୍କର୍ଷ ଥିବାରୁ ଅର୍ଥାତ୍ ସନ୍ଧିନୀର ଗୁଣ ସମ୍ବିତରେ ଏବଂ ସମ୍ବିତର ଗୁଣ ହ୍ଲାଦିନୀରେ ଥିବାରୁ ସନ୍ଧିନୀ, ସମ୍ବିତ୍ ଓ ହ୍ଲାଦିନୀ ଏହି ରୂପ କ୍ରମ ଜାଣିବାକୁ ହେବ ।

ହ୍ଲାଦିନୀର ଅର୍ଥ ଏହି ଯେ ଶ୍ରୀକୃଷ୍ଣ ସ୍ୱୟଂ ଅହ୍ଲାଦକରୂପ ହୋଇ ମଧ୍ୟ ଯାହାଦ୍ୱାରା ଅହ୍ଲାଦିତ ହୁଅନ୍ତି ଏବଂ ଅପରକୁ ଅହ୍ଲାଦିତ କରନ୍ତି ତାହାହିଁ ତାଙ୍କର ହ୍ଲାଦିନୀ ଶକ୍ତି । ଏହାର ସାରାଂଶ ପ୍ରଧାନକୁ ଗୁହ୍ୟବିଦ୍ୟା ବା ମହାଭାବ କୁହାଯାଏ । ଏହାଦ୍ୱାରା ଶ୍ରୀକୃଷ୍ଣଙ୍କର ପ୍ରୀତ୍ୟାତ୍ମିକା ( ରାଗାନୁଗା-ଭକ୍ତି ) ପ୍ରକାଶ ପାଏ । ଶ୍ରୀକୃଷ୍ଣ ସ୍ୱୟଂ ସନ୍ଧିନୀସ୍ୱରୂପ ଅର୍ଥାତ୍ ସତ୍ତାସ୍ୱରୂପ ହେଲେହେଁ ଯାହାଦ୍ୱାରା ସତ୍ତାକୁ ଧାରଣ କରନ୍ତି ଏବଂ କରାନ୍ତି ତାହାହିଁ ସନ୍ଧିନୀ ଶକ୍ତି । ଏହାର ସାରାଂଶ ପ୍ରଧାନକୁ ଅଧାରଶକ୍ତି ବା ଶୁଦ୍ଧସତ୍ତ୍ୱ କୁହାଯାଏ ।

ଶ୍ରୀକୃଷ୍ଣ ସ୍ୱୟଂ ସମ୍ବିତମୟ ଜ୍ଞାନମୟ ହେଲେହେଁ ଯାହାଦ୍ୱାରା ଜାଣନ୍ତି ଏବଂ ଜଣାନ୍ତି ତାହାହିଁ ସମ୍ବିତଶକ୍ତି । ଏହାର ସାରାଂଶ ପ୍ରଧାନକୁ ଆତ୍ମବିଦ୍ୟା ( ଭଗବତ୍ତତ୍ତ୍ୱଜ୍ଞାନ ) କୁହାଯାଏ ।

[ ୯ମ ଶ୍ଳୋକାର୍ଥ ]

ପୂର୍ବୋକ୍ତ ୫୬ ପୟାର ଲିଖିତ ଶ୍ରୀକୃଷ୍ଣଙ୍କର ପ୍ରଣୟବିକାର ଅର୍ଥାତ୍ ହ୍ଲାଦିନୀର ସାରାଂଶ ଉତ୍ତମରୂପେ ବୁଝାଇବାସକାଶେ ସଚ୍ଚିଦାନନ୍ଦର ପ୍ରଥମେ ସତ୍ ( ସନ୍ଧିନୀ ) ର ସାରାଂଶଅଭିଗ୍ରନ୍ଥକାର ବୁଝାଉଅଛନ୍ତି ।

ସନ୍ଧିନୀଶକ୍ତିର ସାରାଂଶକୁ "ଶୁଦ୍ଧସତ୍ତ୍ୱ" କୁହାଯାଏ । ଅର୍ଥାତ୍ ସେଥିରେ ମାୟିକମିଶ୍ର ସତ୍ତ୍ୱର ସମ୍ବନ୍ଧ ନାହିଁ । ମାୟିକତ୍ରିଗୁଣର ତ୍ରୈଗୁଣ୍ୟକୃତ ( ମିଶ୍ରଣ ) ଏହିପରି ଉଲ୍ଲେଖ ଅଛି ଯଥା ;— ସତ୍ତ୍ୱଗୁଣରେ ଦୁଇପାଦ ସତ୍ତ୍ୱ ଏକପାଦ ରଜ ଓ ଏକପାଦ ତମ । କିନ୍ତୁ ତାହା ସତ୍ତ୍ୱପ୍ରଧାନହେତୁ ସତ୍ତ୍ୱଗୁଣ କୁହାଯାଏ । ସେହିପରି ରଜଗୁଣରେ ଦୁଇପାଦ ରଜ ଏକପାଦ ସତ୍ତ୍ୱ ଓ ଏକପାଦ ତମ ରହିଅଛି ଏଣୁ ଏ ରଜୋପ୍ରଧାନହେତୁ ଏହାକୁ ରଜୋଗୁଣ କୁହାଯାଏ ଏବଂ ତମୋଗୁଣରେ ଦୁଇପାଦ ତମ ଏକପାଦ ରଜ ଓ ଏକପାଦ ସତ୍ତ୍ୱ ରହିଅଛି କିନ୍ତୁ ତମୋପ୍ରଧାନହେତୁ ଏହାକୁ ତମୋଗୁଣ

ତଥାହ ( ଭାଃ ୪।୩।୨୩ )—
ସତ୍ତ୍ୱଂ ବିଶୁଦ୍ଧଂ ବସୁଦେବଶବ୍ଦିତଂ,
ଯଦୀୟତେ ତତ୍ର ପୁମାନପାବୃତଃ ।
ସତ୍ତ୍ୱେ ଚ ତସ୍ମିନ୍ ଭଗବାନ୍ ବାସୁଦେବୋ,
ହ୍ୟଧୋକ୍ଷଜୋ ମେ ମନସା ବିଧୀୟତେ ॥୧୦॥*

କୃଷ୍ଣେର ଭଗବତ୍ତା-ଜ୍ଞାନ—ସମ୍ବିତେର ସାର ।
ବ୍ରହ୍ମଜ୍ଞାନାଦିକ ସବ ତାର ପରିବାର । ୬୮ ।
ହ୍ଲାଦିନୀର ସାର—'ପ୍ରେମ', ପ୍ରେମସାର—'ଭାବ' ।
ଭାବେର ପରମକାଷ୍ଠା—ନାମ 'ମହାଭାବ' ।୬୯।

ବିଶୁଦ୍ଧଂ ( ସ୍ୱରୂପଶକ୍ତିବୃତ୍ତିତ୍ୱାତ୍ ଜାଡ୍ୟାଂଶେନ ରହିତଂ ) ସତ୍ତ୍ୱଂ ( ସତ୍ତ୍ୱଗୁଣଃ ବା ଅନ୍ତଃକରଣଂ ) ବସୁଦେବ ଶବ୍ଦିତଂ ( ବସୁଦେବ ଶବ୍ଦେନ ଉକ୍ତଂ ) ଯତ୍ ( ଯସ୍ମାତ୍ ) ତତ୍ର (ସତ୍ତ୍ୱେ) ଅପାବୃତଃ ( ଅପଗତଂ ଆବରଣଂ ଯସ୍ମାତ୍ ସ ) ପୁମାନ୍ ( ବାସୁଦେବଃ ) ଈୟତେ ( ପ୍ରକାଶତେ ) ମେ ( ମୟା ) ତସ୍ମିନ୍ ( ବିଶୁଦ୍ଧେ ) ସତ୍ତ୍ୱେ, ଭଗବାନ୍ ବାସୁଦେବଃ ( ବିଶୁଦ୍ଧସତ୍ତ୍ୱେ ପ୍ରତୀୟତେ, ବା ବାସୟତି ) ଚ ମନସା ବିଧୀୟତେ ( ସେବ୍ୟତେ ) ହି ( ଯତଃ ) ( ସ ) ଅଧୋକ୍ଷଜଃ ( ଅଧଃକୃତମ୍ ଅତିକ୍ରାନ୍ତମ୍ ଅକ୍ଷୋଜମ୍ ଇନ୍ଦ୍ରିୟଜଜ୍ଞାନମ୍ ଯେନ ସଃ ) । [ ୧୦ମ ଶ୍ଳୋକ ]

ସନ୍ଧିନୀ ସାରମୁକ୍ତ୍ୱା ସମ୍ବିତ୍‌ସାରମାହ "କୃଷ୍ଣ" ଇତି । ଶ୍ରୀକୃଷ୍ଣସ୍ୟୈବ ଭଗବତ୍ତା ଇତି ତଥା ବ୍ରହ୍ମଜ୍ଞାନାଦିକଂ ତତ୍ପରିବାରଃ ତଭଗବତ୍ତାଜ୍ଞାନାନ୍ତର୍ଗତଂ ନ ତୁ ତତୋଭିନ୍ନମିତି ଚ , ଯଜ୍ଜ୍ଞାନଂ ତତ୍ ସମ୍ବିତ୍‌ସାରଃ । ଅୟମର୍ଥଃ ଶ୍ରୀକୃଷ୍ଣ ଏବ ସ୍ୱୟଂ ଭଗବାନ୍ ଇତି ତଥା ବ୍ରହ୍ମଆଦିପଦେନ ପରମାତ୍ମା ଭଗବାଂଶ୍ଚ ଏତେ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ଅଙ୍ଗକାନ୍ତ୍ୟଂଶସ୍ୱରୂପାଃ ଇତି ଚ ଯଜ୍ଜ୍ଞାନଂ ତତ୍ ସମ୍ବିତ୍‌ସାରଃ । ୬୮ । ବି, ଚ,

ହ୍ଲାଦିନୀ ସାରକଥନେ "ରାଧିକା ହୟେନ କୃଷ୍ଣେର ପ୍ରଣୟ-ବିକାର" ଇତ୍ୟନେନ ଶ୍ରୀରାଧାତତ୍ତ୍ୱଂ ଶ୍ରୀକୃଷ୍ଣପ୍ରଣୟବିକୃତିତ୍ୱମୁକ୍ତମଧୁନା ତତ୍ସ୍ୱରୂପମାହ "ହ୍ଲାଦିନୀର" ଇତି ଗ୍ରନ୍ଥାନ୍ତରେଣ ପ୍ରେମ୍ଣଃ ପରିବସ୍ଥା ଏବ ମହାଭାବ ଅତଃ ମହାଭାବସ୍ୱରୂପତ୍ୱଂ ଶ୍ରୀକୃଷ୍ଣପ୍ରଣୟବିକୃତତ୍ୱଂ । ତତ୍ର ପ୍ରେମା ଯଥା ଉଜ୍ଜ୍ୱଲନୀଲମଣୌ । "ସର୍ବଥା ଧ୍ୱଂସରହିତଂ ସତ୍ୟପି ଧ୍ୱଂସକାରଣେ । ଯଦ୍ଭାବବନ୍ଧନଂ ଯୂନୋଃ ସ ପ୍ରେମା ପରିକୀର୍ତ୍ତିତଃ" । ୧ । ଭାବଃ ଯଥା ତତ୍ରୈବ "ଅନୁରାଗଃ ସ୍ୱୟଂ ବେଦ୍ୟଦଶାଂ ପ୍ରାପ୍ୟ ପ୍ରକାଶିତଃ । ଯାବଦାଶ୍ରୟବୃତ୍ତିଶ୍ଚେଦ୍ଭାବ ଇତ୍ୟଭିଧୀୟତେ । ୨ । ମହାଭାବଃ ଯଥା ତତ୍ରୈବ "ମୁକୁନ୍ଦମହିଷୀବୃନ୍ଦୈ-ରପ୍ୟସାବତି ଦୁର୍ଲଭଃ । ବ୍ରଜଦେବ୍ୟେକସଂବେଦ୍ୟୋ ମହାଭାବାଖ୍ୟୟୋଚ୍ୟତେ । ବରାମୃତ ସ୍ୱରୂପଶ୍ରୀଃ ସ୍ୱଂ ସ୍ୱରୂପଂ ମନୋ ନୟେତ୍ । ୩ । ନନୁ "ସ୍ୟାଦ୍‌ଦୃଢ଼େୟଂ ରତିଃ ପ୍ରେମା ପ୍ରୋଦ୍ୟନ୍ ସ୍ନେହଃ କ୍ରମାଦୟଂ । ସ୍ୟାନ୍ମାନ ପ୍ରଣୟୋ ରାଗୋଽନୁରାଗୋ ଭାବ ଇତ୍ୟପି । ୪ । ଇତ୍ୟୁଜ୍ଜ୍ୱଲ ବାକ୍ୟେନ ରତେଃ ପରାକାଷ୍ଠାୟାଃ ପ୍ରେମତ୍ୱେ କୁତ: ହ୍ଲାଦିନୀସାରଃ ପ୍ରେମା । ଉଚ୍ୟତେ । ହ୍ଲାଦିନୀବୃତ୍ତିବିଶେଷା ରତିଃ ତଥାହି ରତି-ଶ୍ଚେତୋରଞ୍ଜକତା ସୁଖଭୋଗାନୁକୂଲ୍ୟକୃତ୍; ଇତି ଲକ୍ଷଣଂ ସୁଖଭୋଗାନୁକରତ୍ୱେନୈବ ତଦ୍ଭୃତ-ପ୍ରତୀତଃ । ୬୯।୭୦ । ବି, ଚ,

କୁହାଯାଏ । ଶ୍ରୀଭଗବାନଙ୍କର ସତ୍ତ୍ୱ ଏପରି ବିକୃତ ନୁହେ । ତେଣୁ ତାହାକୁ ଶୁଦ୍ଧସତ୍ତ୍ୱ କୁହାଯାଏ । ଏହି ଶୁଦ୍ଧ ସତ୍ତ୍ୱରେ ଶ୍ରୀଭଗବାନଙ୍କର ସତ୍ତ୍ୱ ବିଶ୍ରାମ କରନ୍ତି ଅର୍ଥାତ୍ ଏହି ଆଧାରଶକ୍ତି ଶ୍ରୀକୃଷ୍ଣଙ୍କର ମାତା ପିତା ସ୍ଥାନର ଗୃହଶଯ୍ୟା ଓ ଆସନାଦି । ଏଣୁ ଏମାନେ ଶ୍ରୀକୃଷ୍ଣଙ୍କର ଶୁଦ୍ଧସତ୍ତ୍ୱର ବିକାର ବା ସାରାଂଶ ଅଟନ୍ତି । ୬୨।୬୭ ।

ମହାଭାବସ୍ୱରୂପା—ଶ୍ରୀରାଧା ଠାକୁରାଣୀ ।
ସର୍ବଗୁଣ-ଖନି କୃଷ୍ଣକାନ୍ତାଶିରୋମଣି । ୬୦ ।
ତଥାହି ଶ୍ରୀମଦୁଜ୍ଜ୍ୱଳନୀଳମଣୌ ଶ୍ରୀରାଧାପ୍ରକରଣେ
୨ୟ-ଅଙ୍କେ—
ତୟୋରପ୍ୟୁଭୟୋର୍ମଧ୍ୟେ ରାଧିକା ସର୍ବଥାଧିକା ।
ମହାଭାବସ୍ୱରୂପେୟଂ ଗୁଣୈରତିଗରୀୟସୀ ॥୧୧॥ *

କୃଷ୍ଣପ୍ରେମଭାବିତ ଯାର ଚିତ୍ତେନ୍ଦ୍ରିୟ-କାୟ ।
କୃଷ୍ଣ-ନିଜଶକ୍ତି ରାଧା—କ୍ରୀଡ଼ାର ସହାୟ । ୬୧ ।
ତଥାହି ବ୍ରହ୍ମସଂହିତାୟାମ୍ ( ୫।୩୭ )—
ଆନନ୍ଦଚିନ୍ମୟରସପ୍ରତିଭାବିତାଭି-,
ସ୍ତାଭିର୍ଯ ଏବ ନିଜରୂପତୟା କଳାଭିଃ ।
ଗୋଲୋକ ଏବ ନିବସତ୍ୟଖିଳାତ୍ମଭୂତୋ
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥୧୨॥ *

ତୟୋଃ ( ଶ୍ରୀରାଧାଚନ୍ଦ୍ରାବଲ୍ୟୋରୁଭୟୋରପି ମଧ୍ୟେ ) ରାଧିକା ସର୍ବଥା ରୂପମାଧୂର୍ଯ୍ୟ-ଶ୍ରୀକୃଷ୍ଣପ୍ରଣୟାଦିଭିରଧିକା, ଯତଃ ଇୟଂ ରାଧିକା ମହାଭାବସ୍ୱରୂପା, ଗୁଣୈଃ ଦାକ୍ଷ୍ୟାଦାକ୍ଷିଣ୍ୟାଦିଭିରତି ଗରୀୟସୀ ଅତିପ୍ରଧାନା ଅୟମର୍ଥଃ ସର୍ବାଭ୍ୟ ଏବ ଗୋପୀଭ୍ୟଃ ଚନ୍ଦ୍ରାବଳୀ ଗରୀୟସୀ, ରାଧା ତୁ ତସ୍ୟାଃ ଅପି ଗରୀୟସ୍ତ୍ୱେନ ଅତିଗରୀୟସୀ ଇତି । [ ୧୧ ଶ୍ଳୋକଃ ]

କୃଷ୍ଣ ପ୍ରଣୟବିକାରସ୍ୟାର୍ଥାନ୍ତରମାହ "କୃଷ୍ଣପ୍ରେମେ" ଇତି । ପ୍ରେମେ ମଧୁରନାମ୍ନା ପ୍ରେମ୍ଣା ଭାବିତା ଭାବମିତ୍ୟର୍ଥଃ ଅନେନ କୃଷ୍ଣପ୍ରଣୟବିକାରସ୍ୟାର୍ଥୋଽପି କୃତଃ । ସହାୟ ସହକାରିଣୀ ଭବତୀତି-ଶେଷଃ ନିଜଶକ୍ତିଃ ସ୍ୱରୂପଶକ୍ତିଃ ନିଜଶକ୍ତିତ୍ୱେନ ଶ୍ରୀକୃଷ୍ଣ କ୍ରୀଡ଼ାୟାଂ ସହକାରିଣୀ ଭବତି ଶକ୍ତିସହାୟେନୈବ କାର୍ଯ୍ୟସ୍ୟ ନିଷ୍ପନ୍ନତ୍ୱାଦିତ୍ୟର୍ଥଃ ଅନେନ ହ୍ଲାଦିନୀଶକ୍ତେରର୍ଥଃ ଶକ୍ତ୍ୟୁକ୍ତଃ ହ୍ଲାଦନୀୟାର୍ଥନ୍ତୁ ପୃଥକ୍ ନ କୃତଃ "ହ୍ଲାଦିନୀ କରାୟ" ଇତ୍ୟର୍ଥେ କୈବେଷ୍ଟସିଦ୍ଧେଃ । ୬୧ . ଚ, ଚ,

ଅଖିଳାତ୍ମଭୂତଃ (ଅଖିଳାନାଂ ଗୋକୁଳବାସିନାଂ ଅନ୍ୟେଷାମପି ପ୍ରିୟବର୍ଗାଣାଂ ଆତ୍ମଭୂତଃ) ଯଃ ( ଗୋବିନ୍ଦଃ ) ଏବ ଆନନ୍ଦ ଚିନ୍ମୟରସ ପ୍ରତିଭାବିତାଭିଃ ( ଆନନ୍ଦଚିନ୍ମୟାତ୍ମକେନ ରସେନ ପ୍ରତିଭାବିତାଭିଃ ପ୍ରତିକ୍ଷଣଂ ଭାବିତାଭିଃ ବାସିତାଭିଃ ) ନିଜରୂପତୟା ( ସ୍ୱରୂପତୟା ସ୍ୱକୀୟାଭିଃ ସ୍ୱଦାରତ୍ୱେନ ଏବ ନ ତୁ ପ୍ରକଟଲୀଳାବତ୍, ପରଦାରାଭିଧେନ ପରମଲକ୍ଷ୍ମୀଣାଂ ତାସାଂ ତତ୍ର ପରୋଢ଼ାଭିମାନିତ୍ୱାତ୍ ) କଳାଭିଃ ( ହ୍ଲାଦିନୀଶକ୍ତିରୂପାଭିଃ ) ତାଭିଃ ( ବ୍ରଜଦେବୀଭିଃ ସହ ) ଗୋଲୋକେ ଏବ ନିବସତି ତଂ ଆଦିପୁରୁଷଂ ଗୋବିନ୍ଦଂ ଅହଂ ଭଜାମି । [ ୧୨ଶ ଶ୍ଳୋକଃ ]

ଶ୍ରୀ ସତୀଙ୍କ ପ୍ରତି ଶ୍ରୀ ଶିବ କହୁଅଛନ୍ତି :—

ବିଶୁଦ୍ଧ ସତ୍ତ୍ୱଗୁଣ ବା ବିଶୁଦ୍ଧ ଅନ୍ତଃକରଣକୁ ବସୁଦେବ ବୋଲାଯାଏ । ଯେହେତୁ ତହିଁରେ ଅପାବୃତ ପୁରୁଷ ( ଆବରଣଶୂନ୍ୟ ଚୈତନ୍ୟମୟ ପୁରୁଷ ବାସୁଦେବ ) ପ୍ରକାଶ ହୁଅନ୍ତି । ମୁଁ ସେହି ବିଶୁଦ୍ଧ ଅନ୍ତଃକରଣରେ ଭଗବାନ ବାସୁଦେବଙ୍କୁ ସେବା କରେଁ ଯେହେତୁ ସେ ଅଧୋକ୍ଷଜ ( ଇନ୍ଦ୍ରିୟ ଅଗୋଚର ) ଅର୍ଥାତ୍ ସେ ପ୍ରାକୃତଇନ୍ଦ୍ରିୟ ଗୋଚର ନ ହେବାରୁ ମୁଁ କେବଳ ତାହାଙ୍କୁ ମନଦ୍ୱାରା ସେବା କରେଁ । [ ୧୦ମ ଶ୍ଳୋକାର୍ଥ ]

ଗ୍ରନ୍ଥକାର ସର୍ବସାର-ସାର ବୁଝାଇବାପାଇଁ ବର୍ତ୍ତମାନ ସମ୍ମିଳିତ ସାର ବୁଝାଉଅଛନ୍ତି । ଯଥାଃ—ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶଃ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଏ ଛଅଟିକୁ ଭଗ ବୋଲାଯାଏ । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଏବଂ ଏହି ଛଅଟି ଭଗ ତାହାଙ୍କଠାରେ ପରିପୂର୍ଣ୍ଣଭାବରେ ରହିଅଛି ଓ ବ୍ରହ୍ମ ତାହାଙ୍କର ଅଙ୍ଗକାନ୍ତି । ପରମାତ୍ମା ତାହାଙ୍କର ଅଂଶ ଇତ୍ୟାଦି ଜ୍ଞାନସମ୍ମିଳିତ ବା ଜ୍ଞାନର ସାରାଂଶ । ଅର୍ଥାତ୍ ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଓ ଷଡ଼ବିଧ ଐଶ୍ୱର୍ଯ୍ୟପରିପୂର୍ଣ୍ଣ । ବ୍ରହ୍ମ ତାହାଙ୍କର ଅଙ୍ଗକାନ୍ତି, ପରମାତ୍ମା ତାହାଙ୍କର ଅଂଶ ଇତ୍ୟାଦି ଜ୍ଞାନ ଶ୍ରୀକୃଷ୍ଣଙ୍କର ସ୍ୱୟଂ ଭଗବାନ୍‌ତ୍ୱଜ୍ଞାନର ଅଙ୍ଗ ହେତୁ ସମ୍ବନ୍ଧଜ୍ଞାନ । ୪୮ ।

| | |
|---|---|
| କୃଷ୍ଣକେରେ କରାଯ଼ ଯେଉଁଛେ ରସ-ଆସ୍ୱାଦନ । କ୍ରୀଡ଼ାର ସହାୟ ଯେଉଁଛେ ଶୁନ ବିବରଣ— ।୬୨। | କୃଷ୍ଣକାନ୍ତାଗଣ ଦେଖି ତ୍ରିବିଧ ପ୍ରକାର— । ଏକ ଲକ୍ଷ୍ମୀଗଣ, ପୁରେ ମହିଷୀଗଣ ଆର । ୬୩ । |

"ହ୍ଲାଦିନୀକରାୟ" ଇତ୍ୟନ୍ତଯଦୁକ୍ତଂ ଶ୍ରୀରାଧିକା ଶ୍ରୀକୃଷ୍ଣଂ ଶୃଙ୍ଗାରରସାନନ୍ଦମନୁଭାବୟତି ତଥା "କୃଷ୍ଣପ୍ରେମ" ଇତ୍ୟନ୍ତ ଯଦୁକ୍ତଂ ଶ୍ରୀକୃଷ୍ଣକ୍ରୀଡ଼ାୟାଂ ସହକାରିଣୀ ଭବତୀତି ତଦ ଦ୍ୱାବନ୍ତ ଯନ୍ତ୍ରରୂପେଣ ତତ୍ତ୍ୱ କଥୟିତ୍ୱା ବକ୍ତୁମେତତ୍ ପ୍ରକରଣମାରଭ୍ୟତେ "କୃଷ୍ଣେରେ" ଇତି । ।୬୨। ବି, ଚ,

ତଦ ଦ୍ୱାବନ୍ତ କ୍ରୀଡ଼ାସହାୟମାହ "କୃଷ୍ଣକାନ୍ତା" ଇତ୍ୟାଦି "ଲୀଳାର ସହାୟ ଲାଗି" ଇତ୍ୟନ୍ତଂ । ୬୩ । ବି, ଚ,

ସମ୍ପିତର ସାର କହିବା ପର ଗ୍ରନ୍ଥକାର ଅନନ୍ତର ସାର ବୁଝାଉଅଛନ୍ତି ।—ପୂର୍ବେ ଗ୍ରନ୍ଥକାର କହିଅଛନ୍ତି ଯେ "ଶ୍ରୀକୃଷ୍ଣଙ୍କର ପ୍ରଣୟବିକାର" ଏହାହିଁ ଶ୍ରୀରାଧାଙ୍କର ତତ୍ତ୍ୱ । ବର୍ତ୍ତମାନ ଶ୍ରୀରାଧାଙ୍କର ସ୍ୱରୂପ "ହ୍ଲାଦିନୀ" ବିଷୟ ବୁଝାଉଅଛନ୍ତି । ଯଥା ଃ—

ହ୍ଲାଦିନୀର ସାର ପ୍ରେମ, ପ୍ରେମର ସାର ଭାବ, ଭାବର ପରାକାଷ୍ଠାର ନାମ ମହାଭାବ । ଏଠାରେ ଆଶଙ୍କା ହୋଇପାରେ ଯେ ଶାସ୍ତ୍ରୋକ୍ତ ରତିର ସାର ପ୍ରେମ ସ୍ଥଳେ ହ୍ଲାଦିନୀର ସାର ପ୍ରେମ କିପରି କହିଲେ ? ତାହାର ମୀମାଂସା ଏହି ଯେ "ରତି" ହ୍ଲାଦିନୀର ବୃତ୍ତିବିଶେଷ, ତେଣୁ ମୂଳ ହ୍ଲାଦିନୀର ସାର ପ୍ରେମ କୁହାଗଲା । ଅତଏବ ଶ୍ରୀରାଧାଙ୍କର ସ୍ୱରୂପହିଁ ମହାଭାବ ବା ଶ୍ରୀରାଧା ମହାଭାବସ୍ୱରୂପା ଓ ସେ ସର୍ବଗୁଣର ଆକର ହେତୁ ଶ୍ରୀକୃଷ୍ଣଙ୍କର କାନ୍ତାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ, ଏଣୁ ଠାକୁରାଣୀ ଏହାହିଁ ତାହାଙ୍କର ତତ୍ତ୍ୱ । ୬୦।୬୧ ।

ଶ୍ରୀରାଧିକା ଓ ଶ୍ରୀଚନ୍ଦ୍ରାବଳୀ ଏହି ଉଭୟଙ୍କ ମଧ୍ୟରେ ଶ୍ରୀରାଧିକା ସର୍ବପ୍ରକାରେ ( ରୂପମାଧୁର୍ଯ୍ୟ ଓ ଶ୍ରୀକୃଷ୍ଣ ପ୍ରଣୟାଦିରେ ) ଅଧିକା, ଯେହେତୁ ସେ ମହାଭାବସ୍ୱରୂପା ଏବଂ ଦୟାଦାକ୍ଷିଣ୍ୟାଦିଗୁଣରେ ଅତିପ୍ରଧାନା । ଅର୍ଥାତ୍ ସମସ୍ତ ଗୋପୀମାନଙ୍କ ମଧ୍ୟରେ ଶ୍ରୀଚନ୍ଦ୍ରାବଳୀ ପ୍ରଧାନା କିନ୍ତୁ ଶ୍ରୀରାଧା ତାହାଙ୍କ ଅପେକ୍ଷା ଶ୍ରେଷ୍ଠହେତୁ ସର୍ବପ୍ରଧାନା । [ ୧୯ଶ ଶ୍ଲୋକାର୍ଥ ]

ଶ୍ରୀରାଧାଙ୍କର ଚିତ୍ତ, ଇନ୍ଦ୍ରିୟ ଓ ଶରୀର ଅର୍ଥାତ୍ ଶ୍ରୀରାଧା ସ୍ୱୟଂ ଶ୍ରୀକୃଷ୍ଣଙ୍କ ପ୍ରେମରୁ ଭାବିତ ( ଜାତ ଅର୍ଥାତ୍ ସାଧାରଣ ଜନନୀରୁ ଜନ୍ୟବସ୍ତୁ ପରି ନୁହେଁ, ଏହା ଅଭିବ୍ୟକ୍ତି ପ୍ରତିପାଦକ ଜାତ) ଯେହେତୁ ସେ ଶ୍ରୀକୃଷ୍ଣଙ୍କର ନିଜଶକ୍ତି ( ସ୍ୱରୂପଶକ୍ତି ) ଏଣୁ ସେ ଶ୍ରୀକୃଷ୍ଣଙ୍କର କ୍ରୀଡ଼ାର ( ମଧୁରରସ-ଲୀଳାର ) ସହାୟତାକାରିଣୀ ଅର୍ଥାତ୍ ଶକ୍ତିମାନ ନିଜଶକ୍ତିର ସହାୟବ୍ୟତୀତ କୌଣସି କାର୍ଯ୍ୟ କରିପାରେ ନା; ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ନିଜଶକ୍ତି ହେତୁ ଶ୍ରୀରାଧାଙ୍କର ସହାୟବ୍ୟତୀତ ଶ୍ରୀକୃଷ୍ଣଙ୍କର କୌଣସି କ୍ରୀଡ଼ା ହୋଇପାରେ ନା । ଅର୍ଥାତ୍ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଆନନ୍ଦଭାବର ବିକାର ବା ପରିଣତ ତେଣୁ ଶ୍ରୀକୃଷ୍ଣଙ୍କର ଭାବିତା । ୬୧ ।

ଗୋକୁଳସ୍ଥ ଓ ଅପରାପର ପ୍ରିୟଜନମାନଙ୍କର ପରମପ୍ରିୟ ଗୋବିନ୍ଦ ଯେ କି ତାହାଙ୍କର ପରମ ଚିଦାନନ୍ଦମୟ ମଧୁରରସରୁ ସଞ୍ଜାତ ଏବଂ ହ୍ଲାଦିନୀନାମା ସ୍ୱରୂପଶକ୍ତିର ବୃତ୍ତିରୂପା ଗୋପିକାମାନଙ୍କ ସହିତ ସ୍ୱପ୍ରଧାନରୂପେ ଗୋଲୋକନାମ ସ୍ୱଧାମରେ ବାସ କରନ୍ତି ସେହି ଆଦିପୁରୁଷ ( ମୂଳ ) ଗୋବିନ୍ଦଙ୍କୁ ମୁଁ ( ବ୍ରହ୍ମା ) ଭଜନା କରେଁ । [ ୧୬ଶ ଶ୍ଲୋକାର୍ଥ ]

ଗ୍ରନ୍ଥକାର ପୂର୍ବେ ୬୩ ପୟାରରେ ଉଲ୍ଲେଖ କରିଅଛନ୍ତି ଯେ ହ୍ଲାଦିନୀ ଅର୍ଥାତ୍ ଶ୍ରୀମତୀ ରାଧାଠାକୁରାଣୀ ଶ୍ରୀକୃଷ୍ଣଙ୍କୁ ଆନନ୍ଦରସ ଆସ୍ୱାଦନ କରାନ୍ତି ଏବଂ ପୂର୍ବୋକ୍ତ ୬୧ ପୟାରରେ ଲେଖିଅଛନ୍ତି

ବ୍ରଜାଙ୍ଗନାରୂପ ଆର କାନ୍ତାଗଣସାର ।
ଶ୍ରୀରାଧିକା ହୈତେ କାନ୍ତାଗଣେର ବିସ୍ତାର ।୬୪।
ଅବତାରୀ କୃଷ୍ଣ ଯୈଛେ କରେ ଅବତାର ।
ଅଂଶିନୀ ରାଧା ହୈତେ ତିନ-ଗଣେର ବିସ୍ତାର ।୬୫।
( ଲକ୍ଷ୍ମୀଗଣ ହୟ ତାଁର ଅଂଶବିଭୂତି ।
ବିମ୍ବ-ପ୍ରତିବିମ୍ବରୂପ ମହିଷୀର ତତି ) ।୬୬।
ଲକ୍ଷ୍ମୀଗଣ ତାଁର ବୈଭବବିଲାସାଂଶରୂପ ।
ମହିଷୀଗଣ ବୈଭବପ୍ରକାଶସ୍ୱରୂପ ।୬୭।

କାନ୍ତାଗଣସାରଲକ୍ଷ୍ମୀମହିଷୀଗଣେଭ୍ୟଃ ଅଧିକମିତ୍ୟର୍ଥଃ ।୬୪। ବି, ଚ,

ଅଂଶିନୀତ୍ୱାତ୍ ଶ୍ରୀରାଧାୟାଃ ସକାଶାତ୍ ଲକ୍ଷ୍ମ୍ୟାଦିଗଣାନାଂ ବିସ୍ତାର ଇତ ଶ୍ରୀକୃଷ୍ଣାବତାର ଦୃଷ୍ଟାନ୍ତେନାହ " ଅବତାରୀ " ଇତି । ଅବତାରାଣାମଂଶୀ ଶ୍ରୀକୃଷ୍ଣ ଅତସ୍ତସ୍ମାଦ୍ୟଥାଂଶାବତାରସ୍ତଥା ଲକ୍ଷ୍ମ୍ୟାଦୀନାମଂଶିନୀ ଶ୍ରୀରାଧା ଅତସ୍ତସ୍ୟା ଏବ ଅଂଶାନାଂ ତେଷାଂ ଲକ୍ଷ୍ମ୍ୟାଦିଗଣାନାଂ ବିସ୍ତାରୋଭବତୀତି ଶେଷଃ । ମୂଳଶକ୍ତିତ୍ୱାତ୍ ତସ୍ୟା ଏବ ତେଷାଂ ବିସ୍ତାର ଇତି ଭାବଃ ।୬୫। ବି, ଚ,

ଲକ୍ଷ୍ମୀଗଣସ୍ୟ ତତ୍ତ୍ୱମାହ " ଲକ୍ଷ୍ମୀଗଣ " ଇତି । ବୈଭବବିଲାସରୂପେଣ ଅଂଶରୂପ ଇତ୍ୟର୍ଥଃ । ସାକ୍ଷାଦଂଶତ୍ୱାତ୍ ବୈଭବତ୍ୱଂ ଅନ୍ୟାକାରତ୍ୱାତ୍ ବିଲାସତ୍ୱଂ ।

ମହିଷୀଗଣସ୍ୟ ତତ୍ତ୍ୱମାହ " ମହିଷୀଗଣ " ଇତି । ଅଂଶତ୍ୱାଦ୍ବୈଭବତ୍ୱଂ ଶ୍ରୀକୃଷ୍ଣସ୍ୟ କ୍ରୀଡ଼ାସମ୍ପଦତ୍ୱାତ୍ ପ୍ରକାଶତ୍ୱଂ ପ୍ରକାଶତ୍ୱେଽପି ବୈଭବରୂପତ୍ୱାତ୍ ଦ୍ୱାପାଦ୍ୟୁପୂର୍ଣ୍ଣାପେକ୍ଷୟା ଭେଦୋ ମନ୍ତବ୍ୟଃ ।୬୭। ବି, ଚ,

ଯେ ଶ୍ରୀମତୀ ରାଧାଠାକୁରାଣୀ ସ୍ୱରୂପଶକ୍ତିହେତୁ ଶ୍ରୀକୃଷ୍ଣଙ୍କର କ୍ରୀଡ଼ାର ସହାୟ; ଏହି ପୂର୍ବାର୍ଦ୍ଧ୍ୟ ଶ୍ରୀମତୀ ରାଧାଠାକୁରାଣୀ ଯେଉଁରୂପେ କରନ୍ତି ତାହା ପରବର୍ତ୍ତୀ ପୟାରମାନଙ୍କରେ ଗ୍ରନ୍ଥକାର ବର୍ଣ୍ଣନ କରୁଅଛନ୍ତି ।୬୨।

କ୍ରୀଡ଼ା ସହାୟର ପ୍ରକାର କହୁଅଛନ୍ତି ;—

ଯଥା ;—ଶ୍ରୀକୃଷ୍ଣଙ୍କର କାନ୍ତାମାନେ ତିନପ୍ରକାର ଅଟନ୍ତି । ୧ ଲକ୍ଷ୍ମୀମାନେ, ୨ ମହିଷୀମାନେ, ୩ ବ୍ରଜାଙ୍ଗନାମାନେ ( ଗୋପୀରୂପା ) ଯେଉଁମାନେ କି ଶ୍ରୀକୃଷ୍ଣଙ୍କର କାନ୍ତାଗଣ ମଧ୍ୟରେ ଅର୍ଥାତ୍ ଲକ୍ଷ୍ମୀ ଓ ମହିଷୀମାନଙ୍କ ତୁଳନାରେ ଶ୍ରେଷ୍ଠା ଅଟନ୍ତି । ଏହି କାନ୍ତାମାନେ ( ଲକ୍ଷ୍ମୀଗଣ, ମହିଷୀଗଣ ଓ ଗୋପୀଗଣ ) ଶ୍ରୀମତୀ ରାଧାଙ୍କଠାରୁ ଅବିର୍ଭୂତ ।୬୩।୬୪।

ଉପରୋକ୍ତ କୃଷ୍ଣକାନ୍ତାମାନେ ଶ୍ରୀରାଧାଙ୍କଠାରୁ କିପରି ଆବିର୍ଭୂତ ତାହାର ଉଦାହରଣସ୍ୱରୂପ କହୁଅଛନ୍ତି । ଯେପରି ଅବତାରୀ ଶ୍ରୀକୃଷ୍ଣଙ୍କଠାରୁ ଅବତାରମାନେ ପ୍ରକାଶ, ବିଳାସ, ଅଂଶ ଓ କଳାଦିରୂପରେ ଅବିର୍ଭୂତ ହୁଅନ୍ତି, ସେହିପରି ଅଂଶିନୀ ଅର୍ଥାତ୍ ମୂଳ ରାଧାଶକ୍ତିରୁ ଲକ୍ଷ୍ମୀ ଆଦି ତିନ ଶ୍ରେଣୀର କୃଷ୍ଣକାନ୍ତାମାନେ ଆବିର୍ଭୂତ ହୁଅନ୍ତି ।୬୫।

ଏହି ପୟାରଟି କେତେକ ପୁସ୍ତକରେ ନାହିଁ ଓ ଶ୍ରୀମଦ୍ ବିଶ୍ୱନାଥ ଚକ୍ରବର୍ତ୍ତୀଙ୍କ ଟୀକା ମଧ୍ୟ ଏ ପୟାରକୁ ସ୍ପର୍ଶ କରୁନାହିଁ ଏବଂ ଏହି ପୟାରର ଭାବ ପରବର୍ତ୍ତୀ ୬୭ ପୟାରଦ୍ୱାରା ବ୍ୟକ୍ତ । ଏଣୁ ଏହି ପୟାରର ବିଶେଷ ପ୍ରୟୋଜନ ଜଣାଯାଉନାହିଁ । ତେଣୁ ଏହା ଅନାବଶ୍ୟକ ବିବେଚନାରେ ବନ୍ଧନୀଦ୍ୱାରା ଆବଦ୍ଧ କରାଗଲା ।୬୬।

ଗ୍ରନ୍ଥକାର ଲକ୍ଷ୍ମୀମାନଙ୍କର ଓ ମହିଷୀମାନଙ୍କର ତତ୍ତ୍ୱ କହୁଅଛନ୍ତି, ଯଥା—ଲକ୍ଷ୍ମୀମାନେ ଶ୍ରୀରାଧାଙ୍କର ବୈଭବବିଳାସହେତୁ ଅଂଶରୂପା ଅର୍ଥାତ୍ ସାକ୍ଷାତ୍ ଅଂଶତ୍ୱପ୍ରଯୁକ୍ତ ବୈଭବ ଓ ଆକାର ଭିନ୍ନତାହେତୁ ବିଳାସରୂପା ଅଟନ୍ତି । ମହିଷୀମାନେ ଶ୍ରୀରାଧାଙ୍କ ବୈଭବପ୍ରକାଶରୂପା ଅର୍ଥାତ୍ ଅଂଶହେତୁ ବୈଭବ ଓ ଶ୍ରୀକୃଷ୍ଣଙ୍କର କ୍ରୀଡ଼ାର ସମ୍ପତ୍ତିହେତୁ ପ୍ରକାଶ । କିନ୍ତୁ ପ୍ରକାଶ ହେଲେହେଁ ବୈଭବରୂପ ହେବାରୁ ମୂଳ ପ୍ରକାଶଙ୍କୁ ଅପେକ୍ଷାରେ ପ୍ରକାଶର ଉତ୍କର୍ଷତାରୁ ଭେଦ ଜାଣିବାକୁ ହେବ ।୬୭।

ଆକାର-ସ୍ୱଭାବ-ଭେଦେ ବ୍ରଜଦେବୀଗଣ ।
କାୟବ୍ୟୂହରୂପ ତାଁର ରସେର କାରଣ । ୬୮ ।
ବହୁ କାନ୍ତା ବିନା ନହେ ରସେର ଉଲ୍ଲାସ ।
ଲୀଲାର ସହାୟ ଲାଗି ବହୁତ ପ୍ରକାଶ । ୬୯ ।

ତାର ମଧ୍ୟେ ବ୍ରଜେ ନାନା ଭାବ ରସଭେଦେ ।
କୃଷ୍ଣକେ କରାୟ ରାସାଦିକ-ଲୀଲାସ୍ୱାଦେ । ୭୦ ।
ଗୋବିନ୍ଦାନନ୍ଦିନୀ ରାଧା—ଗୋବିନ୍ଦ-ମୋହିନୀ ।
ଗୋବିନ୍ଦ-ସର୍ବସ୍ୱ—ସର୍ବକାନ୍ତା-ଶିରୋମଣି । ୭୧ ।

---

ବ୍ରଜାଙ୍ଗନାଗଣସ୍ୟ ତତ୍ତ୍ୱମାହ " ଆକାର " ଇତି । ବ୍ରଜାଙ୍ଗନାଗଣଃ ତସ୍ୟାଃ ଶ୍ରୀରାଧାୟାଃ କାୟବ୍ୟୂହରୂପଃ ସ ତୁ ଆକାରାଦିଭେଦେନାଭୂତ । ନନୁ ଆକାରାଦିଭେଦେ କଥଂ କାୟବ୍ୟୂହତ୍ୱମିତ୍ୟତାହ " ରସେର କାରଣ " ଇତି । ଶୃଙ୍ଗାରରସସ୍ୟ ପ୍ରକାରପ୍ରଭେଦାର୍ଥଂ ତତ୍ଭେଦୋ ନ ତୁ ତତ୍ତ୍ୱତଃ ଅତଃ ଆକାରାଦିଭେଦେ ସତ୍ୟପି ତତ୍କାୟବ୍ୟୂହତ୍ୱମିତ୍ୟର୍ଥଃ । ୬୮ । ବି, ଚ,

ବ୍ରଜାଙ୍ଗନାତ୍ମକ ବହୁକାନ୍ତାଭବନେ କାରଣମାହ " ବହୁ " ଇତି । ଶୃଙ୍ଗାରରସପୁଷ୍ଟ୍ୟର୍ଥଂ ବହୁକାନ୍ତାତ୍ୱମିତ୍ୟର୍ଥଃ । ତଥା " କ୍ରୀଡ଼ାର ସହାୟ ହୈଲେ " ଇତ୍ୟେତଦୁପସଂହରତି " ଲୀଲାର " ଇତି । ଶ୍ରୀରାଧାଲକ୍ଷ୍ମ୍ୟାଦି ନିବିଡ଼ଗଣେନ ଶ୍ରୀକୃଷ୍ଣଲୀଲାସହାୟତାଂ କରୋତୀତ୍ୟର୍ଥଃ । ୬୯ । ବି, ଚ,

" କୃଷ୍ଣେରେ କରାୟ ଯୈଛେ " ଇତ୍ୟେବ ଶ୍ରୀକୃଷ୍ଣଂ ଯଦ୍ରୂପେଣ ରସମାସ୍ୱାଦୟତୀତି ତଦୁକ୍ତ୍ୱଂ ତଦେବାହ " ତାର ମଧ୍ୟେ " ଇତି । ତାର ମଧ୍ୟେ ବହୁପ୍ରକାଶମଧ୍ୟେ ବ୍ରଜେ ତୁ କାୟବ୍ୟୂହପ୍ରକାଶାନାଂ ବ୍ରଜାଙ୍ଗନାନାଂ ସ୍ୱପକ୍ଷ ବିପକ୍ଷ ତଟସ୍ଥପକ୍ଷଭେଦେନ ଯୋ ରସଭେଦସ୍ତେନ ତୈଃ ପ୍ରକାଶୈଃ ସହ ଶ୍ରୀରାଧିକା ଶ୍ରୀକୃଷ୍ଣଂ ରାସାଦିଲୀଲାରସମାସ୍ୱାଦୟତି । ଅନ୍ୟତ୍ର ସ୍ୱାଂଶଲକ୍ଷ୍ମ୍ୟାଦିରୂପେଣ ଶ୍ରୀକୃଷ୍ଣାଂଶ-ବିଷ୍ଣ୍ୱାଦୀନାଂ କ୍ରୀଡ଼ାସହାୟ୍ୟଂ କରୋତି ବ୍ରଜେ ତୁ କାୟବ୍ୟୂହପ୍ରକାଶୈଃ ସହ ସ୍ୱୟଂରୂପା ଶ୍ରୀରାଧା ସ୍ୱୟଂରୂପଂ ଶ୍ରୀକୃଷ୍ଣଂ ବହୁତରପ୍ରକାରେଣ ରସମାସ୍ୱାଦୟତୀତ୍ୟର୍ଥଃ । ୭୦ । ବି, ଚ,

ସୁଖବୋଧାୟ " କୃଷ୍ଣେରେ କରାୟ ଯୈଛେ " ଇତ୍ୟାଦି ବାକ୍ୟାନାଂ ସାରାର୍ଥମାହ " ଗୋବିନ୍ଦାନନ୍ଦିନୀ " ତି । ଯୋଗ୍ୟାସ୍ୱାଦୟିତ୍ରୀତ୍ୱେନ କ୍ରୀଡ଼ାସହାୟତ୍ୱେନ ଚ ଶ୍ରୀକୃଷ୍ଣସ୍ୟ ସର୍ବସୁଖକର୍ତ୍ରୀତ୍ୱାତ୍ ରାଧା ଗୋବିନ୍ଦାନନ୍ଦିନୀ ଇତ୍ୟାଦି । ୭୧ । ବି, ଚ,

---

ବ୍ରଜଦେବୀମାନେ ( ଗୋପୀମାନେ ) ତତ୍ତ୍ୱତଃ ଶ୍ରୀରାଧାଙ୍କର କାୟବ୍ୟୂହରୂପ ଅଟନ୍ତି । କାୟବ୍ୟୂହମାନଙ୍କର ମୂଳସହିତ ଆକାର ସ୍ୱଭାବର ଭେଦ ଥାଏ ନା । କିନ୍ତୁ ବ୍ରଜଦେବୀମାନଙ୍କର ଶ୍ରୀରାଧାଙ୍କ ସହିତ ଆକାର ସ୍ୱଭାବରେ ଭେଦ ଦୃଷ୍ଟ ହୁଏ, ତାହା " ରସେର କାରଣ " ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଶୃଙ୍ଗାରରସ ଆସ୍ୱାଦନ କାରଣ, ଶୃଙ୍ଗାରରସର ପ୍ରକାରଭେଦହେତୁ ବ୍ରଜଦେବୀମାନଙ୍କର ଆକାର ସ୍ୱଭାବ ରସର ବୈଶିଷ୍ଟ୍ୟଭାବରେ ଭେଦ ହୋଇଅଛି । କିନ୍ତୁ ପ୍ରକୃତରେ ସେମାନେ ଶ୍ରୀରାଧାଙ୍କର କାୟବ୍ୟୂହ । ୬୮ ।

ବହୁ କାନ୍ତା ହେବାର କାରଣ କହୁଅଛନ୍ତି । ବହୁ କାନ୍ତା ନ ହେଲେ ଶୃଙ୍ଗାରରସର ପୁଷ୍ଟି ହୁଏ ନା । ଅର୍ଥାତ୍ ଶୃଙ୍ଗାରରସ ବୃତ୍ତି ବା ପ୍ରକରଣ ବିଶେଷ ସ୍ୱତନ୍ତ୍ରଭାବରେ ଆସ୍ୱାଦନ କରାଯାଏ ନା । ସେହିହେତୁ ଶ୍ରୀରାଧା, ଲକ୍ଷ୍ମୀ, ମହିଷୀ ଓ ବ୍ରଜଦେବୀରୂପରେ ବହୁତ ପ୍ରକାଶ ହୋଇ ଶ୍ରୀକୃଷ୍ଣଙ୍କର ଲୀଳାର ସହାୟତା କରନ୍ତି । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଏହିପ୍ରକାରେ କ୍ରୀଡ଼ାର ସହାୟ ବୋଲି ଜାଣିବାକୁ ହେବ । ୬୯ ।

୭୨ ପୟାରରେ " କୃଷ୍ଣେରେ କରାୟ ଯୈଛେ ରସ ଆସ୍ୱାଦନ " ଏହା ବର୍ଣ୍ଣନ କରୁଅଛନ୍ତି ;—

| ତଥାହି ବୃହଦ୍‌ଗୌତମୀୟତନ୍ତ୍ରେ— | ଅନ୍ୱୟାର୍ଥଃ— |
| --- | --- |
| ଦେବୀ କୃଷ୍ଣମୟୀ ପ୍ରୋକ୍ତା ରାଧିକା ପରଦେବତା । | 'ଦେବୀ' କହି—ଦ୍ୟୋତମାନା ପରମ-ସୁନ୍ଦରୀ । |
| ସର୍ବଲକ୍ଷ୍ମୀମୟୀ ସର୍ବ-କାନ୍ତିଃ ସମ୍ମୋହିନୀ ପରା ॥୧୩॥ | କିମ୍ବା କୃଷ୍ଣପୂଜା-କ୍ରୀଡ଼ାର ବସତି-ନଗରୀ । ୭୬ । |

ଅଥ ରାଧିକା ଇତି ବିଶେଷ୍ୟଂ । [ ୧୩ ଶ୍ଲୋକ ] ବି, ଚ,

ରାଧିକା ଦେବୀ, କୃଷ୍ଣମୟୀ, ପରଦେବତା ସର୍ବଲକ୍ଷ୍ମୀମୟୀ, ସର୍ବକାନ୍ତିଃ, ସମ୍ମୋହିନୀ, ପରା ( ପ୍ରୋକ୍ତା ) । [ ୧୩ଶ ଶ୍ଲୋକଃ ]

ଶ୍ଲୋକାର୍ଥମାହ "ଅନ୍ୱୟାର୍ଥ" ଇତି "ଜଗନ୍ମୋହନ" ଇତ୍ୟନ୍ତଂ । ତତ୍ର "ଦେବୀ" ଇତ୍ୟସ୍ୟାର୍ଥମାହ "ଦେବୀ କହି" ଇତି । ଅତ୍ର ପକ୍ଷେ ଦେବୀଶବ୍ଦଃ ଦ୍ୟୋତମାନାପରଃ ସର୍ବେଭ୍ୟୋ ଦ୍ୟୋତତେ ଇତି ଦେବୀ ପରମସୁନ୍ଦରୀତ୍ୟର୍ଥଃ । ଦିବ୍ୟତେ ଶୀଶ୍ରେଷ୍ଠାପତେ ଦ୍ୟୋତତି କ୍ରୀଡ଼ାଗତେ ଦ୍ୟୋତତି କବିକଳ୍ପଦ୍ରୁମଃ । ଅନ୍ୟା ଅପି ପରମସୁନ୍ଦର୍ଯ୍ୟଃ ସନ୍ତୀତ୍ୟରୁଚେଃ "ଦେବୀ" ଶବ୍ଦସ୍ୟାର୍ଥାନ୍ତରମାହ "କିମ୍ବା" ଇତି ଅସ୍ମିନ୍ ପକ୍ଷେ ଦୀବ୍ୟତି କ୍ରୀଡ଼ତ୍ୟସ୍ୟାମିତି ଦେବୀ ଶ୍ରୀକୃଷ୍ଣଃ ଶ୍ରୀରାଧାୟାଂ କ୍ରୀଡ଼ତି ତଥା ତତ୍କାୟ-ବ୍ୟୂହ ବ୍ରଜାଙ୍ଗନାଗଣେ କ୍ରୀଡ଼ତୀତି ସା ତଦ୍‌ବସତିନଗରୀତ୍ୟର୍ଥଃ । ୭୬ । ବି, ଚ,

---

" ତାର ମଧ୍ୟେ " ଅର୍ଥାତ୍ ଶ୍ରୀରାଧାଙ୍କର ବହୁପ୍ରକାଶ ମଧ୍ୟରେ " ବ୍ରଜେ " ଶ୍ରୀବୃନ୍ଦାବନରେ ବହୁବିଧ ଭାବଭେଦ । ଯଥା—ସ୍ୱପକ୍ଷ, ବିପକ୍ଷ, ତଟସ୍ଥ ଆଦି ଭାବଭେଦରେ ରସଭେଦସମନ୍ୱିତ କାୟବ୍ୟୂହମାନଙ୍କ ସହିତ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ରାସାଦିଲୀଳାରସ ଆସ୍ୱାଦନ କରାନ୍ତି । ଅର୍ଥାତ୍ ପରବ୍ୟୋମ ବୈକୁଣ୍ଠାଦିରେ ଶ୍ରୀରାଧାସ୍ୱରୂପ ଅଂଶ, ପ୍ରକାଶାଦି ମହିଷୀ ଓ ଲକ୍ଷ୍ମୀଆଦିରୂପରେ ଶ୍ରୀକୃଷ୍ଣଙ୍କର ସ୍ୱରୂପ ଅଂଶାଦି ନାରାୟଣମାନଙ୍କର କ୍ରୀଡ଼ାର ସହାୟତା କରନ୍ତି । କିନ୍ତୁ ଶ୍ରୀବୃନ୍ଦାବନରେ କାୟବ୍ୟୂହମାନଙ୍କ ସହିତ ସ୍ୱୟଂ-ରୂପା ଶ୍ରୀରାଧା ସ୍ୱୟଂରୂପ ଶ୍ରୀକୃଷ୍ଣଙ୍କୁ ବହୁପ୍ରକାରରେ ରସ ଆସ୍ୱାଦନ କରାନ୍ତି । ୭୦ ।

ଗ୍ରନ୍ଥକାର ପୂର୍ବୋକ୍ତ ପ୍ରକାରରେ ବୁଝାଇ ଉପସଂହାରରେ କହୁଅଛନ୍ତି—ଯେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଆନନ୍ଦଦାୟିନୀ ( ହ୍ଲାଦିନୀହେତୁ ), ମୋହିନୀ ( ମହାଭାବହେତୁ ), ସମସ୍ତ କ୍ରୀଡ଼ାର ସହାୟକାରିଣୀହେତୁ ଏବଂ ସର୍ବକାନ୍ତାଶିରୋମଣି ( ରସରାଜ ଆସ୍ୱାଦନହେତୁ ) ଅର୍ଥାତ୍ ଏକବାକ୍ୟରେ ଶ୍ରୀକୃଷ୍ଣଙ୍କର ଅପଣାର କହିବାର ଯାହା କିଛି ତାହା ଏକ ଶ୍ରୀରାଧାଠାକୁରାଣୀ ଅଟନ୍ତି । ୭୧ ।

ଏହି ଶ୍ଲୋକ ମଧ୍ୟରେ ଅପୂର୍ବ ଗୂଢ଼ାର୍ଥ ଥିବାରୁ ଗ୍ରନ୍ଥକାର ଏହାର ଅର୍ଥ ନିଜେ ୭୬ଠାରୁ ୮୨ ପୟାରଦ୍ୱାରା ବ୍ୟକ୍ତ କରିଅଛନ୍ତି । ଅତଏବ ଅନ୍ୟ ଅର୍ଥ ନିଷ୍ପ୍ରୟୋଜନ । [ ୧୩ ଶ୍ଲୋକାର୍ଥ ]

ପୂର୍ବ ଶ୍ଲୋକସ୍ଥ ରାଧିକା ବିଶେଷ୍ୟ ପଦ, ଦେବୀ କୃଷ୍ଣମୟୀ ପ୍ରଭୃତି ତାଙ୍କର ବିଶେଷଣ; ଗ୍ରନ୍ଥକାର ଏହି ପୟାରଠାରୁ ବିଶେଷଣମାନଙ୍କର ଅର୍ଥଦ୍ୱାରା ବିଶେଷ୍ୟର ( ଶ୍ରୀରାଧିକାଙ୍କର ) ଉତ୍କର୍ଷ ଦେଖାଉଅଛନ୍ତି । ଯଥାଃ—ଦେବୀ ଶବ୍ଦ ଧାତୁଗତ ଅର୍ଥ ଅନୁସାରେ ଏକ ଅର୍ଥ ଦ୍ୟୁତି ଅର୍ଥାତ୍ ଦ୍ୟୋତମାନା ଅର୍ଥାତ୍ ପରମା ସୁନ୍ଦରୀ, ଏଣୁ ଶ୍ରୀରାଧିକା ପରମା ସୁନ୍ଦରୀ । କିନ୍ତୁ ଲକ୍ଷ୍ମୀ ପ୍ରଭୃତି ପରମା ସୁନ୍ଦରୀ ହେତୁ ବିଶେଷତ୍ୱର ବାଧକ ସମ୍ଭାବନାରେ ଦେବୀ ପଦର ଅପର ଅର୍ଥ କରୁଅଛନ୍ତି ଯଥାଃ—ଏହି ଶବ୍ଦର ଧାତୁଗତ ଅର୍ଥ କ୍ରୀଡ଼ା ଅଟେ । ଏହି କ୍ରୀଡ଼ାଦ୍ୱାରା ବୁଝାଉଅଛନ୍ତି ଯେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ମଧୁରକ୍ରୀଡ଼ା ଆରାଧନାର ବସତିନଗରୀ ଅଟନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ କାୟବ୍ୟୂହ ବ୍ରଜାଙ୍ଗନା-ମାନଙ୍କସହ ଶ୍ରୀରାଧାଙ୍କଠାରେ କ୍ରୀଡ଼ା କରନ୍ତି । ବହୁଜନର ସମଷ୍ଟି ସ୍ଥାନକୁ ନଗରୀ କୁହାଯାଏ । ଏଠାରେ ବ୍ରଜାଙ୍ଗନାମାନଙ୍କର ବହୁତ୍ୱ ବୁଝାଇବା କାରଣ ଉପମାଛଳରେ ନଗରୀଶବ୍ଦ ବ୍ୟବହୃତ

'କୃଷ୍ଣମୟୀ'—କୃଷ୍ଣ ଯାର ଭିତରେ-ବାହିରେ ।
ଯାହାଁ-ଯାହାଁ ନେତ୍ର ପଡ଼େ, ତାହାଁ କୃଷ୍ଣ ସ୍ଫୁରେ ।୭୩।
କିମ୍ବା ପ୍ରେମରସମୟ କୃଷ୍ଣେର ସ୍ୱରୂପ ।
ତାଁର ଶକ୍ତି ତାଁର ସହ ହୟ ଏକରୂପ । ୭୪ ।
କୃଷ୍ଣବାଞ୍ଛା-ପୂର୍ତ୍ତିରୂପ କରେ ଆରାଧନେ ।
ଅତଏବ 'ରାଧିକା' ନାମ ପୁରାଣେ ବ୍ୟାଖାନେ ।୭୫।

ତଥାହି ( ଭାଃ ୧୦।୩୦।୨୮ )—
ଅନୟାରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ ।
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ
ଯାମନୟଦ୍ରହଃ ॥ ୧୪ ॥ *
ଅତଏବ ସର୍ବପୂଜ୍ୟା ପରମ-ଦେବତା ।
ସର୍ବ-ପାଳିକା ସର୍ବ-ଜଗତେର ମାତା । ୭୬ ।

"କୃଷ୍ଣମୟୀ" ଇତ୍ୟସ୍ୟାର୍ଥମାହ "କୃଷ୍ଣମୟୀତି" ଅତ୍ର ପକ୍ଷେ ପ୍ରାଚୁର୍ଯ୍ୟାର୍ଥେ ମୟଟ୍ । ବହିଃ କୃଷ୍ଣ ଏତତ୍ ବିଶଦୟତି "ଯାହା ଯାହା" ଇତି । ଯଦ୍ ଯତ୍ ପଶ୍ୟତି ତତ୍ର ତତ୍ର ଶ୍ରୀକୃଷ୍ଣସ୍ଫୁରଣଂ ଭବତୀତ୍ୟର୍ଥଃ ସର୍ବତ୍ର କୃଷ୍ଣସ୍ଫୁରଣଂ ଭବତୀତି ଭାବଃ । ୭୩ । ବି, ଚ,

ସର୍ବତ୍ର କୃଷ୍ଣସ୍ଫୁରଣମେତେନ୍ୟେଷାଂ କେଷାଞ୍ଚିଦପି ଭବତୀତ୍ୟରୁଚେଃ "କୃଷ୍ଣମୟୀ" ତ୍ୟସ୍ୟାର୍ଥାନ୍ତର-ମାହ "କିମ୍ବା" ଇତି । ଅତ୍ର ପକ୍ଷେ ସ୍ୱରୂପାର୍ଥେ ମୟଟ୍ । ପ୍ରେମରସମୟସ୍ୱରୂପସ୍ୟ କୃଷ୍ଣସ୍ୟ ଶକ୍ତିଃ ପ୍ରେମ-ରସମୟସ୍ୱରୂପା ଇତି । କୃଷ୍ଣମୟୀତ୍ୟର୍ଥଃ କୃଷ୍ଣାଦଭିନ୍ନା ଇତି ଭାବଃ । ୭୪ । ବି, ଚ,

" ରାଧିକା " ଇତ୍ୟସ୍ୟାର୍ଥମାହ " କୃଷ୍ଣବାଞ୍ଛା " ଇତି । ରାଧୟତି କୃଷ୍ଣବାଞ୍ଛାପୂରଣଂ ଆରାଧୟତୀତି ରାଧା "ପ୍ରୋକ୍ତା" ଇତ୍ୟସ୍ୟାର୍ଥମାହ "ଅତଏବ" ଇତି । ୭୫ । ବି, ଚ,

ଅନୟା (ରାଧୟା, ରାଧୟତି ଆରାଧୟତୀତି, ରାଧାନାମ କାରଣଞ୍ଚ ଦର୍ଶିତଂ) ନୂନଂ (ନିଶ୍ଚିତଂ) ଈଶ୍ୱରଃ (ଭକ୍ତାଭୀଷ୍ଟପ୍ରଦାନସମର୍ଥଃ) ହରିଃ (ସର୍ବଦୁଃଖହର୍ତ୍ତା) ଭଗବାନ୍ ଆରାଧିତଃ (ଆରାଧ୍ୟ ବଶୀକୃତଃ ନତୁ ଅସ୍ମାଭିଃ) ଯତ୍ ( ଯସ୍ମାତ୍ ) ଗୋବିନ୍ଦଃ ପ୍ରୀତଃ ( ପ୍ରୀତିଯୁକ୍ତଃ ସନ୍ ) ନଃ ( ଅସ୍ମାନ୍ ) ବିହାୟ (ବିଶେଷେଣ ହିତ୍ୱା) ଯାଂ (ରାଧାଂ) ରହଃ (ଅସ୍ମଦ୍‌ଗମ୍ୟ ଏକାନ୍ତସ୍ଥାନେ) ଅନୟତ୍ । [୧୪ଶ ଶ୍ଳୋକଃ]

" ପରଦେବତା " ଇତ୍ୟସ୍ୟାର୍ଥମାହ " ଅତଏବ " ଇତି । କୃଷ୍ଣମୟୀତ୍ୱାଦେବ ସର୍ବପୂଜ୍ୟା ଇତି ପରମଦେବତା ପରଦେବତା । ତଦେବ ବିଶଦୟତି " ସର୍ବପାଳିକା " ଇତି ସର୍ବପାଳକତ୍ୱେନ ଶ୍ରୀକୃଷ୍ଣସ୍ୟ ସର୍ବଜଗତ୍ପିତୃତ୍ୱାତ୍ କୃଷ୍ଣମୟୀ ଶ୍ରୀରାଧା ସର୍ବପାଳିକାତ୍ୱେନ ସର୍ବଜଗତଃ ମାତା ଇତ୍ୟର୍ଥଃ ମାତୃବତ୍ ସର୍ବପୂଜ୍ୟା ପରଦେବତେତି ଭାବଃ । ୭୬ । ବି, ଚ,

ହୋଇଅଛନ୍ତି, ଅର୍ଥାତ୍ ପ୍ରତ୍ୟେକ ବ୍ରଜାଙ୍ଗନା ଶ୍ରୀକୃଷ୍ଣଙ୍କର ବସନ୍ତଭବନ । ଏପରି ବହୁବ୍ରଜାଙ୍ଗନାସମନ୍ୱିତା ଶ୍ରୀରାଧାଠାକୁରାଣୀ ବହୁବାସଭବନବିଶିଷ୍ଟା ନଗରୀରୂପ ଅଟନ୍ତି । ଏଣୁ ଶ୍ରୀରାଧା ଶ୍ରୀକୃଷ୍ଣ ଆରାଧନାରୂପା ମଧୁରକ୍ରୀଡ଼ାର ଏକମାତ୍ର ଆଶ୍ରୟ ଅଟନ୍ତି । ଏହି ହେତୁରୁ ସେ ଦେବୀ । ୭୨ ।

କୃଷ୍ଣମୟୀ ଶବ୍ଦର ଅର୍ଥ କରୁଅଛନ୍ତି;—

ଯାହାଙ୍କର ଅନ୍ତର ଇନ୍ଦ୍ରିୟରେ ଏବଂ ବହିରିନ୍ଦ୍ରିୟରେ କୃଷ୍ଣ, ସେ କୃଷ୍ଣମୟୀ । ଅର୍ଥାତ୍ ଅନ୍ତରିନ୍ଦ୍ରିୟଦ୍ୱାରା ଶ୍ରୀକୃଷ୍ଣଙ୍କର ଧ୍ୟାନ ଭାବନା ଆଦି କରନ୍ତି ଏବଂ ବାହାରେ ଯାହା ଦେଖନ୍ତି ତଦ୍ୱାରା ତାଙ୍କର ଶ୍ରୀକୃଷ୍ଣ ସ୍ମରଣ ହୁଏ । ଏଣୁ ଶ୍ରୀରାଧା କୃଷ୍ଣମୟୀ, କିନ୍ତୁ ଅପରାପର କାହାରି ଏପରି କୃଷ୍ଣ ସ୍ଫୂର୍ତ୍ତି ହୋଇଥିବାରୁ ଗ୍ରନ୍ଥକାର ଅପରାର୍ଥ କରୁଅଛନ୍ତି । ଯଥା;—ଶ୍ରୀରାଧା ପ୍ରେମରସମୟ ଶ୍ରୀକୃଷ୍ଣଙ୍କର ପ୍ରେମ-ରସମୟୀ ସ୍ୱରୂପଶକ୍ତି ହେତୁରୁ ତାଙ୍କ ସହିତ ଏକରୂପ ଅର୍ଥାତ୍ ଅଭିନ୍ନରୂପ, ଏଣୁ କୃଷ୍ଣମୟୀ ଅଟନ୍ତି । ୭୩।୭୪ ।

ଶ୍ରୀକୃଷ୍ଣଙ୍କର ବାଞ୍ଛା ପୂରଣସକାଶେ ଶ୍ରୀକୃଷ୍ଣଙ୍କୁ ଆରାଧନା କରନ୍ତି ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ସୁଖୀ କରିବାସକାଶେ ଶ୍ରୀକୃଷ୍ଣଙ୍କୁ ସେବା କରନ୍ତି ତାହା ନିଜ ସୁଖହେତୁ ନୁହେଁ । ଏଣୁ ତାହାଙ୍କର ନାମ

'ସର୍ବ-ଲକ୍ଷ୍ମୀ'-ଶବ୍ଦ ପୂର୍ବେ କରିଯାଛି ବ୍ୟାଖ୍ୟାନ ।
ସର୍ବଲକ୍ଷ୍ମୀଗଣେର ତେଁହୋ ହୟ ଅଧିଷ୍ଠାନ ।୭୭।
କିମ୍ବା 'ସର୍ବ-ଲକ୍ଷ୍ମୀ' କୃଷ୍ଣେର ଷଡ଼୍ ବିଧ ଐଶ୍ୱର୍ଯ୍ୟ ।
ତାଁର ଅଧିଷ୍ଠାତ୍ରୀ ଶକ୍ତି—ସର୍ବ-ଶକ୍ତିବର୍ଯ୍ୟ । ୭୮ ।
ସର୍ବ-ସୌନ୍ଦର୍ଯ୍ୟ-କାନ୍ତି ବୈସୟେ ଯାଁହାତେ ।
ସର୍ବ-ଲକ୍ଷ୍ମୀଗଣେର ଶୋଭା ହୟ ଯାଁହା ହୈତେ ।୭୯।

କିମ୍ବା 'କାନ୍ତି'-ଶବ୍ଦେ କୃଷ୍ଣେର ସବ ଇଚ୍ଛା କହେ ।
କୃଷ୍ଣେର ସକଲ ବାଞ୍ଛା ରାଧାତେଇ ରହେ । ୮୦ ।
ରାଧିକା କରେନ କୃଷ୍ଣେର ବାଞ୍ଛିତପୂରଣ ।
'ସର୍ବକାନ୍ତି'-ଶବ୍ଦେର ଏଇ ଅର୍ଥ-ବିବରଣ । ୮୧ ।
ଜଗତ-ମୋହନ କୃଷ୍ଣ,—ତାଁହାର ମୋହିନୀ ।
ଅତଏବ ସମସ୍ତେର ପରା ଠାକୁରାଣୀ । ୮୨ ।

"ସର୍ବଲକ୍ଷ୍ମୀମୟୀ" ଇତ୍ୟସ୍ୟାର୍ଥମାହ "ସର୍ବଲକ୍ଷ୍ମୀ" ଇତି । ଅତ୍ର ପକ୍ଷେ ଲକ୍ଷ୍ମୀଶବ୍ଦଃ ବୈକୁଣ୍ଠଲକ୍ଷ୍ମୀପରଃ ପୂର୍ବେ "ଲକ୍ଷ୍ମୀଗଣ ତାର" ଇତି ପଦ୍ୟେ । ୭୭ । ବି, ଚ,

ମହିଷ୍ୟାଦୀନାମପ୍ୟଧିଷ୍ଠାତ୍ର୍ୟାଂ କେବଲଂ ଲକ୍ଷ୍ମୀଗଣାଧିଷ୍ଠାତ୍ରୀତ୍ୱମୁକ୍ତମିତ୍ୟରୁଚେଃ "ସର୍ବଲକ୍ଷ୍ମୀ" ଇତ୍ୟସ୍ୟାର୍ଥାନ୍ତରମାହ "କିମ୍ବା" ଇତି । ଏତତ୍ପକ୍ଷେ ଲକ୍ଷ୍ମୀଶବ୍ଦଃ ସମ୍ପତ୍ତିପରଃ । ଅଧିଷ୍ଠାତ୍ରୀତ୍ୱାତ୍ ଐଶ୍ୱର୍ଯ୍ୟାଦୀନାଂ ଶକ୍ତିନାଂ ପ୍ରବରା ଇତ୍ୟର୍ଥଃ । ୭୮ । ବି, ଚ,

"ସର୍ବକାନ୍ତି" ଇତ୍ୟସ୍ୟାର୍ଥମାହ "ସର୍ବ" ଇତି । ଅତ୍ର କାନ୍ତି-ଶବ୍ଦଃ ଶୋଭାପରଃ ସର୍ବସୌନ୍ଦର୍ଯ୍ୟ ଶୋଭାସ୍ତତ୍ର ବସନ୍ତି ସୌନ୍ଦର୍ଯ୍ୟଶୋଭାଧିଷ୍ଠାତ୍ରୀ ବା କାନ୍ତିମତୀତ୍ୟର୍ଥଃ । କିଞ୍ଚ "ସର୍ବ" ଇତି ସର୍ବଲକ୍ଷ୍ମୀଗଣାନାଂ ଶୋଭାଃ ଯତୋ ଭବନ୍ତୀତି ସା ସର୍ବକାନ୍ତିଃ । ୭୯ । ବି, ଚ,

ଶୋଭାକାନ୍ତିଦ୍ୟୁତଚ୍ଛବ ଇତ୍ୟେଷାମେକାର୍ଥବାଚକତ୍ୱାତ୍ "ଦେବୀ କହି ଦ୍ୟୋତମାନା ପରମସୁନ୍ଦରୀ" ଇତ୍ୟନେନୈବ କାନ୍ତିଶବ୍ଦାର୍ଥୋଽଭୂତ୍ ତେନୈବତ ଲକ୍ଷ୍ମୀଗଣାନାମପି ତଦର୍ଥସିଦ୍ଧିଃ ତଦଂଶତ୍ୱାତ୍ । ପୁନସ୍ତତ୍ କଥନେ ପୁନରୁକ୍ତିଃ ସ୍ୟାଦିତ୍ୟରୁଚେଃ "ସର୍ବକାନ୍ତିଃ" ଇତ୍ୟସ୍ୟାର୍ଥାନ୍ତରମାହ "କିମ୍ବା" ଇତିଦ୍ୱାଭ୍ୟାଂ । ଅତ୍ରପକ୍ଷେ କାନ୍ତିଶବ୍ଦଃ ଇଚ୍ଛାପରଃ ତଥାସତି ସର୍ବାଃ କାନ୍ତୟଃ ଶ୍ରୀକୃଷ୍ଣସ୍ୟ ଇଚ୍ଛାଃ ଯସ୍ୟାମ୍ ସା ତଥା । ୮୦।୮୧ । ବି, ଚ,

"ସମ୍ମୋହିନୀ" ଇତ୍ୟସ୍ୟାର୍ଥମାହ "ଜଗତ" ଇତି । "ପରା" ଇତ୍ୟସ୍ୟାର୍ଥମାହ "ଅତଏବ" ଇତି । କୃଷ୍ଣମୋହିନୀତ୍ୱାଦେବ । ୮୨ । ବି, ଚ,

ରାଧିକା । ଏହି ନାମ ପୁରାଣରେ ପ୍ରକାଶ ହୋଇଅଛି । ଏହା ୧୩ ଶ୍ଳୋକର "ଗୋପ୍ତ୍ରୀ" ଓ "ରାଧିକା" ଏହି ଦୁଇ ଶବ୍ଦର ଅର୍ଥ । ୭୫ ।

ଶ୍ରୀକୃଷ୍ଣଙ୍କର ପ୍ରକୃଷ୍ଟ ଆରାଧନାହେତୁ ଶ୍ରୀମତୀ ବୃଷଭାନୁ ନନ୍ଦିନୀଙ୍କର ରାଧା ନାମ ହୋଇଥିବାରୁ ସୁହୃଦପକ୍ଷ ଗୋପୀମାନେ ସହଜରେ ରାଧା ନାମ ନ କହି ଶ୍ରୀଯଶୋଦାନନ୍ଦନ ଶ୍ରୀଗୋବିନ୍ଦଙ୍କର ପ୍ରେୟସୀ ଶ୍ରେଷ୍ଠତ୍ୱ ଜଣାଇବାକାରଣ ଛଳରେ ଏହିପ୍ରକାର ଗୁଣ ବର୍ଣ୍ଣନାଦ୍ୱାରା ଶ୍ରୀରାଧାଙ୍କର ନାମ ବ୍ୟକ୍ତ କରିଅଛନ୍ତି । ଯଥା ;—

ଭଗବାନ୍, ଈଶ୍ୱର, ହରି (ସର୍ବଦୁଃଖହାରୀ) ନିଶ୍ଚୟ ଏହାଙ୍କ ଆରାଧନାଦ୍ୱାରା ବଶୀଭୂତ ହୋଇଅଛନ୍ତି । ଯେହେତୁ ଶ୍ରୀଯଶୋଦାନନ୍ଦନ ଗୋବିନ୍ଦ ପ୍ରୀତହୋଇ ଆମ୍ଭମାନଙ୍କୁ ତ୍ୟାଗ କରି ଏହାଙ୍କୁ (ରାଧାଙ୍କୁ) ଆମ୍ଭମାନଙ୍କର ଦୁର୍ଗମ୍ୟ ଏକାନ୍ତ ସ୍ଥାନକୁ ନେଇଅଛନ୍ତି । [ ୧୪ଶ ଶ୍ଳୋକାର୍ଥ ]

"ପରଦେବତା" ଶବ୍ଦର ଅର୍ଥ କରୁଅଛନ୍ତି ;—

ଅତଏବ ଶ୍ରୀରାଧା କୃଷ୍ଣମୟୀହେତୁ କୃଷ୍ଣବତ୍ ସର୍ବପୂଜ୍ୟା 'ପରଦେବତା' (ପରମଦେବତା) ଅର୍ଥାତ୍ ଶ୍ରୀକୃଷ୍ଣ ସର୍ବପୂଜ୍ୟ ପରମଦେବତା ଏବଂ ଶ୍ରୀରାଧା ତାହାଙ୍କର ସ୍ୱରୂପଶକ୍ତି ସର୍ବପୂଜ୍ୟା ପରମଦେବତା । ଶ୍ରୀକୃଷ୍ଣ ସର୍ବପାଳକହେତୁ ଜଗତର ପିତା, ତେଣୁ ଶ୍ରୀରାଧା ସର୍ବପାଳିକାରୂପରେ ଜଗତର ମାତା । ଏହିହେତୁ ମଧ୍ୟ ସର୍ବପୂଜ୍ୟା ପରଦେବତା । ୭୬ ।

ରାଧା ପୂର୍ଣ୍ଣ-ଶକ୍ତି, କୃଷ୍ଣ ପୂର୍ଣ୍ଣ-ଶକ୍ତିମାନ୍ ।
ଦୁଇ ବସ୍ତୁ ଭେଦ ନାହିଁ ଶାସ୍ତ୍ର-ପରମାଣ ।୮୩।
ମୃଗମଦ, ତାର ଗନ୍ଧ,—ଯୈଛେ ଅବିଚ୍ଛେଦ ।
ଅଗ୍ନି-ଜ୍ୱାଲାତେ ଯୈଛେ ନାହିଁ କଭୁ ଭେଦ ।୮୪।
ରାଧା କୃଷ୍ଣ ଐଛେ ସଦା ଏକଇ ସ୍ୱରୂପ ।
ଲୀଲା-ରସ ଆସ୍ୱାଦିତେ ଧରେ ଦୁଇ ରୂପ ।୮୫।
ପ୍ରେମଭକ୍ତି ଶିଖାଇତେ ଆପନେ ଅବତରି ।
ରାଧା-ଭାବ-କାନ୍ତି ଦୁଇ ଅଙ୍ଗୀକାର କରି ।୮୬।

"ରାଧାକୃଷ୍ଣପ୍ରଣୟ ବିକୃତି" ଇତ୍ୟସ୍ୟାର୍ଥପ୍ରସଙ୍ଗେ "ଦେବୀ କୃଷ୍ଣମୟୀ" ଇତ୍ୟସ୍ୟାର୍ଥଂ କୃତ୍ୱା "ଅସ୍ମାଦେକାତ୍ମାନୌ" ଇତ୍ୟସ୍ୟାର୍ଥମାହ "ରାଧା" ଇତି ସାର୍ଦ୍ଧଦ୍ୱୟେନ ।

"ଅପିଭୁବ ପୁରାଦେହଭେଦଂ ଗତୌ ତୌ" ଇତ୍ୟସ୍ୟାର୍ଥମାହ "ଲୀଳା" ଇତ୍ୟର୍ଦ୍ଧକେନ । ।୮୪।୮୫। ବ, ଚ,

"ଚୈତନ୍ୟାଖ୍ୟ" ମିତି ଶ୍ଳୋକାର୍ଦ୍ଧସ୍ୟାର୍ଥମାହ "ପ୍ରେମଭକ୍ତି" ଇତି ସାର୍ଦ୍ଧେନ । ଚୈତନ୍ୟ ନାମରୂପଂ ସ୍ୱରୂପମିତ୍ୟର୍ଥ ଇତି । ୮୬।୮୭। ବ, ଚ,

---

ସର୍ବଲକ୍ଷ୍ମୀ ଅର୍ଥାତ୍ ଲକ୍ଷ୍ମୀଗଣଙ୍କର ତତ୍ତ୍ୱ ପୂର୍ବୋକ୍ତ ୭୭ ପୟାରରେ କୁହାହୋଇଅଛି । ସେହି ସର୍ବଲକ୍ଷ୍ମୀମାନଙ୍କର " ତେଂହୋ " ( ଶ୍ରୀରାଧା ) ଅଧିଷ୍ଠାନ ( ଅଂଶିନୀ ) ଅଟନ୍ତି । ୭୭ ।

ଶ୍ରୀରାଧା ଲକ୍ଷ୍ମୀଗଣ, ମହିଷୀଗଣ ଓ ବ୍ରଜଦେବୀଗଣଙ୍କର ଅଂଶିନୀହେତୁ ୭୭ ପୟାରରେ କେବଳ ଲକ୍ଷ୍ମୀଗଣଙ୍କର ଅଂଶୀନୀ କାହିଁକି କୁହାଗଲା ଏପରି ଆଶଙ୍କା ହୋଇପାରେ, ଏଣୁ ଅପରାର୍ଥ କହୁଅଛନ୍ତି । ଏଠାରେ ଲକ୍ଷ୍ମୀଶବ୍ଦ ସମ୍ପତ୍ତିପର, ଶ୍ରୀକୃଷ୍ଣଙ୍କର ଷଡ଼୍ବିଧ ଐଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀଶକ୍ତିମାନେ ସର୍ବଲକ୍ଷ୍ମୀ ଅଟନ୍ତି । ସେମାନଙ୍କର ଅଧିଷ୍ଠାତୃଶକ୍ତି ଅର୍ଥାତ୍ ମୂଳଶକ୍ତିହେତୁ ଶ୍ରୀରାଧା ଶାର୍ବଶକ୍ତିବର୍ଯ୍ୟା ଅଟନ୍ତି । ୭୮ ।

କାନ୍ତି ଶବ୍ଦର ଅର୍ଥ ଶୋଭା, ସର୍ବକାନ୍ତି ଅର୍ଥାତ୍ ସର୍ବସୌନ୍ଦର୍ଯ୍ୟର ଏକମାତ୍ର ଆଶ୍ରୟହିଁ ଶ୍ରୀରାଧା ଏବଂ ତାହାଙ୍କର ସୌନ୍ଦର୍ଯ୍ୟଦ୍ୱାରା ସର୍ବଲକ୍ଷ୍ମୀଗଣ ଶୋଭାନ୍ୱିତା । ୭୯ ।

ଏ ପକ୍ଷେ ଆଶଙ୍କା ହୋଇପାରେ ଶୋଭା, କାନ୍ତି, ଦ୍ୟୁତି ଏମାନେ ଏକାର୍ଥବାଚକ । ପୂର୍ବେ ୭୬ ପୟାରରେ ଶ୍ରୀରାଧାଙ୍କୁ ଦ୍ୟୋତମାନା ପରମାସୁନ୍ଦରୀ କୁହାହୋଇଅଛି ଏବଂ ଅଂଶିନୀ ରାଧାଙ୍କର ଅଂଶ ଲକ୍ଷ୍ମୀଗଣ ଯେ ତାହାଙ୍କର ସୌନ୍ଦର୍ଯ୍ୟାଂଶ ପ୍ରାପ୍ତ ତାହା ସେଥିରେ ପ୍ରକାଶ ପାଇଅଛି । ପୁନରାୟ ଏଠାରେ କାନ୍ତିଦ୍ୱାରା ପୂର୍ବକଥିତ ସୌନ୍ଦର୍ଯ୍ୟର ପୁନରୁକ୍ତି ହେଉଅଛି, ଏଣୁ ଅପରାର୍ଥ କହୁଅଛନ୍ତି ଯଥା;—

ଏଠାରେ କାନ୍ତି ଶବ୍ଦର ଅର୍ଥ ଇଚ୍ଛା । ତେଣୁ ଶ୍ରୀକୃଷ୍ଣଙ୍କର ସର୍ବ ଇଚ୍ଛାକୁ ସର୍ବକାନ୍ତି କୁହାଯାଏ । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତି ହେତୁ ସର୍ବଇଚ୍ଛା ପୂରଣ କରନ୍ତି । ତେଣୁ ଶ୍ରୀରାଧା ସର୍ବକାନ୍ତି । ୮୦।୮୧ ।

ପୂର୍ବ କଥିତମତେ ଜଗନ୍ମୋହନ ଶ୍ରୀକୃଷ୍ଣଙ୍କର ଶ୍ରୀରାଧାମୋହିନୀ ହେତୁ "ସମ୍ମୋହିନୀ" ତେଣୁ ଅଦ୍ୱିତୀୟା ହେତୁ ପରା ଠାକୁରାଣୀ । ୮୨ ।

ବର୍ତ୍ତମାନ ୮ମ ଶ୍ଳୋକର ଅର୍ଥର ସାରାଂଶ କହୁଅଛନ୍ତି ।

ପୂର୍ବୋକ୍ତ ପ୍ରକାର ବୁଝାଇବାଦ୍ୱାରା ନିର୍ଣ୍ଣିତ ହେଲା ଯେ, ପୂର୍ଣ୍ଣଶକ୍ତିମାନ ଶ୍ରୀକୃଷ୍ଣଙ୍କର ପୂର୍ଣ୍ଣ-ଶକ୍ତିହିଁ ଶ୍ରୀରାଧା । ଶାସ୍ତ୍ର ପ୍ରମାଣଦ୍ୱାରା ବୁଝାଗଲା ଯେ ଏ ଦୁଇ ବସ୍ତୁର ଭେଦ ନାହିଁ । ଅର୍ଥାତ୍ ଶକ୍ତି ଶକ୍ତିମାନ୍ ଅଭିନ୍ନ । ପ୍ରାକୃତିକ ପ୍ରମାଣଦ୍ୱାରା ଦେଖାଉଅଛନ୍ତି ଯେ ମୃଗମଦ ( କସ୍ତୁରୀ ) ଏବଂ ତାହାର ସୁଗନ୍ଧ, ଅଗ୍ନି ଓ ତାହାର ଦାହିକାଶକ୍ତି ଏମାନେ ଯେପରି ଦୁଇବସ୍ତୁ ହୋଇ ହିଁ ଅଭିନ୍ନ, ଶ୍ରୀରାଧା ଓ ଶ୍ରୀକୃଷ୍ଣ ସେହିପରି ଏକରୂପ ଅଟନ୍ତି, କେବଳ ଲୀଳାରସ ଆସ୍ୱାଦନ ସକାଶେ ଭିନ୍ନବପୁ ଧାରଣ କରନ୍ତି । ୮୩।୮୪।୮୫ ।

ଶ୍ରୀକୃଷ୍ଣଚୈତନ୍ୟ ରୂପେ କୈଲ ଅବତାର ।
ଏଇ ତ ପଞ୍ଚମ-ଶ୍ଳୋକେର ଅର୍ଥ-ପରଚାର । ୮୬ ।
ଷଷ୍ଠ-ଶ୍ଳୋକେର ଅର୍ଥ କରିତେ ପ୍ରକାଶ ।
ପ୍ରଥମେ କହିୟେ ସେଇ ଶ୍ଳୋକେର ଆଭାସ । ୮୮ ।
ଅବତରି ପ୍ରଭୁ ପ୍ରଚାରିଲା ସଙ୍କୀର୍ତ୍ତନ ।
ଏହୋ ବାହ୍ୟ ହେତୁ—ପୂର୍ବେ କରିୟାଛି ସୂଚନ । ୮୯ ।

ଅବତାରେର ଆର ଏକ ଆଛେ ମୁଖ୍ୟବୀଜ ।
ରସିକଶେଖର କୃଷ୍ଣେର ସେଇ କାର୍ଯ୍ୟ ନିଜ । ୯୦ ।
ଅତିଗୂଢ଼ ହେତୁ ସେଇ ତ୍ରିବିଧ ପ୍ରକାର ।
ଦାମୋଦରସ୍ୱରୂପ ହୈତେ ଯାହାର ପ୍ରଚାର । ୯୧ ।
ସ୍ୱରୂପଗୋସାଞି—ପ୍ରଭୁର ଅତି ଅନ୍ତରଙ୍ଗ ।
ତାହାତେ ଜାନେନ ପ୍ରଭୁର ଏ ସବ ପ୍ରସଙ୍ଗ । ୯୨ ।

ଷଷ୍ଠ ଶ୍ଳୋକେର "ଶ୍ରୀରାଧାୟାଃ" ଇତ୍ୟସ୍ୟ । ୮୮ । ବି, ଚ,

ଆଭାସମେବାହ "ଅବତରି" ଇତିଦ୍ୱାଭ୍ୟାଂ ମୁଖ୍ୟବୀଜ ମୁଖ୍ୟକାରଣଂ ନିଜକାର୍ଯ୍ୟତ୍ୱେନୈବ ତତ୍କାରଣସ୍ୟ ମୁଖ୍ୟତ୍ୱମିତ୍ୟର୍ଥଃ । ୮୯।୯୦ । ବି, ଚ,

ମୁଖ୍ୟକାରଣମେବାହ " ଅତିଗୂଢ଼ " ଇତି । " ଶ୍ରୀରାଧାୟାଃ ପ୍ରଣୟମହିମା କୀଦୃଶୋ " ଇତ୍ୟାଦି ତ୍ରିବିଧୋହେତୁଃ କାରଣଂ । ନନୁ ଅତିଗୂଢ଼ତ୍ୱେ ସତି ଗ୍ରନ୍ଥକୃତା ତଜ୍ଜ୍ଞାତଂ କ୍ୱାତ ମିତ୍ୟତଆହ "ଦାମୋଦର" ଇତି । ଦାମୋଦର ସ୍ୱରୂପେଣ ପ୍ରଚାରିତତ୍ୱାତ୍ ତଜ୍ଜ୍ଞାତମିତ୍ୟର୍ଥଃ । ୯୨ । ବି, ଚ,

ସେହି ଲୀଳାରସ ଆସ୍ୱାଦନକାରୀ ଶ୍ରୀକୃଷ୍ଣ ପ୍ରେମଭକ୍ତି ଶିକ୍ଷାଦାନ ସକାଶେ ଶ୍ରୀରାଧାଙ୍କର ଭାବ ଓ କାନ୍ତି ଗ୍ରହଣ କରି ଶ୍ରୀକୃଷ୍ଣ ଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ।

ଏହାହିଁ ପଞ୍ଚମଶ୍ଳୋକର ( ପ୍ରଥମ ପରିଚ୍ଛେଦର ପଞ୍ଚମ ବା ଚତୁର୍ଥ ପରିଚ୍ଛେଦର ୮ମ ଶ୍ଳୋକର ଅର୍ଥ ) ୮୬।୮୭ ।

ପ୍ରଥମ ପରିଚ୍ଛେଦର ଷଷ୍ଠଶ୍ଳୋକ "ଶ୍ରୀରାଧାୟାଃ ପ୍ରଣୟମହିମାର" ଅର୍ଥ ପ୍ରକାଶ କରିବା ପୂର୍ବରୁ ଗ୍ରନ୍ଥକାର ତାହାର ଭାବ ପରବର୍ତ୍ତୀ ପୟାରମାନଙ୍କଦ୍ୱାରା ପ୍ରକାଶ କରୁଅଛନ୍ତି । ୮୮ ।

ପ୍ରଭୁ ଶ୍ରୀଗୌରାଙ୍ଗଚନ୍ଦ୍ର ଏହି ଧରାଧାମରେ ଅବତୀର୍ଣ୍ଣ ହୋଇ ଶ୍ରୀହରିନାମ ସଙ୍କୀର୍ତ୍ତନ ପ୍ରଚାର କଲେ, ଏଣୁ ସେ ପ୍ରେମଭକ୍ତି ପ୍ରଚାର ସକାଶେ ଅବତୀର୍ଣ୍ଣ ହୋଇଥିବାର ଯେ "ଅନର୍ପିତଚରୀଂ" ଶ୍ଳୋକର ଅର୍ଥଦ୍ୱାରା ପ୍ରକାଶ ହୋଇଅଛି ତାହା ଯେ ବହିରଙ୍ଗ କାରଣ ଏ ବିଷୟ ଶ୍ରୀଗ୍ରନ୍ଥକାର ମହାଶୟ ଏହି ପରିଚ୍ଛେଦର ପଞ୍ଚମ ପୟାରରେ କହିଅଛନ୍ତି ।

ଅବତାରର ଗୋଟିଏ ମୁଖ୍ୟବୀଜ ( ମୂଳପ୍ରୟୋଜନ ) ଅଛି, ଯାହାକି ରସିକଶେଖର କୃଷ୍ଣଙ୍କର ଆପଣାର କାର୍ଯ୍ୟ ଅଟେ । ଅର୍ଥାତ୍ ଶ୍ରୀକୃଷ୍ଣ ରସିକଶେଖରହେତୁ ନାମପ୍ରେମରସାସ୍ୱାଦନ କରିବା ତାହାଙ୍କର ନିଜକାର୍ଯ୍ୟ ଏବଂ ସେଥିସକାଶେ ଶ୍ରୀକୃଷ୍ଣଚୈତନ୍ୟରୂପରେ ଅବତୀର୍ଣ୍ଣ ହେବା ଏ ଗୌର ଅବତାରର ମୁଖ୍ୟ ( ମୂଳ ) କାରଣ । କିନ୍ତୁ ଏହି ମୂଳକାରଣହେତୁ ଅବତୀର୍ଣ୍ଣ ହୋଇ ମୂଳକାର୍ଯ୍ୟ କରିବାଦ୍ୱାରା ( ନାମପ୍ରେମ ରସାସ୍ୱାଦନ କରିବାଦ୍ୱାରା ) ଜଗତରେ ଶ୍ରୀହରିନାମ ସଙ୍କୀର୍ତ୍ତନ ପ୍ରଚାରିତ ହେଲା ଓ ଜଗଦ୍‌ବାସିମାନେ ପ୍ରେମଭକ୍ତି ଲାଭକରି କୃତାର୍ଥ ହେଲେ । ଏଣୁ ଶ୍ରୀହରିନାମ ସଙ୍କୀର୍ତ୍ତନ ପ୍ରଚାର ତାହାଙ୍କ ନାମପ୍ରେମରସାସ୍ୱାଦନରୁ ଉତ୍ପନ୍ନହେତୁ ତାହା ଗୌଣ ବା ବହିରଙ୍ଗ ଅଟେ । ୮୯—୯୦ ।

ଶ୍ରୀମନ୍ ମହାପ୍ରଭୁଙ୍କର ଅବତାରର ମୁଖ୍ୟକାରଣ ଅତି ଗୂଢ଼ ଏବଂ ତାହା ତ୍ରିବିଧ । କିନ୍ତୁ ଏହି ଗୂଢ଼ କାରଣ ଗ୍ରନ୍ଥକାର କିପରି ଜାଣିଲେ ଏହି ସଂଶୟ ଖଣ୍ଡନପୂର୍ବକ କହୁଅଛନ୍ତି । ଯେ ଏହି ତ୍ରିବିଧାତ୍ମକ ଗୂଢ଼ କାରଣ ଶ୍ରୀମନ୍ ଦାମୋଦର ସ୍ୱରୂପ ( ସ୍ୱରୂପ ଦାମୋଦର ) ଙ୍କଠାରୁ ଜଣାଯାଇଅଛି । ଏଠାରେ ପ୍ରଶ୍ନ ହୋଇପାରେ ସ୍ୱରୂପ ଦାମୋଦର ଗୋସାଇଁ ଶ୍ରୀମନ୍ ମହାପ୍ରଭୁଙ୍କର ଏ ପ୍ରକାର ଅନ୍ତରଙ୍ଗ

ରାଧିକାର ଭାବ ମୂର୍ତ୍ତି ପ୍ରଭୁର ଅନ୍ତର ।
ସେଇ ଭାବେ ସୁଖ-ଦୁଃଖ ଉଠେ ନିରନ୍ତର ॥୯୩॥
ଶେଷଲୀଲାୟ ପ୍ରଭୁର କୃଷ୍ଣ-ବିରହ-ଉନ୍ମାଦ ।
ଭ୍ରମମୟ ଚେଷ୍ଟା, ଆର ପ୍ରଲାପମୟ ବାଦ । ୯୪ ।
ରାଧିକାର ଭାବ ଯୈଛେ ଉଦ୍ଧବଦର୍ଶନେ ।
ସେଇ ଭାବେ ମତ୍ତ ପ୍ରଭୁ ରହେ ରାତ୍ରିଦିନେ ॥୯୫॥
ରାତ୍ରେ ପ୍ରଲାପ କରେନ ସ୍ୱରୂପେର କଣ୍ଠ ଧରି ।
ଆବେଶେ ଆପନ ଭାବ କହେନ ଉଘାଡ଼ି । ୯୬ ।
ଯବେ ଯେଇ ଭାବ ଉଠେ ପ୍ରଭୁର ଅନ୍ତର ।
ସେଇ-ଗୀତ-ଶ୍ଳୋକେ ସୁଖ ଦେନ ଦାମୋଦର ॥୯୭॥
ଏବେ କାର୍ଯ୍ୟ ନାହିଁ କିଛୁ ଏ-ସବ-ବିଚାରେ ।
ଆଗେ ଇହା ବିବରିବ କରିଯା ବିସ୍ତାରେ । ୯୮ ।

ତତ୍ପ୍ରସଙ୍ଗମେବାହ " ରାଧିକାର " ଇତ୍ୟାଦି " ରାତ୍ରେ ବିଲପେନ " ଇତ୍ୟନ୍ତଂ । " ରାତ୍ରେ " ଇତି " ଯବେ " ଇତି ପଦ୍ୟଦ୍ୱୟସ୍ୟ ବାକ୍ୟେନ ସ୍ୱରୂପସ୍ୟ ଶ୍ରୀଚୈତନ୍ୟାନ୍ତରଙ୍ଗତ୍ୱେ କାରଣମପ୍ୟୁକ୍ତଂ ଅନ୍ତରଙ୍ଗତ୍ୱେନୈବ ଶ୍ରୀଚୈତନ୍ୟେନ ନିଜଭାବୋ ବ୍ୟକ୍ତୀକୃତଃ ତଥା ତସ୍ମୈବ ଚ ସ୍ୱରୂପେଣାପି ତଦ୍ଭାବଂ ଜ୍ଞାତ୍ୱା ତଦନୁଗତଗୀତାଦ୍ୟୁଖ ପ୍ରଦାନଞ୍ଚ ଇତି । ୯୩—୯୭ । ବି, ଚ,

ନିଗୂଢ଼ କାରଣ ଜାଣିଲେ କିପରି । ସେହି ହେତୁ ଗ୍ରନ୍ଥକାର କହୁଅଛନ୍ତି ଯେ ସ୍ୱରୂପ ଗୋସାଇଁ ମହାପ୍ରଭୁଙ୍କର ଅତି ମର୍ମୀ ଅଟନ୍ତି ଏବଂ ମହାପ୍ରଭୁଙ୍କ ସହିତ ସର୍ବଦା ଏକତ୍ରରେ ଥିଲେ ଏବଂ ମହାପ୍ରଭୁ ତାଙ୍କଠାରେ ନିଜ ମନୋଗତ ଭାବ ପ୍ରକାଶ କରୁଥିଲେ ତେଣୁ ପ୍ରସଙ୍ଗଦ୍ୱାରା ଅର୍ଥାତ୍ ମହାପ୍ରଭୁଙ୍କ ବ୍ୟବହାରରୁ ବିଚାରଦ୍ୱାରା ଏବଂ ତାଙ୍କଠାରୁ ଶୁଣି ତାହାଙ୍କର ଅତି ଗୂଢ଼ ମର୍ମ ସେ ଜାଣିଥିଲେ ॥୯୧।୯୨॥

ଶ୍ରୀମନ୍ ମହାପ୍ରଭୁଙ୍କର ଅନ୍ତଃକରଣ ମୂର୍ତ୍ତିମାନ ଶ୍ରୀରାଧାଭାବ, ଅର୍ଥାତ୍ ଶ୍ରୀମନ୍ ମହାପ୍ରଭୁଙ୍କ ଅନ୍ତଃକରଣ ଶ୍ରୀମତୀ ରାଧାଭାବରେ ଭାବିତ ଥିବାରୁ ସେହି ରାଧାଭାବଜନିତ ସୁଖ ଦୁଃଖ ସର୍ବଦା ତାଙ୍କ ଅନ୍ତଃକରଣରେ ଜାତ ହେଉଥିଲା । ତାହାଙ୍କର ଶେଷ ଲୀଳାରେ ଅର୍ଥାତ୍ ଶ୍ରୀନୀଳାଚଳବାସର ଶେଷ ଦ୍ୱାଦଶ ବର୍ଷରେ ମହାପ୍ରଭୁ ଶ୍ରୀରାଧାଭାବରେ ଭାବିତହେତୁ ଶ୍ରୀକୃଷ୍ଣଙ୍କ ବିରହଜନିତ ଉନ୍ମାଦଗ୍ରସ୍ତ ହୋଇଥିଲେ । ସେଥିଯୋଗୁଁ ତାହାଙ୍କର ବ୍ୟବହାର ଭ୍ରମମୟ ଏବଂ କଥାବାର୍ତ୍ତା ପ୍ରଳାପମୟ ହୋଇଥିଲା । ଶ୍ରୀମଦ୍ଭାଗବତର ଦଶମସ୍କନ୍ଧର ଭ୍ରମର ଗୀତାରେ ଶ୍ରୀଉଦ୍ଧବଙ୍କୁ ଦର୍ଶନ କରି ଶ୍ରୀରାଧା-ଠାକୁରାଣୀଙ୍କର ଯେପରି ଭାବ ହୋଇଥିଲା, ଶ୍ରୀମନ୍ ମହାପ୍ରଭୁ ଶେଷ ଲୀଳାରେ ସର୍ବଦା ସେହି ଭାବାବିଷ୍ଟ ହୋଇଥିଲେ । ରାତ୍ରିରେ ପ୍ରିୟ ସ୍ୱହୃଦ ସ୍ୱରୂପ ଗୋସ୍ୱାମୀଙ୍କର କଣ୍ଠ ଧାରଣ କରି ବିଳାପ ବା ପ୍ରଳାପ କରି ଆବିଷ୍ଟଭାବରେ ଆପଣାର ମନୋଭାବ ଉଦ୍ଘାଟନ କରୁଥିଲେ । ଶ୍ରୀମନ୍ ମହାପ୍ରଭୁଙ୍କର ଅନ୍ତଃକରଣରେ ଯେତେବେଳେ ଯେଉଁ ଭାବ ଉଦୟ ହେଉଥିଲା ଶ୍ରୀମନ୍ ସ୍ୱରୂପ ଗୋସ୍ୱାମୀ ସେହି ସେହିଭାବର ପୋଷକତାରେ ଗୀତ ଓ ଶ୍ଳୋକ ଶୁଣାଇ ଶ୍ରୀମନ୍ ମହାପ୍ରଭୁଙ୍କୁ ସୁଖୀ କରାଉଥିଲେ । ଏହି କାରଣମାନଙ୍କରୁ ଜଣାଯାଏ ଯେ ଶ୍ରୀମନ୍ ଦାମୋଦର ସ୍ୱରୂପ ଶ୍ରୀମନ୍ ମହାପ୍ରଭୁଙ୍କର ଅତି ମର୍ମୀ ଏବଂ ଶ୍ରୀମନ୍ ମହାପ୍ରଭୁଙ୍କର କୌଣସି ଭାବ ଶ୍ରୀମନ୍ ସ୍ୱରୂପ ଗୋସ୍ୱାମୀଙ୍କୁ ଅଜ୍ଞାତ ନ ଥିଲା । ତେଣୁ ସ୍ୱରୂପ ଗୋସ୍ୱାମୀ ଶ୍ରୀମନ୍ ମହାପ୍ରଭୁଙ୍କର ଅତି ଗୂଢ଼ ଭାବ ଷଷ୍ଠ ଶ୍ଳୋକଦ୍ୱାରା ପ୍ରକାଶ କରିଅଛନ୍ତି । ୯୩—୯୭ ।

ଗ୍ରନ୍ଥକାର କହୁଅଛନ୍ତି ଯେ ପୂର୍ବୋକ୍ତ ବିଷୟମାନ ଏ ସ୍ଥାନରେ ବିସ୍ତାରର ଆବଶ୍ୟକ ନାହିଁ । ତାହା ଯଥାସ୍ଥାନରେ ଏ ପରେ ବିବୃତ ହେବ ।

ପୂର୍ବ୍ବେ ବ୍ରଜେ କୃଷ୍ଣେର ତ୍ରିବିଧ ବୟୋଧର୍ମ୍ମ— ।
କୌମାର, ପୌଗଣ୍ଡ, ଆର କୈଶୋର ଅତିମର୍ମ୍ମ । ୯୯ ।
ବାତ୍ସଲ୍ୟ ଅବେଶେ କୈଲ କୌମାର ସଫଲ ।
ପୌଗଣ୍ଡ ସଫଲ କୈଲ ଲଞା ସଖାବଲ । ୧୦୦ ।
ରାଧିକାଦି ଲଞା କୈଲ ରାସାଦି-ବିଳାସ ।
ବାଞ୍ଛା ଭରି ଆସ୍ୱାଦିଲ ରସେର ନିର୍ଯ୍ୟାସ । ୧୦୧ ।
କୈଶୋର-ବୟସେ, କାମ, ଜଗତ ସକଲ ।
ରାସାଦିଲୀଲାୟ ତିନ କରିଲ ସଫଲ । ୧୦୨ ।

ଶ୍ରୀଚୈତନ୍ୟାବତାରେ ତ୍ରିବିଧୋ ମୁଖ୍ୟହେତୁରସ୍ତୀତି ପ୍ରତିପାଦିତଂ ତତ୍ର କାନ୍ତାବହିଃସନ୍ତି ବହୋହେତୁରିତ୍ୟତ୍ର ବ୍ରଜଲୀଳାୟାଂ ଶ୍ରୀକୃଷ୍ଣସ୍ୟ ଯଦାକାଙ୍କ୍ଷାତ୍ରୟ-ପୂରଣଂ ନାସୀତ୍ତଦର୍ଥଂ ତସ୍ୟ ଶ୍ରୀଚୈତନ୍ୟାବତାରତ୍ୱେନ ତତ୍ତ୍ରିବିଧବାଞ୍ଛୈବ ତତ୍ର ତ୍ରିବିଧହେତୁରିତିବଦନ୍ନାହ " ପୂର୍ବ୍ବେ " ଇତ୍ୟାଦି " ଏଇ ବାଞ୍ଛା ମୂଳକାରଣ " ଇତ୍ୟନ୍ତଂ । ଉକ୍ତ୍ୟେଲେ କୈଶୋରସ୍ୟାତିଶ୍ରେଷ୍ଠତ୍ୱାଦତିମର୍ମ୍ମ ଇତି ବିଶେଷଣଂ ଦତ୍ତଂ । କୌମାରାଦେର୍ଲକ୍ଷଣଂ ତଥା କୈଶୋରସ୍ୟ ଶ୍ରେଷ୍ଠତ୍ୱଂ ଯଥା " ବୟଃ କୌମାର ପୌଗଣ୍ଡ କୈଶୋରମିତି ତତ୍ତ୍ରିଧା । କୌମାରଂ ପଞ୍ଚମାବ୍ଦାନ୍ତଂ ପୌଗଣ୍ଡଂ ଦଶମାବଧି । ଆଷୋଡ଼ଶାଚ୍ଚ କୈଶୋରଂ ଯୌବନନ୍ତୁ ତତଃପରଂ । ଔଚିତ୍ୟାତ୍ରକୌମାରଂ ବକ୍ତବ୍ୟଂ ବତ୍ସଲେ ରସେ । ପୌଗଣ୍ଡଂ ପ୍ରେୟସି ତଥା ତତ୍ତଚ୍ଚେଲାଦିଯୋଗତଃ । ଶ୍ରେଷ୍ଠ୍ୟମୁଜ୍ଜ୍ୱଲଏବାସ୍ୟ କୈଶୋରସ୍ୟ ତଥାପ୍ୟଦଃ " ଇତି ଭକ୍ତିରସାମୃତସିନ୍ଧୁଃ । ୯୯ । ବି, ଚ,

ନିତ୍ୟକିଶୋରତ୍ୱେନ ବାତ୍ସଲ୍ୟେ ଆବେଶ ଇତ୍ୟୁକ୍ତଂ ପୌଗଣ୍ଡେଽପି ତଦ୍ବୋଦ୍ଧବ୍ୟଂ । । ୧୦୦ । ବି, ଚ,

"ରାଧିକାଦି" ଇତ୍ୟତ୍ର କୈଶୋରସ୍ୟ ଶ୍ରେଷ୍ଠତ୍ୱାତ୍ତ ପ୍ରସ୍ତୁତତ୍ୱାଚ୍ଚ କୌମାରାଦେଃ ସକାଶାତ୍ ଦଧିକପଦେନୈତଦ୍ବର୍ଣ୍ଣିତଂ । ୧୦୧।୧୦୨ । ବି, ଚ,

---

ଉପରୋକ୍ତ ୯୯ ପୟାରରେ କୁହାଯାଇଅଛି ଯେ ଶ୍ରୀଚୈତନ୍ୟ ଅବତାରର ମୂଳ ହେତୁ ତ୍ରିବିଧ ପ୍ରକାର ଅଟେ । ତାହାପରେ ଦେଖାଯିବ ଯେ ରସିକଶେଖର ଶ୍ରୀକୃଷ୍ଣ ରସାସ୍ୱାଦନ ସକାଶେ ଅବତୀର୍ଣ୍ଣ ହୋଇ ଯେଉଁ ତିନ ବାଞ୍ଛା ପୂର୍ଣ୍ଣକରି ପାରି ନ ଥିଲେ, ସେହି ତିନିବାଞ୍ଛା ପୂର୍ଣ୍ଣ କରିବା ସକାଶେ ଶ୍ରୀକୃଷ୍ଣ ଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଏହାହିଁ ଶ୍ରୀକୃଷ୍ଣ ଚୈତନ୍ୟ ଅବତାରର ମୂଳ ହେତୁ । ସେହି ତିନିବାଞ୍ଛା ନିତ୍ୟକିଶୋର ଶ୍ରୀକୃଷ୍ଣଙ୍କର କିଶୋରବୟସର ଶୃଙ୍ଗାରରସ ସମ୍ବନ୍ଧୀୟ ହେତୁ କିଶୋରବୟସର ଉତ୍କର୍ଷ ବୁଝାଇବା ସକାଶେ ଗ୍ରନ୍ଥକାର କହୁଅଛନ୍ତି ଯେ ପୂର୍ବ୍ବେ ଶ୍ରୀବୃନ୍ଦାବନ ଲୀଳାରେ ଶ୍ରୀକୃଷ୍ଣ କୌମାର, ପୌଗଣ୍ଡ ଓ ଅତିଶ୍ରେଷ୍ଠ କୈଶୋର ଏହି ତ୍ରିବିଧ ବୟୋଧର୍ମ୍ମଦ୍ୱାରା ଲୀଳାରସ ଆସ୍ୱାଦନ କରିଥିଲେ । ୯୯ ।

ଶ୍ରୀକୃଷ୍ଣ ନିତ୍ୟକିଶୋର ହେତୁ ବାତ୍ସଲ୍ୟରେ ଆବଷ୍ଟ ହୋଇ କୌମାର ବୟସ ଏବଂ ପୌଗଣ୍ଡରେ ଆବିଷ୍ଟ ହୋଇ ସଖାମାନଙ୍କ ସହ ପୌଗଣ୍ଡ ବୟସ ସଫଳ କଲେ ଅର୍ଥାତ୍ ଲୀଳାରସ ଆସ୍ୱାଦନ କଲେ । ୧୦୦ ।

କିଶୋରବୟସରେ ଅର୍ଥାତ୍ ନିତ୍ୟରୂପରେ ଶ୍ରୀରାଧାଦି ଗୋପୀମାନଙ୍କ ସହ ରାସାଦିଲୀଳାଦ୍ୱାରା ପ୍ରେମରସନିର୍ଯ୍ୟାସ ସମ୍ପୂର୍ଣ୍ଣରୂପେ ଆସ୍ୱାଦନ କଲେ ଏବଂ ତଦ୍ଦ୍ୱାରା କୈଶୋରବୟସ କାମ ଏବଂ ସମସ୍ତ ଜଗତକୁ ସଫଳ କଲେ । ଅର୍ଥାତ୍ ରାସାଦିଲୀଳାରେ ମଧୁରରସର ଉତ୍କର୍ଷହି ହେତୁ କୈଶୋରବୟସ ସଫଳକଲେ । ଜାଗତିକ କାମକ୍ରୀଡ଼ା ପଶ୍ୱାଚାରଦ୍ୱାରା ମଳିନ, ମାତ୍ର ରାସାଦିଲୀଳାରେ ମଳିନତାଶୂନ୍ୟ କାମକ୍ରୀଡ଼ାଦ୍ୱାରା କାମକୁ ସଫଳ କଲେ ଏବଂ ସେହି ଲୀଳା ଶ୍ରବଣ କୀର୍ତ୍ତନଦ୍ୱାରା ଜଗଦ୍ବାସିମାନେ କୃତାର୍ଥ ହେଲେ । ୧୦୧।୧୦୨ ।

ତଥାହି ବିଷ୍ଣୁପୁରାଣେ ( ୫।୧୩।୬୯ )—

ସୋଽପି କୈଶୋରକବୟୋ ମାନୟନ୍ମଧୁସୂଦନଃ ।
ରେମେ ସ୍ତ୍ରୀରତ୍ନକୂଟସ୍ଥଃ କ୍ଷପାସୁ କ୍ଷପିତାହିତଃ ॥୧୫॥ *

ଭକ୍ତିରସାମୃତସିନ୍ଧୌ, ଦକ୍ଷିଣବିଭାଗେ,
୧ମ ଲହର୍ଯ୍ୟାମ୍ (୧୭୪)—

ବାଚା ସୂଚିତଶର୍ବରୀରତିକଳାପ୍ରାଗଲ୍ଭ୍ୟୟା ରାଧିକାଂ,
ବ୍ରୀଡ଼ାକୁଞ୍ଚିତଲୋଚନାଂ ବିରଚୟନ୍ନଗ୍ରେ ସଖୀନାମସୌ ।
ତଦ୍ୱକ୍ଷୋରୁହଚିତ୍ରକେଳିମକରୀପାଣ୍ଡିତ୍ୟପାରଂ ଗତଃ,
କୈଶୋରଂ ସଫଳୀକରୋତି କଳୟନ୍ କୁଞ୍ଜେ ବିହାରଂ ହରିଃ ॥ ୧୬ ॥ *

ତଥାହି ବିଦଗ୍ଧମାଧବେ ( ୨।୫ )—

ହରିରେଷ ନ ଚେଦବାତରିଷ୍ୟ-
ନ୍ମଥୁରାୟାଂ ମଧୁରାକ୍ଷୀ-ରାଧିକା ଚ ।
ଅଭବିଷ୍ୟଦିୟଂ ବୃଥା ବିସୃଷ୍ଟି-
ର୍ମକରାଙ୍କସ୍ତୁ ବିଶେଷତସ୍ତଦାତ୍ର ॥ ୧୭ ॥ *

ଏଇମତ ପୂର୍ବେ କୃଷ୍ଣ ରସେର ସଦନ ।
ଯଦ୍ୟପି କରିଲ ରସ-ନିର୍ଯାସ ଚର୍ବଣ ॥ ୧୦୩ ॥
ତଥାପି ନାହିଲ ତିନ ବାଞ୍ଛିତ ପୂରଣ ।
ତାହା ଆସ୍ୱାଦିତେ ଯଦି କରିଲ ଯତନ ॥ ୧୦୪ ॥

କ୍ଷପିତାହିତଃ ( କ୍ଷପିତାଃ ପ୍ରଣାଶିତାଃ ଅହିତାଃ ଶତ୍ରବଃ ଯେନ ସତେନ ନିହିନ୍ତବନ୍ତ ଧ୍ୱାନ୍ତଂ ) ସୋଽପି ମଧୁସୂଦନଃ ( ଶ୍ରୀକୃଷ୍ଣଃ ) କୈଶୋରକବୟଃମାନୟନ୍ ( ସଫଳୀକୁର୍ବନ୍ ) ସ୍ତ୍ରୀରତ୍ନକୂଟସ୍ଥଃ ( ଗୋପୀମଣ୍ଡଳୀ ମଧ୍ୟସ୍ଥଃ ସନ୍ ) କ୍ଷପାସୁ ( ନିଶାସୁ ) ରେମେ । [ ୧୫ଶ ଶ୍ଳୋକଃ ]

ସୂଚିତ ଶର୍ବରୀରତିକଳାପ୍ରାଗଲ୍ଭ୍ୟୟା ( ସୂଚିତଂ ଶର୍ବର୍ଯ୍ୟାଃ ରତେଃ କଳାୟାଃ କୌଶଳସ୍ୟ ପ୍ରାଗଲ୍ଭ୍ୟମ୍ ଔଦ୍ଧତ୍ୟଂ ଯୟା ସା ତୟା ) ବାଚା ସଖୀନାଂ ଅଗ୍ରେ ରାଧିକାଂ ବ୍ରୀଡ଼ାକୁଞ୍ଚିତଲୋଚନାଂ ବ୍ରୀଡ଼ୟା ଲଜ୍ଜୟା କୁଞ୍ଚିତେ ଲୋଚନେ ଯସ୍ୟାଃ ସା ତଥାବିଧାଂ ) ବିରଚୟନ୍ ତଦ୍ୱକ୍ଷୋରୁହଚିତ୍ରକେଳି-ମକରୀପାଣ୍ଡିତ୍ୟପାରଂ ( ତସ୍ୟାଃ ଶ୍ରୀରାଧାୟାଃ ବକ୍ଷୋରୁହୟୋଃ ସ୍ତନୟୋଃ ଚିତ୍ରକେଳିମକରୀନିର୍ମାଣେ ଯତ୍ତୁ ପାଣ୍ଡିତ୍ୟଂ ତସ୍ୟ ପାରଂ ) ଗତଃ ଅସୌ ହରିଃ ( ଶ୍ରୀକୃଷ୍ଣଃ ) କୁଞ୍ଜେ ( ଏବମ୍ଭୂତଂ ) ବିହାରଂ କଳୟନ୍ ( କୁର୍ବନ୍ ) କୈଶୋରଂ ( ବୟଃ ) ସଫଳୀ କରୋତି । [ ୧୬ଶ ଶ୍ଳୋକଃ ]

ମଥୁରାୟାଂ ( ମାଥୁରମଣ୍ଡଳେ ) ଏଷଃ ହରିଃ ( ଶ୍ରୀକୃଷ୍ଣଃ ) ମଧୁରାକ୍ଷୀ ରାଧିକାଚ ଚେତ୍ ( ଯଦି ) ନ ଅବାତରିଷ୍ୟତ୍ତ ତଦା ଅତ୍ର ବିସୃଷ୍ଟିଃ ( ବିଧାତୁଃ ସୃଷ୍ଟିଃ ) ବୃଥା ଅଭବିଷ୍ୟତ୍ତ ମକରାଙ୍କସ୍ୟ ( କାମସ୍ୟ ) ତୁ ବିଶେଷତଃ ( ବୃଥା ଅଭବିଷ୍ୟତ୍ତ ) । [ ୧୭ଶ ଶ୍ଳୋକଃ ]

ରସେର ସଦନ ଶୃଙ୍ଗାରାଦି ସର୍ବରସାଶ୍ରୟ ଇତ୍ୟର୍ଥଃ । ୧୦୩।୧୦୪ । ବି, ଚ,

ସାହୁକ୍ଷପ୍ର ପର ନାଶିକ ଶ୍ରୀକୃଷ୍ଣ କୈଶୋରବୟସକୁ ସଫଳକରି ଗୋପୀକାମଣ୍ଡଳୀ ମଧ୍ୟବର୍ତ୍ତୀ ହୋଇ ବହୁରାତ୍ରି ରମଣ କରିଥିଲେ । [ ୧୫ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣ ରାତ୍ରିର ରତିକଳା ପ୍ରକାଶକ ଔଦ୍ଧତ୍ୟ ବାକ୍ୟଦ୍ୱାରା ସଖିମାନଙ୍କ ନିକଟ ରାଧାଙ୍କୁ ଲଜ୍ଜାରେ ବକ୍ରନୟନା କରି ତାହାଙ୍କ ସ୍ତନମଣ୍ଡଳରେ ମକରୀପତ୍ରର ଚିତ୍ରନୈପୁଣ୍ୟର ପରାକାଷ୍ଠା ପ୍ରଦର୍ଶନ ପୂର୍ବକ କୁଞ୍ଜରେ ବିହାର କରି ସ୍ୱୀୟ କୈଶୋରବୟସ ସଫଳ କରୁଅଛନ୍ତି । [ ୧୬ଶ ଶ୍ଳୋକାର୍ଥ ]

ଶ୍ରୀପୌର୍ଣ୍ଣମାସୀ ଶ୍ରୀବୃନ୍ଦାଙ୍କୁ କହୁଅଛନ୍ତି, ମାଥୁରମଣ୍ଡଳରେ ଯଦି ଏହି ହରି ( ଶ୍ରୀକୃଷ୍ଣ ) ଓ ମଧୁରାକ୍ଷୀ ରାଧିକା ଅବତୀର୍ଣ୍ଣ ହୋଇ ନ ଥାନ୍ତେ ତାହାହେଲେ ବିଧାତାଙ୍କର ଏହି ସୃଷ୍ଟି ଓ ବିଶେଷତଃ କନ୍ଦର୍ପସୃଷ୍ଟି ବ୍ୟର୍ଥ ହୁଅନ୍ତା । ଅର୍ଥାତ୍ତ ଶ୍ରୀବୃନ୍ଦାବନରେ ଶ୍ରୀରାଧାକୃଷ୍ଣଙ୍କର ଆବିର୍ଭାବ ହେତୁ ଜଗତ୍ତ ଓ କନ୍ଦର୍ପ ଉଭୟ ଧନ୍ୟ ହୋଇ ଅଛନ୍ତି । [ ୧୭ଶ ଶ୍ଳୋକାର୍ଥ ]

ସର୍ବରସାଶ୍ରୟ ଶ୍ରୀକୃଷ୍ଣ ପୂର୍ବେ ( ଶ୍ରୀବୃନ୍ଦାବନଲୀଳାରେ ) "ଏଇମତ" ଅର୍ଥାତ୍ତ ବାଲ୍ୟ, ପୌଗଣ୍ଡ ଓ କୈଶୋର ବୟୋଧର୍ମଦ୍ୱାରା ରସମାନଙ୍କର ସାର ବାରମ୍ବାର ଆସ୍ୱାଦନ କରିଥିଲେ, ତଥାପି

| | |
|---|---|
| ତାହାର ପ୍ରଥମ ବାଞ୍ଛା କରିଯେ ବ୍ୟାଖ୍ୟାନ— । | ନା ଜାନି ରାଧାର ପ୍ରେମେ ଆଛେ କୋନ ବଲ । |
| କୃଷ୍ଣ କହେ—ଆମି ହଇ ରସେର ନିଧାନ ।୧୦୫। | ଯେ-ବଲେ ଆମାରେ କରେ ସର୍ବଦା ବିହ୍ୱଲ ।୧୦୭। |
| ପୂର୍ଣ୍ଣାନନ୍ଦମୟ ଆମି ଚିନ୍ମୟ ପୂର୍ଣ୍ଣତତ୍ତ୍ୱ । | ରାଧିକାର ପ୍ରେମ—ଗୁରୁ, ଆମି—ଶିଷ୍ୟ ନଟ । |
| ରାଧିକାର ପ୍ରେମେ ଆମା କରାୟ ଉନ୍ମତ୍ତ । ୧୦୬ । | ସଦା ଆମା ନାନା-ନୃତ୍ୟେ ନାଚାୟ ଉଦ୍‌ଭଟ ।୧୦୮ |

ପ୍ରଥମବାଞ୍ଛା ଶ୍ରୀରାଧାୟାଃ ପ୍ରଣୟମହିମା କୀଦୃଶୋବେତି ବାଞ୍ଛାୟାଂ କାରଣମିତିଶେଷଃ । ତାଂ ତଦ୍‌ବିଷୟ ମହିମା ଏବ କାରଣେ ମିତ୍ୟଭିବ୍ୟଞ୍ଜୟନ୍ନାହ "କୃଷ୍ଣକହେ" ଇତ୍ୟାଦି । ରସନିଧାନ ପୂର୍ଣ୍ଣାନନ୍ଦ ଚିନ୍ମୟ ପୂର୍ଣ୍ଣତତ୍ତ୍ୱ ଇତ୍ୟନେନ ମାମୁନ୍ମତ୍ତୀକରଣମସମ୍ଭବମପି ଶ୍ରୀରାଧାପ୍ରେମ ତଥା କରୋତୀତି ଏକସ୍ମାତ୍-ପ୍ରେମବିଚିତ୍ରମହିମା ଇତି ଭାବଃ । ଅନେନ ରାଧାୟାଃ ପ୍ରେମ ଇତି ବିଶେଷକଥନେ କାରଣମୟ୍ୟୁକ୍ତଂ ଯତଃ ତତ୍ପ୍ରେମ୍ନି ଏବ ବିଚିତ୍ରମହିମା ଅତସ୍ତନ୍ନିବେଚ୍ଛାଜାତା ଇତି ଜ୍ଞେୟଂ ।

"କେନ ଉନ୍ମତ୍ତୀକରୋତୀତ୍ୟହଂ ନ ଜାନେ ଇତ୍ୟାହ" ଇତି ।

ତଦେବାହ ରାଧିକାର ଇତି । ନାନାନୃତ୍ୟେନ ନର୍ତ୍ତୟତୀତ୍ୟେବୋନ୍ମତ୍ତୀକରଣଂ । ନାନାନୃତ୍ୟେ ଇତ୍ୟେବ ଅସ୍ମାକଂ ସର୍ବଶକ୍ତି ସର୍ବସୁଖପରିପୂର୍ଣ୍ଣଂ ସତ୍ୟସ୍ୱରୂପୋ ନିତ୍ୟାନନ୍ଦମୟୋଽପ୍ୟହଂ କଦାଚିତ୍ ଜଗନ୍ନୀଡ୍ୟସ୍ତୁ ରାଧାପ୍ରାଙ୍ଗଣକୋଣେ ନନ୍ଦୁତ୍ୟ ତିଷ୍ଠାମି କଦାଚିତ୍ ରାଧାସଙ୍ଗସୁଖାଶୟା ତଦାଗମନପନ୍ଥାନଂ ପଶ୍ୟାମି କଦାଚିତ୍ ତଦର୍ଥଂ ଛଦ୍ମବେଶୀ ଭବାମି କଦାଚିତ୍ ଲଜ୍ଜାୟାଂ ତଦ୍ଭ୍ରାନ୍ତୋ ଭବାମୀତ୍ୟାଦିକଂ ତତ୍ପ୍ରେମୈବ କାରୟତୀତି । ୧୦୫।୧୦୮ । ବି, ଚ,

ତାହାଙ୍କର ତିନଗୋଟି ବାଞ୍ଛା ଅପୂର୍ଣ୍ଣ ଥିଲା ଓ ତାହା ପୂରଣ କରିବା ସକାଶେ ଯତ୍ନ କରିଥିଲେହେଁ କୃତକାର୍ଯ୍ୟ ହୋଇ ନ ଥିଲେ ଏବଂ ତାହା ସେ ଗୌରଅବତାରରେ ପୂର୍ଣ୍ଣ କଲେ । ଅର୍ଥାତ୍ ବୃନ୍ଦାବନ ଲୀଳାରେ ଶ୍ରୀକୃଷ୍ଣ ଅବତାରରେ ଯେଉଁ ତିନ ରସାସ୍ୱାଦନ ହୋଇପାରି ନ ଥିଲା, ତାହା ଆସ୍ୱାଦନ କରିବା ଗୌରଅବତାରର ମୂଳ ହେତୁ । ୧୦୩।୧୦୪ ।

ପୂର୍ବୋକ୍ତ ( ପ୍ରଥମ ପରିଚ୍ଛେଦ ଷଷ୍ଠଶ୍ଳୋକୋକ୍ତ ) ତିନବାଞ୍ଛା ମଧ୍ୟରୁ ପ୍ରଥମ ବାଞ୍ଛାର (ଶ୍ରୀରାଧାଙ୍କର ପ୍ରଣୟମହିମା କୀଦୃଶ) କାରଣ ଦେଖାଉଅଛନ୍ତି । ଯଥାଃ—ଶ୍ରୀକୃଷ୍ଣ କହିବାର ହେଲେ ଯେ ମୁଁ ରସିକଶେଖରହେତୁ ସର୍ବରସର ଆଶ୍ରୟ, ପୂର୍ଣ୍ଣାନନ୍ଦମୟ, ଚିନ୍ମୟ ଓ ପୂର୍ଣ୍ଣତତ୍ତ୍ୱ । ଏପରି ସ୍ଥଳେ ମୋର କାହାରିଦ୍ୱାରା ଉନ୍ମତ୍ତ ହେବା ଅର୍ଥାତ୍ ଆତ୍ମବିସ୍ମୃତ ହେବା ଅସମ୍ଭବ ହେଲେହେଁ ଶ୍ରୀରାଧାଙ୍କ ପ୍ରେମରେ ମୁଁ ଉନ୍ମତ୍ତ ହୁଏ । ଏହାହିଁ ଶ୍ରୀରାଧା ପ୍ରେମର ବିଚିତ୍ରତା, ଅତଏବ ଶ୍ରୀରାଧାଙ୍କ ପ୍ରେମରେ ଏପରି କୌଣସି ଶକ୍ତି ଅଛି ଯଦ୍ୱାରା ମୁଁ ସର୍ବଦା ବିହ୍ୱଳ ହୁଏଁ, କିନ୍ତୁ ତାହା ( ଶ୍ରୀରାଧା ପ୍ରେମବଳ ) ମୁଁ ଜାଣେନା, ଅର୍ଥାତ୍ ସେ ଶକ୍ତି ମୋର ଅନୁଭୂତ ନୁହେ । ଏହା ଅନୁଭବ କରିବାର ଇଚ୍ଛାହିଁ ପ୍ରଥମ ବାଞ୍ଛା ।

ଶ୍ରୀରାଧାଙ୍କର ପ୍ରେମହିଁ ମୋର ଉନ୍ମାଦକାରୀ ଗୁରୁ ଏବଂ ମୁଁ ତାହାଙ୍କର ଉନ୍ମତ୍ତ ନୃତ୍ୟକାରୀ ଶିଷ୍ୟ, ତେଣୁ ସେ ପ୍ରେମଗୁରୁ ମୋତେ ସର୍ବଦା ନାନାପ୍ରକାରରେ ଅକସ୍ମାତ୍ ନଚାନ୍ତି । ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ଦେଖାଯାଏ ଯେ ଶ୍ରୀକୃଷ୍ଣ ସର୍ବଶକ୍ତିମାନ୍, ସର୍ବସୁଖମୟ, ସତ୍ୟସ୍ୱରୂପ, ଆତ୍ମାରାମ ଏବଂ ପୂର୍ଣ୍ଣକାମ ହେଲେ ସୁଦ୍ଧା ଶ୍ରୀରାଧାଙ୍କର ପ୍ରେମୋଲ୍ଲାସୀ ହୋଇ ଜଟିଳାଙ୍କ ଭୟରେ ଦ୍ୱାରାନ୍ତରାଳରେ ରହି ଶ୍ରୀରାଧାଙ୍କୁ କୋକିଳବତ୍ ଡାକି ରଜନୀ କଟାଇ ଅଛନ୍ତି, କେତେବେଳେ ବା ଶ୍ରୀରାଧାଙ୍କ ବିରହରେ କାତର ହୋଇ ଛଦ୍ମବେଶରେ ନାପିତାଣୀ, ମାଳିନୀ ବା ଗଣକାଦି ହୋଇ ଶ୍ରୀରାଧାଙ୍କସହ ମିଳିତ ହୋଇଅଛନ୍ତି । ଏ ସବୁଦ୍ୱାରା ଦେଖାଯାଏ ଯେ ଶ୍ରୀକୃଷ୍ଣ କିରୂପ ଶ୍ରୀରାଧାଙ୍କ ପ୍ରେମରେ ଉନ୍ମତ୍ତ ହୋଇ-ଥିଲେ । ଗ୍ରନ୍ଥକାର ମଧ୍ୟ ତାହାଙ୍କର ନୃତ୍ୟର ପରିଚୟ ପରବର୍ତ୍ତୀ ଶ୍ଳୋକରେ ଦେଉଅଛନ୍ତି ।୧୦୫।୧୦୮।

ତଥାହି ଗୋବିନ୍ଦଲୀଳାମୃତେ ( ୮।୭୭ )—
କସ୍ମାଦ୍ବୃନ୍ଦେ ପ୍ରିୟସଖି ହରେଃ ପାଦମୂଳାତ୍ କୁତୋଽସୌ,
କୁଣ୍ଡାରଣ୍ୟେ କିମିହ କୁରୁତେ ନୃତ୍ୟଶିକ୍ଷାଂ ଗୁରୁଃ କଃ ।
ତଂ ତ୍ୱନ୍ମୂର୍ତ୍ତିଃ ପ୍ରତିତରୁଲତଂ ଦିଗ୍ବିଦିକ୍ଷୁ ସ୍ଫୁରନ୍ତୀ,
ଶୈଲୂଷୀବ ଭ୍ରମତି ପରିତୋ ନର୍ତ୍ତୟନ୍ତୀ
ସ୍ୱପଶ୍ଚାତ୍ ॥ ୨୮ ॥ *

ନିଜପ୍ରେମାସ୍ୱାଦେ ମୋର ହୟ ଯେ ଅହ୍ଲାଦ ।
ତାହା ହୈତେ କୋଟିଗୁଣ ରାଧାପ୍ରେମାସ୍ୱାଦ ।୧୦୯।
ଆମି ଯୈଛେ ପରସ୍ପର ବିରୁଦ୍ଧ-ଧର୍ମ୍ମାଶ୍ରୟ ।
ରାଧା-ପ୍ରେମ ତୈଛେ ସଦା ବିରୁଦ୍ଧ-ଧର୍ମ୍ମମୟ ।୧୧୦।
ରାଧାପ୍ରେମ ବିଭୁ—ଯାର ବାଢ଼ିତେ ନାହିଁ ଠାଞି ।
ତଥାପି ସେ କ୍ଷଣେକ୍ଷଣେ ବାଢ଼ୟେ ସଦାଇ ।୧୧୧।

( ଶ୍ରୀରାଧା ପୃଚ୍ଛତି, ହେ ) ପ୍ରିୟସଖି ବୃନ୍ଦେ ! ( ତ୍ୱଂ ) କସ୍ମାତ୍ (ଆଗତା, ବୃନ୍ଦା କଥୟତି) ହରେଃ ( ଶ୍ରୀକୃଷ୍ଣସ୍ୟ ) ପାଦମୂଳାତ୍ । ( ରାଧାହ ) ଅସୌ ( ଶ୍ରୀକୃଷ୍ଣଃ ) କୁତଃ ( କୁତ୍ର ) ? ( ବୃନ୍ଦାହ ) କୁଣ୍ଡାରଣ୍ୟେ ( ରାଧାକୁଣ୍ଡ ସମୀପସ୍ଥବନେ ) । ( ରାଧାହ ) ଇହ କିଂ କୁରୁତେ ତ । ( ବୃନ୍ଦାହ ) ନୃତ୍ୟଶିକ୍ଷାଂ । ( ରାଧାହ ) ଗୁରୁଃ କଃ ( ବୃନ୍ଦାହ ) ପ୍ରତିତରୁଲତଂ ଦିଗ୍ବିଦିକ୍ଷୁ ଶୈଳୂଷୀ ( ଉଲ୍ଲଷ୍ଟନର୍ତ୍ତୀ ) ଇବ ସ୍ଫୁରନ୍ତୀ ତ୍ୱନ୍ମୂର୍ତ୍ତିଃ ତଂ ( କୃଷ୍ଣଂ ) ସ୍ୱପଶ୍ଚାତ୍ ନର୍ତ୍ତୟନ୍ତୀ ପରିତଃ ଭ୍ରମତି ।
[ ୧୮ଶ ଶ୍ଲୋକଃ ]

କିଞ୍ଚ ନିଜପ୍ରେମ ଇତି ନିଜେ ମଦ୍ଧି ବିଷୟେ ଶ୍ରୀରାଧାୟାଃ ଯତ୍ ପ୍ରେମ ଇତି ଶେଷଃ । ଅତ ଶ୍ରୀରାଧାପ୍ରେମାସ୍ୱାଦସ୍ତୁ ତଭାବଭାବିତାନ୍ତଃକରଣେନୈବ ଲଭ୍ୟତଃ । ଅତ କୋଟିଗୁଣାସ୍ୱାଦନଂ ତତ୍-ପ୍ରେମ୍ଣି ଏକୋ ବିଚିତ୍ରମହିମା ଇତିଭାବଃ । ୧୦୯ । ବି, ଚ,

କିଞ୍ଚ "ଆମି" ଇତି । ତଦ ଉଭୟପ୍ରେମାସ୍ୱାଦ ଏବ ବିରୁଦ୍ଧଧର୍ମ୍ମଃ । ଅଥବା ରସନାଧାନାଦି ମତ୍ପୁରୁଷସ୍ୟ ଉନ୍ନତୀଭବନଂ ତଥା ତଦୁନ୍ନତୀକରଣଂ କଥଂ ସମ୍ଭାବ୍ୟତେ ଇତ୍ୟାଶଙ୍କ୍ୟାଂ ନିରାକର୍ତ୍ତୁମାହ " ଆମି " ଇତି । ଅସ୍ମାକଂ ପରମୈଶ୍ୱର୍ଯ୍ୟାତ୍ ବିରୁଦ୍ଧଧର୍ମ୍ମାଶ୍ରୟତ୍ୱେନାହମୁନ୍ନତୀଭବାମି ତଥା ନିଜସ୍ୱାଭାବ୍ୟାତ୍ ବିରୁଦ୍ଧଧର୍ମ୍ମମୟତ୍ୱେନ ରାଧାପ୍ରେମ ମାମୁନ୍ନତୀକରୋତି । ଅତ ବିରୁଦ୍ଧଧର୍ମ୍ମମୟତ୍ୱଂ ତତ୍ପ୍ରେମ୍ଣି ଏକୋ ବିଚିତ୍ରମହିମା । ୧୧୦ । ବି, ଚ,

ଶ୍ରୀରାଧା ପଚାରିଲେ ପ୍ରିୟସଖି ବୃନ୍ଦେ ! କେଉଁଠାରୁ ଆସିଲ ? ବୃନ୍ଦା କହିଲେ ଶ୍ରୀକୃଷ୍ଣଙ୍କ ଶ୍ରୀଚରଣ ସନ୍ନିଧାନରୁ । ଶ୍ରୀରାଧା କହିଲେ ସେ କେଉଁଠାରେ ଅଛନ୍ତି ? ଶ୍ରୀବୃନ୍ଦା କହିଲେ ଶ୍ରୀରାଧାକୁଣ୍ଡ ବନ ମଧ୍ୟରେ, ଶ୍ରୀରାଧା କହିଲେ ସେ କଅଣ କରୁଅଛନ୍ତି ? ଶ୍ରୀବୃନ୍ଦା କହିଲେ, ନୃତ୍ୟ ଶିକ୍ଷା କରୁଅଛନ୍ତି । ଶ୍ରୀରାଧା କହିଲେ, ତାଙ୍କର ଗୁରୁ କିଏ ? ଶ୍ରୀବୃନ୍ଦା କହିଲେ ଯେ ଦିଗ୍ବିଦିଗରେ ଓ ପ୍ରତି ତରୁ ଲତାରେ ମୂର୍ତ୍ତିମତୀ ତୁମ୍ଭର ମୂର୍ତ୍ତି, ପ୍ରଧାନା ନର୍ତ୍ତକୀର ନ୍ୟାୟ ତାହାଙ୍କୁ ( ଶ୍ରୀକୃଷ୍ଣଙ୍କୁ ) ତୁମ୍ଭର ପଶ୍ଚାତରେ ନଚାଇ ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛି । [ ୧୮ଶ ଶ୍ଲୋକାର୍ଥ ]

ଶ୍ରୀରାଧାଙ୍କର ମୋ ବିଷୟରେ ଯେଉଁ ପ୍ରେମ ତାହା ମୁଁ ଆସ୍ୱାଦନ କରି ଯେପରି ଆନନ୍ଦ ଲାଭ କରେଁ ମୋର ଆହ୍ଲାଦଜନିତ ସେହି ପ୍ରେମଆସ୍ୱାଦନରେ ଶ୍ରୀରାଧିକା ମୋ ଅପେକ୍ଷା କୋଟିଗୁଣ ଆନନ୍ଦ ଲାଭ କରନ୍ତି । କୋଟିଗୁଣ ଆସ୍ୱାଦ ଏ ରାଧା ପ୍ରେମର ଗୋଟିଏ ବିଚିତ୍ର ମହିମା । ୧୦୯ ।

ମୁଁ ଯେପରି ପରସ୍ପର ବିରୋଧୀଧର୍ମ୍ମର ଆଶ୍ରୟ, ଅର୍ଥାତ୍ ମୁଁ ସର୍ବବ୍ୟାପୀ ହୋଇ ମଧ୍ୟ ଯଶୋଦାଙ୍କ କୋଡ଼ସ୍ଥ, ନିରପେକ୍ଷ ହୋଇ ମଧ୍ୟ ଭକ୍ତବତ୍ସଳ, ସ୍ୱତନ୍ତ୍ର ହୋଇ ମଧ୍ୟ ଭକ୍ତାଧୀନ ଇତ୍ୟାଦି ସେହିପରି ଶ୍ରୀରାଧାଙ୍କର ପ୍ରେମବିରୋଧୀ ଧର୍ମ୍ମମୟ ଏହା ମଧ୍ୟ ଶ୍ରୀରାଧାପ୍ରେମର ଏକ ବିଚିତ୍ର ମହିମା । ତାହାର ଉଦାହରଣ ପରବର୍ତ୍ତୀ ତିନି ପୟାର ଓ ଶ୍ଲୋକରେ ଗ୍ରନ୍ଥକାର ବ୍ୟକ୍ତ କରିଅଛନ୍ତି । ୧୧୦ ।

ଯାହା ବଇ ଗୁରୁ ବସ୍ତୁ ନାହିଁ ସୁନିଶ୍ଚିତ ।
ତଥାପି ଗୁରୁର ଧର୍ମ ଗୌରବ-ବର୍ଜ୍ଜିତ । ୧୧୨ ।
ଯାହା ହୈତେ ସୁନିର୍ମ୍ମଳ ଦ୍ୱିତୀୟ ନାହିଁ ଆର ।
ତଥାପି ସର୍ବଦା ବାମ୍ୟ-ବକ୍ର-ବ୍ୟବହାର । ୧୧୩ ।

ତଥାହି ଦାନକେଳିକୌମୁଦ୍ୟାମ୍ (୨)—

ବିଭୁରପି କଳୟନ୍ ସଦାଭିବୃଦ୍ଧିଂ,
ଗୁରୁରପି ଗୌରବଚର୍ଯ୍ୟୟା ବିହୀନଃ ।
ମୁହୁରୁପଚିତ-ବକ୍ରିମାପି ଶୁଦ୍ଧୋ,
ଜୟତି ମୁରଦ୍ୱିଷି ରାଧିକାନୁରାଗଃ ॥୧୯॥ *

ସେଇ ପ୍ରେମାର ଶ୍ରୀରାଧିକା ପରମ-'ଆଶ୍ରୟ' ।
ସେଇ ପ୍ରେମାର ଆମି ହଇ କେବଲ 'ବିଷୟ' ।୧୧୪
ବିଷୟଜାତୀୟ ସୁଖ ଆମାର ଆସ୍ୱାଦ ।
ଆମା ହୈତେ କୋଟିଗୁଣ ଆଶ୍ରୟେର ଆହ୍ଲାଦ ।୧୧୫।
ଆଶ୍ରୟଜାତୀୟ ସୁଖ ପାଇତେ ମନ ଧାୟ ।
ଯତ୍ନେ ଆସ୍ୱାଦିତେ ନାରି, କି କରି ଉପାୟ ? ।୧୧୬

ବିରୁଦ୍ଧଧର୍ମମୟତ୍ୱମାହ "ରାଧାପ୍ରେମ" ଇତି ଦ୍ୱାଭ୍ୟାଂ । ୧୧୨।୧୧୩ । ବି, ଚ,

ବିଭୁଃ ( ବ୍ୟାପକଃ ) ଅପି ସଦା ଅଭିବୃଦ୍ଧିଂ ( ଅଭିତଃ ବୃଦ୍ଧିଂ ) କଳୟନ୍ ( ଧାରୟନ୍ ) ଗୁରୁଃ ( ପରମୋତ୍କୃଷ୍ଟଃ ) ଅପି ଗୌରବଚର୍ଯ୍ୟୟା ( ଦମ୍ଭାଦିକ୍ରିୟୟା ) ବିହୀନଃ ମୁହୁଃ ( ପୁନଃପୁନଃ ) ଉପଚିତବକ୍ରିମା ( ଉପଚିତଃ ବର୍ଦ୍ଧିତଃ ବକ୍ରିମା କୌଟିଲ୍ୟାପରପର୍ଯ୍ୟାୟଃ ବାମ୍ୟଃ ଲକ୍ଷଣଃ ଯସ୍ମିନ୍ ତଥାଭୂତଃ ) ଅପି ଶୁଦ୍ଧଃ ( ଶୁଦ୍ଧସତ୍ତ୍ୱ ବିଶେଷାତ୍ମକତ୍ୱାତ୍ ଉପାଧିଶୂନ୍ୟତ୍ୱାତ୍ ଚ ମାଳିନ୍ୟବର୍ଜ୍ଜିତଃ ) ରାଧିକାନୁରାଗଃ ( ଶ୍ରୀରାଧିକାୟାଃ ଅନୁରାଗଃ ) ମୁରଦ୍ୱିଷି ( ଶ୍ରୀକୃଷ୍ଣେ ) ଜୟତି ( ସର୍ବୋତ୍କର୍ଷେଣ ବର୍ତ୍ତତେ । [ ୧୯ଶ ଶ୍ଳୋକଃ ]

ରାଧାପ୍ରେମ ବିଭୁ ଅର୍ଥାତ୍ ଅସୀମ ବା ଅପ୍ରମେୟ ହେତୁ ବୃଦ୍ଧି ହୋଇପାରେ ନା । ତଥାପି ତାହା ପ୍ରତିକ୍ଷଣ ବୃଦ୍ଧି ପ୍ରାପ୍ତହୁଏ ।

ରାଧାପ୍ରେମ ଯେ ସର୍ବୋତ୍କୃଷ୍ଟ ଏଥିରେ କୌଣସି ସନ୍ଦେହ ନାହିଁ । ଏ ପ୍ରକାର ହୋଇ ମଧ୍ୟ ତାହା ଅହଂକାର ଶୂନ୍ୟ । ତାହା ନିର୍ମ୍ମଳତାରେ ଅତୁଳନୀୟ ହେଲେହେଁ ସେଥିରେ ବାମ୍ୟ ଓ ବକ୍ର ବ୍ୟବହାର ରହିଅଛି ।

ରାଧା ପ୍ରେମର ବିରୁଦ୍ଧଧର୍ମମୟତ୍ୱ ସମ୍ବନ୍ଧେ ମହାଜନମତ ଦେଖାଯାଏ ଯେ କୌଣସି ପ୍ରାକୃତବସ୍ତୁରେ ମଧ୍ୟ ଏକକାଳରେ ବିରୁଦ୍ଧଧର୍ମ ଦ୍ୱୟମାନ ରହିଅଛି, ଯେପରି କି ଏକ ହରିତକୀରେ ବାତ ପିତ୍ତ ଓ କଫ ଏହି ତିନି ବିରୋଧଧର୍ମନାଶକ ଗୁଣ ରହିଅଛି । ଅତଏବ ଅପ୍ରାକୃତ ରାଧା ପ୍ରେମରେ ତାହା ରହିବ ଏଥିରେ ବିଚିତ୍ରତା କଣ । ୧୧୨।୧୧୨।୧୧୩ ।

ଯାହା ବ୍ୟାପକ ଅର୍ଥାତ୍ ସମ୍ପୂର୍ଣ୍ଣ ହୋଇ ମଧ୍ୟ ସର୍ବଦା ବର୍ଦ୍ଧନଶୀଳ । ସର୍ବୋତ୍କୃଷ୍ଟ ହୋଇ ମଧ୍ୟ ଅହଂକାର ବିହୀନ, ଅଧିକରୂପେ କୁଟିଳ ଅର୍ଥାତ୍ ବାମ୍ୟ ହୋଇ ମଧ୍ୟ ବିଶୁଦ୍ଧ ବା ସରଳ, ଏମିତି ଯେ ଶ୍ରୀରାଧିକାଙ୍କର ଶ୍ରୀକୃଷ୍ଣାନୁରାଗ ତାହା ଜୟଯୁକ୍ତ ହେଉ । [ ୧୯ଶ ଶ୍ଳୋକାର୍ଥ ]

ସେହି ପ୍ରେମର ( ପୂର୍ବୋକ୍ତ ପ୍ରକାର ବିରୁଦ୍ଧଧର୍ମମୟ ରାଧାପ୍ରେମ ) ଶ୍ରୀରାଧିକାହିଁ ଆଶ୍ରୟ ଏବଂ ମୁଁ ( ଶ୍ରୀକୃଷ୍ଣ ) ତାହାର ବିଷୟ । ଏଣୁ ମୋର ବିଷୟଜାତୀୟ ସୁଖ ସେହି ପ୍ରେମରୁ ଅସ୍ୱାଦ ହେଉଅଛି । କିନ୍ତୁ ଆଶ୍ରୟ ଜାତୀୟସୁଖ ଯାହାକି ବିଷୟ ଜାତୀୟ ସୁଖଠାରୁ କୋଟିଗୁଣ ଅଧିକ ଅଟେ ତାହା ଆସ୍ୱାଦନ ହେଉ ନ ଥିବାରୁ ଅସ୍ୱାଦନ କରିବା ସକାଶେ ସର୍ବଦା ଇଚ୍ଛା ହେଉଅଛି । କିନ୍ତୁ ବହୁଯତ୍ନ କଲେ ମଧ୍ୟ ଆସ୍ୱାଦ କରି ପାରୁନାହିଁ । ଏହାର ପ୍ରତୀକାର କଅଣ । ୧୧୪।୧୧୫।୧୧୬ ।

କଭୁ ଯଦି ଏଇ ପ୍ରେମାର ହଇଯେ ଆଶ୍ରୟ ।
ତବେ ଏଇ ପ୍ରେମାନନ୍ଦେର ଅନୁଭବ ହୟ ।୧୧୭।

ଏତ ଚିନ୍ତି ରହେ କୃଷ୍ଣ ପରମକୌତୁକୀ ।
ହୃଦୟେ ବାଡ଼ୟେ ପ୍ରେମଲୋଭ ଧକ୍‌ଧକି । ୧୧୮ ।

ଏଇ ଏକ, ଶୁନ ଆର ଲୋଭେର ପ୍ରକାର— ।
ସ୍ୱମାଧୁର୍ଯ୍ୟ ଦେଖି କୃଷ୍ଣ କରେନ ବିଚାର— ।୧୧୯।

ଅଦ୍ଭୁତ ଅନନ୍ତପୂର୍ଣ୍ଣ ମୋର ମଧୁରିମା ।
ତ୍ରିଜଗତେ ଇହାର କେହୋ ନାହିଁ ପାୟ ସୀମା ।୧୨୦।

ଏଇ-ପ୍ରେମଦ୍ୱାରେ ନିତ୍ୟ ରାଧିକା ଏକଲି ।
ଆମାର ମାଧୁର୍ଯ୍ୟାମୃତ ଆସ୍ୱାଦେ ସକଲି । ୧୨୧ ।

ଯଦ୍ୟପି ନିର୍ମ୍ମଲ ରାଧାର ସତ୍ପ୍ରେମ-ଦର୍ପଣ ।
ତଥାପି ସ୍ୱଚ୍ଛତା ତାର ବାଢ଼େ କ୍ଷଣେକ୍ଷଣ । ୧୨୨ ।

ଆମାର ମାଧୁର୍ଯ୍ୟେର ନାହିଁ ବାଢ଼ିତେ ଅବକାଶେ ।
ଏ-ଦର୍ପଣେର ଆଗେ ନବନବରୂପେ ଭାସେ ।୧୨୩।

ମନ୍ମାଧୁର୍ଯ୍ୟ ରାଧାପ୍ରେମ—ଦୋଁହେ ହୋଡ଼ କରି ।
କ୍ଷଣେକ୍ଷଣେ ବାଢ଼େ ଦୋଁହେ—କେହୋ ନାହିଁ ହାରି । ୧୨୪ ।

ଶ୍ରୀରାଧା-ପ୍ରେମାସ୍ୱାଦନେଚ୍ଛାୟାଂ କାରଣଭୂତଂ ତଦ୍‌ବଶେ ମହିମାନମୁକ୍ତ୍ୱା । ତଦାସ୍ୱାଦୟିତୁଂ ସ୍ୱସ୍ୟ ତଦ୍ଭାବଗ୍ରହଣେ କାରଣମାହ " ସେଇ ପ୍ରେମେର " ଇତ୍ୟାଦି । ତତ୍ପ୍ରେମଃ ଶ୍ରୀରାଧାଶ୍ରୟତ୍ୱାଦେବ ତଦ୍ଭାବଂ ବିନା ତଦାସ୍ୱାଦନଂ ନ ଭବେତ୍ ଇତ୍ୟେତଦେବ ତଦ୍ଭାବଗ୍ରହଣେ କାରଣମିତି ଭାବଃ ।
। ୧୧୭।୧୧୮ । ବି, ଚ,

ଶ୍ରୀକୃଷ୍ଣସ୍ୟ ଶ୍ରୀଚୈତନ୍ୟାବତାରମୁଖ୍ୟହେତୁଭୂତାୟାଃ ପ୍ରଥମବାଞ୍ଛାୟା କାରଣମୁକ୍ତ୍ୱା ଦ୍ୱିତୀୟବାଞ୍ଛା " ଅନୟୈବାସ୍ୱାଦ୍ୟୋ ସେନାଦ୍ଭୁତମଧୁରିମା କୀଦୃଶୋ ବା ମଦୀୟଃ " । ଇତ୍ୟସ୍ୟାଃ କାରଣଂ ବଦନ୍ ଶ୍ରୀପାଦଗ୍ରନ୍ଥକୃଦାହ " ଏଇ ଏକ " ଇତି । ଲୋଭେର ପ୍ରକାର ଲୋଭୋତ୍ପତ୍ତୌ କାରଣମିତ୍ୟର୍ଥଃ ।

ଶ୍ରୀକୃଷ୍ଣମଧୁରିମ୍ଣଃ ଶ୍ରୀରାଧାକୃତାସ୍ୱାଦନେ ଯା ବିଚିତ୍ରତା ସୈବ ଶ୍ରୀକୃଷ୍ଣସ୍ୟ ତଦିଚ୍ଛାୟାଂ କାରଣମିତି ତଦ୍‌ବିଚିତ୍ରତାଂ ଶ୍ରୀକୃଷ୍ଣବାକ୍ୟାନୁବାଦେନ ବର୍ଣ୍ଣୟତି " ଅଦ୍ଭୁତ " ଇତି ଦ୍ୱାଭ୍ୟାଂ । ଅତ୍ର ଅଦ୍ଭୁତାନନ୍ତାଦିତ୍ୱାତ୍ ମନ୍ମଧୁରିମ୍ଣଃ ସକଲିମାସ୍ୱାଦନମସମ୍ଭବମପି ଶ୍ରୀରାଧିକା ନିଜପ୍ରେମ୍ଣା ତସ୍ୟ ସକଲମାସ୍ୱାଦୟତୀତ୍ୟେତଦେବ ମହତୀ ବିଚିତ୍ରତା ଇତି ଭାବଃ । ୧୧୯—୧୨୧ । ବି, ଚ,

ନନୁ ତ୍ୱନ୍ମଧୁରିମ୍ଣି ସକଲ ମାସ୍ୱାଦିତେ ତର୍ହି ତସ୍ୟା ଅପ୍ରାପ୍ତରୂପଦ୍ୟତେ ବିତୃଷ୍ଣାପାତାତ୍ ତେନ ଚ " ରାଧାପ୍ରେମ ବିଭୁ ଯାର " ଇତ୍ୟାଦି ବାକ୍ୟାନାମାନର୍ଥକ୍ୟଂ ପ୍ରସଜ୍ୟେତ ଇତି ଚେତ୍ ତତ୍ରାହ "ଯଦ୍ୟପି" ଇତି ଦ୍ୱାଭ୍ୟାଂ । ସଦାବର୍ଦ୍ଧନଶୀଳସ୍ୟ ଶ୍ରୀରାଧାପ୍ରେମ୍ଣୋଽଗ୍ରେ ମତ୍ ସୌନ୍ଦର୍ଯ୍ୟସ୍ୟ ନିତ୍ୟ ନବ-ନବତ୍ୱେନ ଭାସମାନତ୍ୱାତ୍ ନ ତତ୍ର ତଦାଶଙ୍କା ଇତି ଭାବଃ ।

ନନୁ ଯତ୍ତୋକ୍ତଂ ଆସ୍ୱାଦେ ସକଲେ ଇତ୍ୟେତତ୍ କଥଂ ସଙ୍ଗଚ୍ଛତେ, ନହି ଅନନ୍ତସ୍ୟ ବସ୍ତୁନଃ ସକଲଗ୍ରହଣଂ କ୍ୱଚିଦପି ଦୃଶ୍ୟତେ, ସତି ବା ତସ୍ମିନ୍ ନ ତସ୍ୟ ଆନନ୍ତ୍ୟଂ ସ୍ୟାଦିତି ଚେତ୍ ତତ୍ରାହ "ମୋର" ଶ୍ରୀରାଧାପ୍ରେମ ମତ୍ସୌନ୍ଦର୍ଯ୍ୟୟୋ ରାନନ୍ତ୍ୟସମାନଧର୍ମ୍ମତ୍ୱେନ ନ ତତ୍ର ତଦାଶଙ୍କା ଆନନ୍ତ୍ୟେ-ନୈବ ଅନନ୍ତ୍ୟଗ୍ରହଣାଦିତି ଭାବଃ । ୧୨୨—୧୨୪ । ବି, ଚ,

ଏହିପରି ଭାବି ଶ୍ରୀକୃଷ୍ଣ ସ୍ଥିରକଲେ ଯେ ଏହି ପ୍ରେମର ଯଦି ମୁଁ କେବେ ଆଶ୍ରୟ ହୋଇପାରେ ( ଶ୍ରୀରାଧାଙ୍କ ତୁଲ୍ୟ ହୋଇପାରେ ) ଅର୍ଥାତ୍ ଶ୍ରୀରାଧାଙ୍କ ଭାବରେ ଭାବିତ ହୋଇପାରେ । ତାହାହେଲେ ଶ୍ରୀରାଧାପ୍ରେମାନନ୍ଦ ଅନୁଭବ ହୋଇପାରିବ । ପରମକୌତୁକୀ ଶ୍ରୀକୃଷ୍ଣ ଏହିପରି ଚିନ୍ତା କରିବାରୁ ଶ୍ରୀରାଧାଭାବ ଗ୍ରହଣ ପ୍ରତି ତାହାଙ୍କର ଅତ୍ୟନ୍ତ ଲୋଭ ବୃଦ୍ଧି ହେଲା । ଅର୍ଥାତ୍ ରାଧାଭାବ ଗ୍ରହଣର ଏ ଗୋଟିଏ କାରଣ । ୧୧୭।୧୧୮ ।

| | |
|---|---|
| ଆମାର ମାଧୁର୍ଯ୍ୟ ନିତ୍ୟ ନବନବ ହୟ । | ଦର୍ପଣାଦ୍ୟେ ଦେଖି ଯଦି ଆପନ ମାଧୁରୀ । |
| ସ୍ୱସ୍ୱପ୍ରେମ-ଅନୁରୂପ ଭକ୍ତେ ଆସ୍ୱାଦୟ । ୧୨୫ । | ଆସ୍ୱାଦିତେ ଲୋଭ ହୟ, ଆସ୍ୱାଦିତେ ନାରି ।୧୨୬। |

ନନୁ ପ୍ରତ୍ୟକ୍ଷୀଭୂତୋ ଭବନ୍ମଧୁରିମା ସର୍ବେଷାମେବ ସମାନମାସ୍ୱାଦ୍ୟୋ ଭବେତ୍ତ୍ର ପ୍ରତ୍ୟକ୍ଷତ୍ୱାତ୍ ତଥାପି ଉକ୍ତଂ ପ୍ରତ୍ୟକ୍ଷଂ କେନ ବାଧ୍ୟତେ ତଦା କଥଂ "ରାଧିକା ଏକଲା" ଇତ୍ୟୁକ୍ତମିତ୍ୟତସ୍ତତ୍ରାହ "ଆମାର" ଇତି । ମଦୀୟସ୍ୟ ମାଧୁର୍ଯ୍ୟସ୍ୟ ନିତ୍ୟ ନବନବତ୍ୱେଽପି ଯସ୍ୟ ଯାବାନ୍ ପ୍ରେମା ସତାବଦେବ ମନ୍ମାଧୁର୍ଯ୍ୟମାସ୍ୱାଦୟତୀତ୍ୟର୍ଥଃ । ଅୟମ୍ଭାବଃ ନହି ବସ୍ତୁସଦ୍ଭାବ ଏବ ତଦ୍‌ଗ୍ରହଣେ କାରଣଂ କିନ୍ତୁ ତଦ ଇନ୍ଦ୍ରିୟାଣାଂ ଶକ୍ତିଃ ସାତ କାର୍ଯ୍ୟୈକସମଧିଗମ୍ୟା ଯଥାକାର୍ଯ୍ୟଂ କଳ୍ପ୍ୟତେ ଅତଃ ଯସ୍ୟ ଯାବଦିନ୍ଦ୍ରିୟଶକ୍ତିଃ ସତାବଦେବ ବସ୍ତୁ ଗୃହ୍ଣାତି ନତୁ ସର୍ବେ ସମାନମିନ୍ଦ୍ରିୟଶକ୍ତେରସମତ୍ୱାଦିତ ଯଥା ତଥୈବ ପ୍ରତ୍ୟକ୍ଷୀଭୂତସ୍ୟ ମନ୍ମାଧୁର୍ଯ୍ୟସ୍ୟ ସଦ୍ଭାବୋ ନ ତଦାସ୍ୱାଦନେ କାରଣଂ କିନ୍ତୁ ପ୍ରେମୈବ ତତ୍ର, ମନ୍ମାଧୁର୍ଯ୍ୟାଦ୍ୟନୁଭବ-କାର୍ଯ୍ୟୈକଗମ୍ୟଂ ଯଥାକାର୍ଯ୍ୟଂ କଳ୍ପ୍ୟତେ ଅତଃ ଯସ୍ୟ ଯାବାନ୍ ପ୍ରେମା ସ ତାବନ୍ମନ୍ମାଧୁର୍ଯ୍ୟ ମାସ୍ୱାଦୟତି ନ ତୁ ସର୍ବେ ସମାନଂ । ତଥା ସତି ମନ୍ମାଧୁର୍ଯ୍ୟସମଗ୍ରାସ୍ୱାଦନକାର୍ଯ୍ୟଂସମଧିଗମ୍ୟ ସମଗ୍ରେଣ ପ୍ରେମ୍ଣା ଏକା ଶ୍ରୀରାଧିକା ମନ୍ମାଧୁର୍ଯ୍ୟଂ ସମଗ୍ରମାସ୍ୱାଦୟତି ଅନ୍ୟେ ତୁ ନ ତଦ୍ୱଦାସ୍ୱାଦୟିତୁଂ ଶକ୍ନୁବନ୍ତି ତଦ୍ୱତ୍ ପ୍ରେମାଭାବାତ୍ । ନନୁ ଯଦି କଶ୍ଚିତ୍ ତଦ୍ୱଦ୍‌ଭବେତ୍ତ ତଦା ତସ୍ୟ ତଦ୍ୱତ୍ତଦାସ୍ୱାଦନଂ ଭବେଦିତି ନ ବାଚ୍ୟଂ; ଯତଃ ଯଥାହମେକ ଏବ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଃ ନ ତୃତୀୟଃ କଶ୍ଚିତ୍ ମତ୍ତୁଲ୍ୟସ୍ତଥା ଏକା ଏବ ସ୍ୱରୂପଶକ୍ତିଃ ଶ୍ରୀରାଧିକା ନ ତୁ ତତ୍ତୁଲ୍ୟୋଽନ୍ୟଃ କଶ୍ଚିତ୍ ଭବେତ୍ ଯସ୍ତଦ୍ୱନ୍ମନ୍ମାଧୁର୍ଯ୍ୟଂ ସମଗ୍ରମାସ୍ୱାଦୟେତ୍ । ଏତେନାପି ଶ୍ରୀକୃଷ୍ଣମାଧୁର୍ଯ୍ୟସ୍ୟ ପ୍ରେମୈକଗ୍ରାହ୍ୟତ୍ୱମୁକ୍ତଂ ପ୍ରେମାନୁରୂପସ୍ୱାଦ୍ୟତ୍ୱେନ କଥିତତ୍ୱାଦିତି । ୧୨୫ । ଚ, ଚ,

ଗ୍ରନ୍ଥକାର କହୁଅଛନ୍ତି ଶ୍ରୀକୃଷ୍ଣଙ୍କର ଶ୍ରୀଚୈତନ୍ୟ ଅବତାର ହେବାର ମୁଖ୍ୟହେତୁ ଗତ ପ୍ରଥମ ବାଞ୍ଛା ବିଷୟ ଉପରେ କୁହାଗଲା । ବର୍ତ୍ତମାନ ଦ୍ୱିତୀୟ ବାଞ୍ଛା ବିଷୟ କୁହାହେଉଅଛି । ଯଥା ;—

ଶ୍ରୀକୃଷ୍ଣ ଆପଣାର ମାଧୁର୍ଯ୍ୟ ଦେଖି ବିଚାରକଲେ ଯେ ମୋର ( ଶ୍ରୀକୃଷ୍ଣଙ୍କର ) ମାଧୁର୍ଯ୍ୟ ଅଦ୍ଭୁତ, ଅନନ୍ତ ଓ ପରିପୂର୍ଣ୍ଣ । ଏହା ତ୍ରିଜଗତରେ କେହି କଳନା କରିପାରନ୍ତି ନାହିଁ । ଅର୍ଥାତ୍ ପୂର୍ଣ୍ଣରୂପେ ଆସ୍ୱାଦ କରିପାରନ୍ତି ନାହିଁ । କିନ୍ତୁ ଶ୍ରୀରାଧା ପ୍ରେମର ବଳବତ୍ତା ଏହି ଯେ ସେ କେବଳ ସେହି ପ୍ରେମଦ୍ୱାରା ମୋର ମାଧୁର୍ଯ୍ୟାମୃତ ସମ୍ପୂର୍ଣ୍ଣରୂପେ ଆସ୍ୱାଦନ କରନ୍ତି ଅର୍ଥାତ୍ ମୋର ( ଶ୍ରୀକୃଷ୍ଣଙ୍କର ) ଅସୀମ ମାଧୁର୍ଯ୍ୟ ଶ୍ରୀରାଧାଙ୍କର ପ୍ରେମ ନିକଟରେ ସସୀମ ହୋଇଅଛି ।

ଏଣୁ ଶ୍ରୀକୃଷ୍ଣ ନିଜ ସ୍ୱମାଧୁର୍ଯ୍ୟ ପରିପୂର୍ଣ୍ଣରୂପେ ଆସ୍ୱାଦନ କରିବା ନିମନ୍ତେ ଶ୍ରୀରାଧା-ପ୍ରେମରେ ଭାବିତ ହେବା ପ୍ରତି ଲୋଭୀ ହୋଇଥିଲେ । ୧୧୯।୧୨୦।୧୨୧ ।

ଶ୍ରୀକୃଷ୍ଣ ଭାବିଲେ ଶ୍ରୀରାଧାଙ୍କ ପ୍ରେମ ନିର୍ମଳ ଦର୍ପଣ ପରି, ତଥାପି ତାହାର ସ୍ୱଚ୍ଛତା ପ୍ରତିକ୍ଷଣ ବୃଦ୍ଧି ପ୍ରାପ୍ତହୁଏ । ମୋର ମାଧୁର୍ଯ୍ୟ ଅଧଃମୋର୍ଦ୍ଧ ହେତୁରୁ ବର୍ଦ୍ଧନଶୀଳ ନ ହେଲେହେଁ କ୍ଷଣେ୨ ଶ୍ରୀରାଧାଙ୍କର ପ୍ରେମରୂପ ନିର୍ମଳ ଦର୍ପଣରେ ନବନବରୂପରେ ପ୍ରତିଭାସିତ ହୁଏ । ଅର୍ଥାତ୍ ମୋର ମାଧୁର୍ଯ୍ୟ ରାଧା ପ୍ରେମଦ୍ୱାରା ଯେତେ ଆସ୍ୱାଦିତ ହୁଏ ସେତେ ନବନବଭାବ ଧାରଣକରେ ଏବଂ ଶ୍ରୀରାଧା ପ୍ରେମ ସେହି ନବ୨ ଭାବର ମାଧୁର୍ଯ୍ୟକୁ ନବ୨ ଭାବରେ ଆସ୍ୱାଦନ କରିବାରୁ ତାହାଙ୍କର ପ୍ରେମରେ ନବ୨ ତରଙ୍ଗ ଉତ୍ଥିତ ହୁଏ । ଏହିପରି ନବନବରୂପରେ ମୋର ମାଧୁର୍ଯ୍ୟ ଏବଂ ଶ୍ରୀରାଧା ପ୍ରେମର ନବ୨ ତରଙ୍ଗ, ଏ ଉଭୟ ଉଭୟଙ୍କୁ ଯେପରିକି ବାଜିରଖି ପରାସ୍ତ କରିବା ସକାଶେ କ୍ଷଣେ୨ ବର୍ଦ୍ଧିତ ହୁଅନ୍ତି । ତାହା ହେଲେହେଁ କେହି କାହାରିକି ପରାସ୍ତ କରିପାରନ୍ତି ନାହିଁ । ଏହିଦ୍ୱାରା ପ୍ରକାଶ ହେଉଅଛି ଯେ

ବଡ଼ର କରିଯେ ଯଦି ଆସ୍ୱାଦ-ଉପାୟ ।
ରାଧିକାସ୍ୱରୂପ ହୋଇତେ ତବେ ମନ ଧାୟ ।୧୨୭।
ତଥାହି ଲଲିତମାଧବେ ( ୮।୩୨ )—
ଅପରିକଲିତ-ପୂର୍ବଃ କଶ୍ଚମତ୍କାରକାରୀ,
ସ୍ଫୁରତି ମମ ଗରୀୟାନେଷ ମାଧୁର୍ଯ୍ୟପୂରଃ ।
ଅୟମହମପି ହନ୍ତ ପ୍ରେକ୍ଷ୍ୟ ଯଂ ଲୁବ୍ଧଚେତାଃ,
ସରଭସମୁପଭୋକ୍ତୁଂ କାମୟେ ରାଧିକେବ ॥୨୦॥ *

କୃଷ୍ଣମାଧୁର୍ଯ୍ୟର ଏକ ସ୍ୱାଭାବିକ ବଳ ।
କୃଷ୍ଣ-ଆଦି ନରନାରୀ କରୟେ ଚଞ୍ଚଳ ।୧୨୮।

ଶ୍ରୀରାଧିକାସ୍ୱାଦ୍ୟସ୍ୱସୌନ୍ଦର୍ଯ୍ୟାସ୍ୱାଦନେଚ୍ଛାୟାଂ କାରଣମୁକ୍ତ୍ୱା । ତଭାବଗ୍ରହଣେନୈବ ତଦାସ୍ୱାଦନଂ ଭବେଦିତ୍ୟେତଦେବ ତସ୍ୟ ତଭାବଗ୍ରହଣେ କାରଣ ମିତ୍ୟାହ "ଦର୍ପଣେ" ଇତି ଦ୍ୱାଭ୍ୟାଂ । ଶ୍ରୀରାଧିକାପ୍ରେମ୍ଣୈବ ମତ୍ସୌନ୍ଦର୍ଯ୍ୟ-ସମଗ୍ରାସ୍ୱାଦନୋପାୟଭୂତମତଃ ରାଧିକାସ୍ୱରୂପ ହଇତେ ଶ୍ରୀରାଧା ପ୍ରେମଭାବ ଗ୍ରହୀତୁମିତ୍ୟର୍ଥଇତି । ୧୨୬।୧୨୭ । ଚ, ତ,

ଅପରିକଲିତପୂର୍ବଃ (ଅନନୁଭୂତପୂର୍ବଃ ) ଚମତ୍କାରକାରୀ ( ବିସ୍ମୟଜନକଃ ) ଏଷଃ ଗରୀୟାନ୍ ମାମକଃ ( ଅନିର୍ବଚନୀୟଃ ) ମାଧୁର୍ଯ୍ୟପୂରଃ ( ସୌନ୍ଦର୍ଯ୍ୟସମୂହଃ ) ସ୍ଫୁରତି । ଅୟଂ ( ବଦ୍ୟମାନଃ ) ଅହଂ ( ଶ୍ରୀକୃଷ୍ଣଃ ନିର୍ବିକାରତ୍ୱେନ ପ୍ରସିଦ୍ଧଃ ) ଅପି ଯଂ (ପ୍ରତିବିମ୍ବରୂପଂ ମାଧୁର୍ଯ୍ୟପୂରଂ) ପ୍ରେକ୍ଷ୍ୟ ( ଦୃଷ୍ଟ୍ୱା ) ରାଧିକାଇବ ଲୁବ୍ଧଚେତାଃ ( ସନ୍ ) ସରଭସ ( ସୌତ୍ସୁକ୍ୟଂ ) ଉପଭୋକ୍ତୁଂ କାମୟେ ( ଅଭିଲଷାମି ) । [ ୨୦ଶ ଶ୍ଲୋକଃ ]

ଦର୍ପଣାଦୌ ସ୍ୱମାଧୁର୍ଯ୍ୟଂ ଦୃଷ୍ଟ୍ୱା ତଦାସ୍ୱାଦତୁଂ ସ୍ୱସ୍ୟ କଥଂ ଲୋଭୋତ୍ପତ୍ତିରିତ୍ୟତ୍ର ତନ୍ମାଧୁର୍ଯ୍ୟସ୍ୱଭାବ ଏବ ତଦୁତ୍ପାଦୟତୀତି ତତ୍କାର୍ଯ୍ୟଂ ଶ୍ରୀପାଦଗ୍ରନ୍ଥକୃଦାହ "କୃଷ୍ଣମାଧୁର୍ଯ୍ୟ" ଇତ୍ୟାଦି "କୃଷ୍ଣେର ମାଧୁର୍ଯ୍ୟ" ଇତ୍ୟନ୍ତଂ । ୧୨୮ । ଚ, ଚ,

ଉପରୋକ୍ତ ୧୧୧ ପୟାର ଲକ୍ଷିତ "ରାଧା ପ୍ରେମ ବିଭୁ" ଅନନ୍ତ ହୋଇଲେହେଁ ଶ୍ରୀକୃଷ୍ଣ ମାଧୁର୍ଯ୍ୟର ନବ ନବ ଭାବ ଆସ୍ୱାଦନ କରି ନବନବ ଭାବ ତରଙ୍ଗରେ ବୃଦ୍ଧି ପ୍ରାପ୍ତହୁଏ ଏବଂ ଉପରୋକ୍ତ ୧୨୦ ପୟାର ଲକ୍ଷିତ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ "ଅଦ୍ଭୁତ ଅନନ୍ତପୂର୍ଣ୍ଣ" ହୋଇଲେହେଁ, ଶ୍ରୀରାଧା ପ୍ରେମଦ୍ୱାରା ଆସ୍ୱାଦ୍ୟ ହେତୁ କ୍ଷଣେକ୍ଷଣେ ନବନବରୂପ ଧାରଣ କରିବାଦ୍ୱାରା ବୃଦ୍ଧି ପ୍ରାପ୍ତହୁଏ । ଅନନ୍ତ ଅର୍ଥାତ୍ ଅସୀମ ରାଧା ପ୍ରେମଦ୍ୱାରା ଅନନ୍ତ ଅର୍ଥାତ୍ ଅସୀମ ଶ୍ରୀକୃଷ୍ଣ ମାଧୁର୍ଯ୍ୟହିଁ କେବଳ ସର୍ବତୋଭାବେ ଅର୍ଥାତ୍ ପରିପୂର୍ଣ୍ଣ ରୂପରେ ଆସ୍ୱାଦିତ ହୁଏ । ଅସୀମର ସହିତ ଅସୀମର ସମ୍ବନ୍ଧ ହେତୁ ଏ ଉଭୟର କ୍ରିୟା ସମ୍ବନ୍ଧହିଁ ଅସୀମତ୍ୱ ଅଟେ ଏବଂ କ୍ଷଣେ କ୍ଷଣେ ଅସୀମ ରାଧାପ୍ରେମ ନବ ନବ ଭାବରେ ଅସୀମ ଶ୍ରୀକୃଷ୍ଣ ମାଧୁର୍ଯ୍ୟର ନବ ନବ ରୂପକୁ ଆସ୍ୱାଦନ କରିବା ହେତୁ ପୂର୍ଣ୍ଣ ଆସ୍ୱାଦ ହୋଇଲେହେଁ ଆସ୍ୱାଦର ପୂର୍ଣ୍ଣତାଦ୍ୱାରା ସେହି କ୍ରିୟାର ବିରାମ ହୁଏନାହିଁ । ଏହାହିଁ ଶ୍ରୀରାଧା ପ୍ରେମର ଗରିମତା । ୧୨୨।୧୨୩।୧୨୪ ।

ଶ୍ରୀକୃଷ୍ଣ ଅଦ୍ୱିତୀୟ ଓ ସ୍ୱୟଂ ଭଗବାନ୍ ହେତୁ ତାହାଙ୍କର ମାଧୁର୍ଯ୍ୟ ସୁଷମା ଅନ୍ୟତ୍ର ସମ୍ଭବେନା । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତି ହେତୁ ଶ୍ରୀରାଧାଙ୍କର ପ୍ରେମର ସୁଷମା ଅନ୍ୟତ୍ର ସମ୍ଭବପର ନୁହେ । ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଅସୀମ ଓ ଶ୍ରୀରାଧାଙ୍କର ପ୍ରେମ ଅସୀମ । ଶ୍ରୀରାଧାବ୍ୟତୀତ ଅପର ଭକ୍ତମାନଙ୍କର ପ୍ରେମ ଶ୍ରୀରାଧାଙ୍କର ପ୍ରେମ ତୁଳନାରେ ସସୀମ ଅଟେ । ତେଣୁ ଅପରାପର ଭକ୍ତମାନେ ନିଜ ନିଜ ପ୍ରେମର ଗାଢ଼ତା ଅନୁସାରେ ଶ୍ରୀକୃଷ୍ଣଙ୍କର ନିତ୍ୟ ମାଧୁର୍ଯ୍ୟର ନିତ୍ୟ ନବନବରୂପକୁ ନିଜ ନିଜର ଅଧିକାର ଅନୁଯାୟୀ ଆସ୍ୱାଦ କରନ୍ତି । ଏଠାରେ ପ୍ରଶ୍ନ ହୋଇପାରେ ଯେ ଭକ୍ତ ସାଧନାଦ୍ୱାରା ନିଜ ପ୍ରେମର ଶ୍ରୀରାଧା ପ୍ରେମତୁଲ୍ୟ ଅନନ୍ତତ୍ୱ ଲାଭ କରିପାରେ କିନ୍ତୁ ତାହା ଜୀବପକ୍ଷରେ ଅବିଚିନ୍ତ୍ୟ ଯେହେତୁ ଅସମ୍ଭବ । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ୍ ଏବଂ ଶ୍ରୀରାଧା ତାହାଙ୍କର ଅନ୍ତରଙ୍ଗ ସ୍ୱରୂପଶକ୍ତି; ଜୀବ

ଶ୍ରବଣେ ଦର୍ଶନେ ଆକର୍ଷୟେ ସର୍ବମନ ।
ଆପନା ଆସ୍ୱାଦିତେ କୃଷ୍ଣ କରେନ ଯତନ ।୧୨୯।
ଏ-ମାଧୁର୍ଯ୍ୟାମୃତ ପାନ ସଦା ଯେଇ କରେ ।
ତୃଷ୍ଣା-ଶାନ୍ତି ନହେ, ତୃଷ୍ଣା ବାଢ଼େ ନିରନ୍ତରେ ।୧୩୦।
ଅତୃପ୍ତ ହଇୟା କରେ ବିଧିରେ ନିନ୍ଦନ— ।
'ଅବିଦଗ୍ଧ ବିଧି ଭାଲ ନା ଜାନେ ସୃଜନ । ୧୩୧ ।
କୋଟି ନେତ୍ର ନାହିଁ ଦିଲ, ସବେ ଦିଲ ଦୁଇ ।
ତାହାତେ ନିମିଷ, କୃଷ୍ଣ କି ଦେଖିବ ମୁଞି ' ।୧୩୨।

କଦାପି କୌଣସି ସାଧନାଦ୍ୱାରା ଶ୍ରୀକୃଷ୍ଣ ବା ଶ୍ରୀରାଧା ହୋଇ ପାରନ୍ତି ନାହିଁ । ଏଣୁ ୨୧ ପୟାର ଲିଖିତ ଶ୍ରୀରାଧାହିଁ କେବଳ ଶ୍ରୀକୃଷ୍ଣମାଧୁର୍ଯ୍ୟ ସମ୍ପୂର୍ଣ୍ଣରୂପେ ଆସ୍ୱାଦ କରନ୍ତି ଓ ଅପରାପର ଭକ୍ତମାନେ ନିଜ ନିଜ ପ୍ରେମର ଅନୁରୂପ ଆସ୍ୱାଦ କରନ୍ତି । ୧୨୪ ।

ଶ୍ରୀକୃଷ୍ଣ ଭାବିଲେ ଯେ ଦର୍ପଣ ଆଗରେ ମୋର ରୂପ ପ୍ରତିଫଳିତ ଦେଖି ସେଥିର ମାଧୁରୀ ଆସ୍ୱାଦନ କରିବା ସକାଶେ ମୋର ଅତ୍ୟନ୍ତ ଲୋଭ ହୁଏ କିନ୍ତୁ ସମ୍ୟକ୍‌ ଚେଷ୍ଟା କରି ସୁଦ୍ଧା ତାହା ଆସ୍ୱାଦନ କରିପାରେ ନା । ବିଚାର କରି ଦେଖିଲି ଯେ ଶ୍ରୀରାଧା କେବଳ ତାହା ନିଜ ପ୍ରେମଦ୍ୱାରା ସମ୍ପୂର୍ଣ୍ଣ ଆସ୍ୱାଦନ କରନ୍ତି । ଏଣୁ ଶ୍ରୀରାଧାଙ୍କ ସ୍ୱରୂପ ନ ହେଲେ ତାହା ସମ୍ପୂର୍ଣ୍ଣ ଆସ୍ୱାଦନ କରିବାର ଅନ୍ୟ କୌଣସି ଉପାୟ ନାହିଁ ।

ଏଣୁ ଏହା ଶ୍ରୀକୃଷ୍ଣ ଚୈତନ୍ୟଙ୍କର ରାଧାଭାବ କାନ୍ତି ଗ୍ରହଣର କାରଣ ହୋଇଅଛି । ଏହା ୨ୟ ବାଞ୍ଛା । ୧୨୬।୧୨୭ ।

ଶ୍ରୀକୃଷ୍ଣ ନବବୃନ୍ଦାଙ୍କ ସହିତ ଦ୍ୱାରକାସ୍ଥ ନବବୃନ୍ଦାବନରେ ଭ୍ରମଣ କରୁ କରୁ ମଣିଭିତ୍ତିରେ ନିଜର ପ୍ରତିବିମ୍ବ ଦର୍ଶନ କରି ହଠାତ୍ ଭ୍ରମରେ ତାହା କୌଣସି ପୁରୁଷ ମନେକରି ନବବୃନ୍ଦାଙ୍କୁ କହିଲେ ଏ କିଏ ? ମାଧୁର୍ଯ୍ୟଦ୍ୱାରା ମୋର ମନ ହରଣ କରି ମଣିଭିତ୍ତି ଅବଲମ୍ବନରେ ବିରାଜ କରୁଅଛି । ପୁନରାୟ ଭଲରୂପେ ନିରୀକ୍ଷଣ କରି କହିଲେ କି ଆଶ୍ଚର୍ଯ୍ୟ ! ଏ ଯେ ମୋର ପ୍ରତିବିମ୍ବ ! ଏହା ପରେ କହୁଅଛନ୍ତି । ଯଥା;—

ଏହି ଅଗ୍ରବର୍ତ୍ତୀ ମୋର ମାଧୁର୍ଯ୍ୟ କି ଗୁରୁତର ଓ ଆଶ୍ଚର୍ଯ୍ୟଜନକ, ଯାହା ମୁଁ ପୂର୍ବେ କେବେ ଦେଖିନାହିଁ ( ଅନୁଭବ କରିନାହିଁ ) ଏବଂ ଏହା ଦେଖି ଏ ମାଧୁର୍ଯ୍ୟ ଆସ୍ୱାଦନ କରିବା ସକାଶେ ମୋର ବଡ଼ ଲୋଭ ଜନ୍ମୁଅଛି, ତେଣୁ ଶ୍ରୀରାଧାଙ୍କ ତୁଲ୍ୟ ଏହା ଉପଭୋଗ କରିବା ନିମିତ୍ତ ମୋର କୌତୂହଳ ହେଉଅଛି । [ ୨୦ଶ ଶ୍ଳୋକାର୍ଥ ]

ଦର୍ପଣାଦିରେ ସ୍ୱମାଧୁର୍ଯ୍ୟ ଦେଖି ତାହା ଆସ୍ୱାଦନ କରିବା ସକାଶେ ଶ୍ରୀକୃଷ୍ଣଙ୍କର ଲୋଭ ପ୍ରବୃତ୍ତି କାହିଁକି ହେଲା ଏହି ଆଶଙ୍କା ନିବାରଣପାଇଁ ଗ୍ରନ୍ଥକାର କହୁଅଛନ୍ତି ଯେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର ସ୍ୱାଭାବିକ ବଳ ଏମନ୍ତ ଯେ ତାହା ଅନ୍ୟାନ୍ୟ ନରନାରୀଙ୍କୁ ଯେ ବିମୋହିତ କରେ ତାହା ନୁହେଁ, ନିଜେ ଶ୍ରୀକୃଷ୍ଣଙ୍କୁ ସୁଦ୍ଧା ବିମୋହିତ କରେ । ୧୨୮ ।

ସେହି ଶ୍ରୀକୃଷ୍ଣମାଧୁର୍ଯ୍ୟର ସ୍ୱାଭାବିକବଳର ପ୍ରକରଣ କହୁଅଛନ୍ତି । ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟବିଷୟ ଶ୍ରବଣ କଲେ ତାହା ଦର୍ଶନ କରିବା ସକାଶେ ଅତି ଲୋଭ ଜନ୍ମେ କିମ୍ବା ତାହା ଶ୍ରବଣ କଲେ ସର୍ବଦା ଶୁଣିବା ସକାଶେ ଏବଂ ଦର୍ଶନ କଲେ ସର୍ବଦା ଦେଖିବା ସକାଶେ ଅତି ଲୋଭ ଜନ୍ମେ । ତାହା ଶ୍ରବଣ ଦର୍ଶନରେ ପରିତୃପ୍ତ ହୁଏ ନା । ତେଣୁ ଏତାଦୃଶ ମୋହକାରୀ ମାଧୁର୍ଯ୍ୟ ଆସ୍ୱାଦନ କରିବା ସକାଶେ ଶ୍ରୀକୃଷ୍ଣ ନିଜେ ଯତ୍ନବାନ୍ ହୋଇଥିଲେ । ୧୨୯ ।

ଏ ମାଧୁର୍ଯ୍ୟାମୃତ ଯେ ସର୍ବଦା ପାନ କରେ ଅର୍ଥାତ୍ ଆସ୍ୱାଦନ କରେ ତାହାର ତୃଷ୍ଣା ଅର୍ଥାତ୍ ସ୍ୱାଦୁ ଆସ୍ୱାଦନର ବଳବତୀ ଇଚ୍ଛା ପରିତୃପ୍ତ ହୁଏ ନା । ବରଂ ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହୁଏ ।

ତଥାହି ( ଭାଃ ୧୦।୩୧।୧୫ )—

ଅଟତି ଯଦ୍ଭବାନହ୍ନି କାନନଂ,
ତ୍ରୁଟି ଯୁଗାୟତେ ତ୍ୱାମପଶ୍ୟତାମ୍ ।
କୁଟିଳକୁନ୍ତଳଂ ଶ୍ରୀମୁଖଞ୍ଚ ତେ,
ଜଡ଼ ଉଦୀକ୍ଷତାଂ ପକ୍ଷ୍ମକୃଦ୍ଦୃଶାମ୍ ॥୨୧॥ *

ତଥୈବ ( ୧୦।୮୨।୩୯ )—

ଗୋପ୍ୟଶ୍ଚ କୃଷ୍ଣମୁପଲଭ୍ୟ ଚିରାଦଭୀଷ୍ଟଂ,
ଯତ୍ପ୍ରେକ୍ଷଣେ ଦୃଶିଷୁ ପକ୍ଷ୍ମକୃତଂ ଶପନ୍ତି ।
ଦୃଗ୍‌ଭିର୍ହୃଦୀକୃତମଲଂ ପରିରଭ୍ୟ ସର୍ବା-
ସ୍ତଦ୍ଭାବମାପୁରପି ନିତ୍ୟଯୁଜାଂ ଦୁରାପମ୍ ॥୨୨॥ *

ଯତ୍ (ଯଦା) ଅହ୍ନି (ଦିବସେ) ଭବାନ୍ କାନନଂ (ଶ୍ରୀବୃନ୍ଦାବନଂ ପ୍ରତି) ଅଟତି (ଗଚ୍ଛତି, ତଦା) ତ୍ୱାଂ ଅପଶ୍ୟତାଂ (ପ୍ରାଣିନାଂ ବା ବ୍ରଜଜନାନାଂ) ତ୍ରୁଟିଃ ( କ୍ଷଣାର୍ଦ୍ଧଂ ଅପି ) ଯୁଗାୟତେ ( ଯୁଗବତ୍ ଭବତି ) । ତେ ( ତବ ) କୁଟିଳ କୁନ୍ତଳଂ ( କୁଟିଳାଃ କୁନ୍ତଳାଃ ଯସ୍ମିନ୍ ) ଶ୍ରୀମୁଖଂ ଉଦୀକ୍ଷତାଂ ( ଊର୍ଦ୍ଧ୍ୱଂ ଈକ୍ଷମାଣାନାଂ ) ନ ଦୃଶାଂ ପକ୍ଷ୍ମକୃତ୍ ( ବ୍ରହ୍ମା ) ଜଡ଼ଃ ( ଏବ ) । [ ୨୧ଶ ଶ୍ଳୋକଃ ]

( ଯାଃ ଗୋପ୍ୟଃ ) ଯତ୍ପ୍ରେକ୍ଷଣେ ( ଯସ୍ୟ ଶ୍ରୀକୃଷ୍ଣସ୍ୟ ଦର୍ଶନେ ) ଦୃଶିଷୁ ( ନେତ୍ରେଷୁ ) ପକ୍ଷ୍ମକୃତଂ ( ବ୍ୟବଧାୟକନେତ୍ରଲୋମକର୍ତ୍ତାରଂ ବିଧାତାରଂ ) ଶପନ୍ତି ( ଦୂଷୟନ୍ତି, ତାଃ ) ସର୍ବାଃ ଗୋପ୍ୟଃ ( ତଂ ) ଅଭୀଷ୍ଟଂ କୃଷ୍ଣଂ ଚିରାତ୍ ( କୁରୁକ୍ଷେତ୍ରେ ) ଉପଲଭ୍ୟ ଦୃଗ୍‌ଭିଃ ( ନେତ୍ରଦ୍ୱାରୈଃ ) ହୃଦୀକୃତଂ (ହୃଦୟେ ପ୍ରବେଶିତଂ) ପରିରଭ୍ୟ ନିତ୍ୟଯୁଜାଂ ( ନିତ୍ୟସଂଯୋଗବତୀନାଂ ଶ୍ରୀରୁକ୍ମିଣ୍ୟାଦୀନାଂ ଯଦ୍ୱା ଆରୂଢ଼ଯୋଗୀନାଂ ) ଅପି ଦୁରାପଂ ତଦ୍ଭାବଂ ( କୃଷ୍ଣତ୍ୱଂ ପରମାନନ୍ଦଘନତାଂ ନିରବଧି-ଦୁଃଖୋପଶାନ୍ତିପୂର୍ବକପରମକାଷ୍ଠାପ୍ରାପ୍ତମଧୁରାନନ୍ଦବିଶେଷଂ ) ଆପୁଃ । [ ୨୨ଶ ଶ୍ଳୋକଃ ]

ଅର୍ଥାତ୍ ଶ୍ରୀକୃଷ୍ଣ ଦର୍ଶନ କଲା ପରେ, ଦେଖା ଶେଷ ହୋଇଯାଇଅଛି, ଆଉ ଦେଖିବ ନାହିଁ ଏପରି ଭାବ ହୁଏନା । ବରଂ ତାହା ସର୍ବଦା ନୂତନ ପରି ବୋଧହୁଏ । ଏଣୁ ଗୋପୀମାନେ ଆଖିରେ ନିମିଷ ଥିବାରୁ ତାହାର ପତନଦ୍ୱାରା ଶ୍ରୀକୃଷ୍ଣ ଦର୍ଶନରେ ବ୍ୟାଘାତ ହେଉଥିବାର ଅନୁଭବ କରି ଏବଂ କେବଳ ଦୁଇଗୋଟି ଆଖିଦ୍ୱାରା ଶ୍ରୀକୃଷ୍ଣ ଦର୍ଶନ ପ୍ରାପ୍ତ ହେଉନାହିଁ ଓ ତାହା କୋଟୀ ଆଖିଦ୍ୱାରା ସମ୍ୟକ୍ ଆସ୍ୱାଦନ ହୋଇପାରିବା କଠିନ; ଏରୂପ ବିବେଚନା କରି ଦର୍ଶନରେ ଅତୃପ୍ତ ହୋଇ ସୃଷ୍ଟିକର୍ତ୍ତା ବିଧାତାଙ୍କୁ ଅବିଦଗ୍ଧ ( ଅଚତୁର ) ବୋଲି ନିନ୍ଦା କରିଅଛନ୍ତି । ୧୦।୧୩୧।୧୩୨ ।

ଗୋପୀମାନେ ଶ୍ରୀକୃଷ୍ଣ ଦର୍ଶନ ସୁଖଲାଭ ସକାଶେ ସର୍ବସଙ୍ଗ ପରିତ୍ୟାଗ କରି ଶ୍ରୀକୃଷ୍ଣଙ୍କ ନିକଟ ଉପସ୍ଥିତ ହେଲେହେଁ ଶ୍ରୀକୃଷ୍ଣ ଗୋଚାରଣାର୍ଥ ସକାଶେ ସେମାନଙ୍କ ନିକଟରୁ ଅନ୍ତର ହେଲେ, ବିଚ୍ଛେଦକାଳରେ ସେମାନେ ବଡ଼ ଦୁଃଖ ଅନୁଭବ କରନ୍ତି । ମହାରାସରେ ଗୋପୀମାନଙ୍କୁ ତ୍ୟାଗକରି ଶ୍ରୀକୃଷ୍ଣ ଅନ୍ତର୍ହିତ ହେବାରୁ ଗୋପୀମାନେ ପୂର୍ବୋକ୍ତ ଭାବକୁ ଲକ୍ଷ୍ୟକରି କ୍ରନ୍ଦନ କରୁଅଛନ୍ତି;—

ହେ ଶ୍ରୀକୃଷ୍ଣ ! ତୁମ୍ଭେ ଦିନବେଳେ ଗୋଚାରଣାର୍ଥ କରିବା ସକାଶେ ବୃନ୍ଦାବନକୁ ଗମନ କଲେ ତୁମ୍ଭର ଅଦର୍ଶନରେ ବ୍ରଜବାସିମାନେ ( ଆମ୍ଭେମାନେ ) ଏକ ତ୍ରୁଟିକାଳକୁ ( ଏକ କ୍ଷଣର ୨୭୦୦ ଭାଗର ଏକ ଭାଗକୁ ) ଏକ ଯୁଗପରି ବୋଧକରନ୍ତି । ଅର୍ଥାତ୍ ତୁମ୍ଭର ଅତି ଅଳ୍ପସମୟ ବିଚ୍ଛେଦହିଁ ଅତ୍ୟନ୍ତ ଅଧିକ କାଳପରି ଅନୁଭୂତ ହୁଏ । ପୁଣି ଯେତେବେଳେ ତୁମ୍ଭେ ବନପ୍ରଦେଶରୁ ପ୍ରତ୍ୟାବର୍ତ୍ତନ କର ସେତେବେଳେ ତୁମ୍ଭର କୁଟିଳକୁନ୍ତଳସମନ୍ୱିତ ଶ୍ରୀମୁଖଚନ୍ଦ୍ରମା ଦର୍ଶନ କରି ଦର୍ଶନକାରିମାନେ ଆଖିର ନିମିଷକର୍ତ୍ତା ବିଧାତାଙ୍କୁ ଅଜ୍ଞ ବୋଲି କହନ୍ତି । ଅର୍ଥାତ୍ ତୁମ୍ଭର ଶ୍ରୀମୁଖ ଦର୍ଶନକାରିମାନେ ନିର୍ନିମେଷଲୋଚନରେ ଶ୍ରୀମୁଖ ଦର୍ଶନ କରି ସୁଦ୍ଧା ଅତୃପ୍ତ ହୁଅନ୍ତି । ସେପରି ଅବସ୍ଥାରେ ଆଖିରେ ନିମିଷପାତଜନିତ ଦର୍ଶନସୁଖର ବ୍ୟାଘାତହେତୁ ଅତ୍ୟନ୍ତ ଅଧୈର୍ଯ୍ୟ ହୋଇ ନିମିଷକର୍ତ୍ତାଙ୍କର ନିନ୍ଦା କରନ୍ତି । [ ୨୧ଶ ଶ୍ଳୋକାର୍ଥ ]

କୃଷ୍ଣାବଲୋକନ ବିନା ନେତ୍ରେ ଫଳ ନାହିଁ ଆନ ।
ଯେଇ ଜନ କୃଷ୍ଣ ଦେଖେ—ସେଇ ଭାଗ୍ୟବାନ୍ ।୧୩୩।

ତଥାହି ( ଭାଃ ୧୦।୨୧।୭ )—
ଅକ୍ଷଣ୍ୱତାଂ ଫଳମିଦଂ ନ ପରଂ ବିଦାମଃ,
ସଖ୍ୟଃ ପଶୂନନୁବିବେଶୟତୋର୍ବୟସ୍ୟୈଃ ।
ବକ୍ତ୍ରଂ ବ୍ରଜେଶସୁତୟୋରନୁବେଣୁଜୁଷ୍ଟଂ,
ଯୈର୍ବା ନିପୀତମନୁରକ୍ତକଟାକ୍ଷମୋକ୍ଷମ୍ ॥୧୬॥*

ତତ୍ରୈବ ( ୧୦।୪୪।୧୪ )—
ଗୋପ୍ୟସ୍ତପଃ କିମଚରନ୍ ଯଦମୁଷ୍ୟ ରୂପଂ,
ଲାବଣ୍ୟସାରମସମୋର୍ଦ୍ଧ୍ୱମନନ୍ୟସିଦ୍ଧମ୍ ।
ଦୃଗ୍‌ଭିଃ ପିବନ୍ତ୍ୟନୁସବାଭିନବଂ ଦୁରାପ-
ମେକାନ୍ତଧାମ ଯଶସଃ ଶ୍ରିୟ ଐଶ୍ୱରସ୍ୟ ॥୧୪॥*

ଅପୂର୍ବ ମାଧୁରୀ କୃଷ୍ଣେର, ଅପୂର୍ବ ତାର ବଲ ।
ଯାହାର ଶ୍ରବଣେ ମନ ହୟ ଟଲମଲ । ୧୩୪ ।

( ହେ ) ସଖ୍ୟଃ ! ବୟସ୍ୟୈଃ ( ସଖିଭିଃ ) ପଶୂନ୍ ଅନୁବିବେଶୟତୋଃ ( ବନାତ୍ ବନାନ୍ତରଂ ପ୍ରବେଶୟତୋଃ) ବ୍ରଜେଶସୁତୟୋଃ (ରାମକୃଷ୍ଣୟୋଃ) ଅନୁବେଣୁ (ବେଣୁମ୍ ଅନୁବର୍ତ୍ତମାନଂ, ବେଣୁଂ ବାଦୟତ ) ଅନୁରକ୍ତକଟାକ୍ଷମୋକ୍ଷଂ ( ସ୍ନିଗ୍ଧକଟାକ୍ଷବିସର୍ଗଂ ) ବକ୍ତ୍ରଂ ଯୈଃ ନିପୀତଂ ( ତୈଃ ଯତ୍ ) ଜୁଷ୍ଟଂ ( ସେବିତଂ ପ୍ରାପ୍ତଂ ) ତତ୍ ଇଦଂ ବୈ ( ଏବ ତେଷାଂ ) ଅକ୍ଷଣ୍ୱତାଂ (ଚକ୍ଷୁଷ୍ମତାଂ ଜନ୍ତୂନାଂ) ଫଳଂ ପରମ୍ (ଅନ୍ୟତ୍) ନ ବିଦାମଃ ( ବିଦ୍ମଃ ) । ଅଥ ପୂର୍ବୋକ୍ତାନ୍ ସାଧାରଣାନ୍ ବିହାୟ ଚୈନସଦୃଶଂ ବର୍ଣ୍ଣୟନ୍ତ୍ୟୋଽପି ସ୍ୱଭାବ ବ୍ୟକ୍ତିତାର୍ଥବିଶେଷେଣ ତଥା ନ ଶେକୁଃ । ସ୍ୱଭାବ ବ୍ୟକ୍ତିତାର୍ଥୋ ଯଥା ବ୍ରଜେଶସୁତୟୋର୍ମଧ୍ୟେ ନ ପଶ୍ଚାତ୍ ବେଣୁଜୁଷ୍ଟଂ ଯୈ ନିପୀତଂ । ଶ୍ରୀକୃଷ୍ଣସ୍ୟ ବକ୍ତ୍ରମେବ ବେଣୁଜୁଷ୍ଟତୟା ପକ୍ଷାଭାବେନ ଜନଷ୍ଟତୟା ଚ ପ୍ରସିଦ୍ଧଂ ଅତଏବୈକତ୍ୱଂ ନିତରାଂ ପାତମିତ୍ୟନେନ ବକ୍ତ୍ରସ୍ୟ ସୁଧାମୟ ଚନ୍ଦ୍ରରୂପକତ୍ୱଂ ଧ୍ୱନ୍ୟତେ । [ ୧୬ଶ ଶ୍ଳୋକଃ ]

ଗୋପ୍ୟଃ କିଂ ( ଅନିର୍ବାଚ୍ୟଂ ) ତପଃ ଅଚରନ୍ ଯତ୍ ( ଯସ୍ମାତ୍ ) ଅମୁଷ୍ୟ ( ଶ୍ରୀକୃଷ୍ଣସ୍ୟ ) ଲାବଣ୍ୟସାରଂ ( ଲାବଣ୍ୟେନ ସାରଂ ଶ୍ରେଷ୍ଠଂ ) ଅସମୋର୍ଦ୍ଧ୍ୱମ୍ ( ନବିଦ୍ୟତେ ସମମ୍ ଊର୍ଦ୍ଧ୍ୱମ୍ ଅଧିକଞ୍ଚ ଯସ୍ୟ ତତ୍ ) ଅନନ୍ୟସିଦ୍ଧଂ ( ନ ଅନ୍ୟେନ ଆଭରଣାଦିନା ସିଦ୍ଧଂ କିନ୍ତୁ ସ୍ୱତ ଏବ ) ଅନୁସବାଭିନବଂ ( ନିତ୍ୟନବୀନଂ ) ଦୁରାପଂ ଯଶସଃ ଶ୍ରିୟଃ ଐଶ୍ୱରସ୍ୟ ( ଐଶ୍ୱର୍ଯ୍ୟସ୍ୟ ) ଏକାନ୍ତଧାମରୂପଂ ଦୃଗ୍‌ଭିଃ ପିବନ୍ତି । [ ୧୪ଶ ଶ୍ଳୋକଃ ] *

ଯେଉଁ ଗୋପୀମାନେ ଶ୍ରୀକୃଷ୍ଣଦର୍ଶନର ବାଧାକାରୀ ନିମିଷପାତଜନିତ ଦୁଃଖହେତୁରୁ ନିମିଷସୃଷ୍ଟିକର୍ତ୍ତା ବିଧାତାଙ୍କୁ ଶାପ ଦିଅନ୍ତି ଅର୍ଥାତ୍ ଚକ୍ଷୁର ନିମିଷପାତଦ୍ୱାରା ଶ୍ରୀକୃଷ୍ଣ ଦର୍ଶନର ବିଚ୍ଛେଦକୁ ଯେଉଁମାନେ ସହିପାରନ୍ତିନାହିଁ ସେହି ଗୋପୀମାନେ କୁରୁକ୍ଷେତ୍ରରେ ସେମାନଙ୍କର ହୃଦୟବିହାରୀ ଅଭୀଷ୍ଟଦେବ ଶ୍ରୀକୃଷ୍ଣଙ୍କୁ ବହୁକାଳ ବିଚ୍ଛେଦର ପର ପ୍ରାପ୍ତ ହୋଇ ଦୃଷ୍ଟିଦ୍ୱାରା ହୃଦୟସ୍ଥ କରି ସର୍ବତୋଭାବେ ଆଲିଙ୍ଗନପୂର୍ବକ ବିରହଶାନ୍ତିଜନିତ ପରମ ମଧୁରାନନ୍ଦ ଭାବବିଶେଷ ଅନୁଭବ କଲେ, ଯାହାକି ( ଯେଉଁଭାବ ) ରୁକ୍ମିଣୀ ପ୍ରଭୃତି ମହିଷୀଗଣ ନିତ୍ୟ ଯୋଗବତୀ ହୋଇ ସୁଦ୍ଧା ଅନୁଭବ କରିପାରନ୍ତିନାହିଁ । [ ୧୬ଶ ଶ୍ଳୋକାର୍ଥ ]

ଚକ୍ଷୁଧାରୀବ୍ୟକ୍ତିମାନଙ୍କର ଚକ୍ଷୁଧାରଣର ଚରମଫଳ ଶ୍ରୀକୃଷ୍ଣଦର୍ଶନ, ତଦ୍ୟତୀତ ଆନ୍ୟ କିଛି ନୁହେଁ । ତେଣୁ ଯେଉଁ ବ୍ୟକ୍ତି ଶ୍ରୀକୃଷ୍ଣ ଦର୍ଶନ କରେ ସେ ମହା ଭାଗ୍ୟବାନ୍ । ଅର୍ଥାତ୍ ପ୍ରାଣିମାନେ ଚକ୍ଷୁଦ୍ୱାରା ପ୍ରିୟଦର୍ଶନ କରି ଆନନ୍ଦଲାଭ କରନ୍ତି, କିନ୍ତୁ ନାନାପ୍ରକାର ପ୍ରିୟଦର୍ଶନ କରି ସୁଦ୍ଧା ଚକ୍ଷୁର ତୃପ୍ତି ହୁଏନା । କେହି ଯଦି ଶ୍ରୀକୃଷ୍ଣାନୁଗ୍ରହରୁ ପରମ ଭାଗ୍ୟବାନ୍ ହୁଅନ୍ତି ତାହାହେଲେ ସେ

* ଲିଙ୍ଗଭେଦେନ ପାଠାନ୍ତରନ୍ ଏତଦ୍ଦ୍ୱୟେ ଅନ୍ୱୟ ଅନୁଷ୍ଟ୍ୟ ଲିଖିତଂ ।

| | |
|---|---|
| କୃଷ୍ଣେର ମାଧୁର୍ଯ୍ୟ କୃଷ୍ଣେ ଉପଜାୟ ଲୋଭ । | ଏଇ ତ ଦ୍ୱିତୀୟ ହେତୁର କୈଲ ବିବରଣ । |
| ସମ୍ୟକ୍ ଆସ୍ୱାଦିତେ ନାରେ, ମନେ ରହେ କ୍ଷୋଭ ।୧୩୫। | ତୃତୀୟ ହେତୁର ଏବେ ଶୁନହ ଲକ୍ଷଣ । ୧୩୬ । |

ଶ୍ରୀକୃଷ୍ଣ-ମାଧୁର୍ଯ୍ୟେର ଏକ ସ୍ୱାଭାବିକ ବଳ । କୃଷ୍ଣ-ଆଦି ନର ନାରୀ କରୟେ ଚଞ୍ଚଳ । ୧୩୪ । ୧୩୫ । ହ୍ଵ, ଚ,

ଶ୍ରୀକୃଷ୍ଣ ଦର୍ଶନର ଅଧିକାରୀ ହୁଅନ୍ତି । ଚକ୍ଷୁର ପ୍ରିୟଦର୍ଶନମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ ଦର୍ଶନହିଁ ପ୍ରିୟତମ ଦର୍ଶନ, ବା ଦର୍ଶନେନ୍ଦ୍ରିୟର ଚରମୋତ୍କର୍ଷ । ଏହି ଶ୍ରୀକୃଷ୍ଣଦର୍ଶନ ହେଲେ ତାଙ୍କ ବ୍ୟତୀତ ଅନ୍ୟ ଦର୍ଶନର ଆକାଂକ୍ଷା ନିବୃତ୍ତି ହେବାରୁ ଏହାହିଁ ନେତ୍ରର ଚରମଫଳ ଏବଂ ଶ୍ରୀକୃଷ୍ଣଦର୍ଶନକାରିଙ୍କ ମହାସୌଭାଗ୍ୟ । ୧୩୩ ।

କୌଣସି ଗୋପୀ ଅନ୍ୟ ଗୋପୀମାନଙ୍କୁ କହୁଅଛନ୍ତି, ହେ ସଖିଗଣ ! ଶ୍ରୀବଳଦେବ ଓ ଶ୍ରୀକୃଷ୍ଣ ସଖାମାନଙ୍କ ସହିତ ଗୋରୁମାନଙ୍କ ପଛେ ପଛେ ବନଗମନ କାଳରେ ଯିବାବେଳେ ସେମାନଙ୍କର ଅନୁରାଗ-କଟାକ୍ଷବିସ୍ତାରକାରୀ ବେଣୁଯୁକ୍ତ ଶ୍ରୀମୁଖାରବିନ୍ଦ ଯେଉଁମାନେ ଦର୍ଶନ କରନ୍ତି ସେମାନେ ଚକ୍ଷୁଧାରଣ ଫଳ ଲାଭ କରନ୍ତି; ତଦ୍ବ୍ୟତୀତ ଚକ୍ଷୁଲାଭର ଅନ୍ୟ ଫଳ ନାହିଁ ।

ଏଠାରେ ଯେଉଁ ଗୋପୀ କହୁଅଛନ୍ତି, ସେ ବହିରଙ୍ଗ ଗୋପୀମାନଙ୍କ ନିକଟ ନିଜର ଶ୍ରୀକୃଷ୍ଣାନୁରାଗ ଗୋପନ କରିବା ଉଦ୍ଦେଶ୍ୟରେ ଶ୍ରୀବଳରାମଙ୍କ ସହିତ ଶ୍ରୀକୃଷ୍ଣଙ୍କର ଶ୍ରୀମୁଖଶୋଭା ବାହ୍ୟିକରେ ବର୍ଣ୍ଣନ କରିଅଛନ୍ତି । କିନ୍ତୁ ଅନ୍ତରଙ୍ଗ ଗୋପୀମାନଙ୍କ ପକ୍ଷରେ ତାହାଙ୍କର ଆନ୍ତରିକ ଭାବ ଏହି ଯେ ଶ୍ରୀନନ୍ଦନନ୍ଦଙ୍କର ଦୁଇପୁତ୍ର ମଧ୍ୟରୁ ଯେ କି କନିଷ୍ଠ, ତାହାଙ୍କର ଅନୁରାଗ-କଟାକ୍ଷ-ବିସ୍ତାରକାରୀ ବେଣୁଯୁକ୍ତ ଶ୍ରୀମୁଖଚନ୍ଦ୍ର ଯେ ଦର୍ଶନ କରନ୍ତି ସେ ଚକ୍ଷୁଧାରଣର ଫଳ ପାଆନ୍ତି । ଇତ୍ୟାଦି । [ ୨୩ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣଙ୍କୁ କଂସର ରଙ୍ଗସ୍ଥଳରେ ମଥୁରାପୁରସ୍ତ୍ରୀ ରମଣୀମାନେ ଦର୍ଶନ କରି କୁହାକୁହି ହେଉଅଛନ୍ତି ;—

ଗୋପୀମାନେ କି ତପସ୍ୟା କରିଅଛନ୍ତି ଯେ ଏହାଙ୍କର ( ଶ୍ରୀକୃଷ୍ଣଙ୍କର ) ରୂପ ଯାହା କି ଲାବଣ୍ୟର ସାରରେ ଗଠିତ, ଯାହାର ସମାନ କିମ୍ବା ଊର୍ଦ୍ଧ୍ୱ ନାହିଁ, ଯାହା ଅନ୍ୟାନ୍ୟ ଅଳଙ୍କାରଦ୍ୱାରା ବୃଦ୍ଧିପ୍ରାପ୍ତ ହୁଏ ନା, ଅର୍ଥାତ୍ ସ୍ୱତଃସିଦ୍ଧ ଶୋଭାସମ୍ପନ୍ନ ଏବଂ ଯାହା ଯଶଃ, ଶ୍ରୀ ଏବଂ ଐଶ୍ୱର୍ଯ୍ୟର ଏକମାତ୍ର ଆଶ୍ରୟ, ନିତ୍ୟନୂତନ ଓ ଅନ୍ୟପକ୍ଷରେ ଦୁଷ୍ପ୍ରାପ୍ୟ ଏପରି ରୂପକୁ ସେମାନେ ଦର୍ଶନେନ୍ଦ୍ରିୟଦ୍ୱାରା ପାନ କରନ୍ତି ।

ଅର୍ଥାତ୍ ମଥୁରାନାଗରୀମାନେ ଗୋପୀମାନଙ୍କର ପରମ ସୌଭାଗ୍ୟ ପ୍ରଶଂସା କରି କହୁଅଛନ୍ତି ଯେ ଯେଉଁ ଶ୍ରୀକୃଷ୍ଣଙ୍କର ରୂପ ଏକାଧାରରେ ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ଏକମାତ୍ର ଆସ୍ପଦ, ଏପରି ଦୁର୍ଲ୍ଲଭ ରୂପକୁ ସେମାନେ ସର୍ବଦା ନେତ୍ରଦ୍ୱାରା ଆସ୍ୱାଦନ କରନ୍ତି, ଏହା ଗୋପୀମାନଙ୍କର ପରମସୌଭାଗ୍ୟର ପରିଚୟ ଦେଉଅଛି । କିନ୍ତୁ ସେମାନେ ଏ ସୌଭାଗ୍ୟ କିପରି ପାଇଲେ ? ନିଶ୍ଚୟ କୌଣସିପ୍ରକାର କଠୋର ତପସ୍ୟା କରିଅଛନ୍ତି, ଯାହା କି ଆମ୍ଭେମାନେ କରିନାହୁଁ, ତେଣୁ ଏ ଦୁର୍ଲ୍ଲଭରୂପ ଆସ୍ୱାଦନରୁ ବଞ୍ଚିତ ହୋଇଅଛୁଁ । [ ୨୪ଶ ଶ୍ଳୋକାର୍ଥ ]

ଗ୍ରନ୍ଥକାର କହୁଅଛନ୍ତି ଉପରୋକ୍ତରୂପ ପ୍ରମାଣମାନଙ୍କଦ୍ୱାରା ଦେଖାଗଲା ଯେ ଶ୍ରୀକୃଷ୍ଣଙ୍କ ରୂପମାଧୁର୍ଯ୍ୟ ଅପୂର୍ବ ଏବଂ ତାହାର ବଳ ( ଆକର୍ଷଣଶକ୍ତି ) ମଧ୍ୟ ଅପୂର୍ବ । ଯେହେତୁ ତାହା ଦର୍ଶନ କରିବା ଦୂରେଥାଉ କେବଳ ଶୁଣିବାଦ୍ୱାରାହିଁ ସମସ୍ତଙ୍କର ମନକୁ ଚଞ୍ଚଳ କରେ । ଏ ପ୍ରକାର ଶ୍ରୀକୃଷ୍ଣ-

ଅତ୍ୟନ୍ତ ନିଗୂଢ଼ ଏଇ ରସେର ସିଦ୍ଧାନ୍ତ ।
ସ୍ୱରୂପଗୋସାଇଁ ମାତ୍ର ଜାନେନ ଏକାନ୍ତ ।୧୩୭।
ଯେ ବା କେହ୍ୱୋ ଅନ୍ୟ ଜାନେ, ସେହୋ ତାଁହା ହୈତେ ।
ଚୈତନ୍ୟଗୋସାଇଁର ତେଁହ୍ୱୋ ଅତ୍ୟନ୍ତ ମର୍ମ୍ମ-ଯାତେ । ୧୩୮ ।
ଗୋପୀଗଣେର ପ୍ରେମ—'ଅଧିରୂଢ଼ଭାବ' ନାମ ।
ଶୁଦ୍ଧ ନିର୍ମ୍ମଳ ପ୍ରେମ, କଭୁ ନହେ କାମ । ୧୩୯ ।

ଶ୍ରୀଚୈତନ୍ୟାବତାରମୁଖ୍ୟହେତୁଭୂତାୟାଃ ଦ୍ୱିତୀୟବାଞ୍ଛାୟାଃ କାରଣମୁକ୍ତ୍ୱା ତୃତୀୟବାଞ୍ଛା-ସୌଖ୍ୟାଖ୍ୟାୟାଃ ମଦନୁଭବତଃ କୀଦୃଶଂ ବା ଇତ୍ୟସ୍ୟାଃ କାରଣଂ ବଦନ୍ନାହ ତୃତୀୟ ଇତ । ଯେନ ହେତୁନା ତତ୍ର ବାଞ୍ଛା ଜାତା ତତ୍ର ଶୃଣୁ ଇତ୍ୟର୍ଥଃ ।

ଏଇ ରସେର ଉକ୍ତତୃତୀୟହେତୁଭୂତସ୍ୟ ରସସ୍ୟ ସିଦ୍ଧାନ୍ତ ବକ୍ଷ୍ୟମାଣ ଗୋପୀଗଣେର ପ୍ରେମ ଇତ୍ୟାଦ୍ୟୁକ୍ତସିଦ୍ଧାନ୍ତଂ । ଅତ୍ର ଶ୍ରୀସ୍ୱରୂପାତ୍ ପ୍ରାପ୍ତତ୍ୱେନ ତସ୍ୟ ଗ୍ରନ୍ଥକୃତପାଦାକଳିତତ୍ୱମୁକ୍ତଂ । । ୧୩୭।୧୩୮ । ଶ୍ରୀ, ଚ,

ନିଜକାମପୂର୍ତ୍ତିତା ଏବ ସୁଖୋତ୍ପତ୍ତୌ ହେତୁଃ କିନ୍ତୁ ତଦ୍ବିନୈବ ଶ୍ରୀରାଧାୟାଃ ଶ୍ରୀକୃଷ୍ଣାନୁ-ଭବସୁଖଂ ଜାୟତେ ଇତ୍ୟେବ ତତ୍ର ବିଚିତ୍ରତା କାରଣଂ ବିନା କାର୍ଯ୍ୟୋତ୍ପତ୍ତେଃ ସୈବ ତୃତୀୟ ବାଞ୍ଛୋତ୍ପତ୍ତେଃ କାରଣମିତ୍ୟତଃ ଶ୍ରୀରାଧାୟାଃ ତତ୍ର କାମାଭାବଂ ସୁଖଂ ବୈମ୍ୟୁତ୍ୱେନ ଦର୍ଶୟିତୁଂ ସାଧାରଣଗୋପୀନାଂ ଯତ୍ର କାମବନାଭୂତଂ ସୁଖଂ ବର୍ଣ୍ଣୟିତବ୍ୟଂ ତତ୍ତୁ ପ୍ରେମସ୍ୱଭାବାତ୍ ସ୍ୱୟମେବ ଜାୟତେ ନ ତୁ କାମାତ୍ ଇତ୍ୟାଶୟେନାହ "ଗୋପୀଗଣେର" ଇତ୍ୟାଦ । ମହାଭାବସ୍ୟୈବ ଦ୍ୱିଧାଖ୍ୟା-ରୂଢ଼ୋଽଧିରୂଢ଼ଶ୍ଚ । ମହାଭାବସ୍ତୁ ଅନୁରାଗ ଏବ ନିଃସୀମବୃଦ୍ଧିଂ ପ୍ରାପ୍ତଃ ସୂର୍ଯ୍ୟ ଇବ ସମ୍ବନ୍ଧିଜନମାତ୍ର ଏବ ସ୍ୱଭାବ ସମ୍ପର୍କେ ଯଦା ଭବତ ତଦା ମହାଭାବଃ । ତତ୍ର ରୂଢ଼ା ଉଦ୍ଦୀପ୍ତାଦସାତ୍ତ୍ୱିକଭାବା ଯତ୍ର ସରୂଢ଼ ମହାଭାବଃ । କୃଷ୍ଣସ୍ୟ ସଂଯୋଗବିୟୋଗସୁଖଦୁଃଖଂ ଯତ୍ର ଭବତ ସୋଽଧିରୂଢ଼ ମହାଭାବଃ ।

ନନୁ ପ୍ରେମ ଇଚ୍ଛାର୍ଥତ୍ୱେନ କାମାର୍ଥବାଚକତ୍ୱାତ୍ ପ୍ରେମା କାମ ଏବ ଭବତୁ ନ ତୁ ଅଧିରୂଢ଼-ଭାବ ନାମ ଇତ ଚେତ୍ ତତ୍ରାହ ଶୁଦ୍ଧ ଇତ । ଅୟମର୍ଥଃ କାମ ପ୍ରେମୋରଚ୍ଛେକାର୍ଥତ୍ୱେପି ପ୍ରେମା ଶୁଦ୍ଧ ନିର୍ମ୍ମଳଃ ସ୍ୱସୁଖବାଞ୍ଛାରହିତ ଇତ୍ୟର୍ଥଃ କାମସ୍ତୁ ନ ତଥା ସ୍ୱସୁଖବାଞ୍ଛାବିଶିଷ୍ଟ ଇତ୍ୟର୍ଥଃ ଅତଃ ପ୍ରେମା-ଧିରୂଢ଼ ଭାବ ନାମ ନ ତୁ କାମଃ । ଏତତ୍ତୁ ପ୍ରକରଣସ୍ୟାସ୍ୟମତପ୍ରାୟଃ ଗୋପୀନାଂ ପ୍ରେମୈବ ଶ୍ରୀକୃଷ୍ଣେ ନ କ୍ୱଚିତେ ନ ଜାତୁ କାମଃ ତଥାପି ତାସାଂ ତତ୍ର ସୁଖଂ ଜାୟତେ ଶ୍ରୀରାଧାୟାସ୍ତୁ ସ୍ଥିତସ୍ତୁଂ ଇତ୍ୟନ୍ତଃ ତତ୍ସୁଖାସ୍ୱାଦନେ ଶ୍ରୀକୃଷ୍ଣସ୍ୟ ବାଞ୍ଛା ଜାତା । ୧୩୯ । ଶ୍ରୀ, ଚ,

ମାଧୁର୍ଯ୍ୟ ଆସ୍ୱାଦନରେ ନିଜେ ଶ୍ରୀକୃଷ୍ଣଙ୍କର ଲୋଭ ଜାତ ହେଲେହେଁ ତାହା ସେ ଶ୍ରୀବୃନ୍ଦାବନଲୀଳାରେ ସମ୍ୟକ୍ ଆସ୍ୱାଦନ କରି ନ ପାରିବାରୁ ତାଙ୍କ ମନରେ ଆସ୍ୱାଦନ କରିବାର ଆକାଙ୍କ୍ଷା ରହିଲା । ଏହି ଶ୍ରୀକୃଷ୍ଣଙ୍କର ନିଜରୂପମାଧୁର୍ଯ୍ୟ ଆସ୍ୱାଦନ କରିବାହିଁ ଶ୍ରୀକୃଷ୍ଣଚୈତନ୍ୟଅବତାରର ଦ୍ୱିତୀୟ କାରଣ ଅଟେ । ବର୍ତ୍ତମାନ ତୃତୀୟ କାରଣ ଯାହା ତାହାର ଲକ୍ଷଣ ପରେ ବର୍ଣ୍ଣନା କରୁଅଛୁ ଶ୍ରବଣ କର । । ୧୩୪।୧୩୫।୧୩୬ ।

ଏହି ତୃତୀୟ କାରଣଟି ଶ୍ରୀକୃଷ୍ଣଙ୍କର ଅତି ଗୋପନୀୟ ଏବଂ ରସସିଦ୍ଧାନ୍ତରେ ପୂର୍ଣ୍ଣ । ଗୋପନୀୟ ହେଲେହେଁ ଏକା ଶ୍ରୀସ୍ୱରୂପଗୋସ୍ୱାମୀ ତାହା ଜାଣୁଥିଲେ । କାରଣ ସେ ଶ୍ରୀକୃଷ୍ଣ-ଚୈତନ୍ୟଙ୍କର ଅତ୍ୟନ୍ତ ମର୍ମ୍ମୀ । ଗ୍ରନ୍ଥକାର ବା ଅପର ଯେ କେହି ପରେ ଜାଣିଥିଲେ ସେମାନେ ସ୍ୱରୂପଗୋସ୍ୱାମିଙ୍କଠାରୁ ଜାଣିଥିଲେ । ଏହାଦ୍ୱାରା ଗ୍ରନ୍ଥକାର କହୁଅଛନ୍ତି ଯେ ଏ ନିଗୂଢ଼ ତୃତୀୟକାରଣ ସେ କଳିତଭାବରେ ଲେଖନାହାନ୍ତି । ଏହା ଯଥାର୍ଥ ଅଟେ ଓ ତାହା ଶ୍ରୀକୃଷ୍ଣଚୈତନ୍ୟଙ୍କଠାରୁ ଶ୍ରୀସ୍ୱରୂପଗୋସ୍ୱାମୀ ଜାଣି ପ୍ରକାଶ କରିଅଛନ୍ତି । ୧୩୭।୧୩୮ ।

ତଥାହି ଭକ୍ତିରସାମୃତସିନ୍ଧୌ ( ୧।୨।୧୪୩ )
ଗୌତମୀୟତନ୍ତ୍ରବଚନମ୍—
ପ୍ରେମୈବ ଗୋପରାମାଣାଂ କାମ ଇତ୍ୟଗମତ୍ ପ୍ରଥାମ୍ ।
ଇତ୍ୟୁଦ୍ଧବାଦୟୋଽପ୍ୟେତଂ ବାଞ୍ଛନ୍ତି
ଭଗବତ୍ପ୍ରିୟାଃ ॥ ୨୫ ॥ *

କାମ-ପ୍ରେମ ଦୋହାଁକାର ବିଭିନ୍ନ ଲକ୍ଷଣ ।
ଲୌହ ଆର ହେମ ଯୈଛେ ସ୍ୱରୂପେ ବିଲକ୍ଷଣ ।୧୪୦।
ଆତ୍ମେନ୍ଦ୍ରିୟ-ପ୍ରୀତି-ଇଚ୍ଛା—ତାରେ ବଲି 'କାମ' ।
କୃଷ୍ଣେନ୍ଦ୍ରିୟ-ପ୍ରୀତି-ଇଚ୍ଛା—ଧରେ 'ପ୍ରେମ'
ନାମ । ୧୪୧ ।
କାମେର ତାତ୍ପର୍ଯ୍ୟ—ନିଜସମ୍ଭୋଗ କେବଲ ।
କୃଷ୍ଣସୁଖତାତ୍ପର୍ଯ୍ୟ—ହୟ ପ୍ରେମ ତ ପ୍ରବଲ ।୧୪୨।
ଲୋକଧର୍ମ୍ମ ବେଦଧର୍ମ୍ମ ଦେହଧର୍ମ୍ମ କର୍ମ୍ମ ।
ଲଜ୍ଜା ଧୈର୍ଯ୍ୟ ଦେହସୁଖ ଆତ୍ମସୁଖ ମର୍ମ୍ମ । ୧୪୩ ।

ଗୋପରାମାଣାଂ ( ବ୍ରଜଗୋପୀନାଂ ) ପ୍ରେମା ଏବ କାମ ଇତି ପ୍ରଥାଂ ( ଖ୍ୟାତିଂ ) ଅଗମତ୍ । ଇତି । ହେତୋଃ ଉଦ୍ଧବାଦୟଃ ଅପି ଭଗବତ୍ପ୍ରିୟାଃ ( ଭଗବଦ୍‌ଭକ୍ତାଃ ) ଏତଂ ( ପ୍ରେମାଣଂ ) ବାଞ୍ଛନ୍ତି । [ ୨୫ଶ ଶ୍ଳୋକଃ ]

ବିଭିନ୍ନ ଲକ୍ଷଣେନ ପ୍ରେମକାମୟୋର୍ବ୍ଭିନ୍ନତ୍ୱଂ ପ୍ରତିପାଦୟତି କାମ ପ୍ରେମ ଇତି । କାମପ୍ରେମ୍ଣୋରେକାର୍ଥତ୍ୱେଽପି ବକ୍ଷ୍ୟମାଣସ୍ୱରୂପତଟସ୍ଥବିଭିନ୍ନଲକ୍ଷଣେନ ଲୌହକାଞ୍ଚନବତ୍ ପ୍ରେମା ସ୍ୱରୂପତଃ ନ କାମୋ ଭବେଦିତ୍ୟର୍ଥଃ । ୧୪୦ । ବି, ଚ,

ଯଦୁକ୍ତଂ କାମପ୍ରେମ୍ଣୋଃ ବିଭିନ୍ନଲକ୍ଷଣଂ ତଦେବାହ "ଆତ୍ମେନ୍ଦ୍ରିୟ" ଇତି । ନିଜ ସୁଖସାଧନେଚ୍ଛା କାମଃ କୃଷ୍ଣ-ସୁଖ ସାଧନେଚ୍ଛା ପ୍ରେମ ଇତି ତୟୋର୍ବ୍ବିଭିନ୍ନଲକ୍ଷଣଂ । ୧୪୧ । ବି, ଚ,

ତଦେବ ବିଶଦୟତି " କାମେର " ଇତି । ଅତ କୃଷ୍ଣ-ସୁଖ ତାତ୍ପର୍ଯ୍ୟଂ ପ୍ରେମ୍ଣଃ ସ୍ୱରୂପଲକ୍ଷଣମିତି ଜ୍ଞେୟଂ । ୧୪୨ । ବି, ଚ,

ଉକ୍ତୋକ୍ତ ଶ୍ଳୋକର ଲକ୍ଷ୍ୟ ଏହି ଯେ ଶ୍ରୀରାଧା ନିଜ ପ୍ରେମଦ୍ୱାରା ଶ୍ରୀକୃଷ୍ଣ ଅନୁଭବଜନିତ କି ସୁଖ ପାଆନ୍ତି ତାହା ଆସ୍ୱାଦନ କରି । ଏହା ବୁଝାଇବା ନିକାଶେ କାମ ଓ ପ୍ରେମର ପାର୍ଥକ୍ୟ ଦେଖାଇବାର ପ୍ରୟୋଜନ ହୋଇଅଛି ।

କାମର ଆତ୍ମସୁଖହିଁ ହେତୁ ଏବଂ ଆତ୍ମସୁଖତ୍ୟାଗହିଁ ପ୍ରେମର ହେତୁ, ଅତଏବ ସୁଖତ୍ୟାଗଦ୍ୱାରା ସୁଖୋତ୍ପତ୍ତି କପରି ହୋଇପାରେ ତାହାହିଁ ଗ୍ରନ୍ଥକାର ବୁଝାଉଅଛନ୍ତି । ବ୍ରଜଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କଠାରେ ଆରୋପିତ ପ୍ରେମ ସ୍ୱଭାବତଃ ସମ୍ପୂର୍ଣ୍ଣ ଓ ନିର୍ମ୍ମଳ ହୋଇ ସୁଦ୍ଧା କ୍ରମବର୍ଦ୍ଧନଶୀଳ ହେତୁ ତାହାର ନାମ ଅଧିରୂଢ଼ଭାବ । କିନ୍ତୁ ତାହା କାମ ନୁହେଁ । ଏହାର ତାତ୍ପର୍ଯ୍ୟ ଏହି ଯେ ପ୍ରେମ ଓ କାମର ଧାତୁଗତ ଅର୍ଥ ସମାନ ଅର୍ଥାତ୍ "ଇଚ୍ଛା" ତଥାପି କାମର ଲକ୍ଷ୍ୟ ଆତ୍ମେନ୍ଦ୍ରିୟତୃପ୍ତି, ତେଣୁ ତାହା ଅବିଶୁଦ୍ଧ ଏବଂ ମଳଯୁକ୍ତ ଓ ଅଭିଳଷିତ ବସ୍ତୁ ଲାଭଦ୍ୱାରା ଶେଷ ହେଉଥିବାରୁ ଅନିତ୍ୟ । କିନ୍ତୁ ପ୍ରେମର ଲକ୍ଷ୍ୟ ଶ୍ରୀକୃଷ୍ଣେନ୍ଦ୍ରିୟତୃପ୍ତି, ସେଥିରେ ଆତ୍ମସୁଖଗତ କୌଣସି କାରଣ ନ ଥିବାରୁ ତାହା ବିଶୁଦ୍ଧ ଓ ନିର୍ମ୍ମଳ ଏବଂ ତଦ୍ଦ୍ୱାରା ଶ୍ରୀକୃଷ୍ଣାନୁଭବ କ୍ରମବର୍ଦ୍ଧନଶୀଳ ହେତୁ ତାହା ଅଧିରୂଢ଼ । ୧୩୯ ।

ବ୍ରଜଗୋପୀମାନଙ୍କର ପ୍ରେମହିଁ "କାମ" ଏହି ଖ୍ୟାତିପ୍ରାପ୍ତ ହୋଇଅଛି । ଅର୍ଥାତ୍ କ୍ରୀଡ଼ା-ମାନଙ୍କର ଅଧିକାରଣପ୍ରଯୁକ୍ତ କାମ କୁହାଯାଏ । କିନ୍ତୁ ସ୍ୱରୂପତଃ ତାହା କାମ ନୁହେଁ, ଏହି ହେତୁ ଉଦ୍ଧବାଦି ଭଗବତ୍‌ପ୍ରିୟ ଭକ୍ତମାନେ ସେହି ପ୍ରେମ (ଗୋପୀପ୍ରେମ) ବାଞ୍ଛା କରନ୍ତି । [ ୨୫ଶ ଶ୍ଳୋକାର୍ଥ ]

ଗ୍ରନ୍ଥକାର କାମ ଓ ପ୍ରେମର ସ୍ୱରୂପଗତ ପାର୍ଥକ୍ୟ ଦେଖାଉଅଛନ୍ତି । ଯଥା ;—ଲୌହ ଓ ସୁବର୍ଣ୍ଣ ଉଭୟ ଧାତୁ ଶବ୍ଦବାଚ୍ୟ ହେଲେହେଁ ଏମାନେ ରୂପ ଗୁଣରେ ଏକ ନୁହନ୍ତି । ଅର୍ଥାତ୍ ସେଥିରେ ଏମାନଙ୍କର ବିଶେଷ ପାର୍ଥକ୍ୟ ରହିଅଛି । ସେହିପରି କାମ ଓ ପ୍ରେମ ଉଭୟ ଇଚ୍ଛାଶବ୍ଦବାଚ୍ୟ

ଲୁଜ୍ଜା ଆର୍ଯ୍ୟପଥ ନିଜ ପରିଜନ ।
ସ୍ୱଜନେ କରୟେ ଯତ ତାଡ଼ନ-ଭର୍ତ୍ସନ ।୧୪୪।
ସର୍ବତ୍ୟାଗ କରି କରେ କୃଷ୍ଣେର ଭଜନ ।
କୃଷ୍ଣସୁଖହେତୁ କରେ ପ୍ରେମ-ସେବନ । ୧୪୫ ।

ଇହାକେ କହିୟେ କୃଷ୍ଣେ ଦୃଢ଼ ଅନୁରାଗ ।
ସ୍ୱଚ୍ଛ ଧୌତ ବସ୍ତ୍ରେ ଯେନ ନାହିଁ କୋନ ଦାଗ ।୧୪୬।
ଅତଏବ କାମ ପ୍ରେମେ ବହୁତ ଅନ୍ତର ।
କାମ ଅନ୍ଧତମ, ପ୍ରେମ ନିର୍ମ୍ମଲ ଭାସ୍କର । ୧୪୭ ।

ପ୍ରେମ୍ଣଃ ଶ୍ରୀକୃଷ୍ଣ-ସୁଖୈକ ତାତ୍ପର୍ଯ୍ୟଂ ସହେତୁକଂ ଦର୍ଶୟନ୍ତି "ବେଦଧର୍ମ୍ମ" ଇତି ସାର୍ଦ୍ଧଦ୍ୱୟେନ । ବେଦ ଧର୍ମ୍ମାଦିକଂ ସର୍ବଂ ପରିତ୍ୟଜ୍ୟ ଯତଃ ଶ୍ରୀକୃଷ୍ଣଂ ଭଜତି ଅତସ୍ତସ୍ୟ ତତ୍ସୁଖତାତ୍ପର୍ଯ୍ୟଂ । ନହି ସ୍ୱସୁଖତାତ୍ପର୍ଯ୍ୟେ କସ୍ୟଚଦପି ଦେହସୁଖାତ୍ମସୁଖତ୍ୟାଗୋ ଭବେଦିତ୍ୟର୍ଥଃ । ଅତ୍ର ବେଦଧର୍ମ୍ମାଦିତ୍ୟାଗଃ ପ୍ରେମ୍ଣଃ ତଟସ୍ଥଲକ୍ଷଣଂ ଜ୍ଞେୟଂ ।

ଲୋକେଽପି ତଦ୍‌ଦୃଶ୍ୟତେ ଇତ୍ୟତେହ ନହୀତ୍ୟାହ "କୃଷ୍ଣେର" ଇତି । ଲୋକୋହି ସ୍ୱସୁଖାର୍ଥମେବ ସର୍ବଂ ତ୍ୟଜେତ୍ ନ ତ୍ୱନ୍ୟସୁଖାର୍ଥମିବ କୃଷ୍ଣସୁଖାର୍ଥଂ ନ ତୁ ସ୍ୱସୁଖାର୍ଥମତଃ ଲୋକେ ନୈତଦ୍ଦୃଶ୍ୟତ ଇତିଭାବଃ । ୧୪୩।୧୪୪।୧୪୫ । ଚ, ଚ,

ଅଧିରୂଢ଼ ଭାବତ୍ୱେନ ଗୋପୀପ୍ରେମ୍ଣଃ କାମଗନ୍ଧ ଶୂନ୍ୟତ୍ୱଂ ସହେତୁକମୁକ୍ତ୍ୱା ଦୃଢ଼ାନୁରାଗତ୍ୱେନ ତଦାହ "ଇହାକେ" ଇତ୍ୟାଦି । ଶୁଭ୍ରତ୍ୱେନ ବସ୍ତ୍ରେ ଯଥା ଅନ୍ୟଚହ୍ନଂ ନ ଦୃଶ୍ୟତେ ତଥା ଦୃଢ଼ାନୁରାଗତ୍ୱେନ ପ୍ରେମ୍ଣି ନ କାମ ଇତ୍ୟର୍ଥଃ । ୧୪୬ । ଚ, ଚ,

ଅତଏବ ପ୍ରେମ୍ଣି ଏବ ଦୃଢ଼ାନୁରାଗଃ ନ ତୁ କାମେ ଇତ୍ୟସ୍ମାଦେବ ଇତ୍ୟର୍ଥଃ ।୧୪୭। ଚ, ଚ,

ହେଲେହେଁ କାମର ଲକ୍ଷ୍ୟ ଆତ୍ମେନ୍ଦ୍ରିୟ ପ୍ରୀତି ଓ ପ୍ରେମର ଲକ୍ଷ୍ୟ କୃଷ୍ଣେନ୍ଦ୍ରିୟ ପ୍ରୀତି ଅର୍ଥାତ୍ ଆପଣାର ଭୋଗଜନିତ ସୁଖ ଲାଭହିଁ କାମର ଲକ୍ଷଣ, କିନ୍ତୁ ଶ୍ରୀକୃଷ୍ଣଙ୍କୁ ସୁଖଦାନ କରିବା ପ୍ରେମର ଲକ୍ଷଣ ଏବଂ ତାହା ଅତି ପ୍ରବଳ, ଅର୍ଥାତ୍ କୌଣସି କାଳରେ ତାହା ଶେଷ ହୁଏ ନା ଏହା ପ୍ରେମର ସ୍ୱରୂପ ଲକ୍ଷଣ । ୧୪୦।୧୪୧।୧୪୨ ।

ଯେ ଶ୍ରୀକୃଷ୍ଣଙ୍କର ପ୍ରେମସେବା କରେ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ସୁଖସକାଶେ ଶ୍ରୀକୃଷ୍ଣଙ୍କୁ ଭଜେ ସେ ବେଦଧର୍ମ୍ମ (ବେଦପ୍ରବର୍ତ୍ତିତ ସଦାଚାର) ଦେହଧର୍ମ୍ମ (ଇନ୍ଦ୍ରିୟ ତୃପ୍ତିଜନକଧର୍ମ୍ମ) ଲୋକଧର୍ମ୍ମ (ସାମାଜିକତାଜନିତଧର୍ମ୍ମ) ଓ ଅପରାପର କର୍ମ୍ମ ଲଜ୍ଜା ଧୈର୍ଯ୍ୟ ଦେହସୁଖ, ଇନ୍ଦ୍ରିୟସୁଖ, ଆତ୍ମସୁଖ (ମାନସିକ ସୁଖ ଇତ୍ୟାଦି ଯହିଁରୁ ଲାଭ ହୁଏ ଏହିପ୍ରକାର କର୍ମ୍ମ) ଓ ଆର୍ଯ୍ୟପଥ (ମହାଜନ ପରମ୍ପରାଗତ ବୈଧିକଶ୍ରେୟାର୍ଥିକମାର୍ଗ), ନିଜ ପରିଜନ (ନିଜ ପରିବାର ଓ ପୋଷ୍ୟବର୍ଗ) ଏବଂ ଆତ୍ମୀୟସ୍ୱଜନମାନଙ୍କର ତାଡ଼ନ ଭର୍ତ୍ସନ ଇତ୍ୟାଦି ସମସ୍ତ ତ୍ୟାଗ କରି ଶ୍ରୀକୃଷ୍ଣ ଭଜନ କରେ ଅର୍ଥାତ୍ ସମସ୍ତ ତ୍ୟାଗ କରେ । ଅର୍ଥାତ୍ ତାହାର ଈଦୃଶ କାର୍ଯ୍ୟରେ ଶ୍ରୀକୃଷ୍ଣସୁଖହିଁ ତାତ୍ପର୍ଯ୍ୟ ଏଣୁ ତାହା ପ୍ରେମ । ଯେହେତୁ ସେଥିରେ ଦେହାତ୍ମସୁଖ ତ୍ୟକ୍ତ ହୋଇଅଛି । ଯଦି ଏପ୍ରକାର କାର୍ଯ୍ୟ ଦେହାତ୍ମ-ସୁଖ ନିମିତ୍ତ ହୁଏ ତାହାହେଲେ ତାହାକୁ କାମ କୁହାଯାଏ । ଏହା ପ୍ରେମର ତଟସ୍ଥ ଲକ୍ଷଣ ।

। ୧୪୩ । ୧୪୪ । ୧୪୫ ।

ପୂର୍ବୋକ୍ତ ପ୍ରକାର ଶ୍ରୀକୃଷ୍ଣଭଜନହିଁ ଶ୍ରୀକୃଷ୍ଣଙ୍କଠାରେ ଦୃଢ଼ ଅନୁରାଗର ଲକ୍ଷଣ । ଅର୍ଥାତ୍ ନିର୍ମ୍ମଳ ପ୍ରେମର ଲକ୍ଷଣ, ଉଦାହରଣଦ୍ୱାରା କହୁଅଛନ୍ତି ଯେପରି କି ଶୁଭ୍ରବସ୍ତ୍ରରେ କୌଣସି ଦାଗ ନ ଥାଏ ସେହିପରି ଏହାହିଁ ଗୋପୀପ୍ରେମର ଅଧିରୂଢ଼ ଭାବର ଲକ୍ଷଣ । ୧୪୬ ।

ଗ୍ରନ୍ଥକାର କହୁଅଛନ୍ତି ଯେ ପୂର୍ବ କଥିତମତେ ପ୍ରେମରେ ଦୃଢ଼ାନୁରାଗ ହେତୁ କାମ ଓ ପ୍ରେମ ଦୁହିଁଙ୍କ ମଧ୍ୟରେ ପୂର୍ବକଥିତରୂପେ ବିଶେଷ ପାର୍ଥକ୍ୟ ରହିଅଛି । ଉଦାହରଣସ୍ୱରୂପ ଦେଖାଉ-

ଅତଏବ ଗୋପୀଗଣେ ନାହିଁ କାମଗନ୍ଧ ।
କୃଷ୍ଣସୁଖ-ଲାଗି ମାତ୍ର କୃଷ୍ଣେ ସେ ସମ୍ବନ୍ଧ । ୧୪୮ ।

ତଥାହି ( ଭାଃ ୧୦।୩୧।୧୯ )—

ଯତ୍ତେ ସୁଜାତଚରଣାମ୍ବୁରୁହଂ ସ୍ତନେଷୁ,
ଭୀତାଃ ଶନୈଃ ପ୍ରିୟ ଦଧୀମହି କର୍କଶେଷୁ ।
ତେନାଟବୀମଟସି ତଦ୍‌ବ୍ୟଥତେ ନ କିଂସ୍ୱିତ୍,
କୂର୍ପାଦିଭିର୍ଭ୍ରମତି ଧୀର୍ଭବଦାୟୁଷାଂ ନଃ ॥ ୨୬ ॥ *

ଆତ୍ମ-ସୁଖ-ଦୁଃଖ ଗୋପୀର ନାହିଁକ ବିଚାର ।
କୃଷ୍ଣସୁଖହେତୁ ଚେଷ୍ଟା ମନୋବ୍ୟବହାର ।୧୪୯।
କୃଷ୍ଣ-ଲାଗି ଆର ସବ କରି ପରିତ୍ୟାଗ ।
କୃଷ୍ଣସୁଖହେତୁ କରେ ଶୁଦ୍ଧ ଅନୁରାଗ । ୧୫୦ ।

ଅତ ଏବ ବକ୍ଷ୍ୟମାଣରୀତ୍ୟାଦେବ । ନନୁ କାମଗନ୍ଧାଭାବେ କଥଂ କୃଷ୍ଣଂ ଭଜତି ତତ୍ର ସୁଖାର୍ଥମେବ ଇତ୍ୟାହ "କୃଷ୍ଣ" ଇତି । ୧୪୮ । ଚ, ଚ,

( ହେ ) ପ୍ରିୟ ! ତେ ( ତବ ) ଯତ୍ ସୁଜାତଚରଣାମ୍ବୁରୁହଂ ( ସୁଜାତଂ ସୁକୁମାରଂ ଚରଣାମ୍ବୁଜଂ ) କର୍କଶେଷୁ ( କଠିନେଷୁ ) ସ୍ତନେଷୁ ଭୀତାଃ ( ସମ୍ମର୍ଦ୍ଦନଶଙ୍କିତାଃ ସତ୍ୟଃ ବୟଂ ) ଶନୈଃ ଦଧୀମହି ( ଧାରୟେମ ) ତେନ ( ଚରଣେନ ) ଅଟବୀମ୍ ଅଟସି ( ବିଚରସି, ତଦା ) ତତ୍ ( ଚରଣାମ୍ବୁଜଂ ) କୂର୍ପାଦିଭିଃ ( ସୂକ୍ଷ୍ମପାଷାଣାଦିଭିଃ ) କିଂସ୍ୱିତ୍ ନ ବ୍ୟଥତେ ଇତି ଭବଦାୟୁଷାଂ ( ଭବାନ୍ ଏବ ଆୟୁଃ ଜୀବନଂ ଯାସାଂ ତାସାଂ ) ନଃ ( ଅସ୍ମାକଂ ) ଧୀଃ ଭ୍ରମତି ( ବୈକଲ୍ୟଂ ଗଚ୍ଛତି ) [ ୨୬ଶ ଶ୍ଳୋକଃ ]

"ବେଦଧର୍ମ ଦେହଧର୍ମ" ଇତ୍ୟାଦି ବାକ୍ୟଂ ସମ୍ଭାବୟନ୍ନାହ "ଆତ୍ମସୁଖ" ଇତି ଦ୍ୱାଭ୍ୟାଂ । ଆତ୍ମସୁଖଦୁଃଖବିଚାରାଭାବାତ୍ ତତ୍ର ସମ୍ବେଦ୍ଧତ୍ୟର୍ଥଃ । ୧୪୯।୧୫୦ । ଚ, ଚ,

ଅଛନ୍ତି; ଯେ କାମ ଅନ୍ଧତମ ଅର୍ଥାତ୍ ଅନ୍ଧକାରମୟ ଏବଂ ପ୍ରେମ ନିର୍ମ୍ମଳ ଭାସ୍କର ( ମେଘାଦିର ଆବରଣଶୂନ୍ୟ ସୂର୍ଯ୍ୟତୁଲ୍ୟ ) ଅର୍ଥାତ୍ କାମ ପ୍ରେମ ମଧ୍ୟରେ ଏହିପରି ପାର୍ଥକ୍ୟ । ୧୪୭ ।

ଗ୍ରନ୍ଥକାର କହୁଅଛନ୍ତି ଯେ ପୂର୍ବୋକ୍ତରୂପେ ବୁଝାଇବାଦ୍ୱାରା ଏହି ସିଦ୍ଧାନ୍ତ ହେଲା ଯେ ବ୍ରଜଦେବୀମାନଙ୍କର ଶ୍ରୀକୃଷ୍ଣାନୁରାଗରେ କୌଣସି କାମଗନ୍ଧ ( ଆତ୍ମସୁଖେଚ୍ଛା ) ନାହିଁ, କୃଷ୍ଣଙ୍କ ସହିତ ସେମାନଙ୍କର ଯେ କାନ୍ତାସମ୍ବନ୍ଧ ତାହା କେବଳ ଶ୍ରୀକୃଷ୍ଣଙ୍କୁ ସୁଖ ଦେବା ନିମିତ୍ତ । ୧୪୮ ।

ମହାରାସରେ ଶ୍ରୀକୃଷ୍ଣଙ୍କର ଅନ୍ତର୍ଦ୍ଧାନ ପରେ ଶ୍ରୀଗୋପୀମାନେ ତାହାଙ୍କୁ ଅନ୍ୱେଷଣପୂର୍ବକ ଖେଦନ କରି କହୁଅଛନ୍ତି ;—

ହେ ପ୍ରିୟ ! ତୁମ୍ଭର ସୁକୁମାର ଚରଣକମଳରେ ଆଘାତ ଲାଗିବା ଭୟରେ ଆମ୍ଭେମାନେ ତାହା ଧୀରେ ଧୀରେ ଆମ୍ଭମାନଙ୍କର କଠିନ ସ୍ତନଯୁଗଳରେ ଧାରଣ କରୁଁ । କିନ୍ତୁ ତୁମ୍ଭେ ସେହି ଚରଣରେ ବନ ଭ୍ରମଣ କରୁଅଛ ଏବଂ ସେଥିରେ କ୍ଷୁଦ୍ର ଶିଳାଖଣ୍ଡମାନଙ୍କ ଆଘାତରେ ଅବଶ୍ୟ ବ୍ୟଥା ହେଉଅଛି, ଏହା ଭାବି ତଦ୍‌ଗତଜୀବନ ଆମ୍ଭମାନଙ୍କର ଚୈତନ୍ୟ ଲୋପ ହେଉଅଛି । [ ୨୬ଶ ଶ୍ଳୋକାର୍ଥ ]

ଆତ୍ମସୁଖଦୁଃଖ ବିଚାରକରା କାମର ଲକ୍ଷଣ । ଆତ୍ମସୁଖଦୁଃଖର ବିଚାରହୀନତା ପ୍ରେମର ଲକ୍ଷଣ । ତେଣୁ ଗ୍ରନ୍ଥକାର କହୁଅଛନ୍ତି ଗୋପୀମାନଙ୍କର ଶ୍ରୀକୃଷ୍ଣାନୁରାଗରେ ସେମାନଙ୍କର ନିଜର ସୁଖଦୁଃଖ ଜ୍ଞାନ ଥାଏ ନାହିଁ । ସେମାନେ ଯେଉଁ ଚେଷ୍ଟା ( ଶାରୀରିକକାର୍ଯ୍ୟ ) ଓ ମନ ବ୍ୟବହାର ( ମାନସିକକାର୍ଯ୍ୟ ) କରନ୍ତି ତଦ୍ଦ୍ୱାରା ଶ୍ରୀକୃଷ୍ଣଙ୍କୁ ସୁଖ ଦେବା କେବଳ କାରଣ ଅଟେ । ଏହିପ୍ରକାରରେ ଗୋପୀମାନେ ସମସ୍ତ ଦେହାତ୍ମସମ୍ବନ୍ଧୀୟ ବିଷୟମାନ ତ୍ୟାଗ କରି ଶ୍ରୀକୃଷ୍ଣଙ୍କ ସୁଖସକାଶେ ତାଙ୍କ ପ୍ରତି ନିର୍ମ୍ମଳ ଅନୁରାଗ କରନ୍ତି । ଅର୍ଥାତ୍ ଅହୈତୁକୀ ପ୍ରୀତି କରନ୍ତି । ୧୪୯।୧୫୦ ।

ତଥାହି ( ଭାଃ ୧୦।୩୨।୨୧ )—
ଏବଂ ମଦର୍ଥୋଜ୍‌ଝିତଲୋକବେଦ-
ସ୍ୱାନାଂ ହି ବୋମଯ୍ୟନୁବୃତ୍ତୟେଽବଲାଃ ।
ମୟା ପରୋକ୍ଷଂ ଭଜତା ତିରୋହିତଂ,
ମାସୂୟିତୁଂ ମାର୍ହଥ ତତ୍ ପ୍ରିୟଂ ପ୍ରିୟାଃ ॥୨୭॥ ✽
କୃଷ୍ଣେର ପ୍ରତିଜ୍ଞା ଏକ ଆଛେ ପୂର୍ବ ହୈତେ— ।
ଯେ ଯୈଛେ ଭଜେ, କୃଷ୍ଣ ତାରେ ଭଜେ ତୈଛେ ।୧୬୧।

ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ ( ୪।୧୧ )—
ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ।
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ॥ ୨୮ ॥ ✽
ସେ ପ୍ରତିଜ୍ଞା ଭଙ୍ଗ ହୈଲ ଗୋପୀର ଭଜନେ ।
ତାହାତେ ପ୍ରମାଣ କୃଷ୍ଣ-ଶ୍ରୀମୁଖବଚନେ ।୧୬୨।

( ହେ ) ପ୍ରିୟାଃ ! ଅବଲାଃ ! ଏବଂ ମଦର୍ଥୋଜ୍‌ଝିତଲୋକବେଦସ୍ୱାନାଂ ( ମଦର୍ଥଂ ମତ୍ପ୍ରାପ୍ତିନିମିତ୍ତଂ ଉଜ୍‌ଝିତାଃ ତ୍ୟକ୍ତାଃ ଲୋକାଃ ସଂସାରଧର୍ମାଦୟଃ ବେଦାଃ ପାରଲୌକିକଧର୍ମାଃ ସ୍ୱାଃ ଚ ନିଜସମ୍ବନ୍ଧପରିଜନାଶ୍ଚ ଯାଭିଃ କୃଷ୍ଣୈକପ୍ରାଣାଭିଃ ତାସାଂ ) ବଃ ଯୁଷ୍ମାକଂ ମୟି ଅନୁବୃତ୍ତୟେ ଭକ୍ତଲକ୍ଷଣାକାମନେୟାଷାଂ ଭକ୍ତାନାମିବାନୁବୃତ୍ତିବୃଦ୍ଧ୍ୟୈ ପରୋକ୍ଷଂ ( ଅଦର୍ଶନଂ, ଯଥା ଭବତି ତଥା ) ଭଜତା ଯୁଷ୍ମତ୍ପ୍ରେମାଲାପାନ୍ ଶୃଣ୍ୱତା ମୟା ତିରୋହିତଂ ( ଅନ୍ତର୍ଦ୍ଧାନେନ ସ୍ଥିତଂ ) ହି । ତତ୍ ( ତସ୍ମାତ୍ ) ପ୍ରିୟଂ ମା ( ମାଂ ) ଅସୂୟିତୁଂ ଦୋଷଦୃଷ୍ଟ୍ୟା ଦ୍ରଷ୍ଟୁଂ ନ ଅର୍ହଥ ( ଯୋଗ୍ୟାଃ ସ୍ଥ ) [ ୨୭ଶ ଶ୍ଳୋକଃ ]

"ଅତଏବ ଗୋପୀଗଣେ" ଇତ୍ୟୁକ୍ତବାକ୍ୟଂ ଶ୍ରୀକୃଷ୍ଣବାକ୍ୟେନ ଦ୍ରଢ଼ୟିତୁମାହ "କୃଷ୍ଣେର" ଇତଦ୍ୱାଭ୍ୟାଂ । ଯୋ ଯଦଭିଲାଷେଣ ଭଜତି ଶ୍ରୀକୃଷ୍ଣୋଽପି ତଦଭିଲାଷାନୁରୂପଫଳପ୍ରଦାତୃତ୍ୱେନ ତଂ ଭଜତି ଇତି ତତ୍ପ୍ରତିଜ୍ଞା ସା ତୁ ଗୋପିକାଭଜନେ ମିଥ୍ୟାଭୂତା ଶ୍ରୀକୃଷ୍ଣସୁଖୈକହେତୋଃ ତଦ୍‌ଭଜନସ୍ୟ କାମଗନ୍ଧବିହୀନତ୍ୱେନ ତସ୍ୟ ତତ୍ଫଳପ୍ରଦାତୃତ୍ୱାଭାବାତ୍ ଅତଃ ଗୋପୀଗଣେ କାମଗନ୍ଧୋ ନାସ୍ତି ଶ୍ରୀକୃଷ୍ଣ-ସୁଖହେତୁରେବ ତାସାଂ ତତ୍ସମ୍ବନ୍ଧ ଇତ୍ୟର୍ଥଃ । ୧୬୧।୧୬୨ । ବି, ଚ,

୨୮ଶ ଶ୍ଳୋକ ( ଅନ୍ୱୟ ୪ର୍ଥ ପରିଚ୍ଛେଦ ୨ୟ ଶ୍ଳୋକ ଦେଖ )

ରାସମଣ୍ଡଳରୁ ଅନ୍ତର୍ଦ୍ଧାନ ପରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ମିଳିତ ହୋଇ କହୁଅଛନ୍ତି—

ହେ ପ୍ରିୟ ଅବଲାଗଣ ! ଏହି ପ୍ରକାର ମୋତେ ପାଇବା ସକାଶେ ତୁମ୍ଭେମାନେ ଯୁକ୍ତାଯୁକ୍ତ ବିଚାର ନ କରି ଲୋକ ଧର୍ମ ( ସାମାଜିକ ଧର୍ମାଧର୍ମ ) ବିଚାର ନ କରି ବେଦଧର୍ମ ଏବଂ ଆତ୍ମୀୟ ସ୍ୱଜନଗଣ ଏ ସମସ୍ତ ପରିତ୍ୟାଗ କରିଅଛ । ଅତଏବ ମୋର ଅଦର୍ଶନରେ ତୁମ୍ଭମାନଙ୍କର ଧ୍ୟାନ-ପ୍ରବୃତ୍ତି ବୃଦ୍ଧିଜନିତ ପ୍ରେମାଳାପ ଶୁଣିବା ସକାଶେ ମୁଁ ଲୁଚି ରହିଥିଲି । ଏଣୁ ହେ ପ୍ରିୟାଗଣ ! ମୁଁ ତୁମ୍ଭମାନଙ୍କର ପ୍ରିୟ ଏହି ବିବେଚନାରେ ମୋତେ ଦୋଷୀ କରି ପାରିବ ନାହିଁ । [ ୨୭ଶ ଶ୍ଳୋକ ]

ଶ୍ରୀକୃଷ୍ଣ କହୁଅଛନ୍ତି ଯେ ଯେଉଁ ଭକ୍ତ ତାହାଙ୍କୁ ଯେଉଁ ଅଭିଳାଷରେ ଭଜନା କରେ ସେ ମଧ୍ୟ ତାହାକୁ ଅଭିଲଷିତ ଫଳପ୍ରଦାନରୂପ ଭଜନା କରନ୍ତି ଅର୍ଥାତ୍ ଅନୁଗ୍ରହ କରନ୍ତି । ଏହାର ଅଭିପ୍ରାୟ ଏହି ଯେ ଯେଉଁ ମନୁଷ୍ୟ ସକାମ ଅର୍ଥାତ୍ ଭୋଗାଭିଳାଷରେ ଭଜନ କରନ୍ତି, ସେମାନେ ତାହା ପାଆନ୍ତି ଏବଂ ଯେଉଁମାନେ ନିଷ୍କାମ ଅର୍ଥାତ୍ ଭୋଗାଭିଳାଷଶୂନ୍ୟ ମୁକ୍ତି ଅଭିଳାଷରେ ଭଜନା କରନ୍ତି ସେମାନେ ମଧ୍ୟ ତାହା ପାଆନ୍ତି । ୧୬୧ ।

ତଥାହି ( ଭାଃ ୧୦।୩୨।୨୨ )—

ନ ପାରୟେଽହଂ ନିରବଦ୍ୟସଂଯୁଜାଂ,
ସ୍ୱସାଧୁକୃତ୍ୟଂ ବିବୁଧାୟୁଷାପି ବଃ ।
ଯା ମାଭଜନ୍ ଦୁର୍ଜ୍ଜରଗେହଶୃଙ୍ଖଳାଃ,
ସଂବୃଶ୍ଚ୍ୟ ତଦ୍ଵଃ ପ୍ରତିଯାତୁ ସାଧୁନା ॥ ୨୯ ॥ *

ତବେ ଯେ ଦେଖିୟେ ଗୋପୀର ନିଜ-ଦେହେ ପ୍ରୀତ ।
ସେହୋ ତ କୃଷ୍ଣେର ଲାଗି, ଜାନିହ ନିଶ୍ଚିତ ।୧୫୩।
' ଏଇ ଦେହ କୈଲୁଁ ' ଆମି କୃଷ୍ଣେ ସମର୍ପଣ ।
ତାଁର ଧନ—ତାଁର ଇହା ସମ୍ଭୋଗସାଧନ ।୧୫୪।
ଏ-ଦେହ-ଦର୍ଶନ-ସ୍ପର୍ଶେ କୃଷ୍ଣସନ୍ତୋଷଣ ।
ଏଇ ଲାଗି କରେ ଦେହେର ମାର୍ଜ୍ଜନ-ଭୂଷଣ ।୧୫୫।

ନିରବଦ୍ୟସଂଯୁଜାଂ ( ନିରବଦ୍ୟା ନିଷ୍କପଟା ସଂଯୁକ୍ ସଂଯୋଗଃ ଭଜନଂ ଯାସାଂ ତାସାଂ ) ବଃ ( ଯୁଷ୍ମାକଂ ) ସ୍ୱସାଧୁକୃତ୍ୟଂ ( ସ୍ୱୀୟଂ ଅସାଧାରଣଂ ଯତ୍ ସାଧୁକୃତ୍ୟଂ ସାଧୁକର୍ମ୍ମ ତତ୍ ) ଅହଂ ବିବୁଧାୟୁଷା ( ବିବୁଧାନାଂ ଆୟୁଷା, ଚିରକାଳେନ ) ଅପି ପ୍ରତ୍ୟୁପକାରକୃତ୍ୟଂ ନ ପାରୟେ ( ଶକ୍ନୋମି ) । ଯାଃ ( ଭବତ୍ୟଃ ) ଦୁର୍ଜ୍ଜରଗେହଶୃଙ୍ଖଳାଃ (ଦୁର୍ଜ୍ଜରାଃ ଯାଃ ଗେହରୂପାଃ ଶୃଙ୍ଖଳାଃ ତାଃ) ସଂବୃଶ୍ଚ୍ୟ ( ନିଃଶେଷଂ ଛିତ୍ତ୍ୱା ) ମା ( ମାମ୍ ) ଅଭଜନ୍ ( ତାସାଂ ) ବଃ ( ଯୁଷ୍ମାକଂ ଏବ ) ସାଧୁନା (ସାଧୁକୃତ୍ୟେନ) ତତ୍ ( ଯୁଷ୍ମତ୍ ସାଧୁକୃତ୍ୟଂ ) ପ୍ରତିଯାତୁ ( ପ୍ରତିକୃତଂ ଭବତୁ ) । [୨୯ଶ ଶ୍ଲୋକଃ]

ସ୍ୱସୁଖକାମାଭାବେଽପି ଗୋପିକାଭିଃ ମାର୍ଜ୍ଜନଭୂଷଣାଦିନା ଯା ନିଜଦେହପ୍ରୀତିଃ କ୍ରିୟତେ ସାପି କୃଷ୍ଣସୁଖାର୍ଥଂ । ୧୫୩ । ବ, ଚ,

ହେ ପାର୍ଥ ! ମୁଁ ଏକ ହୋଇ ମଧ୍ୟ ବହୁରୂପୀ ଏବଂ ସର୍ବେଶ୍ୱର; ଯେଉଁ ମନୁଷ୍ୟ ମୋର ଯେଉଁ ରୂପକୁ ଯେଉଁ ଭାବରେ ଭଜନା କରେ ମୁଁ ସେହି ରୂପରେ ତାହାର ସେହି ଭାବ ଅନୁଯାୟୀ ଅନୁଗ୍ରହ କରେଁ ଅତଏବ ମନୁଷ୍ୟମାନେ ସର୍ବପ୍ରକାରରେ ସର୍ବମାର୍ଗଦ୍ୱାରା ମୋତେହିଁ ଭଜନା କରନ୍ତି ।
[ ୨୮ଶ ଶ୍ଲୋକାର୍ଥ ]

ଶ୍ରୀକୃଷ୍ଣଙ୍କର ଉପରଲିଖିତ ପ୍ରତିଜ୍ଞା ( ଅର୍ଥାତ୍ ଯେଉଁ ବ୍ୟକ୍ତି ମୋତେ ଯେଉଁ ରୂପରେ ଯେଉଁ ଅଭିଳାଷରେ ଭଜନ କରେ ମୁଁ ତାକୁ ସେହିରୂପରେ ସେହି ଅଭିଳାଷର ଫଳ ପ୍ରଦାନ କରେଁ ) ଗୋପୀମାନଙ୍କ ଭଜନରେ ରକ୍ଷା ହୋଇଲା ନାହିଁ ।

ଏହାର ଭାବ ଏହି ଯେ ଗୋପୀମାନଙ୍କ ଭଜନରେ ଭୋଗ ସୁଖର କାମନା ନାହିଁ ; କିମ୍ବା ନିଷ୍କାମ ( ବୁଝିବାକୁ ହେବ ) ଅର୍ଥାତ୍ ମୁକ୍ତିର କାମନା ନାହିଁ । ସେମାନଙ୍କର ଭଜନ କେବଳ ଶ୍ରୀକୃଷ୍ଣଙ୍କୁ ସୁଖପ୍ରଦାନରୂପ କାମନା । ତେଣୁ ଏ କାମନାର ପ୍ରତିଦାନ ଶ୍ରୀକୃଷ୍ଣଙ୍କଦ୍ୱାରା ହୋଇପାରେ-ନାହିଁ । ଅର୍ଥାତ୍ ଗୋପୀମାନଙ୍କର ଆତ୍ମସମ୍ବନ୍ଧରେ କୌଣସି କାମନା ନ ଥିବାରୁ ଶ୍ରୀକୃଷ୍ଣ ସେମାନଙ୍କ ସେପ୍ରକାର କିଛି ଦାନ କରିପାରିଲେ ନାହିଁ । ଏହାର ପ୍ରମାଣ ନିମ୍ନଲିଖିତ ଶ୍ରୀକୃଷ୍ଣଙ୍କର ଶ୍ରୀମୁଖ-ବଚନ । ୧୫୨ ।

ରାସରେ ଅନ୍ତର୍ଦ୍ଧାନ ପର ମିଳନରେ ଶ୍ରୀଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣ କହୁଅଛନ୍ତି, ହେ ଗୋପିମାନେ ! ତୁମ୍ଭେମାନେ ଦୁଶ୍ଛେଦ୍ୟ ଗୃହରୂପ, ଶୃଙ୍ଖଳ ( ଅର୍ଥାତ୍ ଆତ୍ମୀୟ ସ୍ୱଜନ ଓ ଐହିକ ପାରଲୌକିକ ସୁଖକର ଲୋକମର୍ଯ୍ୟାଦାଦିସମ୍ବନ୍ଧ ) ସମ୍ପୂର୍ଣ୍ଣରୂପେ ଛେଦନ କରି ମୋତେ ଭଜନ କରିବାଦ୍ୱାରା ନିଷ୍କପଟରେ ( ଅର୍ଥାତ୍ ତୁମ୍ଭମାନଙ୍କର ନିଜର ସୁଖକାମନା ତ୍ୟାଗ କରି କେବଳ ମୋତେ ସୁଖ ଦେବାସକାଶେ ) ଯେ ମୋର ସଙ୍ଗ କରୁଅଛ ଏପ୍ରକାର ଯେ ତୁମ୍ଭମାନଙ୍କର ସାଧୁକୃତ୍ୟ ( ପ୍ରେମ ) ତାହାର ପ୍ରତିଦାନ ମୁଁ ଦେବ-ପରମାୟୁ ପ୍ରାପ୍ତ ହେଲେ ସୁଦ୍ଧା କରିପାରିବି ନାହିଁ । ଏଣୁ ତୁମ୍ଭମାନଙ୍କର ସାଧୁକୃତ୍ୟଦ୍ୱାରା ତୁମ୍ଭମାନଙ୍କର ସାଧୁକୃତ୍ୟର ପ୍ରତିଦାନ ହେଉ । ଅର୍ଥାତ୍ ତୁମ୍ଭମାନଙ୍କର ସାଧୁକୃତ୍ୟର ନିକଟରେ ମୁଁ ଋଣୀ ରହିଲି । [ ୨୯ଶ ଶ୍ଲୋକାର୍ଥ ]

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୪୦)

ଆଦିପୁରାଣବଚନମ୍—

ନ ତଥା ମେ ପ୍ରିୟତମୋ ଯଥା ଗୋପ୍ୟୋ ମନ୍ମତ ସମୁପାସତେ ।
ତାଭ୍ୟଃ ପରଂ ନ ମେ ପାର୍ଥ
ନିଗୂଢ଼ପ୍ରେମଭାଜନମ୍ ॥୬୦॥ *

ଆର ଏକ ଅଦ୍ଭୁତ ଗୋପୀ-ଭାବେର ସ୍ୱଭାବ ।
ବୁଦ୍ଧିର ଗୋଚର ନହେ ଯାହାର ପ୍ରଭାବ ॥୧୫୬॥
ଗୋପୀଗଣ କରେ ଯବେ କୃଷ୍ଣ-ଦରଶନ ।
ସୁଖବାଞ୍ଛା ନାହିଁ, ସୁଖ ହୟ କୋଟିଗୁଣ ॥ ୧୫୭ ॥
ଗୋପିକାଦର୍ଶନେ କୃଷ୍ଣେର ଯେ ଆନନ୍ଦ ହୟ ।
ତାହା ହୈତେ କୋଟିଗୁଣ ଗୋପୀ ଆସ୍ୱାଦୟ ॥୧୫୮॥

(ହେ) ପାର୍ଥ ! ଯାଃ ଗୋପ୍ୟଃ ନିଜାଙ୍ଗମ୍ ଅପି ମମ ଇତି (କୃଷ୍ଣାର୍ପିତଂ ଇଦଂ ଅଙ୍ଗଂ କୃଷ୍ଣସ୍ୟ ଇତି) ସମୁପାସତେ । ତାଭ୍ୟଃ (ଗୋପୀଭ୍ୟଃ) ପରଂ (ଅନ୍ୟତ୍ର) ମେ (ମମ) ନିଗୂଢ଼-ପ୍ରେମଭାଜନଂ (ପ୍ରେମପାତ୍ରଂ) ନ (ଅସ୍ତି) । [ ୬୦ଶ ଶ୍ଳୋକଃ ]

"କାମ ପ୍ରେମ ଦୋହାଁକାର" ଇତ୍ୟାଦି ଲକ୍ଷଣେନ ଗୋପୀପ୍ରେମ୍ଣଃ କାମାଭାବତ୍ୱମୁକ୍ତ୍ୱା ସୁଖବାଞ୍ଛାଭାବେଽପି ଯତ୍ସୁଖଂ ଜାୟତେ ଇତି ପ୍ରେମସ୍ୱଭାବସ୍ତଦ୍‌ବର୍ଣ୍ଣନେନ ତସ୍ୟ ତଦଭାବଂ ପୁନଃ ବର୍ଣ୍ଣୟତି "ଆର ଏକ" ଇତ୍ୟାଦି "ଏଇ ହେତୁ ଗୋପୀପ୍ରେମେ" ଇତ୍ୟନ୍ତଂ । ୧୫୬ । ଚ, ଚ,

ବୁଦ୍ଧିର ଗୋଚର ନହେ ଇତ୍ୟେତଦେବ ଦର୍ଶୟତି "ଗୋପିକା" ଇତି । ସୁଖବାଞ୍ଛା-ଭାବେଽପି ଯତ୍ର କୋଟିଗୁଣସୁଖୋତ୍ପତ୍ତିରିତ୍ୟତସ୍ତସ୍ୟ ବୁଦ୍ଧ୍ୟଗୋଚରତ୍ୱଂ । ସୁଖବାଞ୍ଛା ନାହି ଇତ୍ୟାଦି ଏବ ପ୍ରେମ୍ଣଃ ସ୍ୱଭାବଃ । ୧୫୭ । ଚ, ଚ,

ତେବେ ଆଶଙ୍କା ହୋଇପାରେ ଯେ ଗୋପୀମାନଙ୍କର ଆତ୍ମସୁଖ କାମନା ନ ଥିଲେ ସେମାନେ ଦେହପ୍ରୀତି ଅର୍ଥାତ୍ ଶରୀରମାର୍ଜ୍ଜନ ଓ ଭୂଷଣାଦିଧାରଣ କରନ୍ତି କାହିଁକି ? ଏହାର ଉତ୍ତର ଗ୍ରନ୍ଥକାର କହୁଅଛନ୍ତି ;—ଗୋପୀମାନେ ଯେ ଦେହ ପ୍ରୀତି କରନ୍ତି ତାହା ସେମାନଙ୍କର ନିଜ ସୁଖନିମିତ୍ତ ନୁହେ, କୃଷ୍ଣପ୍ରୀତି ନିମିତ୍ତ । ଅର୍ଥାତ୍ ଗୋପୀ ଭାବନ୍ତି ଯେ ଏ ଦେହ ମୁଁ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରିଅଛି, ଏ ତାଙ୍କର ଭୋଗ୍ୟବସ୍ତୁ । ଏଣୁ ତାଙ୍କର ଧନ । ଏହାର ଦର୍ଶନ ସ୍ପର୍ଶନ ଆଦିରେ ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୁଅନ୍ତି । ଏଣୁ ଏହାକୁ ମାର୍ଜ୍ଜିତ ଓ ସଜ୍ଜିତ କରି କର୍ତ୍ତବ୍ୟ । ଏହାହିଁ ଗୋପୀଭାବ ।
। ୧୫୭।୧୫୮।୧୫୯ ।

ଶ୍ରୀକୃଷ୍ଣ କହୁଅଛନ୍ତି ହେ ପାର୍ଥ ! ଗୋପୀମାନେ ସେମାନଙ୍କର ନିଜ ଦେହକୁ ମୋର (ଶ୍ରୀକୃଷ୍ଣଙ୍କର) ବୋଲି ଅର୍ଥାତ୍ ସେମାନଙ୍କଠାରେ ଗଚ୍ଛିତ ମୋର ସୁଖସାଧନର ସାମଗ୍ରୀ ବୋଲି, ତତ୍ପ୍ରତି ବିଶେଷ ଯତ୍ନ କରନ୍ତି । ସେହି ଗୋପୀଗଣ ଭିନ୍ନ ମୋର ନିଗୂଢ଼ ପ୍ରେମର ପାତ୍ର ଆଉ କେହି ନାହିଁ । [ ୬୦ଶ ଶ୍ଳୋକାର୍ଥ ]

ଗୋପୀପ୍ରେମ ଯେ କାମଗନ୍ଧହୀନ ଗ୍ରନ୍ଥକାର ତାହାର ଆଉ ଏକ ବିଚିତ୍ରତା ଦେଖାଉ-ଅଛନ୍ତି । ଗୋପୀଭାବର (ପ୍ରେମର) ସ୍ୱଭାବ ଏପରି ଅଦ୍ଭୁତ ଯେ ତାହାର ମାହାତ୍ମ୍ୟ ସାଧାରଣ ବୁଦ୍ଧିରେ ବୁଝାଯାଏ ନା । ତାହା ଏହିପ୍ରକାର ଯେ ଗୋପୀମାନେ ଯେତେବେଳେ ଶ୍ରୀକୃଷ୍ଣ ଦର୍ଶନ କରନ୍ତି ସେମାନେ ଶ୍ରୀକୃଷ୍ଣ ଦର୍ଶନଦ୍ୱାରା ସୁଖୀ ହେବେ ଏପରି ବାଞ୍ଛା ସେମାନଙ୍କର ନ ଥିଲେ ସୁଦ୍ଧା ଶ୍ରୀକୃଷ୍ଣ ଗୋପୀଦର୍ଶନରେ ଯେଉଁ ସୁଖପାଆନ୍ତି ଗୋପୀମାନଙ୍କର ଶ୍ରୀକୃଷ୍ଣଦର୍ଶନରେ ଶ୍ରୀକୃଷ୍ଣଙ୍କ ସୁଖ ଅପେକ୍ଷା କୋଟିଗୁଣ ସୁଖ ହୁଏ । ଏଥିରେ ଗୋପୀପ୍ରେମର ଅଦ୍ଭୁତ ପ୍ରଭାବ ଏହି ଯେ ସୁଖବାଞ୍ଛା ନ କରି ସୁଦ୍ଧା ସୁଖ ଲାଭ କରନ୍ତି ଏବଂ ଏ ପ୍ରକାର ଅଦ୍ଭୁତ ପ୍ରଭାବ ଯେ ସାଧାରଣ ବୁଦ୍ଧିର ଅଗୋଚର ତାହାର କାରଣ ଏହି ଯେ ଲୋକେ ବାଞ୍ଛିତ ବସ୍ତୁ ଲାଭ କରି ସେହି ଲାଭଜନିତ ସୁଖ ବୋଧ କରନ୍ତି । କିନ୍ତୁ

ତାଁସଭାର ନାହିଁ ନିଜ-ସୁଖ-ଅନୁରୋଧ ।
ତଥାପି ବାଢ଼ଯେ ସୁଖ, ପଡ଼ିଲ ବିରୋଧ ।୧୫୯।
ଏ ବିରୋଧେର ଏକ ଏଇ ଦେଖି ସମାଧାନ— ।
ଗୋପିକାର ସୁଖ କୃଷ୍ଣସୁଖେ ପର୍ଯ୍ୟବସାନ ।୧୬୦।
ଗୋପିକା-ଦର୍ଶନେ କୃଷ୍ଣେର ବାଢ଼େ ପ୍ରଫୁଲ୍ଲତା ।
ସେ ମାଧୁର୍ଯ୍ୟ ବାଢ଼େ—ଯାର ନାହିଁକ ସମତା ।୧୬୧।
' ଆମାର ଦର୍ଶନେ କୃଷ୍ଣ ପାଇଲ ଏତ ସୁଖ । '
ଏଇ ସୁଖେ ଗୋପୀର ପ୍ରଫୁଲ୍ଲ ଅଙ୍ଗ-ମୁଖ ।୧୬୨।

ଗୋପୀଶୋଭା ଦେଖି କୃଷ୍ଣେର ଶୋଭା ବାଢ଼େ ଯତ ।
କୃଷ୍ଣଶୋଭା ଦେଖି ଗୋପୀର ଶୋଭା ବାଢ଼େ
ତତ ।୧୬୩।

ଏଇମତ ପରସ୍ପର ପଡ଼େ ହୁଡ଼ାହୁଡ଼ି ।
ପରସ୍ପର ବାଢ଼େ, କେହୋ ମୁଖ ନାହିଁ ମୁଡ଼େ ।୧୬୪।

କିନ୍ତୁ କୃଷ୍ଣେର ସୁଖ ହୟ୍‌ ଗୋପୀ-ରୂପ-ଗୁଣେ ।
ତାଁର ସୁଖେ ସୁଖବୃଦ୍ଧି ହୟ୍ ଗୋପୀଗଣେ ।୧୬୫।

ତତ୍ତ୍ୱସୁଖଂ ପ୍ରଦର୍ଶୟନ୍ତି "ଗୋପିକାର" ଇତି । ୧୫୮।୧୫୯ । ବି, ଚ,

ଗୋପିକାନାଂ ନିଜସୁଖାନୁରୋଧାଭାବେଽପି ଶ୍ରୀକୃଷ୍ଣସୁଖମେବ ତାସାଂ ସୁଖେ ପରିଣମତି ଶ୍ରୀକୃଷ୍ଣସୁଖମେବ ତାସାଂ ସୁଖଂଭବେଦେବତି ବିରୋଧସମାଧାନମିତିଭାବଃ । ୧୬୦ । ବି, ଚ,

ଶ୍ରୀକୃଷ୍ଣସୁଖେନ ଗୋପୀନାଂ ସୁଖଂ ଯଦ୍ରୂପେଣ ଜାୟତେ ତଦାହ "ଗୋପିକା" ଇତ୍ୟାଦ । ମଦର୍ଶନେ ଶ୍ରୀକୃଷ୍ଣସ୍ୟ ସୁଖଂ ଜାତମେତଦର୍ଶନେନ ତାସାଂ ସୁଖଂ ଜାୟତ ଇତ୍ୟର୍ଥଃ । ୧୬୧—୧୬୪ । ବି, ଚ,

ଏଠାରେ ଶ୍ରୀଗୋପୀମାନଙ୍କର ଆତ୍ମସୁଖ ବାଞ୍ଛା ନ ଥିଲେହେଁ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ସୁଖହିଁ ସେମାନଙ୍କର ବାଞ୍ଛାର ତାତ୍ପର୍ଯ୍ୟ ହେଲେହେଁ ଶ୍ରୀକୃଷ୍ଣଙ୍କ ସୁଖର କୋଟିଗୁଣ ସୁଖ ସେମାନେ ଲାଭ କରନ୍ତି । । ୧୫୬ । ୧୫୭ । ୧୫୮ ।

ଅତଏବ ଗୋପିକାମାନଙ୍କର ଶ୍ରୀକୃଷ୍ଣ ଦର୍ଶନରେ ନିଜସୁଖ ଅଭିଳାଷ ନ ଥିଲେ ସୁଦ୍ଧା ସେମାନଙ୍କର ଯେ ସୁଖପ୍ରାପ୍ତି ଓ ସୁଖବୃଦ୍ଧି ହୁଏ ଏହା ବିରୋଧଭାବାପନ୍ନ । ତାହା ହେଲେହେଁ ଏ ବିରୋଧର ସମାଧାନ ଏହି ଯେ ଶ୍ରୀକୃଷ୍ଣଙ୍କର ସୁଖ ସେମାନଙ୍କ ସୁଖର ତାତ୍ପର୍ଯ୍ୟ । ଅର୍ଥାତ୍ ଶ୍ରୀକୃଷ୍ଣ ସୁଖୀ ହେଲେ, ସୁଖକାମନା ନ ଥିଲେ ସୁଦ୍ଧା ଆପେ ସେମାନଙ୍କର ସୁଖ ଉତ୍ପତ୍ତି ହୁଏ । ଏହି କାରଣରୁ ସୁଖବାଞ୍ଛା ବ୍ୟତୀତ ସୁଖଲାଭ ହେବାରେ କୌଣସି ବିରୋଧ ରହିଲା ନାହିଁ । ୧୫୯।୧୬୦ ।

ଗୋପୀମାନଙ୍କୁ ଦର୍ଶନ କରି ଶ୍ରୀକୃଷ୍ଣଙ୍କର ପ୍ରଫୁଲ୍ଲତା ବୃଦ୍ଧି ହୁଏ । ପ୍ରଫୁଲ୍ଲତା ଏତେଦୂର ବୃଦ୍ଧି ହୁଏ ଯେ ତାର ତୁଳନା ଅନ୍ୟତ୍ର ସମ୍ଭବ ନୁହେ । ୧୬୧ ।

ଶ୍ରୀକୃଷ୍ଣଙ୍କର ଏହି ଏତାଦୃଶ ପ୍ରଫୁଲ୍ଲତା ଦେଖି ଗୋପୀମାନେ ଭାବନ୍ତି ଆମ୍ଭମାନଙ୍କୁ ଦର୍ଶନ କରି ଶ୍ରୀକୃଷ୍ଣ ଏତେ ସୁଖ ପାଇଲେ ଏହି ଭାବନାରେ ଗୋପୀମାନଙ୍କର ପ୍ରଫୁଲ୍ଲତା ବୃଦ୍ଧି ହୁଏ । ଏହି-ପ୍ରକାରରେ ଗୋପୀମାନଙ୍କର ଶୋଭାବୃଦ୍ଧି ଦେଖି ଶ୍ରୀକୃଷ୍ଣଙ୍କର ଶୋଭାବୃଦ୍ଧି ହୁଏ । ଶ୍ରୀକୃଷ୍ଣଙ୍କର ଶୋଭା-ବୃଦ୍ଧି ଦେଖି ତଦ୍‌ବତ୍ ଗୋପୀମାନଙ୍କର ଶୋଭା ବୃଦ୍ଧି ହୁଏ । ଏହିପରି ଶ୍ରୀକୃଷ୍ଣ ଶୋଭା ଓ ଗୋପୀ-ଶୋଭା କ୍ରମେ ବୃଦ୍ଧି ହେବାକୁ ଲାଗେ । ଅର୍ଥାତ୍ ଯେପରି କି ଶ୍ରୀକୃଷ୍ଣଙ୍କ ଶୋଭା ଏବଂ ଗୋପୀମାନଙ୍କର ଶୋଭା ପରସ୍ପର ବୃଦ୍ଧି ଦ୍ୱାରା ପରସ୍ପରକୁ ପରାସ୍ତ କରିବାର ଅଭିପ୍ରାୟରେ ବୃଦ୍ଧି ପ୍ରାପ୍ତ ହୁଅନ୍ତି । ଅଥଚ କେହି କାହାରିକୁ ପରାସ୍ତ କରିପାରନ୍ତି ନାହିଁ । ହୁଡ଼ାହୁଡ଼ି ପ୍ରତିଦ୍ୱନ୍ଦ ହେତୁ ଠେଲାଠେଲି । କେହି ମୁଖ ନାହିଁ ମୁଡ଼େ କେହି ପରାସ୍ତ ସ୍ୱୀକାର କରେ ନାହିଁ । ୧୬୨।୧୬୩।୧୬୪ ।

ଅତଏବ ସେଇ ସୁଖେ କୃଷ୍ଣସୁଖ ପୋଷେ ।
ଏଇ ହେତୁ ଗୋପୀ-ପ୍ରେମେ ନାହିଁ
କାମଦୋଷେ ।୧୬୬।
ଯଥୋକ୍ତଂ ଶ୍ରୀରୂପଗୋସ୍ୱାମିନା ସ୍ତବମାଲାୟାଂ,
କେଶବାଷ୍ଟକେ (୮)—
ଉପେତ୍ୟ ପଥି ସୁନ୍ଦରୀତତିଭିରାଭିରଭ୍ୟର୍ଚ୍ଚିତଂ,
ସ୍ମିତାଙ୍କୁରକରମ୍ବିତୈର୍ନଟଦପାଙ୍ଗଭଙ୍ଗୀଶତୈଃ ।

ସ୍ତନସ୍ତବକସଞ୍ଚରନ୍ନୟନଚଞ୍ଚରୀକାଞ୍ଚଳଂ,
ବ୍ରଜେ ବିଜୟିନଂ ଭଜେ ବିପିନଦେଶତଃ
କେଶବମ୍ ॥ ୩୧ ॥

ଆର ଏକ ଗୋପୀପ୍ରେମେର ସ୍ୱାଭାବିକ ଚିହ୍ନ ।
ଯେ ପ୍ରକାରେ ହୟ ପ୍ରେମ କାମଗନ୍ଧହୀନ । ୧୬୭ ।
ଗୋପୀପ୍ରେମେ କରେ କୃଷ୍ଣମାଧୁର୍ଯ୍ୟେର ପୁଷ୍ଟି ।
ମାଧୁର୍ଯ୍ୟ ବାଢ଼ାୟ ପ୍ରେମ ହୟ୍ୟା ମହାତୁଷ୍ଟି । ୧୬୮ ।

ନନୁ ତଦପି ସୁଖଂ ଗୋପୀନାଂ ସ୍ୱସୁଖାୟ ଭବତୁ ତଥାସତି ତବ କାମଦୋଷ ଅପତେଦିତ୍ୟତ ଆହ ତବ ଶ୍ରୀକୃଷ୍ଣସୁଖତ୍ୱେନ ଗୋପିକାସୁଖତ୍ୱଂ ତତ୍ସୁଖତ୍ୱେନ ଶ୍ରୀକୃଷ୍ଣ ସୁଖତ୍ୱମିତ୍ୟନେନ ଗୋପିକା ସୁଖଂ ଶ୍ରୀକୃଷ୍ଣସୁଖବୃଦ୍ଧ୍ୟର୍ଥଂ ନ ତୁ ସ୍ୱାର୍ଥମତସ୍ତନ୍ନ କାମଦୋଷପତନାବକାଶ ଇତ୍ୟାହ "କାନ୍ତ" ଇତ୍ୟାଦ । ୧୬୫।୧୬୬ । ଚ, ଚ,

ଅଭିଃ ସୁନ୍ଦରୀତତିଭିଃ ( ଯୁବତୀଶ୍ରେଣୀଭିଃ, ହର୍ମ୍ମ୍ୟାବଲମ୍ବ୍ୟ ) ଉପେତ୍ୟ ( ଆରୁହ୍ୟ ) ପଥି ( ମାର୍ଗେ ଏବ ) ସ୍ମିତାଙ୍କୁରକରମ୍ବିତୈଃ ( ମନ୍ଦହାସ୍ୟ ରୋମାଙ୍କୁରଂ ତେନ କରମ୍ବିତା ଯୁକ୍ତାଃ ତୈଃ ) ନଟଦପାଙ୍ଗଭଙ୍ଗୀଶତୈଃ ( ନଟନ୍ତ ଅପାଙ୍ଗଂନେତ୍ରକଟାକ୍ଷଂ ଯସ୍ୟ ତସ୍ୟ ଭଙ୍ଗୀଶତାନ ତାନ ତୈଃ ) ଅଭ୍ୟର୍ଚ୍ଚିତଂ ( ଅତିସଙ୍କୋଚାଭାବେନ ଅର୍ଚ୍ଚିତଂ ପୂଜିତଂ ) ସ୍ତନସ୍ତବକ-ସଞ୍ଚରନ୍ନୟନ-ଚଞ୍ଚରୀକାଞ୍ଚଳଂ (ସ୍ତନାଃ ସ୍ତବକାଃ ଇବ ସ୍ତନସ୍ତବକାଃ ତେଷୁ ସଞ୍ଚରନ୍ ନୟନୟୋଃ ଚଞ୍ଚରୀକୟୋଃ ଭୃଙ୍ଗୟୋଃ ଇବ ଅଞ୍ଚଳଂ ପ୍ରାନ୍ତଭାଗଂ ଯସ୍ୟ ସଃ ତଂ ) ବିପିନଦେଶତଃ ( ଗୋଚାରଣାତ୍ ) ବ୍ରଜେ ( ନନ୍ଦୀଶ୍ୱରେ ) ବିଜୟିନଂ କେଶବଂ ( ନନ୍ଦନନ୍ଦନଂ ) ଭଜେ । [ ୩୧ଶ ଶ୍ଳୋକଃ ]

ପ୍ରେମସ୍ୱଭାବାଦେବ ଶ୍ରୀକୃଷ୍ଣସୁଖେନ ସ୍ୱସୁଖଂ ଜାୟତେ ଅତୋ ନ ତବ ସ୍ୱବାଞ୍ଛାବକାଶ ଇତି ତତ୍ସ୍ୱଭାବଜାତସୁଖବର୍ଣ୍ଣନେନ ପୁନରପି ଗୋପୀପ୍ରେମ୍ଣଃ କାମାଭାବତ୍ୱଂ ଦର୍ଶୟିତୁମାହ " ଆର ଏକ " ଇତ । ୧୬୭ । ଚ, ଚ,

ଏଠାରେ ଆଶଙ୍କା ହୋଇପାରେ ଯେ ଶ୍ରୀକୃଷ୍ଣଙ୍କ ସୁଖଦର୍ଶନରେ ଗୋପୀମାନଙ୍କର ଯେ ସୁଖ ଲାଭ ହୁଏ ତାହା ଗୋପୀମାନେ ଅଭିଳାଷ କରନ୍ତି । ତାହା ହେଲେ ଗୋପୀପ୍ରେମର କାମ ଦୋଷ ଉପସ୍ଥିତ ହୁଏ । ଏହି ହେତୁ ଗ୍ରନ୍ଥକାର କହୁଅଛନ୍ତି ଯେ ଶ୍ରୀକୃଷ୍ଣଙ୍କର ସୁଖ ଶ୍ରୀଗୋପୀମାନଙ୍କର ରୂପ ଗୁଣରୁ ଲାଭ ହୁଏ ଏବଂ ଶ୍ରୀକୃଷ୍ଣଙ୍କୁ ସୁଖୀ ଅନୁଭବ କରିବାଦ୍ୱାରା ଗୋପୀମାନଙ୍କର ସୁଖ ଉତ୍ପନ୍ନ ହୁଏ ଓ ସେହି ହେତୁ ସେମାନଙ୍କର ପ୍ରଫୁଲ୍ଲତା ବୃଦ୍ଧି ହୁଏ । ଏହି ପ୍ରକାରରେ ଗୋପୀମାନଙ୍କର ପ୍ରଫୁଲ୍ଲତା ବୃଦ୍ଧି ଓ ଶ୍ରୀକୃଷ୍ଣଙ୍କର ସୁଖ ବୃଦ୍ଧି ହୁଏ । ଏହି ହେତୁ ଗୋପୀମାନଙ୍କର ସୁଖାନୁଭବବୃଦ୍ଧି ଶ୍ରୀକୃଷ୍ଣଙ୍କର ସୁଖବୃଦ୍ଧିର କାରଣ ହେତୁ, ଗୋପୀମାନଙ୍କର ସୁଖରେ ସ୍ୱସୁଖ କାମନା ନ ଥିବାରୁ ତାହା କାମଦୋଷହୀନ ଅଟେ । ୧୬୫।୧୬୬ ।

ଶ୍ରୀକୃଷ୍ଣଦର୍ଶନ ନିମିତ୍ତ ଦର୍ଶନଯୋଗ୍ୟସ୍ଥାନ ହର୍ମ୍ମ୍ୟାବଳୀ ଆରୋହଣପୂର୍ବକ ଗୋପସୁନ୍ଦରୀମାନେ ଈଷତ୍ ହାସ୍ୟରୂପ ଦୁର୍ବାଦି ମାଙ୍ଗଳିକଦ୍ରବ୍ୟ, କଟାକ୍ଷ ଭଙ୍ଗୀରୂପ ନୃତ୍ୟଦ୍ୱାରା ପଥମଧ୍ୟରେ ଯାହାଙ୍କର ପୂଜା କରୁଅଛନ୍ତି ଏବଂ ଯେ ସେହି ଗୋପସୁନ୍ଦରୀମାନଙ୍କର ସ୍ତନରୂପ ପୁଷ୍ପଗୁଚ୍ଛରେ ନୟନପ୍ରାନ୍ତରୂପ ଭ୍ରମରଯୁଗଳ ଅର୍ପଣ କରି ବନପ୍ରଦେଶରୁ ନନ୍ଦୀଶ୍ୱରକୁ ଆଗମନ କରୁଅଛନ୍ତି ସେହି ନନ୍ଦନନ୍ଦନ ଶ୍ରୀକୃଷ୍ଣଙ୍କୁ ମୁଁ ଭଜନ କରେଁ । [ ୩୧ଶ ଶ୍ଳୋକାର୍ଥ ]

ପ୍ରୀତିବିଷୟାନନ୍ଦେ ତଦାଶ୍ରୟାନନ୍ଦ ।
ତାହାଁ ନାହିଁ ନିଜସୁଖବାଞ୍ଛାର ସମ୍ବନ୍ଧ । ୧୬୯ ।
ନିରୁପାଧି ପ୍ରେମ ଯାହାଁ—ତାହାଁ ଏଇ ରୀତି ।
ପ୍ରୀତିବିଷୟସୁଖେ ଆଶ୍ରୟେର ପ୍ରୀତି । ୧୭୦ ।
ନିଜପ୍ରେମାନନ୍ଦେ କୃଷ୍ଣ-ସେବାନନ୍ଦ ବାଧେ ।
ସେ ଆନନ୍ଦେର ପ୍ରତି ଭକ୍ତେର ହୟ
ମହାକ୍ରୋଧେ । ୧୭୧ ।

ତଥାହି ଭକ୍ତିରସାମୃତସିନ୍ଧୌ ପଶ୍ଚିମବିଭାଗେ
୨ୟ-ଲହର୍ଯ୍ୟାମ୍ (୨୪)—

ଅଙ୍ଗସ୍ତମ୍ଭାରମ୍ଭମୁତ୍ତୁଙ୍ଗୟନ୍ତଂ,
ପ୍ରେମାନନ୍ଦଂ ଦାରୁକୋ ନାଭ୍ୟନନ୍ଦତ୍ ।
କଂସାରାତେର୍ବୀଜନେ ଯେନ ସାକ୍ଷା-
ଦକ୍ଷୋଦୀୟାନନ୍ତରାୟୋ ବ୍ୟଧାୟି ॥ ୩୨ ॥ *

ଗୋପୀପ୍ରେମେ ଇତ୍ୟାଦିକଂ ପ୍ରେମସ୍ୱଭାବାଦେବ ଭବତୀତ୍ୟର୍ଥଃ । ୧୬୮।୧୬୯ । ବି, ଚ,

ନନୁ ଅନ୍ୟସ୍ୟାନନ୍ଦେନ କଥଂ ଅନ୍ୟସ୍ୟାନନ୍ଦ ଇତଚେତ୍ ତତ୍ର ପ୍ରେମସ୍ୱଭାବ ଏବ କାରଣ-ମିତ୍ୟାହ "ନିରୁପାଧି" ଇତି । ପ୍ରେମ-ସ୍ୱଭାବେନୈବ ତଦ୍ଭବେଦିତ୍ୟର୍ଥଃ । ୧୭୦ । ବି, ଚ,

ତାହା ନାଁଘ୍ରତିବାକ୍ୟଂ ପ୍ରତିପାଦୟିତୁମାହ "ନିଜ" ଇତି । ଶ୍ରୀକୃଷ୍ଣସେବାବାଧକତ୍ୱେନ ନିଜାନନ୍ଦେ ଭକ୍ତାନାଂ କ୍ରୋଧୋ ଜାୟତେ ଶ୍ରୀକୃଷ୍ଣସେବାବାଧେ ନିଜସୁଖାଭାବାତ୍ ସୁଖଂ ତ୍ୟଜନ୍ତୀତ୍ୟର୍ଥଃ ଅତସ୍ତାସାଂ ସ୍ୱସୁଖବାଞ୍ଛା ନାସ୍ତି ନହି ସ୍ୱସୁଖାଭିଲାଷୀ କଶ୍ଚିତ୍ ସ୍ୱସୁଖଂ ତ୍ୟଜତୀତି ଦୃଶ୍ୟତେ । । ୧୭୧ । ବି, ଚ,

ଯେନ ( ପ୍ରେମାନନ୍ଦେନ ) କଂସାରାତେଃ ( ଶ୍ରୀକୃଷ୍ଣସ୍ୟ ) ବୀଜନେ ( ଚାମରସେବନେ ) ସାକ୍ଷାତ୍ ଅକ୍ଷୋଦୀୟାନ୍ ( ଅଧିକତରଃ ) ଅନ୍ତରାୟଃ ( ବିଘ୍ନଃ ) ବ୍ୟଧାୟି । ଦାରୁକଃ ( ଶ୍ରୀକୃଷ୍ଣ-ସାରଥିଃ ) ଅଙ୍ଗସ୍ତମ୍ଭାରମ୍ଭଂ ( ଅଙ୍ଗାନାଂ ସ୍ତମ୍ଭାରମ୍ଭଂ ଜଡୀଭାବ ) ଉତ୍ତୁଙ୍ଗୟନ୍ତଂ ( ପ୍ରାପୟନ୍ତଂ ତଂ ) ପ୍ରେମାନନ୍ଦଂ ( ନିଜାନନ୍ଦଂ ) ନାଭ୍ୟନନ୍ଦତ୍ ( ନ ବାଞ୍ଛିତବାନ୍ ) [ ୩୨ଶ ଶ୍ଳୋକ ]

ଉପରୋକ୍ତ ଭାବମାନଙ୍କ ବ୍ୟତୀତ ପ୍ରେମର ସ୍ୱାଭାବିକ ଲକ୍ଷଣଦ୍ୱାରା ଆଲୋଚନା କଲେ ଦେଖାଯିବ ଯେ ପ୍ରେମରେ କାମ ଦୋଷ ନାହିଁ ।

( ସୁଖର ଅଭାବ ହେତୁ ତତ୍ ପୂରଣ ବାଞ୍ଛାକୁ କାମ କୁହାଯାଏ ) ଯେଉଁଠାରେ ତାହା ପୂର୍ଣ୍ଣରୂପେ ରହିଅଛି ସେଠାରେ ଅଭାବପୂରଣର ବାଞ୍ଛା ନ ଥିବାରୁ ତାହା କାମ ଦୋଷହୀନ ପ୍ରେମ ଅଟେ । ଗୋପୀମାନଙ୍କ ହୃଦୟ ସର୍ବଦା କୃଷ୍ଣ ସୁଖରେ ପୂର୍ଣ୍ଣ ଥିବାରୁ ସେମାନଙ୍କର ସ୍ୱସୁଖବାଞ୍ଛାର ଅବକାଶ ଥାଏ ନା । ଏହାହିଁ ଗୋପୀପ୍ରେମର ସ୍ୱାଭାବିକ ଚିହ୍ନ । ତେଣୁ ତାହା କାମଦୋଷହୀନ । ଏ ବିଷୟ ଗ୍ରନ୍ଥକାର ପରବର୍ତ୍ତୀ ପୟାରମାନଙ୍କଦ୍ୱାରା ବୁଝାଇ ଅଛନ୍ତି । ୧୬୨ ।

ଗୋପୀପ୍ରେମ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟକୁ ପୋଷଣ କରେ ଅର୍ଥାତ୍ ବୃଦ୍ଧି କରେ ଏବଂ ସେହି ମାଧୁର୍ଯ୍ୟ ମଧ୍ୟ ଗୋପୀପ୍ରେମକୁ ବୃଦ୍ଧି କରେ । ପ୍ରୀତିର ବିଷୟ (ଯାହାଙ୍କଠାରେ ପ୍ରୀତି ଅର୍ପିତ ହୋଇଅଛି) ତାହାଙ୍କର ଆନନ୍ଦରେ ପ୍ରୀତିର ଆଶ୍ରୟ ( ଅର୍ଥାତ୍ ଯାହାଙ୍କର ପ୍ରୀତି ) ତାହାଙ୍କର ସ୍ୱାଭାବିକ ଆନନ୍ଦ ହୁଏ । ଏ ପ୍ରକାର ସ୍ଥଳରେ ପ୍ରୀତିର ଆଶ୍ରୟର ପ୍ରୀତିର ବିଷୟ ସହିତ ନିଜସୁଖ ବାଞ୍ଛା ଥାଏନାହିଁ । ଅର୍ଥାତ୍ ଶ୍ରୀ ବ୍ରଜଦେବୀମାନେ ପ୍ରୀତିର ଆଶ୍ରୟ ଅଟନ୍ତି ଏବଂ ଶ୍ରୀକୃଷ୍ଣ ସେମାନଙ୍କର ପ୍ରୀତିର ବିଷୟ ଅଟନ୍ତି । ଶ୍ରୀକୃଷ୍ଣଙ୍କର ଆନନ୍ଦରେ ବ୍ରଜଦେବୀମାନଙ୍କର ସ୍ୱାଭାବିକ ଆନନ୍ଦ ଅନୁଭବ ହୁଏ । କିନ୍ତୁ ଶ୍ରୀକୃଷ୍ଣଙ୍କଠାରୁ ସେମାନେ ଏପରି ଆନନ୍ଦ ଅନୁଭବ ବାଞ୍ଛା କରନ୍ତି ନାହିଁ । ତେଣୁ ଗ୍ରନ୍ଥକାର କହୁଅଛନ୍ତି ଏହି ପ୍ରକାର ପ୍ରେମକୁ ନିରୁପାଧି ପ୍ରେମ କୁହାଯାଏ । ଯେଉଁ ସ୍ଥାନରେ ଏହି ପ୍ରକାର ପ୍ରେମ ସେଠାରେ ଏହିପରି ହୋଇଥାଏ । ଅର୍ଥାତ୍ ପ୍ରୀତିର ବିଷୟର ସୁଖରେ ପ୍ରୀତିର ଆଶ୍ରୟର ସ୍ୱାଭାବିକ ସୁଖ ହୋଇଥାଏ । କିନ୍ତୁ

ତତ୍ରୈବ ଦକ୍ଷିଣବିଭାଗେ ଔତ୍ସୁକ୍ୟ-ଲହର୍ଯ୍ୟାମ୍ (୩୨)—
ଗୋବିନ୍ଦପ୍ରେକ୍ଷଣାକ୍ଷେପି-ବାଷ୍ପପୂରାଭିବର୍ଷିଣମ୍ ।
ଉଚ୍ଚୈରନିନ୍ଦଦାନନ୍ଦମରବିନ୍ଦବିଲୋଚନା ॥୩୩॥ ॥

ଅରେ ଶୁଦ୍ଧଭକ୍ତ କୃଷ୍ଣପ୍ରେମସେବା ବିନେ ।
ସ୍ୱସୁଖାର୍ଥ ସାଲୋକ୍ୟାଦି ନା କରେ ଗ୍ରହଣେ ।୧୭୨।

ଅରବିନ୍ଦବିଲୋଚନା (ଶ୍ରୀରାଧିକା) ଗୋବିନ୍ଦପ୍ରେକ୍ଷଣାକ୍ଷେପିବାଷ୍ପପୂରାଭିବର୍ଷିଣଂ (ଗୋବିନ୍ଦଦର୍ଶନସ୍ୟ ଅକ୍ଷେପୀ ବିନାଶୀ ଯୋ ବାଷ୍ପପୂରୋଽଶ୍ରୁସମୂହଃ ତଂ ଅଭିବର୍ଷିତୁଂଶୀଳଂ ଯସ୍ୟ ତମ୍) ଆନନ୍ଦଂ (ପ୍ରେମାନନ୍ଦଂ) ଉଚ୍ଚୈଃ (ଅତିଶୟେନ) ଅନିନ୍ଦତ୍ (ନିନ୍ଦ) । [ ୩୩ଶ ଶ୍ଲୋକଃ ]

" ତାହା ନାହିଁ ନିଜସୁଖ " ଇତ୍ୟୁକ୍ତବାକ୍ୟଂ ପ୍ରତିପାଦୟିତୁଂ ଅଥବା ଗୋପୀକାନାଂ ସ୍ୱସୁଖବାଞ୍ଛାଭାବ କୈମୁତିକନ୍ୟାୟେନ ଦର୍ଶୟିତୁଂ ଅନ୍ୟଶୁଦ୍ଧଭକ୍ତାନାଂ ତଦଭାବଂ ଦର୍ଶୟତି " ଅରେ " ଇତି ଦ୍ୱାଭ୍ୟାଂ । ଭଗବଲ୍ଲୋକସ୍ୱାଭାବ୍ୟେନ ଭକ୍ତାନାଂ ସାଲୋକ୍ୟାଦିକଂ ଅସ୍ତି କିନ୍ତୁ ସ୍ୱସୁଖାର୍ଥଂ ତେ ତନ୍ନଗୃହ୍ଣନ୍ତି ଶ୍ରୀକୃଷ୍ଣସେବାର୍ଥଂ ଗୃହ୍ଣନ୍ତି ଯତଃ ସ୍ୱସୁଖାର୍ଥଂ ତନ୍ନଗୃହ୍ଣନ୍ତି ଅତସ୍ତେଷାଂ ସ୍ୱସୁଖବାଞ୍ଛା ନାସ୍ତୀତ୍ୟର୍ଥଃ । କୈମୁତିକନ୍ୟାୟ ପ୍ରଦର୍ଶନଂ " କାମଗନ୍ଧହୀନ " ଇତି ପରପଦ୍ୟେ ଭିବ ।୧୭୨। ବି, ଚ,

---

ସେ ପ୍ରକାର ସୁଖ ଯଦି ପ୍ରୀତିର ବିଷୟର ସୁଖରେ ବାଧା ଦିଏ ତାହା ହେଲେ ସେ ସୁଖପ୍ରତି ପ୍ରୀତିର ଆଶ୍ରୟର କ୍ରୋଧ ଜନ୍ମେ; ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ସେବା ସୁଖଦାନ ସମୟରେ ଯଦି ଶ୍ରୀକୃଷ୍ଣଦର୍ଶନରେ ଭକ୍ତର ପ୍ରେମାନନ୍ଦ ହୁଏ ଏବଂ ତଦ୍ୱାରା ଯଦି ଶ୍ରୀକୃଷ୍ଣଙ୍କ ସେବାରେ ବାଧା ଘଟେ ତାହା ହେଲେ ଭକ୍ତ ମହା-କ୍ରୋଧରେ ନିଜର ସେ ପ୍ରେମାନନ୍ଦକୁ ତ୍ୟାଗ କରେ । ୧୬୮ରୁ ୧୭୧ ।

ଯେଉଁ ପ୍ରେମାନନ୍ଦ ଶ୍ରୀକୃଷ୍ଣଙ୍କର ବ୍ୟଜନକାର୍ଯ୍ୟରେ ସାକ୍ଷାତ୍ ଗୁରୁତର ବିଘ୍ନ ଉତ୍ପାଦନ କରୁଥିଲା । ଶ୍ରୀକୃଷ୍ଣସାରଥି ଦାରୁକ ନିଜ ଅଙ୍ଗମାନଙ୍କର ସେ ପ୍ରକାର ଜାଡ୍ୟବର୍ଦ୍ଧନକାରୀ ସେହି ପ୍ରେମାନନ୍ଦକୁ ନିନ୍ଦା କରିଥିଲେ । ଅର୍ଥାତ୍ ଦାରୁକ ଶ୍ରୀକୃଷ୍ଣଙ୍କୁ ଚାମର ବ୍ୟଜନ କରିବାସମୟରେ ଶ୍ରୀକୃଷ୍ଣଙ୍କ ସୁଖାନୁଭବରେ ତାହାଙ୍କର ପ୍ରେମାନନ୍ଦ ଲାଭ ହେଲା କିନ୍ତୁ ସେହି ପ୍ରେମାନନ୍ଦଦ୍ୱାରା ଅଙ୍ଗରେ ସ୍ତମ୍ଭଜାତ ହେବାରୁ ତଦ୍ୱାରା ଶ୍ରୀକୃଷ୍ଣଙ୍କ ବ୍ୟଜନକାର୍ଯ୍ୟରେ ବାଧା ଉପସ୍ଥିତ ହେଲା, ଏଣୁ ଶ୍ରୀକୃଷ୍ଣଙ୍କର ସେବାବିଘ୍ନକାରୀ ସେପ୍ରକାର ସେହି ପ୍ରେମାନନ୍ଦକୁ ଶ୍ରୀଦାରୁକ ଘୃଣାର ସହିତ ତ୍ୟାଗ କଲେ । ଏଥିରୁ ଦେଖାଯାଏ ଯେ ଭକ୍ତ କେବଳ ଶ୍ରୀକୃଷ୍ଣଙ୍କର ସୁଖ ଇଚ୍ଛା କରନ୍ତି । ସେଠାରେ ନିଜ ସୁଖ ଇଚ୍ଛା ଆଦୌ ଆସେ ନା ; କିନ୍ତୁ ଶ୍ରୀକୃଷ୍ଣଙ୍କ ସୁଖଦ୍ୱାରା ଭକ୍ତର ସ୍ୱାଭାବିକ ସୁଖ ଲାଭ ହୁଏ । ଅଥଚ ଯଦି ସେପ୍ରକାର ସୁଖ ଲାଭଦ୍ୱାରା ଶ୍ରୀକୃଷ୍ଣଙ୍କ ସୁଖରେ ବାଧାପଡ଼େ ତାହାହେଲେ ଭକ୍ତ ସେ ସୁଖକୁ ତତ୍କ୍ଷଣାତ୍ ତ୍ୟାଗ କରେ । [ ୩୨ଶ ଶ୍ଲୋକାର୍ଥ ]

ଶ୍ରୀରାଧାଙ୍କର ପ୍ରେମାନନ୍ଦଜନିତ ନେତ୍ରଦ୍ୱୟ ଅଶ୍ରୁପୂର୍ଣ୍ଣ ହେବାରୁ ତାହା ଶ୍ରୀକୃଷ୍ଣଦର୍ଶନରେ ଓ ତଦ୍ୱାରା ଶ୍ରୀକୃଷ୍ଣସେବାରେ ବ୍ୟାଘାତ ଜନ୍ମାଇବାରୁ ଏପ୍ରକାର ପ୍ରେମାନନ୍ଦକୁ ଶ୍ରୀମତୀ ରାଧିକା ଅତିଶୟ ନିନ୍ଦା କରିଥିଲେ ।

ଅର୍ଥାତ୍ ପ୍ରେମାନନ୍ଦ ସ୍ୱାଭାବିକ ନିନ୍ଦନୀୟ ନ ହେଲେହେଁ ତାହା ଶ୍ରୀକୃଷ୍ଣସେବାର ବାଧକ ହେତୁ ନିନ୍ଦନୀୟ ହୋଇଥିଲା । ଏତଦ୍ୱାରା ପ୍ରତିପାଦିତ ହେଲା ଯେ ଗୋପୀମାନଙ୍କର ହୃଦୟ ସତତ ଶ୍ରୀକୃଷ୍ଣଙ୍କ ସୁଖବାଞ୍ଛାରେ ପୂର୍ଣ୍ଣ ଏବଂ ସେଥିରେ ସ୍ୱସୁଖବାଞ୍ଛାର ଆଭାସପର୍ଯ୍ୟନ୍ତ ନ ଥାଏ । ନିରୁପାଧି ପ୍ରେମାନନ୍ଦ ଲାଭ ହୋଇ ସୁଦ୍ଧା ତାହା ଶ୍ରୀକୃଷ୍ଣ ସେବାନନ୍ଦରେ ବାଧକ ହେଲେ ତାହା ଗୋପୀମାନେ ଶ୍ରୀକୃଷ୍ଣଙ୍କ ସୁଖନିମିତ୍ତ ଅକାମ୍ୟତାକର ବୋଲି ତ୍ୟାଗ କରନ୍ତି । [ ୩୩ଶ ଶ୍ଲୋକାର୍ଥ ]

ତଥାହି ( ଭାଃ ୩।୨୯।୧୩ )—
ସାଲୋକ୍ୟ-ସାର୍ଷ୍ଟି-ସାମୀପ୍ୟ-ସାରୂପ୍ୟୈକତ୍ୱମପ୍ୟୁତ ।
ଦୀୟମାନଂ ନ ଗୃହ୍ଣନ୍ତି ବିନା ମତ୍ସେବନଂ
ଜନାଃ ॥ ୩୪ ॥ *

ତଥାହି ( ଭାଃ ୯।୪।୬୭ )—
ମତ୍ସେବୟା ପ୍ରତୀତଂ ତେ ସାଲୋକ୍ୟାଦି-ଚତୁଷ୍ଟୟମ୍ ।
ନେଚ୍ଛନ୍ତି ସେବୟା ପୂର୍ଣ୍ଣାଃ କୁତୋଽନ୍ୟତ୍
କାଲବିପ୍ଳୁତମ୍ ॥ ୩୫ ॥ *

ଭକ୍ତାନାମ୍ ନିଷ୍କାମତାଂ ନୈମିତ୍ତିକନ୍ୟାୟେନାହ ସାଲୋକ୍ୟଂ ମୟାସହୈକସ୍ମିନ୍ ଲୋକେ ବାସଂ ସାର୍ଷ୍ଟିଂ ସମାନୈଶ୍ୱର୍ଯ୍ୟଂ ସାମୀପ୍ୟଂ ନିକଟବର୍ତ୍ତିତ୍ୱଂ ସାରୂପ୍ୟଂ ସମାନରୂପତାଂ ଏକତ୍ୱଂ ସାଯୁଜ୍ୟଂ ଉତ ଅପି ଦୀୟମାନମପି ନ ଗୃହ୍ଣନ୍ତି କୁତସ୍ତତ୍କାମନା ଇତ୍ୟର୍ଥଃ । [ ୩୪ଶ ଶ୍ଳୋକଃ ]

ତେ ଭକ୍ତାଃ ମତ୍ସେବୟା କରଣଭୂତୟା ସାଲୋକ୍ୟାଦି ଚତୁଷ୍ଟୟଂ ପ୍ରତୀତଂ ଅନାୟାସେନ ପ୍ରାପ୍ତଂ ତଥାପି ନେଚ୍ଛନ୍ତି ତୁଚ୍ଛୀକୁର୍ବନ୍ତୀତ୍ୟର୍ଥଃ । ଭକ୍ତାଃ କୀଦୃଶା ସେବୟା ପୂର୍ଣ୍ଣାଃ ମତ୍ସେବନେନ ପୂର୍ଣ୍ଣାନ୍ତଃକରଣାଃ କାଲବିପ୍ଳୁତଂ କାଲନଷ୍ଟଂ ଅନ୍ୟତ୍ର ସ୍ୱର୍ଗାଦିକଂ କୁତଃ କୋ ବା ପଦାର୍ଥଃ ଚେଟିକାବଦନାଦରଂ କୃତବନ୍ତ ଇତି ଧ୍ୱନିତଂ [ ୩୫ଶ ଶ୍ଳୋକଃ ]

ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରେମସେବା ବ୍ୟତୀତ ସ୍ୱସୁଖବାଞ୍ଛା ନ ଥାଏ । ତାହାର ନିଷ୍ଠୁରତା ଦେଖାଇବାପାଇଁ ଗ୍ରନ୍ଥକାର କହୁଅଛନ୍ତି ଯେ ପ୍ରେମିକ ଶୁଦ୍ଧ ଭକ୍ତମାନେ ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରେମସେବା ବ୍ୟତୀତ ନିଜ ସୁଖପାଇଁ ସାଲୋକ୍ୟ, ସାରୂପ୍ୟ, ସାମୀପ୍ୟ ଓ ସାର୍ଷ୍ଟି ଏରୂପ ଚତୁର୍ବିଧ ମୁକ୍ତି ଗ୍ରହଣ କରନ୍ତି ନାହିଁ । ଅର୍ଥାତ୍ ଯଦି ସେମାନଙ୍କୁ କେବଳ ଉପରୋକ୍ତ ଚତୁର୍ବିଧ ମୁକ୍ତି ଶ୍ରୀକୃଷ୍ଣଙ୍କ ପ୍ରେମସେବା ବିନିମୟରେ ମିଳେ, ତାହାହେଲେ ସେମାନେ ଶ୍ରୀକୃଷ୍ଣ ସେବା ଗ୍ରହଣ କରି ମୁକ୍ତିଚତୁଷ୍ଟୟକୁ ତ୍ୟାଗ କରନ୍ତି । ଏତଦ୍ଦ୍ୱାରା ପ୍ରତିପାଦିତ ହେଲା ଯେ ଭକ୍ତ ନିଜ ସୁଖପାଇଁ ମୁକ୍ତି ଗ୍ରହଣ କରନ୍ତି ନାହିଁ କିନ୍ତୁ ତାହା ସେ ଶ୍ରୀକୃଷ୍ଣଙ୍କ ପ୍ରେମସେବାପାଇଁ ଗ୍ରହଣ କରନ୍ତି ଅର୍ଥାତ୍ ଶ୍ରୀଭଗବଦ୍ଧାମରେ ମୁକ୍ତି ସ୍ୱତଃସିଦ୍ଧ ରହିଅଛନ୍ତି; ଭକ୍ତ କେବଳ ମୁକ୍ତିଲାଭପାଇଁ ଭଗବଦ୍ଧାମ ପ୍ରାପ୍ତିର ପ୍ରୟାସୀ ହୁଅନ୍ତି ନାହିଁ—ସେମାନେ କୃଷ୍ଣ ସେବାପାଇଁ ଭଗବଦ୍ଧାମ ପ୍ରାପ୍ତ ହୁଅନ୍ତି ଏବଂ ତଦ୍ଧାମ ପ୍ରାପ୍ତ ହେବାରୁ ତଦ୍ଧାମଗତ ମୁକ୍ତି ମଧ୍ୟ ପ୍ରାପ୍ତ ହୁଅନ୍ତି । କିନ୍ତୁ ତାହା ଶ୍ରୀକୃଷ୍ଣଙ୍କ ପ୍ରେମସେବାର ପୋଷକତାପାଇଁ ଗ୍ରହଣ କରନ୍ତି । ନିଜ ସୁଖପାଇଁ ନୁହେଁ । ୧୭୨ ।

ଶ୍ରୀକୃଷ୍ଣଙ୍କର ପ୍ରେମସେବକ ଭକ୍ତମାନେ ଯେ ନିଷ୍କାମୀ ତାହା ପ୍ରତିପାଦନ କରିବାପାଇଁ ଶ୍ରୀକପିଳଦେବ ଦେବହୂତିଙ୍କୁ କହୁଅଛନ୍ତି ଯେ ମୁଁ ସାଲୋକ୍ୟ ( ମୋର ସହିତ ଏକତ୍ର ବାସ ) ସାର୍ଷ୍ଟି ( ମୋର ସମାନ ଐଶ୍ୱର୍ଯ୍ୟ ) ସାମୀପ୍ୟ ( ମୋର ନିକଟ ଅବସ୍ଥାନ ) ସାରୂପ୍ୟ ( ମୋର ସମାନରୂପ ) ଏବଂ ଏକତ୍ୱ ବା ସାଯୁଜ୍ୟ ଏହି ପଞ୍ଚବିଧ ମୁକ୍ତି ମୋର ଭକ୍ତଙ୍କୁ ଦେଲେ ସୁଦ୍ଧା ସେମାନେ ମୋର ସେବା ବ୍ୟତୀତ ସେପ୍ରକାର ମୁକ୍ତିକୁ ଗ୍ରହଣ କରନ୍ତି ନାହିଁ ।

ସାଯୁଜ୍ୟ ମୁକ୍ତି ହରିଲୋକର ଅଧସ୍ତନ, ତେଣୁ ତାହା ଭକ୍ତମାନେ ସ୍ୱାଭାବିକ ଘୃଣା କରନ୍ତି । ସାଲୋକ୍ୟ, ସାର୍ଷ୍ଟି, ସାମୀପ୍ୟ ଓ ସାରୂପ୍ୟ ଏହି ଚତୁର୍ବିଧମୁକ୍ତି ହରିଲୋକର ଅନ୍ତର୍ଗତ ଅଟେ । ଏହା ଚତୁର୍ଥ ପୁରୁଷାର୍ଥ ଅର୍ଥାତ୍ ମୁକ୍ତିକାମୀ ବୈଧିଭକ୍ତମାନେ ପ୍ରାର୍ଥନା କରନ୍ତି । କିନ୍ତୁ ରାଗାନୁଗ ଭକ୍ତମାନେ ନିଷ୍କାମହେତୁ ତାହା ମଧ୍ୟ କାମନା କରନ୍ତି ନାହିଁ । ଏଣୁ ହରିସେବାବିହୀନ ତଲ୍ଲୋକାପ୍ତ କେବଳ ମୁକ୍ତି ଚତୁଷ୍ଟୟ ପାଇଲେ ସୁଦ୍ଧା ତାହା ତ୍ୟାଗ କରନ୍ତି । କିନ୍ତୁ ସେପ୍ରକାର ମୁକ୍ତି ହରିସେବାର ପୋଷକ ହେଲେ କେବଳ ହରିସେବାପାଇଁ ତାହା ଗ୍ରହଣ କରନ୍ତି । ସ୍ଥୂଳତଃ ହରିଲୋକ ମୁକ୍ତିସ୍ଥାନହେତୁ ରାଗାନୁଗ ଭକ୍ତମାନେ ହରିଲୋକରେ ହରିସେବା ପ୍ରାପ୍ତ ହେଲେ ଅବଶ୍ୟ ମୁକ୍ତି ପ୍ରାପ୍ତ ହୁଅନ୍ତି, କିନ୍ତୁ ତାହା କାମନାର ସହିତ ନୁହେଁ । [ ୩୪ଶ ଶ୍ଳୋକାର୍ଥ ]

କାମଗନ୍ଧହୀନ ସ୍ୱାଭାବିକ ଗୋପୀପ୍ରେମ ।
ନିର୍ମ୍ମଳ ଉଜ୍ଜ୍ୱଳ ଶୁଦ୍ଧ ଯେହ୍ନ ଦଗ୍ଧହେମ । ୧୭୩ ।
କୃଷ୍ଣେର ସହାୟ ଗୁରୁ ବାନ୍ଧବ ପ୍ରେୟସୀ ।
ଗୋପିକା ହୟେନ ପ୍ରିୟା ଶିଷ୍ୟା ସଖୀ ଦାସୀ ।୧୭୪।

ତଥାହି ଗୋପୀପ୍ରେମାମୃତେ—
ସହାୟା ଗୁରବଃ ଶିଷ୍ୟା ଭୁଜିଷ୍ୟା ବାନ୍ଧବାଃ ସ୍ତ୍ରିୟଃ ।
ସତ୍ୟଂ ବଦାମି ତେ ପାର୍ଥ ଗୋପ୍ୟଃ କିଂ ମେ
ଭବନ୍ତି ନ ॥ ୩୬ ॥ *

କାମଗନ୍ଧହୀନ ଇତି । ଗୋପୀନାଂ ପ୍ରେମ ସ୍ୱଭାବତ ଏବ କାମଗନ୍ଧହୀନଂ ଅଥବା ତତ୍ର ସ୍ୱାଭାବିକଂ ନତୁ ସାଧନସାଧିତଂ । ଏତତ୍ର ପଦ୍ୟସ୍ୟ ପୂର୍ବ୍ବପଦ୍ୟେନାନ୍ୱୟଃ ଅୟମର୍ଥଃ ଶୁଦ୍ଧଭକ୍ତାନାଂ ସ୍ୱସୁଖବାଞ୍ଛା ନାସ୍ତୀତି ପୂର୍ବ୍ବପଦ୍ୟେ ଉକ୍ତଂ ତତ୍ର ସାଧନବଲେନ ସିଦ୍ଧାନାଂ ସାଧନସାଧିତପ୍ରେମବତାଂ ତେଷାଂ ଭକ୍ତାନାଂ ଯଦ୍ଦ ସ୍ୱସୁଖବାଞ୍ଛା ନାସ୍ତି ତଦା ସିଦ୍ଧାନାଂ କାମଗନ୍ଧବହୀନ ସ୍ୱାଭାବିକ ନିତ୍ୟ ପ୍ରେମବତୀନାଂ ତନ୍ନାସ୍ତୀତି କିମୁଚ୍ୟତେ ଯତ ସ୍ତାସ୍ତେଭ୍ୟୋଽଧିକାଃ । ୧୭୩ । ବ, ଚ,

ହେ ପାର୍ଥ ! ତେ ତୁଭ୍ୟଂ ସତ୍ୟଂ ନିଶ୍ଚିତଂ ବଦାମି କଥୟାମ୍ୟହଂ ଗୋପ୍ୟଃ ଗୋପାଙ୍ଗନାଃ ମେ ମମ କିମିତ ବସ୍ତ୍ୱେ ନ ଭବନ୍ତି ସର୍ବ୍ବଯୋଗ୍ୟା ଭବନ୍ତୀତ୍ୟର୍ଥଃ । ସହାୟାଃ ପ୍ରିୟମିବବତ୍ ସାହାଯ୍ୟଂ କୁର୍ବ୍ବନ୍ତି, ଗୁରବଃ ମାଂ ଗୁରୁବତ୍ ଉପଦେଶଂ କୁର୍ବ୍ବନ୍ତି, ଶିଷ୍ୟାଃ ଶିଷ୍ୟବତ୍ ମଦାଜ୍ଞାଂ ନ ଲଙ୍ଘୟନ୍ତୀତ୍ୟର୍ଥଃ, ଭୁଜିଷ୍ୟାଃ ଦାସୀବତ୍ ମତ୍ସେବାଂ କୁର୍ବ୍ବନ୍ତି, ବାନ୍ଧବାଃ ବନ୍ଧୁବତ୍ ପ୍ରେମାଚରଂ ଆଚରନ୍ତୀତ୍ୟର୍ଥଃ, ସ୍ତ୍ରିୟଃ ସ୍ୱସ୍ତ୍ରୀବତ୍ ବ୍ୟବହାରଂ କୁର୍ବ୍ବନ୍ତୀତ୍ୟର୍ଥଃ । [ ୩୬ଶ ଶ୍ଲୋକଃ ]

ଦୁର୍ବ୍ବାସାଙ୍କ ପ୍ରତି ଶ୍ରୀଭଗବାନ୍ କହୁଅଛନ୍ତି ଯେ ଯେଉଁ ଭକ୍ତମାନଙ୍କର ହୃଦୟ ମୋର ସେବାରେ ପୂର୍ଣ୍ଣ ରହିଅଛି ସେମାନେ ସେହି ସେବାହେତୁ ଅନାୟାସରେ ପ୍ରାପ୍ତ ଚତୁର୍ବ୍ବିଧ ମୁକ୍ତିକୁ ( ସାଲୋକ୍ୟ, ସାମୀପ୍ୟ, ସାର୍ଷ୍ଟି ଓ ସାରୂପ୍ୟ ) ତୁଚ୍ଛ ବସ୍ତୁବତ୍ ଗ୍ରହଣ କରନ୍ତି । ଏପ୍ରକାର ଭକ୍ତମାନେ କାଳରେ ନାଶଶୀଳ ସ୍ୱର୍ଗାଦି ଭୋଗ କାହିଁକି ଗ୍ରହଣ କରିବେ ।

ଏହାର ଭାବ ଏହି ଯେ ପ୍ରେମିକ ଭକ୍ତମାନଙ୍କ ହୃଦୟ ସର୍ବ୍ବଦା ଭଗବତ୍ ସେବାନନ୍ଦରେ ପୂର୍ଣ୍ଣ ; ସେମାନେ ଭଗବତ୍‌ସେବାକାର୍ଯ୍ୟରେ ସହାୟକରୂପେ ଚତୁର୍ବ୍ବିଧ ମୁକ୍ତିକୁ ପ୍ରାପ୍ତ ହେଲେ ସୁଦ୍ଧା ତାହା ଆନନ୍ଦଦାୟକ ବୋଲି ଗ୍ରହଣ କରନ୍ତି ନାହିଁ । କେବଳ ସେବାର ସହାୟକ ବୋଲି ଅର୍ଥାତ୍ ଗ୍ରହଣ ନ କଲେ ନ ଚଳେ ଏହିହେତୁ ତୁଚ୍ଛବସ୍ତୁବତ୍ ଗ୍ରହଣ କରନ୍ତି । ଏପ୍ରକାର ଭକ୍ତମାନଙ୍କ ନିକଟ ସ୍ୱର୍ଗାଦି ଭୋଗ ଯେ କେତେ ଅକିଞ୍ଚିତ୍‌କର ତାହା ସହଜରେ ଅନୁମେୟ । [୩୫ଶ ଶ୍ଲୋକାର୍ଥ ]

ଉପରୋକ୍ତ ଶ୍ଲୋକମାନଙ୍କଦ୍ୱାରା ପ୍ରତିପାଦିତ ହେଲା ଯେ ପ୍ରେମିକଭକ୍ତମାନଙ୍କର ( ସାଧକ-ମାନଙ୍କର ) ସୁଦ୍ଧା ସିଦ୍ଧ ଅବସ୍ଥାରେ ଶ୍ରୀକୃଷ୍ଣଭଜନରେ କାମଦୋଷ ନ ଥାଏ । ଏପରି ସ୍ଥଳରେ ଶ୍ରୀକୃଷ୍ଣଙ୍କର ନିତ୍ୟପ୍ରିୟା ଗୋପୀମାନଙ୍କର ଯେ କାମଦୋଷ ନାହିଁ ଏଥିରେ ଆଉ ଅଧିକ କଅଣ କହିବାକୁ ହେବ । ତେଣୁ ଗ୍ରନ୍ଥକାର କହୁଅଛନ୍ତି ଯେ ନିତ୍ୟସିଦ୍ଧ ଗୋପୀମାନଙ୍କର ପ୍ରେମ ସ୍ୱାଭାବିକ କାମଦୋଷହୀନ ଅର୍ଥାତ୍ ଗୋପୀମାନେ ଶ୍ରୀକୃଷ୍ଣଙ୍କର ନିତ୍ୟପ୍ରିୟା ହେତୁ ଅନିତ୍ୟ କାମ ସେମାନଙ୍କର ପ୍ରେମକୁ କୌଣସିକାଳେ ସ୍ପର୍ଶ କରିନାହିଁ, ତେଣୁ ସେମାନଙ୍କ ପ୍ରେମ ସର୍ବ୍ବଦା ନିର୍ମ୍ମଳ ଏବଂ ଗଳିତ ସ୍ୱର୍ଣ୍ଣବତ୍ ଉଜ୍ଜ୍ୱଳ । ୧୭୩ ।

ଗୋପୀକାମାନେ ଶ୍ରୀକୃଷ୍ଣଙ୍କର ସର୍ବ୍ବସ୍ୱ ଅର୍ଥାତ୍ ସେମାନେ ଶ୍ରୀକୃଷ୍ଣଙ୍କର ସହାୟ, ଗୁରୁ, ବାନ୍ଧବ, ପ୍ରେୟସୀ, ପ୍ରିୟା, ଶିଷ୍ୟା, ସଖୀ ଓ ଦାସୀ ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଆପଣାର ବୋଲିବାର ଯାହା କିଛି ସମସ୍ତ ସେହି ଗୋପୀମାନେହିଁ ଅଟନ୍ତି । ୧୭୪ ।

ଗୋପିକା ଜାନେନ କୃଷ୍ଣମନେର ବାଞ୍ଛିତ ।
ପ୍ରେମସେବା ପରିପାଟୀ ଇଷ୍ଟ ସମୀହିତ ।୧୭୫।

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୩୧)
ଆଦିପୁରାଣବଚନମ୍—

ମନ୍ମାହାତ୍ମ୍ୟଂ ମତ୍ସପର୍ଯ୍ୟାଂ ମଚ୍ଛ୍ରଦ୍ଧାଂ ମନ୍ମନୋଗତମ୍ ।
ଜାନନ୍ତି ଗୋପିକାଃ ପାର୍ଥ ନାନ୍ୟେ ଜାନନ୍ତି
ତତ୍ତ୍ୱତଃ ॥ ୩୭ ॥ *

ସେଇ ଗୋପୀଗଣମଧ୍ୟେ ଉତ୍ତମା—ରାଧିକା ।
ରୂପେ ଗୁଣେ ସୌଭାଗ୍ୟେ ପ୍ରେମେ ସର୍ବାଧିକା ।୧୭୬।

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୪୫)
ପଦ୍ମପୁରାଣବଚନମ୍—

ଯଥା ରାଧା ପ୍ରିୟା ବିଷ୍ଣୋସ୍ତସ୍ୟାଃ କୁଣ୍ଡଂ ପ୍ରିୟଂ ତଥା ।
ସର୍ବଗୋପୀଷୁ ସୈବୈକା ବିଷ୍ଣୋରତ୍ୟନ୍ତବଲ୍ଲଭା ॥୩୮॥ *

ନନୁ ଅନ୍ୟଭକ୍ତେଭ୍ୟଃ ଗୋପୀନାଂ କଥମାଧିକ୍ୟମିତିଚେତ୍ତତ୍ର ସଂକ୍ଷେପଭାଗବତାମୃତୋକ୍ତ ଦିଶା ଅନ୍ୟେଭ୍ୟଃ ଭକ୍ତେଭ୍ୟଃ ଗୋପୀକାନାମାଧିକ୍ୟଂ ଦର୍ଶୟନ୍ତି କୃଷ୍ଣେର ଇତି ଦ୍ୱାଭ୍ୟାଂ । ଶ୍ରୀକୃଷ୍ଣ-ସ୍ୱାହାତ୍ମ୍ୟାଦିଭିର୍ଗୁଣୈରନ୍ୟେଭ୍ୟସ୍ତାସାମାଧିକ୍ୟ ମିତ୍ୟର୍ଥଃ । ୧୭୪।୧୭୫ । ଚ, ତ,

ହେ ପାର୍ଥ ! ଗୋପୀକାଃ ମନ୍ମାହାତ୍ମ୍ୟଂ ମମ ମହିମାନଂ ମତ୍ସପର୍ଯ୍ୟାଂ ମମସେବାଂ ମଚ୍ଛ୍ରଦ୍ଧାଂ ମମସ୍ପୃହଣୀୟଂ ମନ୍ମନୋଗତଂ ମମ ମନୋଽଭିପ୍ରାୟଂ ଜାନନ୍ତି; ଅନ୍ୟେ ଏତଦ୍ଭିନ୍ନାଃ ଅନ୍ୟେଭକ୍ତାଃ ତତ୍ତ୍ୱତଃ ସ୍ୱରୂପତୋ ନ ଜାନନ୍ତୀତ୍ୟର୍ଥଃ । [ ୩୭ଶ ଶ୍ଳୋକଃ ]

ଯଥା ଯେନ ପ୍ରକାରେଣ ବିଷ୍ଣୋଃ ଶ୍ରୀନନ୍ଦନନ୍ଦନସ୍ୟ ପ୍ରିୟା ପ୍ରାଣାଧିକା ରାଧିକା ଏବ ତଥା ତସ୍ୟା ରାଧାୟାଃ ପ୍ରିୟଂ କୁଣ୍ଡମେବ । ଏକା ସା ରାଧିକା ସର୍ବାସୁ ଗୋପି କାସୁ ମଧ୍ୟେ ବିଷ୍ଣୋଃ ଶ୍ରୀନନ୍ଦ-ନନ୍ଦନସ୍ୟ ଅତ୍ୟନ୍ତବଲ୍ଲଭା ସର୍ବୋତ୍ତମା ପ୍ରେୟସୀତ୍ୟର୍ଥଃ । ମହାଭାବସ୍ୱରୂପତ୍ୱେନ ପରପ୍ରିୟତ୍ୱାତ୍ ସର୍ବଗୁଣାନ୍ୱିତତ୍ୱାଚ୍ଚାତିଶୟେନ ପ୍ରିୟତମା ଇତ୍ୟର୍ଥଃ । ଅତ୍ର ବିଷ୍ଣୁଶବ୍ଦସ୍ୟ ସାମାନ୍ୟତୋ ବୃତ୍ତିଂ ଯଶୋଦାସ୍ତନନ୍ଧୟ ଇତ୍ୟରୂଢ଼ିତଃ । [ ୩୮ଶ ଶ୍ଳୋକଃ ]

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଅଛନ୍ତି ହେ ପାର୍ଥ ! ତୁମ୍ଭଙ୍କୁ ନିଷ୍ଟୟ କରି କହୁଅଛୁ ଗୋପୀମାନେ ମୋର କଅଣ ନୁହନ୍ତି ? ଅର୍ଥାତ୍ ସେମାନେ ମୋର ସର୍ବସ୍ୱ । ଯେ ହେତୁ ସେମାନେ ମୋର ସହାୟ ( ପ୍ରିୟ ମିତ୍ରବତ୍ ସାହାଯ୍ୟକାରୀ ) ଗୁରୁ ( ଗୁରୁବତ୍ ଉପଦେଶକାରୀ ) ଶିଷ୍ୟା ( ଶିଷ୍ୟବତ୍ ଆଜ୍ଞାପାଳନକାରୀ ) ଦାସୀ ( ଦାସୀବତ୍ ସେବାକାରୀ ) ବାନ୍ଧବ ( ବନ୍ଧୁବତ୍ ପ୍ରିୟକାରୀ ) ସ୍ତ୍ରୀ ( ଭାର୍ଯ୍ୟାବତ୍ ବ୍ୟବହାରକାରୀ ) ଇତ୍ୟାଦି । [ ୩୬ଶ ଶ୍ଳୋକାର୍ଥ ]

ଏଣୁ ଗ୍ରନ୍ଥକାର କହୁଅଛନ୍ତି ଯେ କେବଳ ଗୋପିକାମାନେହିଁ ଶ୍ରୀକୃଷ୍ଣଙ୍କର ମନରଭାବ ବୁଝିପାରି ପରିପାଟୀର ସହିତ ତାହାଙ୍କର ପ୍ରେମ ସେବା କରନ୍ତି ଏବଂ ବାଞ୍ଛା ପୂରଣ କରନ୍ତି । ୧୭୫ ।

ଅର୍ଜ୍ଜୁନଙ୍କପ୍ରତି ଶ୍ରୀକୃଷ୍ଣ କହୁଅଛନ୍ତି, ହେ ପାର୍ଥ ! ଗୋପିକାମାନେହିଁ କେବଳ ମୋର ମହିମା, ମୋର ସେବା, ମୋର ସ୍ପୃହଣୀୟ ବିଷୟ, ମୋର ମନର ଅଭିପ୍ରାୟ ଜାଣନ୍ତି । ସେମାନଙ୍କ ବ୍ୟତୀତ ଅନ୍ୟ ଭକ୍ତମାନେ ସ୍ୱରୂପତଃ ସେ ସମସ୍ତ ଜାଣନ୍ତି ନାହିଁ । ଅର୍ଥାତ୍ ଗୋପିକାମାନେ ଯେରୂପ ଜାଣନ୍ତି ଅପରଭକ୍ତମାନେ ସେପରି ଜାଣନ୍ତି ନାହିଁ । [ ୩୭ଶ ଶ୍ଳୋକାର୍ଥ ]

ଶ୍ରୀରାଧାଙ୍କର ପ୍ରେମର ବିଚିତ୍ରତା ଅର୍ଥାତ୍ ପ୍ରୌଢ଼ ନିର୍ମ୍ମଳତା ବୁଝାଇବା କାରଣ ଶ୍ରୀଗ୍ରନ୍ଥକାର ପୂର୍ବୋକ୍ତ ପ୍ରକାରରେ ଗୋପୀପ୍ରେମର କାମଗନ୍ଧହୀନତ୍ୱ ଓ ବର୍ଦ୍ଧନଶୀଳତ୍ୱ ଦେଖାଇ ବର୍ତ୍ତମାନ ସେ ରାଧାପ୍ରେମର ବିଷୟ କହୁଅଛନ୍ତି ।

ସ୍ୱାଭାବିକ କାମଗନ୍ଧହୀନ ନିର୍ମ୍ମଳ ଉଜ୍ଜ୍ୱଳ ପ୍ରେମବତୀ ଗୋପୀକାମାନଙ୍କ ମଧ୍ୟରେ ଶ୍ରୀରାଧା ସର୍ବଶ୍ରେଷ୍ଠ । କେବଳ ପ୍ରେମରେ ନୁହେଁ, ରୂପ, ଗୁଣ, ସୌଭାଗ୍ୟ ଇତ୍ୟାଦିରେ ମଧ୍ୟ ସର୍ବଶ୍ରେଷ୍ଠ ।୧୭୬।

ତଥାହି ଲଘୁଭାଗବତାମୃତେ ଉତ୍ତରଖଣ୍ଡେ (୪୬)
ଆଦିପୁରାଣବଚନମ୍—
ତ୍ରୈଲୋକ୍ୟେ ପୃଥିବୀ ଧନ୍ୟା ଯତ୍ର ବୃନ୍ଦାବନଂ ପୁରୀ ।
ତତ୍ରାପି ଗୋପିକାଃ ପାର୍ଥ ଯତ୍ର ରାଧାଭିଧା ମମ ॥୩୯॥*
ରାଧା ସହ କ୍ରୀଡ଼ା ରସବୃଦ୍ଧିର କାରଣ ।
ଆର ସବ ଗୋପୀଗଣ ରସୋପକରଣ । ୧୬୭ ।
କୃଷ୍ଣେର ବଲ୍ଲଭା ରାଧା—କୃଷ୍ଣପ୍ରାଣଧନ ।
ତାଁହା ବିନୁ ସୁଖହେତୁ ନହେ ଗୋପୀଗଣ ।୧୬୮।

ତଥାହି ଗୀତଗୋବିନ୍ଦେ (୩।୧)—
କଂସାରିରପି ସଂସାର-ବାସନାବଦ୍ଧଶୃଙ୍ଖଳାମ୍ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ ॥୪୦॥*

---

ହେ ପାର୍ଥ ! ତ୍ରୈଲୋକ୍ୟେ ସ୍ୱର୍ଗମର୍ତ୍ତ୍ୟପାତାଳଲୋକେ ପୃଥିବୀ ଧନ୍ୟା ସମ୍ମାନ୍ୟା; ଯତଃ ଯତ୍ର ପୃଥିବ୍ୟାଂ ବୃନ୍ଦାବନଂ ପୁରୀ ମଥୁରାବୃତ୍ତେ ତତ୍ରାପି ବୃନ୍ଦାବନେ ଗୋପିକାଃ ଧନ୍ୟାଃ ଭବନ୍ତି ଯତ୍ର ଗୋପିକାସୁ ମଧ୍ୟେ ମମ ପ୍ରିୟା ରାଧାଭିଧା ରାଧାନାମାସ୍ତେ । [ ୩୯ଶ ଶ୍ଳୋକଃ ]

ଗୂପାଦିତଃ ରାଧିକାୟାଃ ଗୋପୀଭ୍ୟଃ ଯଦାଧିକ୍ୟମୁକ୍ତଂ ତଦେବ ଦର୍ଶୟତି "ରାଧାସହ" ଇତି ଦ୍ୱାଭ୍ୟାଂ । ସାମର୍ଥ୍ୟାତ୍ କୃଷ୍ଣସ୍ୟ ରାଧୟା ସହ ମଧୁରଲୀଳାସୁଖବୃଦ୍ଧ୍ୟର୍ଥଂ ଅନ୍ନସ୍ୟ ବ୍ୟଞ୍ଜନବତ୍ ଗୋପୀଗଣଂ କର୍ତ୍ତୃ ତଦ୍‌ରସସ୍ୟ ଉପକରଣଂ ଉପକାରଂ ସାହାଯ୍ୟଂ କରୋତୀତି ଶେଷଃ; ତତ୍ସୁଖବୃଦ୍ଧେଃ ହେତୁର୍ଭବତୀତ୍ୟର୍ଥଃ କିନ୍ତୁ ଦେହସ୍ୟ ପ୍ରାଣବତ୍ ଶ୍ରୀରାଧୈବ ଶ୍ରୀକୃଷ୍ଣସୁଖସ୍ୟୈକହେତୁଃ, ନତୁ ତାଂ ବିନା ତତ୍ ଗୋପୀଗଣଂ ପ୍ରାଣଂ ବିନା ଇନ୍ଦ୍ରିୟାଣୀବ କୃଷ୍ଣସ୍ୟ ସୁଖହେତୁଃ ଏତଦେବ ତସ୍ୟାସ୍ତାଭ୍ୟ ଆଧିକ୍ୟମିତ୍ୟର୍ଥଃ ଇତି । ୧୬୭।୧୬୮ । ବ, ଚ,

କଂସାରିଃ (ଶ୍ରୀକୃଷ୍ଣଃ) ଅପି ସଂସାରବାସନାବଦ୍ଧଶୃଙ୍ଖଳାଂ ( ସମ୍ୟକ୍‌ସାରଭୂତାୟାଃ ବାସନାୟାଃ ବଦ୍ଧାୟୈ ବନ୍ଧନାୟ ଦୃଢ଼ୀକରଣାର୍ଥଂ ଶୃଙ୍ଖଳାଂ ନିଗଡ଼ରୂପାଂ ପରମାଶ୍ରୟାଂ) ରାଧାଂ ହୃଦୟେ ଆଧାୟ ( ଆ ସମ୍ୟକ୍ ପ୍ରକାରେଣ ଧୃତ୍ୱା ) ବ୍ରଜସୁନ୍ଦରୀଃ ତତ୍ୟାଜ । [ ୪୦ଶ ଶ୍ଳୋକଃ ]

---

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଯେପରି ପ୍ରିୟା ତାହାଙ୍କର କୁଣ୍ଡ ( ଶ୍ରୀରାଧାକୁଣ୍ଡ ) ମଧ୍ୟ ଶ୍ରୀକୃଷ୍ଣଙ୍କର ସେହିପରି ପ୍ରିୟ । ଯେ ହେତୁ ସମସ୍ତ ଗୋପୀମାନଙ୍କ ମଧ୍ୟରେ ଏକା ରାଧାହିଁ ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟ । [ ୩୮ଶ ଶ୍ଳୋକାର୍ଥ ]

ହେ ପାର୍ଥ ! ଏହି ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିଲୋକ ମଧ୍ୟରେ ଏହି ପୃଥିବୀ ଶ୍ରେଷ୍ଠ, ଯେହେତୁ ସେଥିରେ ଶ୍ରୀବୃନ୍ଦାବନ ( ବ୍ରଜମଣ୍ଡଳ ) ବିରାଜମାନ । ସେହି ବୃନ୍ଦାବନରେ ଗୋପିକାମାନେ ଶ୍ରେଷ୍ଠ । ଯେହେତୁ ସେମାନଙ୍କ ମଧ୍ୟରେ ମୋର ରାଧାନାମା ପ୍ରିୟା ବର୍ତ୍ତମାନ । ଅବା ମୋର ପ୍ରିୟା ଶ୍ରୀରାଧା ଗୋପିକାମାନଙ୍କ ମଧ୍ୟରେ ଥିବାରୁ ଗୋପିକାମାନେ ଶ୍ରେଷ୍ଠ ହୋଇଅଛନ୍ତି । ସେହି ଗୋପିକାମାନେ ଶ୍ରୀବୃନ୍ଦାବନରେ ଥିବାରୁ ଶ୍ରୀବୃନ୍ଦାବନ ଧନ୍ୟ ହୋଇଅଛି ଏବଂ ସେହି ବୃନ୍ଦାବନ ତ୍ରୈଲୋକ୍ୟ ମଧ୍ୟରେ କେବଳ ପୃଥିବୀରେ ଥିବାରୁ ପୃଥିବୀ ଧନ୍ୟ ହୋଇଅଛି । [ ୩୯ଶ ଶ୍ଳୋକାର୍ଥ ]

ଗୋପୀମାନେ ଶ୍ରୀରାଧାଙ୍କ ସହ ଶ୍ରୀକୃଷ୍ଣଙ୍କର ମଧୁରଲୀଳା ସୁଖବୃଦ୍ଧିର ଉପକରଣ, ଅର୍ଥାତ୍ ଯେପରି କି ଅନ୍ନ ଆସ୍ୱାଦନରେ ସୁଖଲାଭ ସକାଶେ ତାବତୀୟ ବ୍ୟଞ୍ଜନାଦି ପ୍ରୟୋଜନ, ସେହିପରି ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ସୁଖଦାନ ହେତୁ ପ୍ରାଣତୁଲ୍ୟ, ଅନ୍ୟାନ୍ୟ ଗୋପୀମାନେ ଶ୍ରୀରାଧାବ୍ୟତୀତ ସୁଖଦାନ କରି ପାରନ୍ତିନାହିଁ । ଯଥା ପ୍ରାଣ ହେତୁ ଇନ୍ଦ୍ରିୟମାନଙ୍କଦ୍ୱାରା ଦେହର ସୁଖଲାଭ ହୁଏ । କିନ୍ତୁ ପ୍ରାଣବ୍ୟତୀତ ଇନ୍ଦ୍ରିୟମାନେ ଦେହର ତତ୍କାର୍ଯ୍ୟ ସାଧନ କରି ପାରନ୍ତିନାହିଁ । ୧୬୭।୧୬୮ ।

ସେଇ ରାଧାର ଭାବ ଲଞ୍ଚ ଚୈତନ୍ୟାବତାର ।
ଯୁଗଧର୍ମ ନାମ-ପ୍ରେମ କୈଲ ପରଚାର । ୧୭୯ ।
ସେଇଭାବେ ନିଜ ବାଞ୍ଛା କରିଲ ପୂରଣ ।
ଅବତାରେର ଏଇ ବାଞ୍ଛା ମୂଲ ସେ କାରଣ ।୧୮୦।

ଶ୍ରୀକୃଷ୍ଣଚୈତନ୍ୟଗୋସାଞି ବ୍ରଜେନ୍ଦ୍ରକୁମାର ।
ରସମୟମୂର୍ତ୍ତି କୃଷ୍ଣ—ସାକ୍ଷାତ୍ ଶୃଙ୍ଗାର । ୧୮୧ ।
ସେଇ ରସ ଆସ୍ୱାଦିତେ କୈଲ ଅବତାର ।
ଆନୁଷଙ୍ଗେ କୈଲ ସବ ରସେର ପ୍ରଚାର ।୧୮୨।

ଷଷ୍ଠଶ୍ଲୋକସ୍ୟାର୍ଥଂ ବର୍ଣ୍ଣୟିତ୍ୱା ତଦୁପସଂହରନ୍ନାହ ଅଥବା "ତଲୋବାଡ୍ୟ ସମଜନ" ଇତ୍ୟ-ସ୍ୟାର୍ଥମାହ "ସେଇ ରାଧାର" ଇତି ଦ୍ୱାଭ୍ୟାଂ । ସେଇ ସର୍ବାଧିକାୟାଃ । ଶ୍ରୀରାଧିକା ଏବ ସର୍ବାଧିକା ତେନ ତତ୍ ପ୍ରେମାଦ୍ଦକମପି ସର୍ବାଧିକ ମିତି ତଦ୍ଭାବମଙ୍ଗୀକୃତ୍ୟ ଅଥବା ସେଇ ଇତି ତସ୍ମାଦ୍ଧେତୋଃ ପ୍ରେମାଦ୍ଦଭିଃ ସର୍ବୈଃ ପ୍ରକାରୈଃ ସର୍ବଗୋପୀଗଣେଭ୍ୟଃ ରାଧିକା ଯତୋଽଧିକା ତତସ୍ତଭାବମଙ୍ଗୀକୃତ୍ୟ ଶ୍ରୀକୃଷ୍ଣଃ ଶ୍ରୀଚୈତନ୍ୟାବତୀର୍ଣ୍ଣଃ । ଅବାସ୍ୟଂ କ୍ରମୋ ଜ୍ଞେୟଃ ଶ୍ରୀରାଧାୟାଃ ପ୍ରଣୟମହିମା ତଥା ତଦାସ୍ୱାଦ୍ୟ ନିଜାଭୁତମଧୁରିମା ତଥା ନିଜାନୁଭବେନ ତସ୍ୟା ସୁଖଞ୍ଚ ଏତତ୍ତ୍ରୟାଣାଂ ପୂର୍ବବର୍ଣ୍ଣିତବହୁବତାଦ୍ଧେତୋଃ ତତ୍ପ୍ରେମାଦ୍ଦବଶ୍ୟାସ୍ୱାଦନେ ଶ୍ରୀକୃଷ୍ଣସ୍ୟ ବାଞ୍ଛା ଜାତା ତତସ୍ତତ୍ପୂରଣାର୍ଥଂ ରାଧାଭାବମଙ୍ଗୀକୃତ୍ୟ ସ ଶ୍ରୀଚୈତନ୍ୟାବତୀର୍ଣ୍ଣଃ । ତଥା ଯୁଗଧର୍ମାଦିକଂ ପ୍ରଚାରିତବାନ୍ । କିନ୍ତୁ ସେଇ ଭାବେ ଇତି ରାଧାଭାବେନ ନିଜବାଞ୍ଛାବଶ୍ୟପୂରଣାତ୍ ତଦ୍ୱାଞ୍ଛାବଶ୍ୟମେବ ଶ୍ରୀଚୈତନ୍ୟାବତାରେ ମୂଳକାରଣଂ ।୧୭୯।୧୮୦। ଚ, ଚ,

ସୁଖବୋଧାୟୈତତ୍ପ୍ରକରଣାଦ୍ପ୍ରାପ୍ତଂ ସଂକ୍ଷେପେଣୈବାହ ଅଥବା ନାମପ୍ରେମପ୍ରଦାନଂ ଶ୍ରୀଚୈତନ୍ୟାବତାରେ କାରଣମିତି ଭ୍ରାନ୍ତ୍ୟେ ଉକ୍ତମବରୁ ରାଧାପ୍ରେମାଦସ୍ୱାଦନବାଞ୍ଛାବଶ୍ୟମିତ୍ୟେତତ୍ ସମ୍ପାଦୟନ୍ନାହ "ଶ୍ରୀକୃଷ୍ଣଚୈତନ୍ୟ" ଇତି ଦ୍ୱାଭ୍ୟାଂ । ସାକ୍ଷାତ୍ ଶୃଙ୍ଗାରରସମୟମୂର୍ତ୍ତିଃ କୃଷ୍ଣ ଏବ ବ୍ରଜେନ୍ଦ୍ରକୁମାରଃ ନତୁ କୃଷ୍ଣଶବ୍ଦେନାନ୍ୟୋ କଶ୍ଚିଦପ୍ରୀତ୍ୟର୍ଥଃ; ସଃ ବ୍ରଜେନ୍ଦ୍ରକୁମାର ଏବ ଶ୍ରୀକୃଷ୍ଣ-ଚୈତନ୍ୟପ୍ରଭୁଃ । ସେଇ ରସ ଶୃଙ୍ଗାର ରସଶେଷମିତିଶେଷଃ ତମାସ୍ୱାଦୟିତୁମବତୀର୍ଣ୍ଣଃ ଶୃଙ୍ଗାରରସମୂର୍ତ୍ତି-ତ୍ୱେନୈବ ତମାସ୍ୱାଦୟିତୁମବତୀର୍ଣ୍ଣ ଇତ୍ୟର୍ଥଃ ତତ୍ପ୍ରସଙ୍ଗେନ ସର୍ବାନ୍ ରସାନ୍ ନାମପ୍ରେମାଦୀନ୍ ପ୍ରଚାରିତବାନ୍ ଅସ୍ମାତଃ ଶୃଙ୍ଗାରରସଶେଷଂ ଶ୍ରୀରାଧାପ୍ରେମାଦ୍ ସ୍ୱାଦୟିତୁମବତୀର୍ଣ୍ଣତ୍ୱେନ ତଦ୍ୱାଞ୍ଛାବଶ୍ୟଂ ଶ୍ରୀଚୈତନ୍ୟାବତାରେ ମୁଖ୍ୟକାରଣଂ ନାମପ୍ରେମପ୍ରଦାନନ୍ତୁ ଅନୁଷଙ୍ଗତ୍ୱେନ ଗୌଣକାରଣ ମିତ୍ୟଭୟସମାଧାନଂ । ୧୮୧।୧୮୨ । ଚ, ଚ,

ଶ୍ରୀରାଧିକା ଯେପରି ଶ୍ରୀକୃଷ୍ଣଙ୍କ ସକାଶେ ଉତ୍କର୍ଣ୍ଣିତା ହୋଇଥିଲେ ତାହା ବର୍ଣ୍ଣନ କଲାପରି ଶ୍ରୀକୃଷ୍ଣ ଯେ ଶ୍ରୀରାଧାଙ୍କ ସକାଶେ ସେହିପରି ଉତ୍କର୍ଣ୍ଣିତ, ତାହା ଦେଖାଇବା ସକାଶେ କବି ଶ୍ରୀ ଜୟ-ଦେବ କହୁଅଛନ୍ତି, ଯେ ଶ୍ରୀକୃଷ୍ଣ ତାଙ୍କର ରାସ ଅଭିଳାଷବନ୍ଧନରେ ଶୃଙ୍ଖଳାରୂପା ଅର୍ଥାତ୍ ରାସକ୍ରୀଡ଼ାର ଏକମାତ୍ର କାରଣଭୂତା ସେହି ଶ୍ରୀରାଧାଙ୍କୁ ହୃଦୟରେ ଧାରଣ ପୂର୍ବକ ଅପର ଗୋପୀମାନଙ୍କୁ ପରିତ୍ୟାଗ କରି ଚାଲିଗଲେ । [ ୪୦ଶ ଶ୍ଳୋକାର୍ଥ ]

ପୂର୍ବକଥିତମତେ ସର୍ବାଧିକା ଏବଂ ଶ୍ରୀକୃଷ୍ଣଙ୍କର ପ୍ରାଣସ୍ୱରୂପା ଯେ ଶ୍ରୀରାଧା ତାହାଙ୍କର ଭାବ ଗ୍ରହଣ କରି ଶ୍ରୀକୃଷ୍ଣ ଶ୍ରୀଚୈତନ୍ୟ ହୋଇ ଅବତୀର୍ଣ୍ଣ ହେଲେ ଏବଂ ଯୁଗଧର୍ମ ଅର୍ଥାତ୍ ନାମ ପ୍ରେମ ପ୍ରଚାର କଲେ । ସେହି ଶ୍ରୀରାଧାଙ୍କର ଭାବ ଗ୍ରହଣ ଦ୍ୱାରା ନିଜର ଅପୂର୍ଣ୍ଣ ବାଞ୍ଛା ଅର୍ଥାତ୍ ପୂର୍ବକଥିତ ଶ୍ରୀରାଧାଙ୍କର ପ୍ରେମର ମାହାତ୍ମ୍ୟ, ନିଜର ଅଦ୍ଭୁତ ମଧୁରିମା ଏବଂ ଶ୍ରୀରାଧାଙ୍କର ଶ୍ରୀକୃଷ୍ଣସେବାରେ ନିଜର ସୁଖବାଞ୍ଛା ନ ଥିଲେ ସୁଦ୍ଧା ଯେଉଁ ସୁଖ ସେ ପ୍ରାପ୍ତ ହୁଅନ୍ତି ତାହା କିପରି, ଏହି ତ୍ରିବିଧ ଅପୂର୍ଣ୍ଣ ବାଞ୍ଛା ପୂରଣ କରିଥିଲେ ଏବଂ ଏହାହିଁ ଶ୍ରୀଚୈତନ୍ୟ ଅବତାରର ମୂଳ କାରଣ ଅଟେ ଏବଂ ଏହି କାରଣରୁ ଅବତୀର୍ଣ୍ଣ ହେଲା ପରି ଯୁଗଧର୍ମ ( ନାମପ୍ରେମପ୍ରଚାର ) ଅନୁଷଙ୍ଗରେ ସମ୍ପାଦନ କଲେ । ୧୭୯।୧୮୦ ।

ତଥାହି ଗୀତଗୋବିନ୍ଦେ (୧।୧୧)—

ବିଶ୍ୱେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-
ଶ୍ରେଣୀ-ଶ୍ୟାମଳ-କୋମଳୈରୁପନୟନ୍ନଙ୍ଗୈର-
ନଙ୍ଗୋତ୍ସବମ୍ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ
କ୍ରୀଡ଼ତି ॥ ୪୧ ॥ *

ଶ୍ରୀକୃଷ୍ଣଚୈତନ୍ୟଗୋସାଇଁ ରସେର ସଦନ ।
ଅଶେଷ-ବିଶେଷେ କୈଲ ରସ ଆସ୍ୱାଦନ ।୧୮୩।

ସେଇ ଦ୍ୱାରେ ପ୍ରବର୍ତ୍ତାଇଲ କଲିଯୁଗଧର୍ମ ।
ଚୈତନ୍ୟେର ଦାସେ ଜାନେ ଏଇ ସବ ମର୍ମ ।୧୮୪।

ଅଦ୍ୱୈତ-ଆଚାର୍ଯ୍ୟ ନିତ୍ୟାନନ୍ଦ ଶ୍ରୀନିବାସ ।
ଗଦାଧର ଦାମୋଦର ମୁରାରି ହରିଦାସ ।୧୮୫।

ଆର ଯତ ଚୈତନ୍ୟକୃଷ୍ଣେର ଭକ୍ତଗଣ ।
ଭକ୍ତିଭାବେ ଶିରେ ଧରି ସଭାର ଚରଣ ।୧୮୬।

ଷଷ୍ଠଶ୍ଳୋକେର ଏଇ କହିଲ ଆଭାସ ।
ମୂଳଶ୍ଳୋକେର ଅର୍ଥ ଶୁନ କରିୟେ ପ୍ରକାଶ ।୧୮୭।

(ହେ) ସଖି ! ଅନୁରଞ୍ଜନେନ (ପ୍ରୀଣନେନ) ବିଶ୍ୱେଷାଂ (ସର୍ବାସାଂ ଗୋପୀନାମ୍) ଆନନ୍ଦମ୍ ଜନୟନ୍ ଇନ୍ଦୀବର-ଶ୍ରେଣୀଶ୍ୟାମଳକୋମଳୈଃ ଅଙ୍ଗୈଃ ଅନଙ୍ଗୋତ୍ସବଂ ଉପନୟନ୍ (ପ୍ରାପୟନ୍) ସ୍ୱଚ୍ଛନ୍ଦଂ (ଅସଙ୍କୋଚଂ ଯଥାସ୍ୟାତ୍ ତଥା) ବ୍ରଜସୁନ୍ଦରୀଭିଃ ଅଭିତଃ (ସର୍ବାଙ୍ଗୈଃ) ପ୍ରତ୍ୟଙ୍ଗମ୍ ଆଲିଙ୍ଗିତଃ ମୁଗ୍ଧଃ ହରିଃ ମଧୌ (ବସନ୍ତେ) ମୂର୍ତ୍ତିମାନ୍ ଶୃଙ୍ଗାରଇବ କ୍ରୀଡ଼ତି । [ ୪୧ଶ ଶ୍ଳୋକଃ ]

ବାଞ୍ଛାବିଶେଷପୂରଣମେବ ଶ୍ରୀଚୈତନ୍ୟାବତାରେ ମୁଖ୍ୟକାରଣଂ ନାମପ୍ରେମପ୍ରଦାନନ୍ତୁ ଗୌଣମେତଚ୍ଚ ବିଜ୍ଞାନୁଭବେନ ପ୍ରମାଣୟନ୍ନାହ "ଶ୍ରୀକୃଷ୍ଣଚୈତନ୍ୟ" ଇତି । ଶ୍ରୀଚୈତନ୍ୟଦାସା ଏବ ତତ୍ତ୍ୱଜାନନ୍ତୀତ୍ୟର୍ଥଃ । ୧୮୩।୧୮୪ । ବି, ଚ,

ଶ୍ରୀଚୈତନ୍ୟପାର୍ଷଦାଦ୍ୟନୁଗ୍ରହେଣୈବ ପୂର୍ବବର୍ଣ୍ଣିତଆଭାସଃ କୃତ ଇତି ତାନ୍ ପ୍ରଣମନ୍ ତଦ୍‌ବର୍ଣ୍ଣନଂ ଶେଷୟତି "ଅଦ୍ୱୈତ" ଇତି ଦ୍ୱିଭ୍ୟାମ୍ । ୧୮୫।୧୮୬ । ବି, ଚ,

ଷଷ୍ଠଶ୍ଳୋକେର ଇତି ଷଷ୍ଠଶ୍ଳୋକସ୍ୟ ଶ୍ରୀରାଧାୟା ଇତ୍ୟସ୍ୟାୟମାଭାସ ଉକ୍ତଃ ଅଧୁନା ତସ୍ୟ ମୂଳଂ ଶ୍ରୀଚୈତନ୍ୟାବତାରାଦିକାରଣଂ ଅର୍ଥଂ ପ୍ରକାଶଂ କୃତ୍ୱା ଶୃଣୁ ଆଭାସବର୍ଣ୍ଣନା ମଧ୍ୟେ ତସ୍ୟ ଶ୍ଳୋକସ୍ୟାର୍ଥ ଉକ୍ତଃ ଶ୍ରୋତୃବର୍ଗ ସ୍ୱୟମେବ ତଂ ପ୍ରକାଶଂ କୃତ୍ୱା ଶୃଣୁ ଇତ୍ୟର୍ଥ ଇତି । ୧୮୭ । ବି, ଚ,

ଶ୍ରୀକୃଷ୍ଣ ମୂର୍ତ୍ତିହିଁ ସ୍ୱୟଂ ଶୃଙ୍ଗାରରସମୟ ମୂର୍ତ୍ତି । ଶ୍ରୀକୃଷ୍ଣ ଶବ୍ଦ କେବଳ ଶ୍ରୀନନ୍ଦନନ୍ଦନଙ୍କୁ ବୁଝାଏ । ଅପର କାହାରିକୁ ବୁଝାଏ ନାହିଁ । ସେହି ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣହିଁ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ଅର୍ଥାତ୍ ଶ୍ରୀକୃଷ୍ଣଚୈତନ୍ୟହିଁ ସ୍ୱୟଂ ଶୃଙ୍ଗାରରସମୟମୂର୍ତ୍ତି । ସ୍ୱୟଂ ଶୃଙ୍ଗାରରସମୟମୂର୍ତ୍ତି ହୋଇ ସୁଦ୍ଧା ସେହି ରସ ଆସ୍ୱାଦନ କରିବା ସକାଶେ ଅବତୀର୍ଣ୍ଣ ହୋଇ ଆନୁସଙ୍ଗିକ ସର୍ବରସ ଅର୍ଥାତ୍ ନାମ ପ୍ରେମଆଦି ବା ଦାସ୍ୟ, ସଖ୍ୟ, ବାତ୍ସଲ୍ୟାଦି ରସାସ୍ୱାଦନ ପ୍ରଚାର କଲେ । ୧୮୧।୧୮୨ ।

ହେ ସଖି ! ଅଭିଳାଷାତିରିକ୍ତ ରସଦାନଦ୍ୱାରା ଗୋପୀମାନଙ୍କର ଆନନ୍ଦବର୍ଦ୍ଧନ କରି ଏବଂ ନୀଳପଦ୍ମସମୂହର ସଦୃଶ କୋମଳ ଶ୍ୟାମାଙ୍ଗଦ୍ୱାରା ସେମାନଙ୍କର ଅନଙ୍ଗୋତ୍ସବ ସମ୍ପାଦନ ପୂର୍ବକ ଅସଙ୍କୋଚରେ ସେମାନଙ୍କଦ୍ୱାରା ପ୍ରତିଅଙ୍ଗରେ ଆଲିଙ୍ଗିତ ହୋଇ ମୂର୍ତ୍ତିମାନ୍ ଶୃଙ୍ଗାରରସସ୍ୱରୂପ ମୁଗ୍ଧ ଶ୍ରୀକୃଷ୍ଣ ବସନ୍ତକାଳରେ କ୍ରୀଡ଼ା କରୁଅଛନ୍ତି । [ ୪୧ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁ ସ୍ୱୟଂ ରସମୟ ମୂର୍ତ୍ତି । ସେ ନାନାପ୍ରକାରରେ ପୂର୍ବ କଥିତ ବାଞ୍ଛାବିଶେଷ ପୂରଣଦ୍ୱାରା ଉକ୍ତରସକୁ ଆସ୍ୱାଦନ କଲେ ଏବଂ ତାହାଁ ସଙ୍ଗେ କଳିଯୁଗଧର୍ମ ନାମ ପ୍ରେମ ପ୍ରଚାର କଲେ । ଏ ରହସ୍ୟ କେବଳ ଶ୍ରୀକୃଷ୍ଣଚୈତନ୍ୟ ମହାପ୍ରଭୁଙ୍କର ଶୁଦ୍ଧଦାସମାନେ ଅନୁଭବ କରିଅଛନ୍ତି । ୧୮୩।୧୮୪ ।

ତଥାହି ଶ୍ରୀସ୍ୱରୂପଗୋସ୍ୱାମିକଡ଼ଚ୍ଚାୟାମ୍—
ଶ୍ରୀରାଧାୟାଃ ପ୍ରଣୟମହିମା କୀଦୃଶୋ ବାନୟୈବା-
ସ୍ୱାଦ୍ୟୋ ଯେନାଦ୍ଭୁତମଧୁରିମା କୀଦୃଶୋ ବା ମଦୀୟଃ।
ସୌଖ୍ୟଞ୍ଚାସ୍ୟା ମଦନୁଭବତଃ କୀଦୃଶଂ ବେତି ଲୋଭା-
ତ୍ତଦ୍ଭାବାଢ୍ୟଃ ସମଜନି ଶଚୀଗର୍ଭସିନ୍ଧୌ
ହରୀନ୍ଦୁଃ ॥ ୪୬ ॥ *

ଏ ସବ ସିଦ୍ଧାନ୍ତ ଗୂଢ଼—କହିତେ ନା ଜୁୟାୟ ।
ନା କହିଲେ କେହୋ ଇହାର ଅନ୍ତ ନାହିଁ
ପାୟ । ୧୮୮ ।

ଅତଏବ କହି କିଛୁ କରିୟା ନିଗୂଢ଼ ।
ବୁଝିବେ ରସିକ ଭକ୍ତ, ନା ବୁଝିବେ ମୂଢ଼ ।୧୮୯।

( ଅନ୍ୱୟ ୧ମ ଅଧ୍ୟାୟ ଷଷ୍ଠଶ୍ଳୋକ ଦେଖ )

ଏ ସବ ସିଦ୍ଧାନ୍ତ ଷଷ୍ଠଶ୍ଳୋକସ୍ୟ ବକ୍ଷ୍ୟମାଣସିଦ୍ଧାନ୍ତଃ । ୧୮୮ । ଚ, ଚ,

ନନୁ କଥଂ କିଞ୍ଚିନ୍ନିଗୂଢ଼କଥନମିତ୍ୟବାହ "ବୁଝିବେ" ଇତି । ରସିକଭକ୍ତାନାଂ ତଜ୍ଜ୍ଞାନାର୍ଥଂ ମୂଢ଼ାନାଂ ଅଭକ୍ତାନାଞ୍ଚ ତନ୍ନିଷେଧାର୍ଥଂ ତସ୍ୟ କିଞ୍ଚିନ୍ନିଗୂଢ଼କଥନଂ । ୧୮୯ । ଚ, ଚ,

ଗ୍ରନ୍ଥକାର ମହାଶୟ ଶ୍ରୀଅଦ୍ୱୈତ ଆଚାର୍ଯ୍ୟ ପ୍ରଭୃତି ଶ୍ରୀଚୈତନ୍ୟଙ୍କ ପାର୍ଷଦମାନେ ଯେଉଁମାନେ ଶ୍ରୀଚୈତନ୍ୟଙ୍କର ଅବତାରର ମର୍ମ୍ମ ଜାଣନ୍ତି ସେହିମାନଙ୍କ କୃପାରୁ ଆଭ୍ୟସରେ ବର୍ଣ୍ଣନୀୟ ବିଷୟ ଜ୍ଞାତ ହୋଇଥିବାରୁ ସେମାନଙ୍କୁ ପ୍ରଣାମପୂର୍ବକ ଆଭ୍ୟସ ବର୍ଣ୍ଣନା ଶେଷ କଲେ ।

ଏହି ଷଷ୍ଠଶ୍ଳୋକର ବର୍ଣ୍ଣିତ ବିଷୟ ଏହି ଯେ ଶ୍ରୀରାଧାଙ୍କର ପ୍ରେମ ବସ୍ତୁଟି କଅଣ ? ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟବସ୍ତୁଟି କଅଣ ? ଏବଂ ଶ୍ରୀରାଧା ନିଜ ପ୍ରେମଦ୍ୱାରା ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଉପଭୋଗ କରି କି ପ୍ରକାର ସୁଖ ପାଆନ୍ତି ? ଏହା ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ ଶ୍ରୀବୃନ୍ଦାବନଲୀଳାରେ ଅନୁଭବ କରି ନ ପାରିବାରୁ ଶ୍ରୀନବଦ୍ୱୀପଲୀଳାବିଗ୍ରହ ଶ୍ରୀଶଚୀନନ୍ଦନ ଗୌରହରି ହୋଇ ତାହା ଉପଭୋଗ କରିଥିଲେ । ଶ୍ରୀମାନ୍ ଗ୍ରନ୍ଥକାର ନିଜର ଆଭ୍ୟସଦ୍ୱାରା ତଟସ୍ଥଭାବରେ ଉପରୋକ୍ତ ତିନିବସ୍ତୁର ଚମତ୍କାରିତାସମ୍ବନ୍ଧରେ ବିଚାର କରିଅଛନ୍ତି । ବର୍ତ୍ତମାନ ମୂଳଶ୍ଳୋକର ଅର୍ଥଦ୍ୱାରା ଶ୍ରୀକୃଷ୍ଣ ଉକ୍ତ ତିନିବସ୍ତୁର ଚମତ୍କାରିତା କିରୂପଭାବରେ ଗ୍ରହଣ କରିଥିଲେ ତାହାହିଁ ପ୍ରକାଶ କରୁଅଛନ୍ତି । ୧୮୪।୧୮୬।୧୮୭ ।

ଶ୍ରୀରାଧାଙ୍କର ପ୍ରଣୟମହିମା ( ପ୍ରେମର ମାହାତ୍ମ୍ୟ ) କିରୂପ, ଯଦ୍ୱାରା ( ଯେ ପ୍ରେମଦ୍ୱାରା ) ସେ ( ଶ୍ରୀରାଧା ) ମୋର ( ଶ୍ରୀକୃଷ୍ଣଙ୍କର ) ଅଦ୍ଭୁତ ମଧୁରିମା ଆସ୍ୱାଦନ କରନ୍ତି, ସେ ମଧୁରିମା ଅବା କିରୂପ ଓ ଏହିପ୍ରକାର ଆସ୍ୱାଦନଜନିତ ତାହାଙ୍କର ( ଶ୍ରୀରାଧାଙ୍କର ) ଯେଉଁ ସୁଖ ଜାତ ହୁଏ ତାହା ଅବା କିରୂପ ଏହି ତିନିବିଷୟରେ ଲୋଭ ହେତୁ ତାହାଙ୍କର ( ଶ୍ରୀରାଧାଙ୍କର ) ଭାବଯୁକ୍ତ ହୋଇ ଶ୍ରୀଶଚୀଗର୍ଭରୂପ ସମୁଦ୍ରରୁ ହରିରୂପଚନ୍ଦ୍ର ( ଶ୍ରୀକୃଷ୍ଣଚୈତନ୍ୟ ) ଉଦୟ ହେଲେ ( ଅବତୀର୍ଣ୍ଣ ହେଲେ ) । [ ୪୬ଶ ଶ୍ଳୋକାର୍ଥ ]

ଶ୍ରୀମାନ୍ ଗ୍ରନ୍ଥକାର ଏଥିପୂର୍ବେ କହିଅଛନ୍ତି ଯେ ଏ ଶ୍ଳୋକବର୍ଣ୍ଣିତ ବିଷୟ ଶ୍ରୀକୃଷ୍ଣଙ୍କର ଅନ୍ତର୍ଗତଭାବ ଅର୍ଥାତ୍ ଗୋପନୀୟଭାବ ଅଟେ । ତାହା ଶ୍ରୀକୃଷ୍ଣଚୈତନ୍ୟଙ୍କର ଅନ୍ତରଙ୍ଗ ଶ୍ରୀସ୍ୱରୂପ ଗୋସ୍ୱାମିଙ୍କୁ ଜଣାଥିଲା ଏବଂ ତାହାଙ୍କଠାରୁ ଅପର କେହି କେହି ଶ୍ରୀମନ୍ ମହାପ୍ରଭୁଙ୍କର ଅନ୍ତରଙ୍ଗ ଭକ୍ତମାନେ ଜାଣିପାରିଥିଲେ । ବର୍ତ୍ତମାନ ଗ୍ରନ୍ଥକାର କହୁଅଛନ୍ତି ଯେ ଏ ପ୍ରକାର ଯେ ଗୁପ୍ତବିଷୟ ଅଥଚ ଶାସ୍ତ୍ରୀୟ ପ୍ରମାଣଦ୍ୱାରା ସିଦ୍ଧ ତାହା ବ୍ୟକ୍ତକରି ଉଚିତ ନୁହେଁ । କିନ୍ତୁ ତାହା ନ କଲେ ମଧ ଶ୍ରୀମନ୍ ମହାପ୍ରଭୁଙ୍କର ଅପର ଏକାନ୍ତ ଭକ୍ତମାନେ ଜାଣିପାରିବେନାହିଁ । ଏହିପରିଭାବରେ ଭାବିତ ହୋଇ ରସିକ ଭକ୍ତମାନଙ୍କ ବୁଝିବାକାରଣ ଏବଂ ଅଭକ୍ତମାନଙ୍କ ନ ବୁଝିବା କାରଣ ନିଗୂଢ଼ଭାବରେ ଅର୍ଥାତ୍ ଆଚ୍ଛାଦିତଭାବରେ ପ୍ରକାଶ କରୁଅଛନ୍ତି । ୧୮୮।୧୮୯ ।

ହୃଦୟେ ଧରୟେ ଯେ ଚୈତନ୍ୟ-ନିତ୍ୟାନନ୍ଦ ।
ଏ ସବ ସିଦ୍ଧାନ୍ତେ ସେ-ଇ ପାଇବେ ଆନନ୍ଦ ।୧୯୦।
ଏ ସବ ସିଦ୍ଧାନ୍ତ-ରସ ଆମ୍ରେର ପଲ୍ଲବ ।
ଭକ୍ତଗଣ-କୋକିଳେର ସର୍ବଦା ବଲ୍ଲଭ । ୧୯୧ ।
ଅଭକ୍ତ-ଉଷ୍ଟ୍ରେର ଇଥେ ନା ହୟ ପ୍ରବେଶ ।
ତବେ ଚିତ୍ତେ ହୟ ମୋର ଆନନ୍ଦ ବିଶେଷ ।୧୯୨।

ଯେ-ଲାଗି କହିତେ ଭୟ, ସେ ଯଦି ନା ଜାନେ ।
ଇହା ବଇ କିବା ସୁଖ ଆଛେ ତ୍ରିଭୁବନେ ।୧୯୩।
ଅତଏବ ଭକ୍ତଗଣେ କରି ନମସ୍କାର ।
ନିଃଶଙ୍କେ କହିୟେ, ତାର ହଉକ ଚମତ୍କାର ।୧୯୪।
କୃଷ୍ଣେର ବିଚାର ଏକ ରହିୟେ ଅନ୍ତରେ— ।
ପୂର୍ଣ୍ଣାନନ୍ଦ-ରସସ୍ୱରୂପ ସବେ କହେ ମୋରେ ।୧୯୫।

ରସିକଭକ୍ତସ୍ୟ ଲକ୍ଷଣଂ ବଦନ୍ ତସ୍ୟ ତଦ୍‌ବୋଧେ ହେତୁମାହ "ହୃଦୟେ" ଇତି । ଚୈତନ୍ୟନିତ୍ୟାନନ୍ଦଂ ଯୋ ହୃଦୟେ ଧରତି ଚୈତନ୍ୟନିତ୍ୟାନନ୍ଦଂ ଭଜତୀତ୍ୟର୍ଥଃ ସ ଏବ ରସିକଭକ୍ତଃ । ତଥା ତତ୍କାରଣପ୍ରଭାବହେତୁନୈବ ତସ୍ୟ ତଦ୍‌ବୋଧଃ ସ୍ୟାଦିତ୍ୟର୍ଥଃ । ୧୯୦ । ବି, ଚ,

ନନ୍ୱଭକ୍ତାନାଂ କଥଂ ତତ୍ର ନିଷେଧ ଇତ୍ୟତାହ "ଏ ସବ" ଇତି । ଆମ୍ରମୁକୁଳରସଃ କୋକିଳାନାମେବ ପ୍ରିୟଃ ନତୂଷ୍ଟ୍ରାଣାଂ ତଦ୍ୱତ୍ ବକ୍ଷ୍ୟମାଣଃ ସିଦ୍ଧାନ୍ତୋଽପି ରସିକଭକ୍ତାନାମେବ ପ୍ରିୟଃ ନତ୍ୱଭକ୍ତାନାମିତି ତତ୍ର ତନ୍ନିଷେଧଃ । ଅନ୍ୟେଦମପି ଜ୍ଞେୟଂ ପଣ୍ଡିତବାଦଭୟେନ ନ ତନ୍ନିଷେଧ ଅପିତୁ ତତ୍ର ସିଦ୍ଧାନ୍ତେ ବିରୁଦ୍ଧଭାବନୟା ଅପରାଧୋତ୍ପତ୍ତେଃ ଅଭକ୍ତାନାଂ ମହଦମଙ୍ଗଳଂ ସ୍ୟାଦିତସ୍ତନ୍ନିଷେଧଃ ନ ତୁ ବାଦଭୟେନ ଯତଃ ଗ୍ରନ୍ଥକୃତ୍ପାଦସ୍ୟପାଣ୍ଡିତ୍ୟେ ଗ୍ରନ୍ଥୋଽୟଂ ପ୍ରମାଣଂ ଦଦାତି ।୧୯୧।୧୯୨। ବି, ଚ,

ସିଦ୍ଧାନ୍ତେଽସ୍ମିନ୍ନଭକ୍ତାନାମପ୍ରବେଶେନ ଭବତଃ କଥମାନନ୍ଦ ଇତି ଚେତ୍ତତ୍ର ଯଦର୍ଥଂ ଭୟଂ ତଦଭାବେନୈବାନନ୍ଦ ଇତ୍ୟାହ "ଯେ ଲାଗି" ଇତି ।

ଅଭକ୍ତାନାମପ୍ରବେଶ ଏବ ଭୟଂ ତଦଭାବେନ ଆନନ୍ଦ ଇତ୍ୟର୍ଥଃ । ୧୯୩।୧୯୪ ବି, ଚ,

ଷଷ୍ଠଶ୍ଳୋକସ୍ୟ ସିଦ୍ଧାନ୍ତମାହ "କୃଷ୍ଣେର" ଇତ୍ୟାଦିଭିଃ । ତତ୍ତ୍ୱଜ୍ଞାଃ ମାଂ ପୂର୍ଣ୍ଣାନନ୍ଦସ୍ୱରୂପଂ ବଦନ୍ତି । ତଥା ଚୋକ୍ତଂ ଦଶମେ ବସୁଦେବସ୍ତବେ "କେବଲାନୁଭବାନନ୍ଦସ୍ୱରୂପଃ" ଟୀକା ଚ କେବଲ-ସ୍ୱାସାବନୁଭବସ୍ଯ ଆନନ୍ଦସ୍ୟ ସ୍ୱରୂପଂ ଯସ୍ୟ ସ ଇତ୍ୟେଷା । ୧୯୫ । ବି, ଚ,

ଗ୍ରନ୍ଥକାର କହୁଅଛନ୍ତି ଯେ ଯେଉଁମାନେ ରସିକଭକ୍ତ ଅର୍ଥାତ୍ ଏକାନ୍ତଭାବରେ ଶ୍ରୀକୃଷ୍ଣଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ଆଶ୍ରୟ କରିଅଛନ୍ତି ସେମାନେହିଁ କେବଳ ତାଙ୍କ କଥିତ ଆହ୍ଲାଦିତ ବ୍ୟାଖ୍ୟା ବୁଝି-ପାରିବେ । ତାଙ୍କ କଥିତ ପରବର୍ତ୍ତୀ ସିଦ୍ଧାନ୍ତପୂର୍ଣ୍ଣ ବର୍ଣ୍ଣନାଗୁଡ଼ିକ ତୁଳନାରେ ଆମ୍ରମୁକୁଳ ସଦୃଶ ଓ ତାହା କୋକିଳବତ୍ ଭକ୍ତମାନଙ୍କର ସର୍ବଦା ସୁଖଦାୟକ । ଉଷ୍ଟ୍ରବତ୍ ଅଭକ୍ତମାନେ ତାହାର ରସ ଗ୍ରହଣ କରିପାରିବେ ନାହିଁ । ଏହିରୂପ ଭାବନା କରି ଗ୍ରନ୍ଥକାର ଆନନ୍ଦ ପ୍ରକାଶ କରୁଅଛନ୍ତି । ଏହାର ଭାବ ଏହି ଯେ ଗ୍ରନ୍ଥକାର ଅଭକ୍ତମାନଙ୍କୁ ଏହା ପାଠ କରିବାକୁ ନିଷେଧ କରୁଅଛନ୍ତି । କାରଣ ସେମାନଙ୍କର ସିଦ୍ଧାନ୍ତର ବିରୁଦ୍ଧଭାବନାଦ୍ୱାରା ଅପରାଧର ଉତ୍ପତ୍ତି ହେବ । ୧୯୦।୧୯୧।୧୯୨ ।

ପୁନରାୟ ଗ୍ରନ୍ଥକାର କହୁଅଛନ୍ତି ଯେ ଯେଉଁ ଅଭକ୍ତମାନଙ୍କଠାରୁ ଗୋପନ କରିବା ସକାଶେ ସେ ଏ ବିଷୟ ଆହ୍ଲାଦିତଭାବରେ ବର୍ଣ୍ଣନ କରୁଅଛନ୍ତି ସେହି ଅଭକ୍ତମାନେ ଯଦି ଏ ବିଷୟ ଜାଣି ନ ପାରନ୍ତି ତାହା ହେଲେ ଏ ତ୍ରିଭୁବନ ମଧ୍ୟରେ ଆଉ ଅଧିକ ସୁଖର ବିଷୟ କଅଣ ହୋଇପାରେ । ଏହାପରେ ଭୟ ଶ୍ରୀମାନ୍ ଗ୍ରନ୍ଥକାର ମହାଶୟ ରସିକଭକ୍ତମାନଙ୍କୁ ନମସ୍କାରପୂର୍ବକ ନିଃଶଙ୍କରେ ସେହି ଗୂଢ଼ବିଷୟ ବର୍ଣ୍ଣନ କରୁଅଛନ୍ତି, ଯାହା ଆସ୍ୱାଦନ କରି ଭକ୍ତମାନେ ଚମତ୍କୃତ ହେବେ ।୧୯୩।୧୯୪।

ଶ୍ଳୋକୋକ୍ତ ତ୍ରିବିଧ ବିଷୟରେ ଶ୍ରୀକୃଷ୍ଣ କି ପ୍ରକାର ଭାବନା କରିଥିଲେ ତାହା ଗ୍ରନ୍ଥକାର ଦେଖାଉଅଛନ୍ତି । ଅର୍ଥାତ୍ ତାହାଙ୍କର ଗୂଢ଼ ଅନ୍ତର୍ଗତଭାବ ଗ୍ରନ୍ଥକାର ଦେଖାଉଅଛନ୍ତି । ୧୯୫ ।

ଆମା ହୈତେ ଆନନ୍ଦିତ ହୟ ତ୍ରିଭୁବନ ।
ଆମାକେ ଆନନ୍ଦ ଦିବେ, ଐଛେ କୋନ୍ ଜନ ? । ୧୯୬ ।
ଆମା ହୈତେ ଯାର ହୟ ଶତ ଶତ ଗୁଣ ।
ସେଇ ଜନ ଆହ୍ଲାଦିତେ ପାରେ ମୋର ମନ ।୧୯୭।
ଆମା ହୈତେ ଗୁଣୀ ବଡ଼ ଜଗତେ ଅସମ୍ଭବ ।
ଏକଲି ରାଧାତେ ତାହା କରି ଅନୁଭବ । ୧୯୮ ।
କୋଟି କାମ ଜିନି ରୂପ ଯଦ୍ୟପି ଆମାର ।
ଅସମୋର୍ଦ୍ଧମାଧୁର୍ଯ୍ୟ—ସାମ୍ୟ ନାହିଁ ଯାର । ୧୯୯ ।

ଆମା ହଇତେ ଇତି । ମଦାନନ୍ଦାଂଶେନୈବ ତ୍ରିଭୁବନମାନନ୍ଦୀ ଭବତି । ତଥାହି ଶ୍ରୁତିଃ "ଏତସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତୀତି । ଅତଃ କୋ ମାମାନନ୍ଦୟେତ୍ ଯତୋଽହମେବାନନ୍ଦସ୍ୱରୂପଃ ତଥା ମତ୍ତ ଏବ ତ୍ରିଭୁବନାନନ୍ଦଃ । ୧୯୬ । ବି, ଚ,

ଶତଶତ ଗୁଣ ଅସଂଖ୍ୟାଃ ଗୁଣାଃ । ତାହା ତେ ଗୁଣାଃ । ଶ୍ରୀରାଧାୟାଂ ଯେ ମଦଧିକଶତଶତଗୁଣାଃ ସନ୍ତି ତୈରେବ ସା ମାମାନନ୍ଦୟିତୁଂ ସମର୍ଥା ଇତ୍ୟନୁଭବାମୀତ୍ୟର୍ଥଃ । ୧୯୭।୧୯୮ । ବି, ଚ,

ଉକ୍ତାନୁଭବେ ହେତୁଂ ଦର୍ଶୟତି " କୋଟି " ଇତି । ଆମାର ମମ ଶ୍ରୀକୃଷ୍ଣସ୍ୟ । "ଅସମୋର୍ଦ୍ଧ" ଇତି । ନ ବିଦ୍ୟତେ ସମୋର୍ଦ୍ଧୌ ଯସ୍ୟ ଏବମ୍ଭୂତଂ ମାଧୁର୍ଯ୍ୟଂ ସୌନ୍ଦର୍ଯ୍ୟଂ ଯସ୍ୟାସ୍ତସ୍ୟା ରାଧାୟାଃ ସମ ଇତ୍ୟର୍ଥଃ । ମାଧୁର୍ଯ୍ୟ ଇତ୍ୟତ୍ର ମାଧୁର୍ଯ୍ୟା ଆକାରାନ୍ତତ୍ୱଂ ମନ୍ତବ୍ୟଂ ଯନ୍ମା ଭାଷାୟାଂ ନ ତନ୍ନିୟମଃ । ଅୟମର୍ଥଃ ଶ୍ରୀରାଧା ଅସମୋର୍ଦ୍ଧମାଧୁର୍ଯ୍ୟା ଯତଃ ଯସ୍ୟାଃ ଶ୍ରୀରାଧାୟାଃ ସମତା ଅଧିକତା ଚ ନାସ୍ତି । ଅତ୍ର କୋଟିକାମ ଇତ୍ୟନେନ ସ୍ୱୀୟରୂପସ୍ୟ କଥଞ୍ଚିତ୍ ସମତା ଅସ୍ତି କିନ୍ତୁ ଅସମୋର୍ଦ୍ଧମାଧୁର୍ଯ୍ୟତ୍ୱେନ ଶ୍ରୀରାଧାରୂପସ୍ୟ ସା ନାସ୍ତି ଇତି ତସ୍ୟାଃ ମଦଧିକମାଧୁର୍ଯ୍ୟତ୍ୱାତ୍ ତଦନୁଭବାମି ଲୋକୋ ହି ଗୁଣାଧିକାଦେବ ଆନନ୍ଦଂ ଲଭେଦିତ୍ୟତ୍ରବଃ "ତାତେ ଜାନି ମୋତେ ଆଛେ କୋନ ଏକରସ । ଆମାର ମୋହିନୀ ରାଧା ତାରେ କରେ ବଶ" । ଇତି ପରପଦ୍ୟୋକ୍ତନିଜରସସ୍ୟ ଅପୂର୍ବତାଂ ପ୍ରତିପାଦୟିତୁମେବ ସ୍ୱସ୍ମାତ୍ ଶ୍ରୀରାଧୋତ୍କର୍ଷବର୍ଣ୍ଣନମିତି ଜ୍ଞେୟଂ । ୧୯୯ । ବି, ଚ,

ଶ୍ରୀକୃଷ୍ଣ ଭାବିଲେ ଯେ ତତ୍ତ୍ୱଜ୍ଞ ବ୍ୟକ୍ତିମାନେ ମୋତେ ପୂର୍ଣ୍ଣାନନ୍ଦରସସ୍ୱରୂପ କହନ୍ତି । ମୋର ଅନନ୍ଦାଂଶଦ୍ୱାରା ତ୍ରିଭୁବନ ଆନନ୍ଦିତ ହୁଏ । ଏପରି ପୂର୍ଣ୍ଣାନନ୍ଦମୟ ଯେ ମୁଁ, ମୋତେ କିଏ ଆନନ୍ଦଦାନ କରିପାରେ ? ଯାହାର ମୋ ଅପେକ୍ଷା ଶତଶତଗୁଣ ଅଧିକ ଆନନ୍ଦ ଅଛି ସେ କେବଳ ମୋର ମନକୁ ଆନନ୍ଦିତ କରିପାରେ । ୧୯୬।୧୯୭ ।

ତ୍ରିଜଗତ ଯେତେବେଳେ ମୋର ଅନନ୍ଦାଂଶରେ ଆନନ୍ଦିତ ତେଣୁ ମୋ ଅପେକ୍ଷା ଆନନ୍ଦଗୁଣରେ ଅଧିକ ଜଗତରେ ସମ୍ଭବେ ନା । କେବଳ ମାତ୍ର ଶ୍ରୀରାଧାଙ୍କଠାରେ ମୋ ଅପେକ୍ଷା ଅନନ୍ଦର ଆଧିକ୍ୟ ମୁଁ ଅନୁଭବ କରୁଅଛି । ୧୯୮ ।

ଶ୍ରୀକୃଷ୍ଣ କି ପ୍ରକାରେ ତାହା ଅନୁଭବ କରିଥିଲେ ତାହା ଦେଖାଉଅଛନ୍ତି । ଶ୍ରୀକୃଷ୍ଣ ଭାବିଲେ, କୋଟି୨ କନ୍ଦର୍ପର ରୂପମାଧୁର୍ଯ୍ୟ ଅପେକ୍ଷା ମୋର ମାଧୁର୍ଯ୍ୟ ଅଧିକ କିନ୍ତୁ ଶ୍ରୀରାଧାଙ୍କର ରୂପମାଧୁର୍ଯ୍ୟ ଅସମୋର୍ଦ୍ଧ ଅର୍ଥାତ୍ ଯାହାର ସମାନ କି ଯାହାଠାରୁ ଉତ୍କୃଷ୍ଟ ଆଉ ନାହିଁ ଅର୍ଥାତ୍ ଅତୁଳନୀୟ ।

ଏଠାରେ କୋଟି୨ କନ୍ଦର୍ପର ମାଧୁର୍ଯ୍ୟ ସହିତ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର କିଞ୍ଚିତ୍ ତୁଳନା ହେଲା, କିନ୍ତୁ ଶ୍ରୀରାଧାଙ୍କର ମାଧୁର୍ଯ୍ୟ ଅସମୋର୍ଦ୍ଧ ହେତୁ ଉତ୍କୃଷ୍ଟ ଏହା ପ୍ରତିପାଦିତ ହେଲା, ତାହାର ତୁଳନା ନାହିଁ । ତେଣୁ ଶ୍ରୀରାଧାଙ୍କର ମାଧୁର୍ଯ୍ୟ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ଅପେକ୍ଷା ଅଧିକ ପ୍ରତିପାଦିତ ହେଲା । ୧୯୯ ।

ମୋର ରୂପେ ଆପ୍ୟାୟିତ ହୟ ତ୍ରିଭୁବନ ।
ରାଧାର ଦର୍ଶନେ ମୋର ଜୁଡ଼ାୟ ନୟନ ।୨୦୦।
ମୋର ବଂଶୀଗୀତେ ଆକର୍ଷୟେ ତ୍ରିଭୁବନ ।
ରାଧାର ବଚନେ ହରେ ଆମାର ଶ୍ରବଣ ।୨୦୧।
ଯଦ୍ୟପି ଆମାର ଗନ୍ଧେ ଜଗତ ସୁଗନ୍ଧ ।
ମୋର ଚିତ୍ତ-ପ୍ରାଣ ହରେ ରାଧା-ଅଙ୍ଗଗନ୍ଧ ।୨୦୨।
ଯଦ୍ୟପି ଆମାର ରସେ ଜଗତ-ସରସ ।
ରାଧାର ଅଧର-ରସ ଆମା କରେ ବଶ ।୨୦୩।
ଯଦ୍ୟପି ଆମାର ସ୍ପର୍ଶ କୋଟୀନ୍ଦୁ-ଶୀତଳ ।
ରାଧିକାର ସ୍ପର୍ଶେ ଆମା କରେ ସୁଶୀତଳ ।୨୦୪।
ଏଇମତ ଜଗତେର ସୁଖେ ଆମି ହେତୁ ।
ରାଧିକାର ରୂପଗୁଣ ଆମାର ଜୀବାତୁ ।୨୦୫।
ଏଇମତ ଅନୁଭବ ଆମାର ପ୍ରତୀତ ।
ବିଚାରି ଦେଖିୟେ ଯଦି,—ସବ ବିପରୀତ ।୨୦୬।
ରାଧାର ଦର୍ଶନେ ମୋର ଜୁଡ଼ାୟ ନୟାନ ।
ଆମାର ଦର୍ଶନେ ରାଧା ସୁଖେ ଅଗେୟାନ ।୨୦୭।

"କୃଷ୍ଣେର ବିଚାର ଏକ ରହୟେ ଅନ୍ତରେ" । ଇତ୍ୟାଦ୍ୟୁକ୍ତବାକ୍ୟେନ ଏତଦୁକ୍ତଂ ଭବତି ଶ୍ରୀକୃଷ୍ଣ ଏବ ଜଗଦାନନ୍ଦୈକହେତୁଃ ତସ୍ୟାନନ୍ଦୈକହେତୁଃ ଶ୍ରୀରାଧା ଇତ୍ୟେତତ୍ ବିଶଦରୂପେଣ ଦର୍ଶୟତି "ମୋର" ଇତ୍ୟାଦି ପଦ୍ୟଭିଃ । ଅତ୍ରେଦଂ ପରିପାଟୀ ପ୍ରଥମାର୍ଦ୍ଧପଦ୍ୟେ ଶ୍ରୀକୃଷ୍ଣରୂପାଦି ପଞ୍ଚଭିର୍ବିଷୟୈଃ ଜଗତାଂ ଚକ୍ଷୁରାଦି ପଞ୍ଚେନ୍ଦ୍ରିୟାନନ୍ଦବର୍ଣ୍ଣନଂ । ଅପରାର୍ଦ୍ଧେ ଶ୍ରୀରାଧାୟାଃ ରୂପାଦିପଞ୍ଚଭିଃବିଷୟୈଃ ଶ୍ରୀକୃଷ୍ଣସ୍ୟ ଚକ୍ଷୁରାଦି ପଞ୍ଚେନ୍ଦ୍ରିୟାନନ୍ଦବର୍ଣ୍ଣନଂ । ତତ୍ର ରୂପାଚ୍ଚକ୍ଷୁରିନ୍ଦ୍ରିୟାନନ୍ଦମାହ "ମୋର" ଇତି । ମମ ରୂପେଣ ତ୍ରିଭୁବନଚକ୍ଷୁରିନ୍ଦ୍ରିୟାନନ୍ଦଃ ରାଧାରୂପେଣ ଚ ମମ ଚକ୍ଷୁରିନ୍ଦ୍ରିୟାନନ୍ଦଃ ଏବଂ ଶବ୍ଦଗନ୍ଧରସସ୍ପର୍ଶୈଃ ଚତୁର୍ଭିର୍ବିଷୟୈଃ କର୍ଣ୍ଣନାସାଜିହ୍ୱାତ୍ୱଚାଂ ଚତୁର୍ଣ୍ଣାମିନ୍ଦ୍ରିୟାଣାମାନନ୍ଦବର୍ଣ୍ଣନଂ କ୍ରମେଣ ପରପରପଦ୍ୟଚତୁଷ୍ଟୟେ ଦ୍ରଷ୍ଟବ୍ୟଂ । ୨୦୦।୨୦୪ । ବି, ଚ,

"ମୋର ରୂପେ" ଇତ୍ୟାଦି ବାକ୍ୟମୁପସଂହରତି "ଏଇମତ" ଇତି । "ମୋର ରୂପେ" ଇତ୍ୟାଦି ପ୍ରକାରେଣ ଇତ୍ୟର୍ଥଃ । ରୂପଗୁଣରୂପାଦିପଞ୍ଚବିଷୟାଃ ଇତି । ୨୦୫ । ବି, ଚ,

ଶ୍ରୀରାଧାୟାଃ ରୂପାଦିପଞ୍ଚଗୁଣୈଃ ଶ୍ରୀକୃଷ୍ଣସ୍ୟ ଚକ୍ଷୁରାଦି ପଞ୍ଚେନ୍ଦ୍ରିୟସୁଖମୁକ୍ତ୍ୱା ଶ୍ରୀକୃଷ୍ଣରୂପାଦି ପଞ୍ଚଗୁଣୈଃ ଶ୍ରୀରାଧାୟାଶ୍ଚକ୍ଷୁରାଦି ପଞ୍ଚେନ୍ଦ୍ରିୟସୁଖଂ ସ୍ୱସୁଖାଦାଧିକ୍ୟେନ ବକ୍ତୁମାହ "ଏଇ ମତ ଅନୁଭବ" ଇତି । ଏଇମତ ଉକ୍ତ ପ୍ରକାରେଣ । ମମ ରୂପାଦିକଂ ଜଗତାଂ ସୁଖୈକହେତୁଃ ମମ ତୁ ସୁଖୈକହେତୁ ଶ୍ରୀରାଧାରୂପାଦିକମିତ୍ୟର୍ଥଃ । କିନ୍ତୁ ତଦ୍ୱିଚାରେ କୃତେ ତତ୍ସର୍ବ୍ବଂ ବିପରୀତଂ । ଶ୍ରୀରାଧାରୂପାଦିଭିଃ ମମ ଯତ୍ ଚକ୍ଷୁରାଦିସୁଖଂ ତସ୍ମାଦଧିକଂ ମମ ରୂପାଦିଭିଃ ଶ୍ରୀରାଧାଚକ୍ଷୁରାଦିସୁଖମିତ୍ୟର୍ଥଃ । "ଆମା ହଇତେ ରାଧା ପାୟ ଯେ ଜାତୀୟ ସୁଖ" । ଇତି । ପରପଦ୍ୟୋକ୍ତସ୍ୟ ଶ୍ରୀରାଧାସୁଖସ୍ୟ ଅପୂର୍ବ୍ବତାଂ ଦର୍ଶୟିତୁଂ ଅତ୍ର ତଦ୍ୱର୍ଣ୍ଣନଂ । ୨୦୬ । ବି, ଚ,

ତଦେବ ବିଶଦୟନ୍ନାଦୌ ଶ୍ରୀକୃଷ୍ଣରୂପାତ୍ ଶ୍ରୀରାଧାୟାଃ ଚକ୍ଷୁରିନ୍ଦ୍ରିୟସୁଖମାହ "ରାଧାର" ଇତି । ଅତ୍ର ସ୍ୱସୁଖାଦଧିକଂ ଶ୍ରୀରାଧାସୁଖମିତି ଦର୍ଶୟିତୁଂ "ରାଧାର ଦର୍ଶନେ ଇତ୍ୟେତତ୍ ପୂର୍ବ୍ବୋକ୍ତ ପଦ୍ୟାର୍ଦ୍ଧମନୂଦିତଂ । ଏବଂ ଅର୍ଥସଙ୍ଗତ୍ୟର୍ଥଂ ପରସ୍ପର ବେଣୁଗୀତେ ଇତ୍ୟାଦି ଚତୁର୍ବ୍ବାକ୍ୟେ ପୂର୍ବ୍ବୋକ୍ତଂ "ରାଧାର ବଚନେ ମୋର" ଇତ୍ୟାଦି ପରପର ଚତୁଃପଦ୍ୟାର୍ଦ୍ଧମନୁସର୍ତ୍ତବ୍ୟଂ । ଅତ୍ରାୟମର୍ଥଃ ଶ୍ରୀରାଧାରୂପଦର୍ଶନେ ମମ କେବଲଂ ନୟନସୁଖଂ ମମ ରୂପଦର୍ଶନେ ତୁ ସୁଖେନ ଶ୍ରୀରାଧାୟା ଆତ୍ମାନମିତି ସ୍ୱସ୍ମାଦଧିକ ସୁଖତ୍ୱେନ ତଦ୍ୱିପରୀତଂ ଏବଂ ପରତ୍ରାପି ଜ୍ଞେୟଂ । ୨୦୭ । ବି, ଚ,

ଶ୍ରୀରାଧାଙ୍କ ମାଧୁର୍ଯ୍ୟ ଶ୍ରୀକୃଷ୍ଣଙ୍କ ମାଧୁର୍ଯ୍ୟ ଅପେକ୍ଷା କି ପ୍ରକାର ଅଧିକ ତାହା ବିଚାର କରୁଅଛନ୍ତି । ଏହି ପଦ୍ୟାରମାନଙ୍କଦ୍ୱାରା ଜଗତ୍ ସମ୍ବନ୍ଧରେ ପଞ୍ଚେନ୍ଦ୍ରିୟଦ୍ୱାରା ଶ୍ରୀକୃଷ୍ଣ ଅନୁଭବ ଏବଂ ଶ୍ରୀକୃଷ୍ଣଙ୍କର ପଞ୍ଚେନ୍ଦ୍ରିୟଦ୍ୱାରା ଶ୍ରୀରାଧା ଅନୁଭବ ବ୍ୟକ୍ତ ହୋଇଅଛି । ଶ୍ରୀକୃଷ୍ଣ ଭାବୁଅଛନ୍ତି, ଯଦ୍ୟପି-

| | |
|---|---|
| ପରସ୍ପରବେଣୁଗୀତେ ହରୟେ ଚେତନ । | ' କୃଷ୍ଣ ଆଲିଙ୍ଗନ ପାଇନୁ, ଜନମ ସଫଲେ । ' |
| ମୋର ଭ୍ରମେ ତମାଲେରେ କରେ ଆଲିଙ୍ଗନ ।୨୦୮। | ସେଇ ସୁଖେ ମଗ୍ନ ରହେ ବୃକ୍ଷ କରି କୋଲେ ।୨୦୯। |

ଶ୍ରୀକୃଷ୍ଣ ଶବ୍ଦଗୁଣାତ୍ ଶ୍ରୀରାଧାୟାଃ କର୍ଣ୍ଣେନ୍ଦ୍ରିୟସୁଖମାହ "ପରସ୍ପର" ଇତି । ଅବାପି "ରାଧାର ବଚନେ ମୋର" ଇତି ପୂର୍ବୋକ୍ତାର୍ଦ୍ଧପଦ୍ୟେନ ସହାସ୍ୟମର୍ଥଃ ଶ୍ରୀରାଧାୟାଃ ସାକ୍ଷାତ୍ ବଚନଶବ୍ଦେନ ମମ ଶ୍ରୀକୃଷ୍ଣସ୍ୟ ଶ୍ରବଣେନ୍ଦ୍ରିୟମାତ୍ରସ୍ୟୈବ ହରଣଂ । କିନ୍ତୁ ଶ୍ରୀକୃଷ୍ଣସ୍ୟ ବେଣୁଶବ୍ଦ ଏବମେବମିତି ପରସ୍ପରଂ କୈଶ୍ଚିଦ୍ ଗୀତେ କଥ୍ୟତେ ଯତି ବା ତଚ୍ଛବ୍ଦୋଽନୁକ୍ରିୟତେ ଯତି ମୋର ଭ୍ରମେ ତନ୍ନ ମଦୀୟ ବେଣୁଶବ୍ଦ ବୋଧେନ ଶ୍ରୀରାଧାୟାଃ ଚେତନହରଣଂ ଭବତି । ନ ଜାନେ ମମ ସାକ୍ଷାତ୍‌ଶବ୍ଦଶ୍ରବଣେ ତସ୍ୟାଃ କିଂ ଭବେଦିତିଭାବଃ । ତମେବ ହରଣଂ ଦର୍ଶୟତି "ମୋର" ଇତି ଦ୍ୱାଭ୍ୟାଂ । ତମାଲାଲିଙ୍ଗନାଦିକେନୈବ ଚେତନହରଣଂ ଲକ୍ଷ୍ୟତେ ଇତ୍ୟର୍ଥଃ । ନ କେବଲମାଲିଙ୍ଗନଂ ତତ୍ରାପି ମଦାଲିଙ୍ଗନସୁଖମନୁଭବତି ଅତଃ ସେଇ ସୁଖେ ଇତି । ୨୦୮।୨୦୯ । ବି, ଚ,

ମୋର ରୂପରେ ତ୍ରିଭୁବନ ଆନନ୍ଦିତ ହୁଏ, ତଥାପି ଶ୍ରୀରାଧାଙ୍କୁ ଦର୍ଶନ କରି ମୋର ଚକ୍ଷୁ ଆନନ୍ଦ ଲାଭ କରେ । ମୋର ବଂଶୀଧ୍ୱନିର ମାଧୁର୍ଯ୍ୟ ତ୍ରିଭୁବନକୁ ଆକର୍ଷଣ କରେ କିନ୍ତୁ ଶ୍ରୀରାଧାଙ୍କର କଥା ମୋର ଶ୍ରବଣକୁ ଆନନ୍ଦିତ କରାଏ । ଯଦ୍ୟପି ମୋର ଅଙ୍ଗଗନ୍ଧାଂଶଦ୍ୱାରା ଜଗତ୍ ସୁଗନ୍ଧିତ ତଥାପି ଶ୍ରୀରାଧାଙ୍କର ଅଙ୍ଗଗନ୍ଧ ମୋର ଘ୍ରାଣେନ୍ଦ୍ରିୟକୁ ଆନନ୍ଦିତ କରେ, ଯଦ୍ୟପି ମୋର ରସାଂଶଦ୍ୱାରା ଜଗତ୍ ସରସ ହୋଇଅଛି ତଥାପି ଶ୍ରୀରାଧାଙ୍କର ଅଧରରସ ମୋତେ ତାହାର ଅଧୀନ କରେ । ଯଦ୍ୟପି ମୋର ଅଙ୍ଗସ୍ପର୍ଶ କୋଟି୨ ଚନ୍ଦ୍ରର ଶୀତଳତା ଅପେକ୍ଷା ଅଧିକ ତଥାପି ଶ୍ରୀରାଧାଙ୍କର ଅଙ୍ଗସ୍ପର୍ଶଦ୍ୱାରା ମୋର ଦେହ ସୁଶୀତଳ ହୁଏ । ୨୦୦।୨୦୪ ।

ପୂର୍ବୋକ୍ତ ପ୍ରକାରରେ ବିଚାରଦ୍ୱାରା ଦେଖାଯାଏ ଯେ ମୋର ରୂପଗୁଣଦ୍ୱାରା ମୁଁ ଜଗତର ଚକ୍ଷୁଆଦି ପଞ୍ଚଇନ୍ଦ୍ରିୟର ସୁଖର ନିଦାନ ଅଟେ ଏବଂ ଶ୍ରୀରାଧା ନିଜର ରୂପଗୁଣଦ୍ୱାରା ମୋର ଚକ୍ଷୁଆଦି ପଞ୍ଚେନ୍ଦ୍ରିୟର ଜୀବନ ଲାଭ ତୁଲ୍ୟ ଆନନ୍ଦ ପ୍ରଦାୟିନୀ । ୨୦୫ ।

"ଏଇମତ ଅନୁଭବ" ଅର୍ଥାତ୍ ମୋର ରୂପଗୁଣ ଜଗତର ସୁଖର ହେତୁ ଏବଂ ଶ୍ରୀରାଧାଙ୍କର ରୂପଗୁଣ ମୋର ସୁଖର ହେତୁ ପୂର୍ବୋକ୍ତ ବିଚାରଦ୍ୱାରା ଏହାହିଁ ମୋର ଅନୁଭୂତ । କିନ୍ତୁ ଶ୍ରୀରାଧାଙ୍କ ଦିଗରୁ ବିଚାର କରି ଦେଖିଲେ, ସମସ୍ତ ବିପରୀତ ଜଣାଯାଏ । ଅର୍ଥାତ୍ ସେ ମୋଠାରୁ ଅଧିକ ସୁଖ ଅନୁଭବ କରନ୍ତି । ୨୦୬ ।

ଶ୍ରୀରାଧାଙ୍କୁ ଦର୍ଶନ କଲେ ମୋର ନୟନର ଆନନ୍ଦ ଜାତ ହୁଏ, କିନ୍ତୁ ମୋତେ ଦର୍ଶନ କରି ଶ୍ରୀରାଧା ସୁଖରେ ଅଜ୍ଞାନ ହୋଇପଡ଼ନ୍ତି । ଅର୍ଥାତ୍ ଶ୍ରୀରାଧାଙ୍କର ଯେ କେବଳ ନୟନସୁଖ ହୁଏ ତାହା ନୁହେଁ । ତାହାଙ୍କର ଏତେ ଆନନ୍ଦ ହୁଏ ଯେ ତାହାର ଇୟତ୍ତା କରିପାରାଯାଏନାହିଁ । ୨୦୭ ।

ଶ୍ରୀରାଧାଙ୍କର ସାକ୍ଷାତ୍ ବଚନ ମୋର ଶ୍ରବଣର ସୁଖଦାନ କରେ, କିନ୍ତୁ ଯଦି କେହି୨ ମୋର ବଂଶୀଗୀତର ବିଷୟ ପରସ୍ପର ଆଲୋଚନାପୂର୍ବକ ବଂଶୀଗୀତ ଏହିରୂପ ବୋଲି ଗାନ କରି ଶୁଣାନ୍ତି କିମ୍ବା କେହି ଅନୁକରଣ କରନ୍ତି ତାହା ଶୁଣି ତାହା ମୋର ବଂଶୀରବ ଏହିପ୍ରକାର ଅନୁଭବରେ ଶ୍ରୀରାଧା ଅଚେତନ ହୁଅନ୍ତି । ମୋର ସାକ୍ଷାତ୍‌ବଚନ ଶୁଣିଲେ ତାଙ୍କର ବା କଅଣ ନ ହୁଏ ? ବଂଶୀ ଅନୁକରଣ ଶବ୍ଦ ଶୁଣି ବିଭ୍ରମଅବସ୍ଥାରେ ସେ ମୋତେ ମନେ କରି ତମାଲଗଛକୁ ଆଲିଙ୍ଗନ କରନ୍ତି ଏବଂ ଆଲିଙ୍ଗନ କରି ମନେ କରନ୍ତି ଯେ ମୁଁ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ଜନ୍ମ ସଫଳ କଲି । ଏହି ସୁଖର ଅନୁଭବରେ ବୃକ୍ଷକୁ ଆଲିଙ୍ଗନ କରି ରହିଥାଆନ୍ତି । ୨୦୮।୨୦୯ ।

ଅନୁକୂଳ ବାତେ ଯଦି ପାୟ ମୋର ଗନ୍ଧ ।
ଉଡ଼ିଯା ପଡ଼ୟେ ଚାହେ, ପ୍ରେମେ ହୟାଁ ଅନ୍ଧ ।୨୧୦।
ତାମ୍ବୂଲଚର୍ବ୍ଵିତେ ଯବେ କରେ ଆସ୍ଵାଦନେ ।
ଆନନ୍ଦ-ସମୁଦ୍ରେ ମଗ୍ନ—କିଛୁଇ ନା ଜାନେ ।୨୧୧।

ଆମାର ସଙ୍ଗମେ ରାଧା ପାୟ ଯେ ଆନନ୍ଦ ।
ଶତ ମୁଖେ କହି ଯଦି, ନାହିଁ ପାଇ ଅନ୍ତ ।୨୧୨।
ଲୀଲା-ଅନ୍ତେ ସୁଖେ ଇହାର ଯେ ଅଙ୍ଗମାଧୁରୀ ।
ତାହା ଦେଖି ସୁଖେ ଆମି ଆପନା ପାସରି ।୨୧୩।

ଶ୍ରୀକୃଷ୍ଣଗନ୍ଧଗୁଣାତ୍ ଶ୍ରୀରାଧାୟାଃ ନାସିକେନ୍ଦ୍ରିୟସୁଖମାହ "ଅନୁକୂଳ" ଇତି । ଅତ୍ର "ମୋର ଚିତ୍ତ ପ୍ରାଣ ହରେ" ଇତି ପୂର୍ବୋକ୍ତାର୍ଦ୍ଧପଦ୍ୟେନ ସହାସ୍ୟମର୍ଥଃ ଶ୍ରୀରାଧାୟାଃ ସାକ୍ଷାଦଙ୍ଗଗନ୍ଧଃ ମମ କେବଲଂ ଚିତ୍ତପ୍ରାଣଂ ହରତି ସଙ୍ଗଦୈବ ତଦ୍‌ଗନ୍ଧମିଚ୍ଛାମୀତ୍ୟର୍ଥଃ । କିନ୍ତୁ ଦୂରାତ୍ ଅନୁକୂଳବାତପ୍ରାପ୍ତୋଽପି ମଦ୍‌ଗନ୍ଧଃ ତସ୍ୟାଃ ଚିତ୍ତପ୍ରାଣଂ ହରତି ତଥା ତଦ୍‌ଗନ୍ଧାନନ୍ଦେନ ସା ଅନ୍ଧୀଭବତି ବହିର୍ଜ୍ଞାନଶୂନ୍ୟା ଭବତୀତ୍ୟର୍ଥଃ ତେନୈବ ଚ ମନ୍ନିକଟଂ ଗନ୍ତୁମିଚ୍ଛତି । ନ ଜାନେ ମମ ସାକ୍ଷାଦ୍‌ଗନ୍ଧେନ ବା ତସ୍ୟାଃ କିଂ ଭବେଦିତିଭାବଃ । ୨୧୦ । ବି, ଚ,

ଶ୍ରୀକୃଷ୍ଣରସଗୁଣାତ୍ ଶ୍ରୀରାଧାୟାଃ ରସନେନ୍ଦ୍ରିୟସୁଖମାହ "ତାମ୍ବୂଲ" ଇତି । ଅତ୍ର "ରାଧାର ଅଧରରସେ" ଇତି ପୂର୍ବୋକ୍ତାର୍ଦ୍ଧପଦ୍ୟେନ ସହାସ୍ୟମର୍ଥଃ ଶ୍ରୀରାଧାୟାଃ ସାକ୍ଷାଦଧରରସଃ ମାଂ କେବଲଂ ବଶୀକରୋତି ତଦାସକ୍ତୋ ଭବାମୀତ୍ୟର୍ଥଃ କିନ୍ତୁ ଶ୍ରୀରାଧା ମମ ଚର୍ବ୍ଵିତତାମ୍ବୂଲମାତ୍ରାସ୍ଵାଦନେନ ସୁଖସମୁଦ୍ରେ ମଗ୍ନୀଭୂତ୍ଵା ଅନ୍ୟତ୍ର ରସାଦିକଂ କିମପି ନ ଜାନାତି । ନ ଜାନେ ମମ ସାକ୍ଷାଦଧରରସେଣ ବା ତସ୍ୟାଃ କିଂ ଭବେଦିତିଭାବଃ । ୨୧୧ । ବି, ଚ,

ଶ୍ରୀକୃଷ୍ଣସ୍ପର୍ଶଗୁଣାତ୍ ଶ୍ରୀରାଧାୟାଃ ତ୍ଵଗିନ୍ଦ୍ରିୟସୁଖମାହ "ଆମାର" ଇତି । ଅତ୍ର "ରାଧା ଅଙ୍ଗସ୍ପର୍ଶେ ଆମି" ଇତି ପୂର୍ବୋକ୍ତାର୍ଦ୍ଧପଦ୍ୟେନ ସହାସ୍ୟମର୍ଥଃ ଶ୍ରୀରାଧାଙ୍ଗସ୍ପର୍ଶେଣ କେବଲମହଂ ସୁଶୀତଲୋ ଭବାମି । କିନ୍ତୁ ମମାଙ୍ଗସ୍ପର୍ଶେଣ ଶ୍ରୀରାଧାୟା ଅନନ୍ତାନନ୍ଦୋ ଭବତୀତ୍ୟର୍ଥଃ । ୨୧୨ । ବି, ଚ,

"ଆମାର ଦର୍ଶନେ ରାଧା" ଇତ୍ୟାଦି ପଦ୍ୟେନ ମଦୀୟରୂପାଦି ପଞ୍ଚଗୁଣେଭ୍ୟଃ ଶ୍ରୀରାଧାୟାଃ ଚକ୍ଷୁରାଦି ପଞ୍ଚେନ୍ଦ୍ରିୟାଣାଂ ଯତ୍ର ମତ୍ସୁଖାଦଧିକଂ ସୁଖଂ ଭବତି ତତ୍ କଥଞ୍ଚିତ୍ କଞ୍ଚିତ୍ ବର୍ଣ୍ଣିତଂ କିନ୍ତୁ ସମ୍ଭୋଗେ ଯତ୍ର ମତ୍ସୁଖାଦଧିକଂ ତସ୍ୟାଃ ସୁଖଂ ଭବତି ତତ୍ ବର୍ଣ୍ଣୟିତୁଂ ନ ଶକ୍ନୋମୀତ୍ୟାଶୟେନାହ "ଲୀଲା" ଇତି । ଲୀଲାଅନ୍ତେ ସମ୍ଭୋଗାନ୍ତେ । ସମ୍ଭୋଗରସସୁଖଜନତାଧିର୍ଯ୍ୟଂ ତଦଙ୍ଗମାଧୁର୍ଯ୍ୟଂ ଦୃଷ୍ଟ୍ଵୈବ ସୁଖେନାହମାତ୍ମବିସ୍ମୃତୋଭବାମି । ଆତ୍ମବିସ୍ମୃତତ୍ଵେନୈବ ତନ୍ମାଧୁର୍ଯ୍ୟଂ ବର୍ଣ୍ଣୟିତୁଂ ନ ଶକ୍ନୋମୀତ୍ୟର୍ଥଃ । ସମ୍ଭୋଗରସସୁଖଜନତାଙ୍ଗମାଧୁର୍ଯ୍ୟଂ ବର୍ଣ୍ଣୟିତୁଂ ଯଦି ନ ଶକ୍ନୋମି ତଦା ତତ୍କାରଣଭୂତଂ ସମ୍ଭୋଗରସସୁଖଂ କଥଂ ବର୍ଣ୍ଣୟାମୀତିଭାବଃ । ଅତ ବର୍ଣ୍ଣନାଶକ୍ୟତ୍ଵେନ ତଥା ମତ୍ସୁଖସ୍ୟ ତତ୍ସୁଖଜନକତ୍ଵେନ ଚ ସମ୍ଭୋଗେଽପି ମତ୍ସୁଖାଦଧିକଂ ତସ୍ୟାଃ ସୁଖଂ ଜ୍ଞେୟଂ । ୨୧୩ । ବି, ଚ,

ଶ୍ରୀରାଧାଙ୍କ ସାକ୍ଷାତ୍ ଅଙ୍ଗଗନ୍ଧଦ୍ଵାରା ମୋର କେବଳ ଘ୍ରାଣେନ୍ଦ୍ରିୟର ସୁଖ ହୁଏ, କିନ୍ତୁ ଯଦି ଅନୁକୂଳ ପବନଦ୍ଵାରା ଶ୍ରୀରାଧା ଦୂରରୁ ମୋର ଅଙ୍ଗଗନ୍ଧ ପାଆନ୍ତି ତଦ୍ଦ୍ଵାରା ସେ ଅନ୍ଧ ହୋଇପଡ଼ନ୍ତି ଅର୍ଥାତ୍ ବହିର୍ଜ୍ଞାନଶୂନ୍ୟ ହୋଇ ମୋ ପାଖକୁ ଯେପରି ଉଡ଼ିଯିବେ ଏରୂପଭାବ ଲାଭ କରନ୍ତି । ନ ଜାଣେ ମୋର ସାକ୍ଷାତ୍ ଅଙ୍ଗଗନ୍ଧଦ୍ଵାରା ତାଙ୍କର କଅଣ ନ ହୁଏ । ୨୧୦ ।

ଶ୍ରୀରାଧାଙ୍କର ଅଧରରସରେ ମୁଁ ବଶୀଭୂତ ହୋଇ ସେହି ରସଲାଭ ଇଚ୍ଛା କରେଁ । କିନ୍ତୁ ଶ୍ରୀରାଧା ମୋର ଚର୍ବ୍ଵିତ ତାମ୍ବୂଲମାତ୍ର ଆସ୍ଵାଦନ କରି ଆନନ୍ଦସାଗରରେ ନିମଗ୍ନ ହୁଅନ୍ତି । ଅର୍ଥାତ୍ ଏପରି ଆନନ୍ଦଲାଭ କରନ୍ତି ଯେ ଚର୍ବ୍ଵିତ ତାମ୍ବୂଲ ବ୍ୟତୀତ ଯେ ଅନ୍ୟ କିଛି ରସ ଅଛି ତାହା ସେ ଜାଣିପାରନ୍ତିନାହିଁ । ନ ଜାଣେ ମୋର ସାକ୍ଷାତ୍ ଅଧରରସରେ ତାଙ୍କର କି ସୁଖ ନ ହୁଏ । ୨୧୧ ।

ଦୋହାଁର ଯେ ସମ ରସ—ଭରତମୁନି ମାନେ । | ଅନ୍ୟୋଽନ୍ୟସଙ୍ଗମେ ଆମି ଯତ ସୁଖ ପାଇ ।
ଆମାର ବ୍ରଜେର ରସ, ସେହୋ ନାହିଁ ଜାନେ ।୨୧୪। | ତାହା ହୈତେ ରାଧା-ସୁଖ ଶତ ଅଧିକାଇ ।୨୧୫।

ଉକ୍ତବାକ୍ୟଂ ଦ୍ରଢ଼ୟିତୁମାହ "ଦୋହାଁର" ଇତି । ଅୟମର୍ଥଃ ସମ୍ଭୋଗରସସୁଖଂ ନାୟକ-ନାୟିକୟୋରୁଭୟୋଃ ସମାନମିତି ଭରତମୁନିନା ଉକ୍ତଂ ତତ୍ତୁ କଥଂ ସ୍ୱସୁଖାଦଧିକଂ ଶ୍ରୀରାଧାୟାଃ ତତ୍ସୁଖମୁଚ୍ୟତେ ଇତ୍ୟତ୍ରାହ "ଆମାର" ଇତି । ବ୍ରଜସମ୍ଭୋଗରସସୁଖାନଭିଜ୍ଞେନୈବ ଭରତେନ ତଥୋକ୍ତମିତ୍ୟର୍ଥଃ । ଲୌକିକସମ୍ଭୋଗରସସୁଖଂ ନାୟକନାୟିକୟୋଃ ସମାନଂ ନ ତୁ ବ୍ରଜରସସୁଖମିତ୍ୟବଧୁଷା ଭରତେନ ତଥୋକ୍ତମିତି ଭାବଃ । ୨୧୪ । ଚ, ତ,

ଉକ୍ତ ବ୍ରଜରସସୁଖଂ ଦର୍ଶୟତି "ଅନ୍ୟୋଽନ୍ୟ" ଇତି । ଶ୍ରୀରାଧିକାୟାଶ୍ଚ ଇତ୍ୟନ୍ୟୋଽନ୍ୟୟୋଃ ସଙ୍ଗମେଽହଂ ଯଦ୍ଯଦ୍ରସସୁଖଂ ପ୍ରାପ୍ନୋମି ତସ୍ମାଚ୍ଛତଗୁଣମଧିକଂ ରାଧାୟାଃ ଭବତୀତ୍ୟର୍ଥଂ । ୨୧୫ । ଚ, ତ,

ଶ୍ରୀରାଧାଙ୍କର ଅଙ୍ଗସ୍ପର୍ଶରେ ମୁଁ ସୁଶୀତଳ ହୁଏଁ । କିନ୍ତୁ ମୋର ଅଙ୍ଗସ୍ପର୍ଶରେ ଶ୍ରୀରାଧାଙ୍କର ଏପରି ଆନନ୍ଦ ହୁଏ ଯେ ତାହା ଶତଶତ ମୁଖରେ ଏକସମୟରେ କହିଲେ ସୁଦ୍ଧା କହି ଶେଷ କରିହେବ ନାହିଁ । ଅର୍ଥାତ୍ ଶ୍ରୀରାଧାଙ୍କର ଅନନ୍ତ ଆନନ୍ଦ ଜାତ ହୁଏ । ୨୧୨ ।

ପୂର୍ବପୟାରମାନଙ୍କରେ ଦେଖାଗଲା ଯେ ଶ୍ରୀରାଧାଙ୍କର ରୂପଗୁଣାଦି ଶ୍ରୀକୃଷ୍ଣ ପଞ୍ଚେନ୍ଦ୍ରିୟଦ୍ୱାରା ଆସ୍ୱାଦନ କରି ଯେ ପ୍ରକାର ସୁଖଅନୁଭବ କରନ୍ତି ଶ୍ରୀକୃଷ୍ଣଙ୍କର ରୂପଗୁଣାଦି ପଞ୍ଚେନ୍ଦ୍ରିୟଦ୍ୱାରା ଆସ୍ୱାଦନ କରି ଶ୍ରୀରାଧା ଅଧିକତର ସୁଖଅନୁଭବ କରନ୍ତି । ସେହି ଅଧିକତର ସୁଖର ବିଷୟ ମୁଁ ( ଶ୍ରୀକୃଷ୍ଣ ) କଥଞ୍ଚିତ୍ ବର୍ଣ୍ଣନ କରିପାରିଲି, କିନ୍ତୁ ଲୀଳା ଅନ୍ତେ ( ସମ୍ଭୋଗାନ୍ତେ ) ସମ୍ଭୋଗରସସୁଖଜନିତ ତାହାଙ୍କର ( ଶ୍ରୀରାଧାଙ୍କର ) ଯେ ପ୍ରକାର ଆଶ୍ଚର୍ଯ୍ୟଜନକ ଅଙ୍ଗମାଧୁର୍ଯ୍ୟ ତାହା ଦେଖି ମୁଁ ସୁଖରେ ଆତ୍ମହରା ହୁଏଁ । ତେଣୁ ସେ ମାଧୁର୍ଯ୍ୟବର୍ଣ୍ଣନା କରିବାକୁ ମୁଁ ଅଶକ୍ତ । ଏପରିସ୍ଥଳେ ସେ ମାଧୁର୍ଯ୍ୟର ଜନକ ଯେ ତାହାଙ୍କର ସମ୍ଭୋଗରସସୁଖ ତାହା ଯେ ବର୍ଣ୍ଣନାର ଅତୀତ ଏହା କହିବା ବାହୁଲ୍ୟମାତ୍ର । ଏଣୁ ଏ ପ୍ରକାର ଅବର୍ଣ୍ଣନୀୟ ଶ୍ରୀରାଧାଙ୍କର ସୁଖ ମୋର ସୁଖର କାରଣ ହେତୁ ସମ୍ଭୋଗରେ ସୁଦ୍ଧା ମୋସୁଖ ଅପେକ୍ଷା ଶ୍ରୀରାଧାଙ୍କର ସୁଖ ଅଧିକ । ୨୧୩ ।

ଉପରୋକ୍ତ ଭାବ ଦୃଢ଼କରି ଜଣାଇବା ସକାଶେ ଶ୍ରୀକୃଷ୍ଣ କହୁଅଛନ୍ତି ଯେ ଭରତମୁନି ରସଶାସ୍ତ୍ରରେ କହିଅଛନ୍ତି ଯେ ନାୟକନାୟିକା ଉଭୟଙ୍କଠାରେ ସମ୍ଭୋଗରସସୁଖ ସମାନ । ସେ ସାଧାରଣ ନାୟକନାୟିକା ସମ୍ବନ୍ଧରେ ଏ ପ୍ରକାର କହିଅଛନ୍ତି, କିନ୍ତୁ ସେ ମୋର ବ୍ରଜର ଭାବ ଜାଣିଥିଲେ ଏ ପ୍ରକାର କହନ୍ତେ ନାହିଁ । ୨୧୪ ।

ବ୍ରଜରସର ବିଶେଷତ୍ୱ ଏହି ଯେ ମୋର ( ଶ୍ରୀକୃଷ୍ଣଙ୍କର ) ଶ୍ରୀରାଧାଙ୍କ ସହିତ ସଙ୍ଗମରେ ଯେ ସୁଖହୁଏ, ଶ୍ରୀରାଧାଙ୍କର ତାହା ଅପେକ୍ଷା ଶତଗୁଣ ଅଧିକ ହୁଏ, ( ଏଠାରେ ଶ୍ରୀରାଧାଙ୍କୁ ଲକ୍ଷ୍ୟକରି ସମସ୍ତ ଗୋପୀଭାବ ବ୍ୟକ୍ତ କରା ହୋଇଅଛି ) । ୨୧୫ ।

ତଥାହି ଲଳିତମାଧବେ (୪।୯)—

ନର୍ଦ୍ଧୂତାମୃତମାଧୁରୀପରିମଳଃ କଲ୍ୟାଣି ବିମ୍ବାଧରୋ,
ବକ୍ତ୍ରଂ ପଙ୍କଜସୌରଭଂ କୁହୁରୁତଶ୍ଳାଘାଭିଦସ୍ତେ ଗିରଃ ।
ଅଙ୍ଗଂ ଚନ୍ଦନଶୀତଳଂ ତନୁରିୟଂ ସୌନ୍ଦର୍ଯ୍ୟସର୍ବସ୍ୱଭାକ୍,
ତ୍ୱାମାସ୍ୱାଦ୍ୟ ମମେଦମିନ୍ଦ୍ରିୟକୁଳଂ ରାଧେ
ମୁହୁର୍ମୋଦତେ ॥ ୪୭ ॥ *

ରୂପଗୋସ୍ୱାମିପାଦୋକ୍ତ-ଶ୍ଲୋକଃ ।—

ରୂପେ କଂସହରସ୍ୟ ଲୁବ୍ଧନୟନାଂ ସ୍ପର୍ଶେଽତିହୃଷ୍ୟତ୍ତ୍ୱଚଂ,
ବାଣ୍ୟାମୁତ୍କଳିତଶ୍ରୁତିଂ ପରିମଳେ ସଂହୃଷ୍ଟନାସାପୁଟାମ୍,
ଆରଜ୍ୟଦ୍ରସନାଂ କିଲାଧରରସେ ନ୍ୟଞ୍ଚନ୍ମୁଖାମ୍ଭୋରୁହାଂ
ଦମ୍ଭୋଦ୍ଗୀର୍ଣ୍ଣମହାଧୃତିଂ ବହିରପି
ପ୍ରୋଦ୍ୟଦ୍ବିକାରାକୁଳାମ୍ ॥ ୪୮॥ *

(ହେ) କଲ୍ୟାଣି ! (ଆନନ୍ଦଦାୟିନି ରାଧିକେ) ! ତେ (ତବ) ବିମ୍ବାଧରଃ (ରକ୍ତବର୍ଣ୍ଣାଧରଃ) ନର୍ଦ୍ଧୂତାମୃତମାଧୁରୀପରିମଳଃ (ନର୍ଦ୍ଧୂତୌ ପରାଜିତୌ ଅମୃତସ୍ୟ ମାଧୁରୀପରିମଳୌ ଯେନ ତାଦୃଶଃ) ବକ୍ତ୍ରଂ ପଙ୍କଜସୌରଭଂ (ପଙ୍କଜସ୍ୟ ସୌରଭଂ ଇବ ସୌରଭଂ ଯସ୍ୟ ତତ୍) ଗିରଃ (ବାଚଃ) କୁହୁରୁତଶ୍ଳାଘାଭିଦଃ (କୁହୂରୁତାନାଂ କୋକିଳଧ୍ୱନୀନାଂ ଶ୍ଳାଘାଭିଦଃ ତିରସ୍କାରିଣ୍ୟଃ) ଅଙ୍ଗମ୍ (ଅବୟବଃ) ଚନ୍ଦନଶୀତଳଂ (ଚନ୍ଦନବତ୍ ଶୀତଳଂ ଯଦ୍ୱା ଚନ୍ଦନାତ୍ ଶୀତଳଂ) ଇୟଂ ତନୁଃ (ମୂର୍ତ୍ତିଃ) ସୌନ୍ଦର୍ଯ୍ୟସର୍ବସ୍ୱଭାକ୍ (ସୌନ୍ଦର୍ଯ୍ୟାଣାଂ ସର୍ବସ୍ୱଂ ଭଜତେ ଯା ସା) । ହେ ରାଧେ ! ତ୍ୱାମ୍ ଆସ୍ୱାଦ୍ୟ ମମଇଦଂ ଇନ୍ଦ୍ରିୟକୁଳଂ (ଇନ୍ଦ୍ରିୟ ସମୂହଃ) ମୁହୁଃ (ବାରମ୍ବାରଂ) ମୋଦତେ ମହାନନ୍ଦଂ ଭଜତି । [ ୪୭ଶ ଶ୍ଳୋକଃ ]

କଂସହରସ୍ୟ (କଂସବିନାଶକସ୍ୟ ଶ୍ରୀକୃଷ୍ଣସ୍ୟ) ରୂପେ (ରୂପଦର୍ଶନେ) ଲୁବ୍ଧନୟନାଂ ଲୁବ୍ଧେ କ୍ଷୋଭଯୁକ୍ତେ ନୟନେ ଯସ୍ୟାଃ ତାଂ) ସ୍ପର୍ଶେ (ଅଙ୍ଗସଙ୍ଗେ) ଅତିହୃଷ୍ୟତ୍ତ୍ୱଚଂ (ଅତିହୃଷ୍ୟନ୍ତୀ ପୁଲକିତା ତ୍ୱକ୍ ଯସ୍ୟାଃ ତାଂ) ବାଣ୍ୟାଂ (ବାଚି) ଉତ୍କଳିତଶ୍ରୁତିଂ (ଉତ୍କଳିତେ ଉତ୍ସୁକେ ଶ୍ରୁତୀ କର୍ଣ୍ଣୌ ଯସ୍ୟାଃ ତାଂ) ପରିମଳେ (ଅଙ୍ଗସୌରଭେ) ସଂହୃଷ୍ଟନାସାପୁଟାମ୍ (ସହୃଷ୍ଟେ ନାସାପୁଟେ ଯସ୍ୟାଃ ତାଂ) ଅଧରରସେ (ଅଧରାମୃତପାନେ) ଆରଜ୍ୟଦ୍ରସନାଂ (ଆରଜ୍ୟନ୍ତୀ ଅନୁରାଗାନ୍ୱିତା ରସନା ଜିହ୍ୱା ଯସ୍ୟାଃ ତାଂ) ନ୍ୟଞ୍ଚନ୍ମୁଖାମ୍ଭୋରୁହାମ୍ (ନ୍ୟଞ୍ଚତ୍ ନ୍ୟୂନତଂ ମୁଖଂ ଏବ ଅମ୍ଭୋରୁହଂ ଯସ୍ୟାଃ ତାଂ) ବହିଃ (ବାହ୍ୟେ) ଅପି କିଲ ଦମ୍ଭୋଦ୍ଗୀର୍ଣ୍ଣମହାଧୃତିଂ (ଦମ୍ଭେନ କପଟେନ ଉଦ୍ଗୀର୍ଣ୍ଣା ପ୍ରକାଶିତା ମହତୀ ଧୃତିଃ ଧୈର୍ଯ୍ୟଂ ଯସ୍ୟାଃ ତାଂ ଅନ୍ତଃ ତୁ) ପ୍ରୋଦ୍ୟଦ୍ବିକାରାକୁଳାଂ (ପ୍ରୋଦ୍ୟତା ଉତ୍କର୍ଷେଣ ଉଦ୍ଭୂତେନ ବିକାରେଣ ଆକୁଳାଂ) ରାଧାଂ ଅହଂ ସ୍ମରାମି । [ ୪୮ଶ ଶ୍ଳୋକଃ ]

ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ କହୁଅଛନ୍ତି ହେ ଆନନ୍ଦଦାୟିନି ! ତୁମ୍ଭର ବିମ୍ବାଧର ଅମୃତମାଧୁରୀ ପରିମଳକୁ ତିରସ୍କୃତ କରିଅଛି । ତୁମ୍ଭର ବଦନକମଳ ପଦ୍ମଗନ୍ଧଯୁକ୍ତ । ତୁମ୍ଭର ବାକ୍ୟ ସମସ୍ତ କୋକିଳର କଣ୍ଠରବକୁ ତିରସ୍କାର କରୁଅଛି । ତୁମ୍ଭର ଅଙ୍ଗ ଚନ୍ଦନ ଅପେକ୍ଷା ସୁଶୀତଳ ଏବଂ ତୁମ୍ଭର ତନୁ ସୌନ୍ଦର୍ଯ୍ୟର ସାରସ୍ୱରୂପ । ହେ ରାଧେ ! (ଏରୂପ ରୂପଗୁଣଯୁକ୍ତା) ତୁମ୍ଭଙ୍କୁ ଆସ୍ୱାଦନ କରି ମୋର ଇନ୍ଦ୍ରିୟ ଗ୍ରାମ ମୁହୁର୍ମୁହୁଃ ଆନନ୍ଦିତ ହୋଉଅଛି । [ ୪୭ଶ ଶ୍ଳୋକାର୍ଥ ]

( ଶ୍ରୀରୂପ ଗୋସ୍ୱାମୀଙ୍କ ରଚିତ ଶ୍ଳୋକାର୍ଥ )

ଶ୍ରୀରାଧାଙ୍କର ନୟନଯୁଗଳ ଶ୍ରୀକୃଷ୍ଣଙ୍କର ରୂପରେ ଲୁବ୍ଧ । ତ୍ୱକ୍ ସ୍ପର୍ଶରେ ପୁଲକିତ; କର୍ଣ୍ଣ କଥାରେ ଉତ୍କଣ୍ଠିତ, ନାସାପୁଟ ପରିମଳରେ ସଂହୃଷ୍ଟ, ରସନା ଅଧରାମୃତ ପାନର ଅନୁରାଗିଣୀ । ଏହି ପ୍ରକାର ଅବସ୍ଥାରେ ଶ୍ରୀରାଧା ବାହାରରେ ମହାଧୈର୍ଯ୍ୟ ଅବଲମ୍ବନ ପୂର୍ବକ ଅଧୋବଦନରେ ଥିଲେହେଁ ଅନ୍ତରରେ ବିକାରଦ୍ୱାରା ଆକୁଳା ହୋଇ ଅଛନ୍ତି । [ ୪୮ଶ ଶ୍ଳୋକାର୍ଥ ]

ଛ କୋନ୍ ଏକ ରସ ।
ଯୁଷ୍ମ୍ୟାଦକ ଯେବା ତାଁହାରେ କରେ ବଶ ।୧୧୬।
ଶେଷ-ରୂପେ କରେ ଯୃ ଯେଜାତୀୟ ସୁଖ ।
ସର୍ବ-ରୂପେ ଆସ୍ୱାଦନେ ସଦାଇ ଉନ୍ମୁଖ ।୧୧୭।
ସେଇ ଥାମ ଶ୍ରୀଦର୍ଶନେ ଆମି, ନାରି ଆସ୍ୱାଦିତେ ।
ସପ୍ରମଣେର ମାଧୁର୍ଯ୍ୟଘ୍ରାଣେ ଲୋଭ ବାଡ଼େ ଚିତ୍ତେ ।୧୧୮।
ରସ ଆସ୍ୱାଦିତେ ଆମି କୈଲ ଅବତାର ।
ପ୍ରେମରସ ଆସ୍ୱାଦିଲ ବିବିଧପ୍ରକାର । ୧୧୯ ।
ରାଗମାର୍ଗେ ଭକ୍ତ ଭକ୍ତି କରେ ଯେପ୍ରକାରେ ।
ତାହା ଶିଖାଇଲ ଲୀଳା-ଆଚରଣଦ୍ୱାରେ । ୧୨୦ ।
ଏଇ ତିନ ତୃଷ୍ଣା ମୋର ନହିଲ ପୂରଣ ।
ବିଜାତୀୟ-ଭାବେ ନହେ ତାହା ଆସ୍ୱାଦନ ।୧୨୧।
ରାଧିକାର ଭାବ କାନ୍ତି ଅଙ୍ଗୀକାର ବିନେ ।
ସେଇ ତିନ ସୁଖ କଭୁ ନହେ ଆସ୍ୱାଦନେ ।୧୨୨।
ରାଧାଭାବ ଅଙ୍ଗୀକରି—ଧରି ତାର ବର୍ଣ୍ଣ ।
ତିନ ସୁଖ ଆସ୍ୱାଦିତେ ହବ ଅବତୀର୍ଣ୍ଣ । ୧୨୩ ।
ସର୍ବଭାବେ କୈଲ କୃଷ୍ଣ ଏଇ ତ ନିଶ୍ଚୟ ।
ହେନକାଲେ ଆଇଲ ଯୁଗାବତାରସମୟ ।୧୨୪।
ସେଇକାଲେ ଶ୍ରୀଅଦ୍ୱୈତ କରେନ ଆରାଧନ ।
ତାଁହାର ହୁଙ୍କାରେ କୈଲ କୃଷ୍ଣ ଆକର୍ଷଣ ।୧୨୫।

ତାତେ "ରାଧାଦର୍ଶନେ ମୋର" ଇତ୍ୟାଦି ବାକ୍ୟେନ । ୧୧୬ । ବି, ଚ,
ଯେ ଜାତୀୟ ସୁଖ "ଆମାର ଦର୍ଶନେ" ଇତ୍ୟାଦି ବାକ୍ୟୋକ୍ତ ସୁଖଂ ।୧୧୭।୧୧୮। ବି, ଚ,

ଉକ୍ତ ପ୍ରକାରରେ ବିଚାର କରି ଓ ଅନୁଭବଦ୍ୱାରା ଦେଖୁଅଛି ଯେ ଶ୍ରୀରାଧା ଯାହାଙ୍କର ରୂପଗୁଣଦ୍ୱାରା ମୁଁ ମୋହିତହୁଏଁ, ସେ ପୁଣି ମୋର ରୂପଗୁଣଦ୍ୱାରା ମୋଠାରୁ ଅଧିକତରଭାବରେ ମୋହିତ ହୁଅନ୍ତି । ଏହି ହେତୁ ଜାଣିପାରୁଅଛି ଯେ ମୋଠାରେ ଏପରି କୌଣସି ଉତ୍କୃଷ୍ଟ ରସ ଅଛି ବା ଆତ୍ୟାଶ୍ଚର୍ଯ୍ୟ ମଧୁରତା ଅଛି ଯାହାଦ୍ୱାରା ମୋହର ମୋହିନୀ ଶ୍ରୀରାଧା ବଶହୁଅନ୍ତି । ୧୧୬ ।

ଶ୍ରୀରାଧା ପଞ୍ଚେନ୍ଦ୍ରିୟଦ୍ୱାରା ମୋର ମାଧୁର୍ଯ୍ୟରସ ଆସ୍ୱାଦନ କରି ଯେ ପ୍ରକାର ସୁଖ ଅନୁଭବ କରନ୍ତି ସେହି ସୁଖ ଅନୁଭବ କରିବା ସକାଶେ ମୁଁ ସର୍ବଦା ବ୍ୟଗ୍ର, କିନ୍ତୁ ନାନାପ୍ରକାରରେ ଯତ୍ନକଲେ ସୁଦ୍ଧା ଆସ୍ୱାଦନ କରିପାରୁ ନାହିଁ, ଅଥଚ ଶ୍ରୀରାଧାଙ୍କ ପରି ମନ୍‌ମାଧୁର୍ଯ୍ୟ ଆଘ୍ରାଣପ୍ରଭୃତି ଓ ତଜ୍ଜନିତ ସୁଖ ଆସ୍ୱାଦପ୍ରତି ଚିତ୍ତରେ ଲୋଭ ବୃଦ୍ଧି ହେଉଅଛି । ୧୧୭।୧୧୮ ।

ମୁଁ ରସ ଆସ୍ୱାଦନ କରିବା ସକାଶେ ଅବତାର ଗ୍ରହଣ କରିଅଛି ଏବଂ ରସସାର ପ୍ରେମରସ ନାନାପ୍ରକାରରେ ଆସ୍ୱାଦନ କଲି । ରାଗମାର୍ଗରେ ଭକ୍ତମାନେ ଯେ ପ୍ରକାର ଭକ୍ତି କରନ୍ତି ତାହା ରାସାଦିକ ଲୀଳାଦ୍ୱାରା ଜଗତକୁ ଶିକ୍ଷା ଦେଲି, ତଥାପି ପୂର୍ବକଥିତ ( ତିନବାଞ୍ଛା ଚମତ୍କାରକାରୀ ରାଧାପ୍ରେମ କୀଦୃଶ, ମୋର ମାଧୁର୍ଯ୍ୟ ଯାହାକି ଶ୍ରୀରାଧା ଆସ୍ୱାଦନ କରନ୍ତି ତାହା କୀଦୃଶ ଏବଂ ତାହା ଆସ୍ୱାଦନ କରି ଶ୍ରୀରାଧା ଯେଜାତୀୟସୁଖ ଲାଭକରନ୍ତି ତାହା କୀଦୃଶ ) ମୋର ପୂରଣ ହେଲା ନାହିଁ, କାରଣ ବିଚାର କରି ଦେଖୁଅଛି ଯେ ବିଜାତୀୟଭାବରେ ଅର୍ଥାତ୍ ବିଷୟ ଜାତୀୟଭାବରେ ତାହା ଆସ୍ୱାଦ ହୋଇ ପାରିବ ନାହିଁ । ତେବେ ଶ୍ରୀରାଧାଙ୍କର ସ୍ୱଜାତୀୟଭାବ ଅର୍ଥାତ୍ ଶ୍ରୀରାଧାଙ୍କର ଆଶ୍ରୟଜାତୀୟଭାବ ଓ କାନ୍ତି ଗ୍ରହଣ ନ କଲେ ଏ ତିନ ବିଷୟ କଦାପି ଆସ୍ୱାଦ ହୋଇ ପାରିବ ନାହିଁ । ଏହି ପ୍ରକାର ବିଚାର କରି ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କର ଭାବ ଓ କାନ୍ତି ଗ୍ରହଣ କରି ଏହି ତିନସୁଖ ଆସ୍ୱାଦନ କରିବା ସକାଶେ ଏହି କଳିହତ ଜୀବମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣ ଚୈତନ୍ୟରୂପରେ ଅବତୀର୍ଣ୍ଣ ହେଲେ । ୧୧୯।୧୨୦।୧୨୧।୧୨୨।୧୨୩ ।

ଏହି ପ୍ରକାର ଶ୍ରୀକୃଷ୍ଣ ନିଶ୍ଚୟ କଲେ । ଏହି ସମୟରେ ଯୁଗାବତାର ହେବାର ସମୟ ଆସି ଉପସ୍ଥିତ ହେଲା ଏବଂ କଳିହତ ଜୀବମାନଙ୍କର ଦୁର୍ଗତି ଦେଖି ଶ୍ରୀକୃଷ୍ଣଙ୍କୁ ଅବତୀର୍ଣ୍ଣ କରାଇ ତାହାଙ୍କ ଦ୍ୱାରା ଜୀବମାନଙ୍କର ଉଦ୍ଧାର ନିମିତ୍ତ ଶ୍ରୀମନ୍ ଅଦ୍ୱୈତଆଚାର୍ଯ୍ୟ ପ୍ରଭୁ ଆରାଧନା ଓ ହୁଙ୍କାରଦ୍ୱାରା ମଧ୍ୟ ଶ୍ରୀକୃଷ୍ଣଙ୍କୁ ଆକର୍ଷଣ କଲେ । ୧୨୪।୧୨୫ ।

ପିତା ମାତା ଗୁରୁଗଣ ଆଗେ ଅବତାରି ।
ରାଧିକାର ଭାବ ବର୍ଣ୍ଣ ଅଙ୍ଗୀକାର କରି । ୨୨୬ ।
ନବଦ୍ୱୀପେ ଶଚୀଗର୍ଭ-ଶୁଦ୍ଧଦୁଗ୍ଧସିନ୍ଧୁ ।
ତାହାତେ ପ୍ରକଟ ହୈଲା କୃଷ୍ଣ ପୂର୍ଣ୍ଣ ଇନ୍ଦୁ ।୨୨୭।
ଏଇ ତ କରିଲ ଷଷ୍ଠ ଶ୍ଳୋକେର ବ୍ୟାଖ୍ୟାନ ।
ସ୍ୱରୂପଗୋସାଇଁର ପାଦପଦ୍ମ କରି ଧ୍ୟାନ । ୨୨୮ ।
ଏଇ ଦୁଇ ଶ୍ଳୋକେର ଆମି ଯେ କରିଲ ଅର୍ଥ ।
ଶ୍ରୀରୂପଗୋସାଇଁର ଶ୍ଳୋକ ପ୍ରମାଣସମର୍ଥ । ୨୨୯ ।
ତଥାହି ସ୍ତବମାଳାୟାଂ ୨ୟ ଚୈତନ୍ୟାଷ୍ଟକେ (୩)—
ଅପାରଂ କସ୍ୟାପି ପ୍ରଣୟିଜନବୃନ୍ଦସ୍ୟ କୁତୁକୀ,
ରସସ୍ତୋମଂ ହୃତ୍ୱା ମଧୁରମୁପଭୋକ୍ତୁଂ କମପି ଯଃ ।
ରୁଚଂ ସ୍ୱାମାବବ୍ରେ ଦ୍ୟୁତିମିହ ତଦୀୟାଂ ପ୍ରକଟୟନ୍
ସ ଦେବଶ୍ଚୈତନ୍ୟାକୃତିରତିତରାଂ ନଃ
କୃପୟତୁ ॥ ୪୫ ॥ *

ଗ୍ରନ୍ଥକାରସ୍ୟ—
ମଙ୍ଗଳାଚରଣଂ କୃଷ୍ଣଚୈତନ୍ୟତତ୍ତ୍ୱଲକ୍ଷଣମ୍ ।
ପ୍ରୟୋଜନଞ୍ଚାବତାରେ
ଶ୍ଳୋକଷଟ୍କୈର୍ନିରୂପିତମ୍ ॥ ୪୬ ॥ *
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୨୩୦ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ
ଚୈତନ୍ୟାବତାରମୂଳପ୍ରୟୋଜନକଥନଂ
ନାମ ଚତୁର୍ଥପରିଚ୍ଛେଦଃ ॥ ୪ ॥

---

ଅବତାର୍ଯ୍ୟ ଇତ୍ୟନେନ ପିତାଦୀନାଂ ନିତ୍ୟତ୍ୱଂ ବ୍ୟକ୍ତିତଂ । ୨୨୬।୨୨୭।୨୨୮ । ବ, ଚ,
ଶ୍ରୀରାଧାଭାବେନୈବ ଶ୍ରୀକୃଷ୍ଣସ୍ୟୈବେଷ୍ଟସିଦ୍ଧାବପି ତଦ୍‌କାନ୍ତିଗ୍ରହଣକଥନନ୍ତୁ "ରୁଚଂ ସ୍ୱାମାବବ୍ରେ" ଇତି ଶ୍ରୀସ୍ୱରୂପାଭିପ୍ରାୟାତ୍ । ୨୨୯ । ଇତି ଆଦୌ ଚତୁର୍ଥଃ । ବ, ଚ,

ଅନନ୍ତର ଏହି ପରିଚ୍ଛେଦର ୨ୟ ଶ୍ଳୋକ ଦେଖ—

ମଙ୍ଗଳାଚରଣଂ କୃଷ୍ଣଚୈତନ୍ୟତତ୍ତ୍ୱଲକ୍ଷଣଂ ଅବତାରେ ପ୍ରୟୋଜନଂ ଚ ଶ୍ଳୋକଷଟ୍କୈଃ ନିରୂପିତମ୍ । [ ୪୬ଶ ଶ୍ଳୋକାଃ ]

---

ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହେଲେ ସାଧାରଣରେ ଅବତୀର୍ଣ୍ଣ ହୁଅନ୍ତି । ତେଣୁ ଶ୍ରୀକୃଷ୍ଣଚନ୍ଦ୍ର ଶ୍ରୀଗୌରଚନ୍ଦ୍ର ରୂପରେ ଅବତୀର୍ଣ୍ଣ ହେବା ପୂର୍ବରୁ ଆଗେ ନିତ୍ୟ ଗୁରୁବର୍ଗ, ମାତା, ପିତା ଆଦିଙ୍କୁ ଅବତୀର୍ଣ୍ଣ କରାଇ ପରେ ଶ୍ରୀରାଧାଙ୍କର ଭାବକାନ୍ତି ଗ୍ରହଣକରି ସ୍ୱୟଂ ଅବତୀର୍ଣ୍ଣ ହେଲେ, ଅର୍ଥାତ୍ ଶ୍ରୀକୃଷ୍ଣଚନ୍ଦ୍ର ନବଦ୍ୱୀପଧାମରେ ଶ୍ରୀଶଚୀଦେବୀଙ୍କ ଗର୍ଭରୂପ ଦୁଗ୍ଧସିନ୍ଧୁରୁ ଶ୍ରୀଗୌରଚନ୍ଦ୍ରରୂପରେ ଅବତୀର୍ଣ୍ଣ ହେଲେ ।

ଗ୍ରନ୍ଥକାର କହୁଅଛନ୍ତି ଯେ ସେ ଶ୍ରୀସ୍ୱରୂପ ଗୋସ୍ୱାମୀଙ୍କ ପାଦପଦ୍ମ ଧ୍ୟାନ କରି ଷଷ୍ଠ ଶ୍ଳୋକର ଅର୍ଥ ପୂର୍ବୋକ୍ତ ପ୍ରକାରରେ ବ୍ୟାଖ୍ୟାକଲେ । ୨୨୬।୨୨୭।୨୨୮ ।

ଏହି ପରିଚ୍ଛେଦଲିଖିତ ପଞ୍ଚମ ଓ ଷଷ୍ଠ ଶ୍ଳୋକର ଯେଉଁ ଅର୍ଥ ଗ୍ରନ୍ଥକାର ପ୍ରକାଶ କଲେ ତାହାର ପ୍ରମାଣ ସ୍ୱରୂପ ଶ୍ରୀରୂପ ଗୋସ୍ୱାମିଙ୍କ ନିମ୍ନଲିଖିତ ଶ୍ଳୋକ ସ୍ୱୀକାର କରିଅଛନ୍ତି । ୨୨୯ ।

ଯେ ଶ୍ରୀକୃଷ୍ଣଭାବ ଆସ୍ୱାଦନ ନିମିତ୍ତ କୌତୁକବଶତଃ ପ୍ରଣୟିନୀ ଗୋପୀଜନମାନଙ୍କ ମଧ୍ୟରୁ ଶ୍ରୀରାଧାଙ୍କର ଅନିର୍ବଚନୀୟ ଅପାର ମଧୁରରସସମୂହ ଗ୍ରହଣ କରି ଉପଭୋଗ କରିବା ସକାଶେ ଏହି ଧରାଧାମରେ ଶ୍ରୀରାଧାଙ୍କର କାନ୍ତି ପ୍ରକଟକରି ତଦ୍ୱାରା ନିଜ ଶ୍ୟାମକାନ୍ତିକୁ ଆବରଣ କରିଅଛନ୍ତି ସେହି ଚୈତନ୍ୟାକୃତି ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ଅତିଶୟ କୃପା କରନ୍ତୁ । [ ୪୫ଶ ଶ୍ଳୋକାର୍ଥ ]

"ବନ୍ଦେ ଗୁରୂନ୍" ଠାରୁ "ଶ୍ରୀରାଧାୟାଃ ପ୍ରଣୟ" ଏହି ଛଅଟି ଶ୍ଳୋକଦ୍ୱାରା ଗ୍ରନ୍ଥକାର ଶ୍ରୀକୃଷ୍ଣଚୈତନ୍ୟ ମଙ୍ଗଳାଚରଣ ତତ୍ତ୍ୱ, ଲକ୍ଷଣ ଓ ଅବତାରର ପ୍ରୟୋଜନ ନିରୂପଣ କଲେ ।

## ପଞ୍ଚମ ପରିଚ୍ଛେଦ ।

ବନ୍ଦେଽନନ୍ତାଦ୍ଭୁତୈଶ୍ୱର୍ଯ୍ୟଂ ଶ୍ରୀନିତ୍ୟାନନ୍ଦମୀଶ୍ୱରମ୍ ।
ଯସ୍ୟେଚ୍ଛୟା ତତ୍ସ୍ୱରୂପମଜ୍ଞେନାପି ନିରୂପ୍ୟତେ ।୧।॥

ଜୟଜୟ ଶ୍ରୀଚୈତନ୍ୟ ଜୟ ନିତ୍ୟାନନ୍ଦ ।—
ଜୟାଦ୍ୱୈତଚନ୍ଦ୍ର ଜୟ ଗୌରଭକ୍ତବୃନ୍ଦ । ୧ ।
ଷଷ୍ଠଶ୍ଳୋକେ କହିଲ କୃଷ୍ଣଚୈତନ୍ୟମହିମା ।
ସପ୍ତମଶ୍ଳୋକେ କହି ନିତ୍ୟାନନ୍ଦ-ତତ୍ତ୍ୱସୀମା । ୨ ।
ସର୍ବ-ଅବତାରୀ କୃଷ୍ଣ—ସ୍ୱୟଂଭଗବାନ୍ ।
ତାଁହାର ଦ୍ୱିତୀୟ ଦେହ—ଶ୍ରୀବଲରାମ । ୩ ।

ଏକଇ ସ୍ୱରୂପ—ଦୁଇ ଭିନ୍ନମାତ୍ର କାୟ ।
ଆଦ୍ୟ କାୟବ୍ୟୂହ—କୃଷ୍ଣଲୀଲାର ସହାୟ । ୪ ।

ସେଇ କୃଷ୍ଣ—ନବଦ୍ୱୀପେ ଶ୍ରୀଚୈତନ୍ୟଚନ୍ଦ୍ର ।
ସେଇ ବଲରାମ ସଙ୍ଗେ—ଶ୍ରୀନିତ୍ୟାନନ୍ଦ । ୫ ।

ବନ୍ଦଇତି । ଶ୍ରୀନିତ୍ୟାନନ୍ଦମହଂ ବନ୍ଦେ କୀଦୃଶଂ ଈଶ୍ୱରଂ ଈଶନାଦୀଶନଂ ସୃଷ୍ଟିସ୍ଥିତିପ୍ରଲୟ-କାରକଂ ଅନନ୍ତଂ ଅଗଣ୍ୟଂ ଅଦ୍ଭୁତଂ ମହାଚମତ୍କାରଣୀୟଂ ଐଶ୍ୱର୍ଯ୍ୟଂ ଈଶ୍ୱରତ୍ୱାଦିକଂ ଯସ୍ୟ ତଂ । ଯସ୍ୟ ନିତ୍ୟାନନ୍ଦସ୍ୟ ଇଚ୍ଛୟା କୃପୟା ତସ୍ୟ ନିତ୍ୟାନନ୍ଦସ୍ୟ ସ୍ୱରୂପଂ ତତ୍ତ୍ୱଂ ଅଜ୍ଞେନ ଶାସ୍ତ୍ରାଦ୍ୟ-ନଭିଜ୍ଞେନାପି ମୟା ନିରୂପ୍ୟତେ ବର୍ଣ୍ୟତେ । [ ୧ମ ଶ୍ଳୋକଃ ]

ଯସ୍ୟେଚ୍ଛୟା ଶ୍ରୀବୃନ୍ଦାବନଯାପନସ୍ୱପ୍ନାଦେଶେନୈବ ତଦାଜ୍ଞାପ୍ରଦତ୍ତେତିଃ ଇତି ବାଂ ।୧। ବି, ଚ,

ପୂର୍ବବର୍ଣ୍ଣିତ ଶ୍ରୀଚୈତନ୍ୟତତ୍ତ୍ୱ ମନୁସୃତ୍ୟ ଶ୍ରୀନିତ୍ୟାନନ୍ଦତତ୍ତ୍ୱଂ ବର୍ଣ୍ୟିତୁମାହ "ଏଇ" ଇତି । ଏଇ ଷଷ୍ଠଶ୍ଳୋକେ ଏତୈଃ ପ୍ରଥମପରିଚ୍ଛେଦୋକ୍ତୈଃ "ବନ୍ଦେ ଗୁରୂନ୍" ଇତ୍ୟାଦି ଷଡ୍ଭିଃ ଶ୍ଳୋକୈଃ । ସପ୍ତମଶ୍ଳୋକେ ତଦୁକ୍ତେନ "ସଙ୍କର୍ଷଣଃ" ଇତି ଶ୍ଳୋକେନ । ୨ । ବି, ଚ,

ତଚ୍ଚ ତାବତ୍ ବିସ୍ତରେଣ ବର୍ଣ୍ଣନୀୟଂ ଶ୍ରୀନିତ୍ୟାନନ୍ଦତତ୍ତ୍ୱଂ ସୁଖବୋଧାୟାଦୌ ସଂକ୍ଷେପେଣୈବାହ "ସର୍ବ" ଇତି ଦ୍ୱିଭିଃ । ସର୍ବାବତାରୀ ସ୍ୱୟଂ ଭଗବାନ୍ ଇତି ଶ୍ରୀକୃଷ୍ଣତତ୍ତ୍ୱଂ । ଶ୍ରୀବଲଦେବସ୍ତୁ ତସ୍ୟ ଶ୍ରୀକୃଷ୍ଣସ୍ୟୈବ ଦ୍ୱିତୀୟଦେହଃ ଇତି । ଶ୍ରୀବଲଦେବତତ୍ତ୍ୱଂ ଜ୍ଞେୟଂ । କିଂ ରୂପଃ ସଃ ଦ୍ୱିତୀୟଦେହ ଇତ୍ୟପେକ୍ଷାୟାମାହ "ଆଦ୍ୟ" ଇତି । ପ୍ରଥମକାୟବ୍ୟୂହଃ ସଃ ଦ୍ୱିତୀୟଦେହଃ । କିମର୍ଥଂ ସ ଦେହଃ ଶ୍ରୀକୃଷ୍ଣଲୀଲା-ସାହାଯ୍ୟମେବ ତସ୍ୟ କାରଣଂ ଇତ୍ୟାହ କୃଷ୍ଣ ଇତି ଶ୍ରୀକୃଷ୍ଣଲୀଳାସାହାଯ୍ୟକାର୍ଯ୍ୟାର୍ଥଂ ସ ଦେହ ଇତି ଭାବଃ ଅତ୍ର "କୃଷ୍ଣଲୀଳାର ସହାୟ" ଇତି ଲୀଳାମାତ୍ରତ୍ୱେନ ଶ୍ରୀଚୈତନ୍ୟଲୀଳାସାହାଯ୍ୟମେବ ଶ୍ରୀନିତ୍ୟାନନ୍ଦରୂପେ କାର୍ଯ୍ୟଂ ଜ୍ଞାତବ୍ୟଂ । ଯତଃ ତସ୍ୟ ଶ୍ରୀକୃଷ୍ଣସ୍ୟୈବ ଶ୍ରୀଚୈତନ୍ୟଲୀଳା ସଃ ବଲଦେବ ଏବ ଶ୍ରୀନିତ୍ୟାନନ୍ଦଃ । ଅତଏବମୁକ୍ତଂ ଭବତି ଶ୍ରୀଚୈତନ୍ୟରୂପାବତୀର୍ଣ୍ଣସ୍ୟ ତସ୍ୟ ସର୍ବାବତାରଣଃ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ଏତଚ୍ଚୈତନ୍ୟଲୀଳାସାହାଯ୍ୟାର୍ଥଂ ତଦ୍ଦ୍ୱିତୀୟଦେହରୂପଃ ଶ୍ରୀବଲଦେବଃ ଶ୍ରୀନିତ୍ୟାନନ୍ଦ ଇତି ତତ୍ତ୍ୱଂ । ଅତ୍ର ଏକସ୍ୱରୂପତ୍ୱଂ ଗୁରୁତ୍ୱେନ ମର୍ଯ୍ୟାଦାପରମେବ କାମ୍ୟା ଯଦ୍ରୂପଂ ତଦଭେଦେନ ସ୍ୱରୂପେଣ ବିରାଜତେ । ଆକୃତ୍ୟାଦିଭିରନ୍ୟାଦୃକ୍ ସ ତଦେକାତ୍ମରୂପକଂ ଇତ୍ୟେବ ତଦେକାତ୍ମଲକ୍ଷଣେ ତସ୍ୟାଽଭେଦେନ ରୂପେଣ ଇତି ବ୍ୟାଖ୍ୟାନେ ଭେଦସ୍ୟୈବ ପ୍ରତୀତେଃ ଏକଇ ସ୍ୱରୂପ ଇତ୍ୟନେନାପି ଭେଦପ୍ରତୀତଃ ସ୍ୱେନାପି ବିଲାସେନ ନିର୍ଣ୍ଣୀତତ୍ୱାତ୍ । ୩।୪।୫ । ବି, ଚ,

ଯାହାଙ୍କର ସ୍ୱପ୍ନାଦେଶ ଅନୁଗ୍ରହରୁ ମୁଁ ଅଜ୍ଞ ହୋଇ ସୁଦ୍ଧା ତାହାଙ୍କର ସ୍ୱରୂପ ( ତତ୍ତ୍ୱ-ଲକ୍ଷଣ) ନିରୂପଣ କରୁଅଛି, ସେହି ଅନନ୍ତ ଅଦ୍ଭୁତ ଐଶ୍ୱର୍ଯ୍ୟମୟ ଈଶ୍ୱରମାନଙ୍କର ମୂଳ ଈଶ୍ୱର ଶ୍ରୀନିତ୍ୟାନନ୍ଦଙ୍କୁ ବନ୍ଦନା କରେ । [ ୧ମ ଶ୍ଳୋକାର୍ଥ ]

ଗ୍ରନ୍ଥକାର ପୂର୍ବୋକ୍ତ ପ୍ରଥମ ପରିଚ୍ଛେଦରେ "ବନ୍ଦେଗୁରୂନୀଶ" ଛଅଟି ଶ୍ଳୋକଦ୍ୱାରା ଶ୍ରୀଚୈତନ୍ୟଙ୍କର ତତ୍ତ୍ୱନିରୂପଣ କରି ବର୍ତ୍ତମାନ ସପ୍ତମ ଶ୍ଳୋକଦ୍ୱାରା ( ସଙ୍କର୍ଷଣଃ ଇତି ) ଶ୍ରୀନିତ୍ୟାନନ୍ଦଙ୍କର ତତ୍ତ୍ୱନିରୂପଣ କରୁଅଛନ୍ତି । ୨ ।

| | |
|---|---|
| ତଥାହି ଶ୍ରୀରୂପଗୋସ୍ୱାମି-କଡ଼ଚ୍ୟାମ୍— | ଶ୍ରୀବଲରାମଗୋସାଇଁ ମୂଳ ସଙ୍କର୍ଷଣ । |
| ସଙ୍କର୍ଷଣଃ କାରଣତୋୟଶାୟୀ, | ପଞ୍ଚ ରୂପ ଧରି କରେନ କୃଷ୍ଣେର ସେବନ । ୬ । |
| ଗର୍ଭୋଦଶାୟୀ ଚ ପୟୋଽବ୍ଧିଶାୟୀ । | |
| ଶେଷଶ୍ଚ ଯସ୍ୟାଂଶକଳାଃ ସ ନିତ୍ୟା- | ଆପନେ କରେନ କୃଷ୍ଣଲୀଲାର ସହାୟ । |
| ନନ୍ଦାଖ୍ୟରାମଃ ଶରଣଂ ମମାସ୍ତୁ ॥୬॥ ୫ | ସୃଷ୍ଟି-ଲୀଲାକାର୍ଯ୍ୟ କରେ ଧରି ଚାରି କାୟ । ୭ । |

୬ଷ୍ଠ ଶ୍ଲୋକ—ଅନ୍ୱୟ—୧ମ ପରିଚ୍ଛେଦ ୭ମ ଶ୍ଲୋକ ।

ପୂର୍ବୋକ୍ତଂ ଶ୍ରୀବଲଦେବତତ୍ତ୍ୱଂ ବିସ୍ତରେଣ ବର୍ଣ୍ଣୟନ୍ ଉକ୍ତ ଶ୍ଲୋକସ୍ୟାର୍ଥମାହ ଶ୍ରୀବଲରାମ ଇତି । ଶ୍ରୀବଲରାମଃ ମୂଳସଙ୍କର୍ଷଣରୂପେଣ ତଥା ସଙ୍କର୍ଷଣାଦି ପଞ୍ଚରୂପେଣ ଶ୍ରୀକୃଷ୍ଣଂ ସେବତେ । ଶ୍ରୀକୃଷ୍ଣ-ସେବା ଏବ ତେଷାଂ ସଙ୍କର୍ଷଣାଦୀନାଂ କାର୍ଯ୍ୟଂ ତଦର୍ଥଂ ତେ ତତ୍ତଦ୍ରୂପା ଇତି ଭାବଃ । ୬ । ଶ୍, ଚ,

ତେଷାଂ ସେବାକାର୍ଯ୍ୟସ୍ୟ ପାର୍ଥକ୍ୟତ୍ୱାଦାଦୌ ଶ୍ରୀବଲରାମରୂପସ୍ୟ ତତ୍କାର୍ଯ୍ୟମାହ "ଆପନେ" ଇତି । ତେଷୁ ମୂଳସଙ୍କର୍ଷଣାଦି ରୂପେଷୁ ଆପନେ ନିଜରୂପେଣ ମୂଳସଙ୍କର୍ଷଣରୂପେଣ ଶ୍ରୀକୃଷ୍ଣଂ ସାକ୍ଷାତ୍ ସେବତେ ଇତ୍ୟର୍ଥଃ । ତଥା ସଙ୍କର୍ଷଣାଦି ଚତୁର୍ଷୁ ରୂପେଷୁ "ଗୋଲୋକ ବୈକୁଣ୍ଠ ସୃଜେ" ଇତି ମଧ୍ୟ ୨୦ଶ ପରିଚ୍ଛେଦୋକ୍ତ ବାକ୍ୟାତ୍ ସଙ୍କର୍ଷଣରୂପେଣ ଗୋଲୋକାଦିପ୍ରକାଶସେବା କାର୍ଯ୍ୟଂ ତଥା କାରଣତୋୟଶାୟ୍ୟାଦିଭିସ୍ତ୍ରିଭିଃ ରୂପୈଃ ଜଗତ୍ସୃଷ୍ଟ୍ୟାଦିସେବାକାର୍ଯ୍ୟଂ କରୋତି । ଏତେଷାଂ ତତ୍କଥନଂ ପରପରଶ୍ଲୋକେ ତତ୍ତତ୍କାର୍ଯ୍ୟଂ ସବିଶେଷଂ ବ୍ୟକ୍ତଂ ଭାବି ତତ୍ର ତଦ୍ ଦ୍ରଷ୍ଟବ୍ୟଂ । ୭ । ଶ୍, ଚ,

ଏହି ତତ୍ତ୍ୱ ବିସ୍ତାରିତରୂପେ ବର୍ଣ୍ଣନା କରିବା ପୂର୍ବରୁ ସୁଖବୋଧ ସକାଶେ ପ୍ରଥମତଃ ତାହା ସଂକ୍ଷେପରେ କହୁଅଛନ୍ତି । ପୂର୍ବେ ନିରୂପିତ ହୋଇଅଛି ଯେ ସକଳ ଅବତାରୀ, ଅର୍ଥାତ୍ ସର୍ବ ଅବତାର-ମାନଙ୍କର ପ୍ରବର୍ତ୍ତକ ସ୍ୱୟଂ ଭଗବାନ୍ ଏହାହିଁ ଶ୍ରୀକୃଷ୍ଣଙ୍କର ତତ୍ତ୍ୱ । ଶ୍ରୀବଲରାମ ସେହି ଶ୍ରୀକୃଷ୍ଣଙ୍କର ଦ୍ୱିତୀୟ ଦେହ । ଏହାହିଁ ଶ୍ରୀବଲରାମଙ୍କର ତତ୍ତ୍ୱ । ଶ୍ରୀକୃଷ୍ଣ ଓ ଶ୍ରୀବଲରାମ ତତ୍ତ୍ୱତଃ ଏକ ହୋଇ କେବଳ ଦେହମାତ୍ର ଭିନ୍ନ । ତାହାର କାରଣ ଏହି ଯେ ଲୀଳାର ସହାୟତା ସକାଶେ ଶ୍ରୀକୃଷ୍ଣ ବଳରାମ ବିଗ୍ରହଧାରଣ କରିଅଛନ୍ତି । ଏଣୁ ଶ୍ରୀବଲରାମ ବିଗ୍ରହ ଶ୍ରୀକୃଷ୍ଣଙ୍କର ଆଦିକାୟବ୍ୟୂହ, ଅର୍ଥାତ୍ ଦ୍ୱିତୀୟ ଦେହ । ସେହି ଶ୍ରୀକୃଷ୍ଣ ଶ୍ରୀନବଦ୍ୱୀପଧାମରେ ଶ୍ରୀଚୈତନ୍ୟଚନ୍ଦ୍ର ହୋଇଅଛନ୍ତି ଏବଂ ସେହି ବଳରାମ ଶ୍ରୀକୃଷ୍ଣଙ୍କର ଚୈତନ୍ୟଲୀଳାର ସହାୟ ସକାଶେ ଶ୍ରୀନିତ୍ୟାନନ୍ଦ ହୋଇଅଛନ୍ତି । ୩।୪।୫ ।

ପରବ୍ୟୋମରେ ( ବୈକୁଣ୍ଠରେ ) ଚତୁର୍ବ୍ୟୂହସ୍ଥିତ ମହାସଙ୍କର୍ଷଣ, କାରଣାର୍ଣ୍ଣବଶାୟୀ ପ୍ରଥମ ପୁରୁଷାବତାର ମହାବିଷ୍ଣୁ, ଗର୍ଭୋଦକଶାୟୀ ଦ୍ୱିତୀୟ ପୁରୁଷାବତାର ହିରଣ୍ୟଗର୍ଭ, କ୍ଷୀରୋଦଶାୟୀ ତୃତୀୟ ପୁରୁଷାବତାର ବିଷ୍ଣୁ ଓ ଅନନ୍ତଦେବ ଏମାନେ ଯାହାଙ୍କର ଅଂଶ ଓ କଳା ( ଅଂଶର ଅଂଶ ) ସେହି ଶ୍ରୀନିତ୍ୟାନନ୍ଦନାମା ବଳଦେବ ବା ମୂଳସଙ୍କର୍ଷଣ ମୋର ଆଶ୍ରୟ ହେଉନ୍ତୁ । [ ୬ଷ୍ଠ ଶ୍ଲୋକାର୍ଥ ]

ପୂର୍ବକଥିତ ଶ୍ରୀବଳରାମତତ୍ତ୍ୱ ବିସ୍ତାରରୂପେ ବର୍ଣ୍ଣନା କରି ଗ୍ରନ୍ଥକାର ଉପରୋକ୍ତ ଶ୍ଲୋକର ଅର୍ଥ କରୁଅଛନ୍ତି; ଶ୍ରୀବଳରାମ ଗୋସାଇଁ ମୂଳ ସଙ୍କର୍ଷଣରୂପରେ ସଙ୍କର୍ଷଣାଦି ପଞ୍ଚରୂପ ଧାରଣକରି ଶ୍ରୀକୃଷ୍ଣଙ୍କର ସେବା କରନ୍ତି । ୬ ।

ଶ୍ରୀବଲରାମ ନିଜେ ଏବଂ ପଞ୍ଚରୂପ ଧରି କି ପ୍ରକାର ଶ୍ରୀକୃଷ୍ଣଙ୍କର ସେବା କରନ୍ତି ତାହା ବର୍ଣ୍ଣନା କରୁଅଛନ୍ତି । ଶ୍ରୀବଳରାମ ମୂଳ ସଙ୍କର୍ଷଣରୂପରେ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍ ସେବା କରନ୍ତି ଏବଂ ଅପର

ସଙ୍ଗେ ଅନନ୍ତ ହଇ୍ ଙ୍କ ଆଜ୍ଞାର ପାଳନ ।
ଉପର୍ଯ୍ୟଧୋ ବ୍ୟାପି ଅଙ୍କୁଙ୍ଗ୍ଣେର ବିବଧ ସେବନ ।୮।
ବ୍ରହ୍ମାଣ୍ଡେ ପ୍ରକାଶ ତାହ୍ରଁ-କୃଷ୍ଣସେବାନନ୍ଦ ।
ଏକଇ ସ୍ୱରୂପ ଚୈତନ୍ୟ-ସଙ୍ଗେ ନିତ୍ୟାନନ୍ଦ ।୯।
...ାକେର ଅର୍ଥ କରି ଚୈତିଶ୍ଳୋକେ ।
ଯାତେ ନିତ୍ୟାନନ୍ଦ-ତତ୍ତ୍ୱ ଜାନେ ସର୍ବଲୋକେ ।୧୦।

ତଥାହି ଶ୍ରୀରୂପଗୋସ୍ୱାମି-କଡ଼ଚାୟାମ୍—

ମାୟାତୀତେ ବ୍ୟାପି-ବୈକୁଣ୍ଠଲୋକେ,
ପୂର୍ଣ୍ଣୈଶ୍ୱର୍ଯ୍ୟେ ଶ୍ରୀଚତୁର୍ବ୍ୟୂହମଧ୍ୟେ ।
ରୂପଂ ଯସ୍ୟୋଦ୍ଭାତି ସଙ୍କର୍ଷଣାଖ୍ୟଂ,
ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥୭॥ ※

ନନୁ ସୃଷ୍ଟ୍ୟାଦିକାର୍ଯ୍ୟଂ କଥଂ ତତ୍ସେବା ଭବତି ଇତ୍ୟତ ଆହ "ସୃଷ୍ଟ୍ୟାଦିକ" ଇତି । ଆଜ୍ଞାପାଳନଂ ନାମ ସେବା ତେନ ଶ୍ରୀକୃଷ୍ଣାଜ୍ଞୟା କୃତଂ ସୃଷ୍ଟ୍ୟାଦିକଂ ତତ୍ସେବା ଭବତୀତ୍ୟର୍ଥଃ । ପଞ୍ଚମସ୍ୟ ଶେଷରୂପସ୍ୟ ସେବାମାହ "ଶେଷରୂପେ" ଇତି ଶେଷରୂପେଣ ଅନନ୍ତରୂପେଣ ଶ୍ରୀକୃଷ୍ଣସ୍ୟ ପାଦୁକାଦି ବିବିଧସେବନଂ କରୋତି । ୮ । ବି, ଚ,

"ସଙ୍ଗ" ଇତି ଯୋ ବଳରାମଃ ସଙ୍ଗରୂପେ ମୂଳସଙ୍କର୍ଷଣାଦିଭିଃ ଷଡ଼୍ଭିଃ ରୂପୈଃ ଶ୍ରୀକୃଷ୍ଣଂ ସେବତେ ସ ଏବ ଶ୍ରୀନିତ୍ୟାନନ୍ଦ ଇତି ଶ୍ଳୋକାର୍ଥ ଇତି । ୯ । ବି, ଚ,

ସଙ୍କର୍ଷଣାଦୟଃ ଶ୍ରୀବଳଦେବସ୍ୟ ଅଂଶକଳା ଇତି ପ୍ରଥମୋକ୍ତ ସପ୍ତମଶ୍ଳୋକେ ଉକ୍ତଂ ତନ୍ନ ...କେ ତେ ସଙ୍କର୍ଷଣାଦୟଇତି ତେଷାଂ ତତ୍ତ୍ୱଜ୍ଞାନମପେକ୍ଷିତଂ ଅତଃ କିମିକତସ୍ୟା ତତ୍କଥୟିତୁମାହ "ସପ୍ତମ" ଇତି । ତେଷାଂ ଯତ୍ ତତ୍ତ୍ୱକଥନଂ ତଦେବ ସପ୍ତମଶ୍ଳୋକାର୍ଥଃ । ତମେବ ମାୟାତୀତେ ଇତ୍ୟାଦି ବକ୍ଷ୍ୟମାଣୈଃ ଚତୁର୍ଭିଃ ଶ୍ଳୋକୈଃ କଥୟାମି । ୧୦ । ବି, ଚ,

※ ଅସ୍ୟ ଶ୍ଳୋକ—( ଅନୁଚ୍ଛେଦ—୧ମ ପରିଚ୍ଛେଦ ୮ମ ଶ୍ଳୋକ ଦେଖ )

...ର ରୂପରେ ସୃଷ୍ଟିଲୀଳା କାର୍ଯ୍ୟରୂପ ସେବା କରନ୍ତି । ଅର୍ଥାତ୍ ଚତୁର୍ବ୍ୟୂହ ମଧ୍ୟସ୍ଥ ସଙ୍କର୍ଷଣରୂପରେ ଗୋଲୋକ ବୈକୁଣ୍ଠାଦିଧାମ ପ୍ରକାଶରୂପ ସେବା କରନ୍ତି ଓ ପ୍ରଥମ, ଦ୍ୱିତୀୟ, ତୃତୀୟ ପୁରୁଷରୂପରେ ଜଗତ୍ ସୃଷ୍ଟିରୂପ ସେବା କରନ୍ତି । ୭ ।

ଶ୍ରୀକୃଷ୍ଣଙ୍କର ଆଦେଶପାଳନ ହେତୁ ସୃଷ୍ଟିଆଦି କାର୍ଯ୍ୟ କରନ୍ତି । ଏହି ଆଜ୍ଞାପାଳନଜନିତ କାର୍ଯ୍ୟହିଁ ସେବା ଅଟେ । ଏପରି ପଞ୍ଚମ ଅର୍ଥାତ୍ ଶେଷଦେବରୂପରେ ଶ୍ରୀକୃଷ୍ଣଙ୍କର ପାଦୁକା ଛତ୍ରାଦି ହୋଇ ନାନାବିଧ ସେବା କରନ୍ତି । ୮ ।

ଏହି ପ୍ରକାର ସର୍ବରୂପରେ ( ଅର୍ଥାତ୍ ମୂଳସଙ୍କର୍ଷଣାଦିଷଡ଼ରୂପରେ ) ଯେଉଁ ବଳରାମ ଶ୍ରୀକୃଷ୍ଣଙ୍କର ସେବାନନ୍ଦ ସୁଖ ଆସ୍ୱାଦନ କରନ୍ତି ସେହି ବଳରାମହିଁ ଶ୍ରୀକୃଷ୍ଣ ଚୈତନ୍ୟଙ୍କ ସଙ୍ଗରେ ଶ୍ରୀମନ୍ ନିତ୍ୟାନନ୍ଦ । ୯ ।

ଶ୍ରୀସ୍ୱରୂପ ଗୋସ୍ୱାମିଙ୍କଦ୍ୱାରା ଉପରୋକ୍ତ ସପ୍ତମ ଶ୍ଳୋକର ( ସଙ୍କର୍ଷଣଃ ଇତି ) ଅର୍ଥ ପରବର୍ତ୍ତୀ ଚାରି ଶ୍ଳୋକଦ୍ୱାରା କୁହା ହୋଇଅଛି । ଯଦ୍ଦ୍ୱାରା ଶ୍ରୀନିତ୍ୟାନନ୍ଦଙ୍କର ତତ୍ତ୍ୱ ବିଶେଷରୂପେ ଜଣାଯାଏ । ୧୦ ।

ମାୟାତୀତ ପୂର୍ଣ୍ଣ ଐଶ୍ୱର୍ଯ୍ୟସମନ୍ୱିତ ସର୍ବବ୍ୟାପନଶୀଳ ଶ୍ରୀବୈକୁଣ୍ଠଲୋକରେ ବାସୁଦେବ ସଙ୍କର୍ଷଣ ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଏହି ଚତୁର୍ବ୍ୟୂହ ମଧ୍ୟରେ ସଙ୍କର୍ଷଣ ନାମରେ ଯାହାଙ୍କର ରୂପ ପ୍ରକାଶିତ ସେହି ଶ୍ରୀନିତ୍ୟାନନ୍ଦାଖ୍ୟ ବଳରାମଙ୍କ ଶରଣ ନେଲି । [ ଅସ୍ୟ ଶ୍ଳୋକାର୍ଥ ]

| | |
|---|---|
| ପ୍ରକୃତିର ପର—ପରବ୍ୟୋମନାମେ ଧାମ । | (ତଥାହି ଅନାଦିସିଦ୍ଧିର୍ସଂର୍ଷଣ । |
| କୃଷ୍ଣବିଗ୍ରହ ଯୈଛେ—ବିଭୂତ୍ୟାଦି ଗୁଣବାନ ।୧୧। | ସ୍ୱସ୍ୱମୂର୍ଦ୍ଧ୍ନି ଯଥା ସୂର୍ଯ୍ୟୋ ମଧ୍ୟେ ଯେବନ । ୬ । |
| ସର୍ବଗ ଅନନ୍ତ ବିଭୁ ବୈକୁଣ୍ଠାଦି ଧାମ । | ଅଚିନ୍ତ୍ୟଶକ୍ତ୍ୟା ଭାତ୍ୟୂର୍ଦ୍ଧ୍ୱଂ ! |
| କୃଷ୍ଣ କୃଷ୍ଣ-ଅବତାରେର ତାହାଇଁ ବିଶ୍ରାମ ।୧୨। | ଦୃଶ୍ୟତେ ! |
| ତାହାର ଉପରିଭାଗେ—କୃଷ୍ଣଲୋକ ଖ୍ୟାତ । | ସର୍ବୋପରି ଶ୍ରୀଗୋକୁଲ ବ୍ରଜଲୋକଧାମ ! ୭ । |
| ଦ୍ୱାରକା ମଥୁରା ଗୋକୁଲ—ତ୍ରିବିଧତ୍ୱେ ସ୍ଥିତ ।୧୩। | ଶ୍ରୀଗୋଲୋକ ଶ୍ୱେତଦ୍ୱୀପ ବୃନ୍ଦାବନ ନାମ ।୧୪। |

ଇଦଂ ପ୍ରଥମପରିଚ୍ଛେଦ ସପ୍ତମଶ୍ଳୋକୋକ୍ତ ସଙ୍କର୍ଷଣତତ୍ତ୍ୱବର୍ଣ୍ଣନାମୁପସ୍ୟୋକ୍ତଶ୍ଳୋକସ୍ୟାର୍ଥଂ ବିବୃତ । ତତ୍ର ପ୍ରଥମାର୍ଦ୍ଧାର୍ଥମାହ "ପ୍ରକୃତିର" ଇତ୍ୟାଦିଭିଃ । ଅଥ ସଙ୍କର୍ଷଣଧାମ କଥୟିତ୍ୱା ଶ୍ରୀକୃଷ୍ଣ ଧାମାଦିବର୍ଣ୍ଣନମିତଙ୍କେଷୁଂ ।୧୧—୧୪। ବି, ଚ,

"ଯଥା" 'ମଧ୍ୟାହ୍ନେ' ମଧ୍ୟାହ୍ନସମୟେ ସୂର୍ଯ୍ୟଃ, ସ୍ୱସ୍ୱମୂର୍ଦ୍ଧ୍ନି ନିଜନିଜମସ୍ତକୋପରି ଦୃଶ୍ୟତେ 'ତଥା' ପୃଥିବ୍ୟାଂ 'ଅପି' ସ୍ଥିତ୍ୱା ବ୍ରଜଲୋକୈର୍ଦ୍ଧ୍ୱଂ ଲଲାଟୋର୍ଦ୍ଧ୍ୱଦେଶେ 'ଅଚିନ୍ତ୍ୟଶକ୍ତ୍ୟା' ଅଚିନ୍ତ୍ୟ ଶକ୍ତିମତ୍ତ୍ୱାମ୍ ଇତ୍ୟର୍ଥଃ 'ଦୃଶ୍ୟତେ' ସାଧକୈରିତି ଶେଷଃ । [ ୪ର୍ଥ ଶ୍ଳୋକଃ ]

ପ୍ରପଞ୍ଚ ଜଗତର ଅତୀତ ଅର୍ଥାତ୍ ଚିନ୍ମୟଧାମହିଁ ପରବ୍ୟୋମ ଅଟେ । ପରବ୍ୟୋମ ( ପର, ଶ୍ରେଷ୍ଠ ବ୍ୟୋମ-ଆକାଶ ) ଅର୍ଥାତ୍ ଆକାଶବତ୍ ସର୍ବବ୍ୟାପକ କିନ୍ତୁ ଆକାଶବତ୍ ନିରବୟବ ନୁହେଁ । ( ସାବୟବ ) ଏହି ପରବ୍ୟୋମ ଶ୍ରୀକୃଷ୍ଣଙ୍କର ଶ୍ରୀବିଗ୍ରହ ତୁଲ୍ୟ ବିଭୂଇତ୍ୟାଦି ଗୁଣଯୁକ୍ତ ଅର୍ଥାତ୍ ଶ୍ରୀକୃଷ୍ଣ ସାବୟବ ହୋଇ ସୁଦ୍ଧା ଯେପରି ସର୍ବବ୍ୟାପକ, ସର୍ବଗ ଓ ଅନନ୍ତ ଏହି ପରବ୍ୟୋମ ମଧ୍ୟ ତଦ୍ରୂପ । ଯେହେତୁ ଏହି ପରବ୍ୟୋମହିଁ ଶ୍ରୀକୃଷ୍ଣଙ୍କର ଧାମ ଏବଂ ଏଥିରେ ଶ୍ରୀକୃଷ୍ଣଙ୍କର ଅବତାରମାନଙ୍କର ଅର୍ଥାତ୍ ଶ୍ରୀରଘୁନାଥ, ଶ୍ରୀନରସିଂହ, ଶ୍ରୀବରାହ ଇତ୍ୟାଦିମାନଙ୍କର ବୈକୁଣ୍ଠଧାମମାନ ଅଛନ୍ତି । ୧୧।୧୨ ।

ବୈକୁଣ୍ଠ—କୁଣ୍ଠ ଅର୍ଥାତ୍ ଜଡ଼ ଯେଉଁଠାରେ ନାହିଁ । ଅର୍ଥାତ୍ ଯେଉଁଠାରେ ଭୂମ୍ୟାଦି ସମସ୍ତ ଚିନ୍ମୟ ।

ଏହି ପରବ୍ୟୋମର ମଧ୍ୟରେ ବୈକୁଣ୍ଠାଦିଧାମର ଉପରିଭାଗକୁ ଶ୍ରୀକୃଷ୍ଣଲୋକ କୁହାଯାଏ । ଏହି ଶ୍ରୀକୃଷ୍ଣଲୋକ ତିନପ୍ରକାର । ଯଥା ;—ଦ୍ୱାରକା, ମଥୁରା ଓ ଗୋକୁଳ । ୧୩ ।

ମଧ୍ୟାହ୍ନ ସମୟରେ ଦର୍ଶକମାନେ ପ୍ରତ୍ୟେକେ ଯେପରି ସୂର୍ଯ୍ୟଙ୍କୁ ନିଜନିଜ ମସ୍ତକୋପରି ଦେଖନ୍ତି, ସେହିପରି ଶ୍ରୀକୃଷ୍ଣଙ୍କର ଅଚିନ୍ତ୍ୟଶକ୍ତି ପ୍ରଭାବରେ ତାହାଙ୍କର ଧାମ ପୃଥିବ୍ୟାଦି ଜଗତର ଊର୍ଦ୍ଧ୍ୱରେ ପ୍ରକାଶମାନ ହୁଏ । [ ୪ର୍ଥ ଶ୍ଳୋକାର୍ଥ ]

ଏହି ତ୍ରିବିଧ କୃଷ୍ଣଧାମମାନଙ୍କର ମଧ୍ୟରେ ଶ୍ରୀଗୋକୁଳ ସମସ୍ତଙ୍କ ଉପରେ ଏବଂ ତାହା ଶ୍ରୀବ୍ରଜଲୋକମାନଙ୍କର ବାସସ୍ଥାନ । ଏହି ଗୋକୁଳର ଶ୍ରୀଗୋଲୋକ, ଶ୍ରୀଶ୍ୱେତଦ୍ୱୀପ ଓ ଶ୍ରୀବୃନ୍ଦାବନ ନାମତ୍ରୟ ଅଟେ । ୧୪ ।

ସର୍ବଗ ଅନନ୍ତ ବିଭୁ କୃଷ୍ଣତନୁ-ସମ ।
ଉପର୍ଯ୍ୟଧୋ ବ୍ୟାପି ଅଛେ—ନାହିଁକ ନିୟମ ।୧୫।
ବ୍ରହ୍ମାଣ୍ଡେ ପ୍ରକାଶ ତାର କୃଷ୍ଣେର ଇଚ୍ଛାୟ ।
ଏକଇ ସ୍ୱରୂପ ତାର, ନାହିଁ ଦୁଇ କାୟ । ୧୬ ।

ଚିନ୍ତାମଣି ଭୂମି, କଳ୍ପବୃକ୍ଷମୟ ବନ ।
ଚର୍ମ୍ମଚକ୍ଷେ ଦେଖେ ତାରେ ପ୍ରପଞ୍ଚେର ସମ । ୧୭ ।
ପ୍ରେମନେତ୍ରେ ଦେଖେ ତାର ସ୍ୱରୂପପ୍ରକାଶ ।
ଗୋପ-ଗୋପୀ-ସଙ୍ଗେ ଯାହାଁ କୃଷ୍ଣେର ବିଳାସ ।୧୮।

ଶ୍ରୀଗୋକୁଲଂ ବର୍ଣ୍ଣୟନ୍ ତଦେବ ସ୍ୱୟଂ ଭଗବତଃ ଶ୍ରୀକୃଷ୍ଣସ୍ୟ ବାସ ଇତି ବର୍ଣ୍ଣୟତି "ସର୍ବଗ" ଇତ୍ୟାଦି ଗୋପଗୋପୀ" ଇତ୍ୟନ୍ତେନ । ଅତ୍ର ଅନ୍ତର୍ଭୂତପରମାଲୌକିକତ୍ୱେନ ଲୌକିକତ୍ୱେନ ଚ କେବଲେନ ପରମାଲୌକିକତ୍ୱେନ ସଦାପୃଥକ୍ତୟା ଶ୍ରୀବ୍ରଜଗୋଲୋକତୟା ବୈଲକ୍ଷଣ୍ୟଂ ଜ୍ଞେୟଂ । ଯଥା ଚିନ୍ତାମଣ୍ୟାଦୀନାଂ ଗୋଲୋକେ ଅନୁବାଦତ୍ୱଂ ଶ୍ରୀବ୍ରଜେ ବିଧେୟତ୍ୱଂ । ତଥାଚୋକ୍ତଂ ବ୍ରହ୍ମସଂହିତାୟାଂ । ଶ୍ରିୟଃକାନ୍ତାଃ କାନ୍ତଃ ପରମପୁରୁଷଃ କଳ୍ପତରବୋ ଦ୍ରୁମାଃ ଭୂମିଶ୍ଚିନ୍ତାମଣିଗଣମୟୀ ତୋୟମମୃତଂ । କଥା ଗାନଂ ନାଟ୍ୟଂ ଗମନମପି ବଂଶୀପ୍ରିୟସଖୀ ଚିଦାନନ୍ଦଂ ଜ୍ୟୋତିଃ ପରମପି ତଦାସ୍ୱାଦ୍ୟ ମପିଚ ।

ଅସ୍ୟାର୍ଥଃ । ଶ୍ରିୟୋଽନୁବାଦରୂପାଃ କାନ୍ତାବିଧେୟରୂପାଃ ପରମପୁରୁଷୋଽନୁବାଦରୂପଃ କାନ୍ତୋ ବିଧେୟରୂପଃ କଳ୍ପତରବୋଽନୁବାଦରୂପାଃ ଚିନ୍ତାମଣିଗଣମୟୀତି ଚିନ୍ତାମଣିଗଣସ୍ୱରୂପଂ ଭୂମିର୍ବିଧେୟରୂପା । ୧୫ । ବି, ଚ,

ବ୍ରହ୍ମାଣ୍ଡେ ଇତି । ଅପ୍ରାକୃତସ୍ୟ ତସ୍ୟ ଶ୍ରୀଗୋକୁଲସ୍ୟ ପ୍ରାକୃତବ୍ରହ୍ମାଣ୍ଡେ ପ୍ରକାଶଃ ପ୍ରାକଟ୍ୟଂ ଶ୍ରୀକୃଷ୍ଣେଚ୍ଛୟୈବ । ଯଦୈବ ଶ୍ରୀକୃଷ୍ଣସ୍ୟ ବ୍ରହ୍ମାଣ୍ଡମଧ୍ୟେ ପ୍ରକଟେଚ୍ଛା ଭବତି ତଦୈବ ତସ୍ୟ ତତ୍ର ପ୍ରକାଶଃ ସ୍ୟାତ୍ ଇତ୍ୟର୍ଥଃ । ନନୁ ବ୍ୟାପକସ୍ୟ ତସ୍ୟ ଶ୍ରୀଗୋକୁଲସ୍ୟ ବ୍ୟାପ୍ୟ ବ୍ରହ୍ମାଣ୍ଡମଧ୍ୟେ ପ୍ରକାଶାସମ୍ଭବାତ୍ ସଃ ପ୍ରକାଶଃ କିମଂଶାଦିନା ନହୀତ୍ୟାହ "ଏକଇ" ଇତି । ପ୍ରକାଶାପ୍ରକାଶେ ତସ୍ୟ ଶ୍ରୀଗୋକୁଲସ୍ୟ ଏକସ୍ୱରୂପତ୍ୱାତ୍ ଭିନ୍ନକାୟତ୍ୱାଭାବାତ ବ୍ରହ୍ମାଣ୍ଡମଧ୍ୟେ ତସ୍ୟ ପୂର୍ଣ୍ଣପ୍ରକାଶଏବ ନତୁ ଅଂଶାଦିନା ଶ୍ରୀକୃଷ୍ଣପ୍ରକାଶବଦିତ୍ୟର୍ଥଃ । ୧୬ । ବି, ଚ,

ତଦା କଥଂ ତଦପି ଚିନ୍ତାମଣିଭୂମ୍ୟାଦିକଂ ନ ଦୃଶ୍ୟତେ ତତ୍ରୈବାସ୍ୟଶକ୍ତ୍ୟଭାବାଦିତ୍ୟାହ "ଚର୍ମ୍ମଚକ୍ଷେ" ଇତି । ଭକ୍ତିଶକ୍ତିବିହୀନେନ ପ୍ରାକୃତେନ ଚକ୍ଷୁଷା ତନ୍ନ ଦୃଶ୍ୟତେ ଇତ୍ୟର୍ଥଃ । ପ୍ରେମନେତ୍ରେ ଭକ୍ତିଶକ୍ତିମତା ଅପ୍ରାକୃତେନ ଚକ୍ଷୁଷା ତତ୍ ଦୃଶ୍ୟତେ ଇତ୍ୟର୍ଥଃ । "ଗୋପ" ଇତି । ତତ୍ରୈବ ଶ୍ରୀଗୋକୁଲେ ଶ୍ରୀକୃଷ୍ଣଃ ନିତ୍ୟଂ ବିଲସତୀତ୍ୟର୍ଥଃ । ସ୍ୱୟଂରୂପସ୍ୟ ଶ୍ରୀକୃଷ୍ଣସ୍ୟାସ୍ୟୈବ ଧାମ ଇତି ଭାବଃ । ୧୭।୧୮ । ବି, ଚ,

ଏହି କୃଷ୍ଣଧାମ ଶ୍ରୀଗୋକୁଳ ଶ୍ରୀକୃଷ୍ଣଙ୍କର ଶ୍ରୀବିଗ୍ରହତୁଲ୍ୟ ସର୍ବଗ, ଅନନ୍ତ ଓ ବିଭୁ । ବିଭୁ-ସର୍ବବ୍ୟାପକ । ଏହି ଧାମ ଉପରୁ ତଳପର୍ଯ୍ୟନ୍ତ ବ୍ୟାପି ରହିଅଛି । କିନ୍ତୁ ତାହା କୌଣସି ନିୟମ-ପରତନ୍ତ୍ରଭାବରେ ନୁହେ । ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ଅଚିନ୍ତ୍ୟଶକ୍ତିଦ୍ୱାରା ଏରୂପ ହୋଇଅଛି । ସେହି ଗୋକୁଳଧାମ ଶ୍ରୀକୃଷ୍ଣଙ୍କର ଇଚ୍ଛା ହେଲେ ଏହି ପ୍ରପଞ୍ଚଜଗତରେ ପ୍ରକାଶିତ ହୁଅନ୍ତି । କିନ୍ତୁ ଏହି ପ୍ରପଞ୍ଚ ଜଗତରେ ପ୍ରକାଶିତ ହେଲେ ସୁଦ୍ଧା, ଅଂଶ କିମ୍ବା ଦୁଇ ସ୍ୱତନ୍ତ୍ର-କାୟବିଶିଷ୍ଟ ନୁହନ୍ତି । ଅର୍ଥାତ୍ ଏକଇ ସ୍ୱରୂପ । ଏଠାରେ ଅଂଶାଂଶୀରୂପ ଭେଦ ନାହିଁ । ଶ୍ରୀକୃଷ୍ଣଙ୍କର ସ୍ୱୟଂ ଅବତାର ତୁଲ୍ୟ ପ୍ରକାଶ ଜାଣିବାକୁ ହେବ । ୧୫।୧୬ ।

ସେହି ଗୋକୁଳଭୂମି ଚିନ୍ତାମଣି, ବନସମସ୍ତ କଳ୍ପବୃକ୍ଷମୟ ହେଲେହେଁ ମନୁଷ୍ୟମାନେ ତାକୁ ପ୍ରାକୃତଚକ୍ଷୁରେ ପ୍ରପଞ୍ଚମୟଭୂମି ଓ ବନପରି ଦେଖନ୍ତି । କିନ୍ତୁ ଯାହାର ପ୍ରେମନେତ୍ର ଲାଭ ହୋଇଅଛି,

ତଥାହି ବ୍ରହ୍ମସଂହିତାୟାମ୍ (୫।୨୯)—
ଚିନ୍ତାମଣିପ୍ରକରସଦ୍ମସୁ କଳ୍ପବୃକ୍ଷ-
ଲକ୍ଷାବୃତେଷୁ ସୁରଭୀରଭିପାଳୟନ୍ତମ୍ ।
ଲକ୍ଷ୍ମୀସହସ୍ରଶତସମ୍ଭ୍ରମସେବ୍ୟମାନଂ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥୫॥ *

ମଥୁରା-ଦ୍ୱାରକାୟ ନିଜ ରୂପ ପ୍ରକାଶିୟା ।
ନାନା ରୂପେ ବିଳସୟେ ଚତୁର୍ବ୍ୟୂହ ହୈୟାଁ ।୧୯।

ବାସୁଦେବ ସଙ୍କର୍ଷଣ ପ୍ରଦ୍ୟୁମ୍ନାନିରୁଦ୍ଧ ।
ସର୍ବ ଚତୁର୍ବ୍ୟୂହ-ଅଂଶୀ ତୁରୀୟ ବିଶୁଦ୍ଧ । ୨୦ ।

ଏଇ ତିନ ଲୋକେ କୃଷ୍ଣ କେବଳ ଲୀଲାମୟ ।
ନିଜଗଣ ଲୈୟାଁ ଖେଲେ ଅନନ୍ତ ସମୟ । ୨୧ ।

ପରବ୍ୟୋମମଧ୍ୟେ କରି ସ୍ୱରୂପ ପ୍ରକାଶ ।
ନାରାୟଣରୂପେ କରେ ବିବିଧ ବିଲାସ । ୨୨ ।

କଳ୍ପବୃକ୍ଷଲକ୍ଷାବୃତେଷୁ ( କଳ୍ପବୃକ୍ଷାଣାଂ ଲକ୍ଷୈଃ ଆବୃତେଷୁ ) ଚିନ୍ତାମଣିପ୍ରକରସଦ୍ମସୁ ( ଚିନ୍ତାମଣୀନାଂ ପ୍ରକରେଣ ସମୂହେନ ରଚିତାନି ସଦ୍ମାନି ଗୃହାଣି ତେଷୁ ) ସୁରଭୀଃ ( କାମଧେନୂଃ ) ଅଭିପାଳୟନ୍ତଂ ( ଅଭିସର୍ବତୋଭାବେନ ଚାରଣାନୟନଚାରଣ ଗୋଷ୍ଠାନାନୟନପ୍ରକାରେଣ ପାଳୟନ୍ତଂ ) ଲକ୍ଷ୍ମୀସହସ୍ରଶତସମ୍ଭ୍ରମସେବ୍ୟମାନଂ ( କଦାଚିତ୍ ରହସି ତୁ ବୈଲକ୍ଷଣ୍ୟମିତ୍ୟାହ, ଲକ୍ଷ୍ମୀତି ଲକ୍ଷ୍ମ୍ୟୋଽତ୍ର ଗୋପସୁନ୍ଦର୍ଯ୍ୟ ଏବେତି ତାସାଂ ସହସ୍ରାଣାଂ ଶତୈଃ ସମ୍ଭ୍ରମେଣ ସେବ୍ୟମାନଂ ) ତମ୍ ଆଦିପୁରୁଷଂ ଗୋବିନ୍ଦଂ ( ଗୋପାଳନନ୍ଦନଂ ) ଅହମ୍ ଭଜାମି । [ ୫ମ ଶ୍ଳୋକଃ ]

ନିଜରୂପ ପ୍ରକାଶିୟା, ନିଜରୂପସ୍ୟ ନିଜଦ୍ୱିଭୁଜସ୍ୱରୂପବିଗ୍ରହସ୍ୟ ପ୍ରକାଶରୂପେଣ ଇତ୍ୟର୍ଥଃ ।୧୯।୨୦। ଚ, ଚ,

କିମର୍ଥଂ ତିଷୁ ସ୍ଥାନେଷୁ ବିଳସତି ଇତ୍ୟତସ୍ତସ୍ୟ କାର୍ଯ୍ୟମାହ "ଏଇ ତିନ" ଇତି । ଲୀଳାମୟ ଇତି ଶ୍ରୀକୃଷ୍ଣବିଶେଷଣଂ । ତ୍ରିବିଧ ଲୀଳାର୍ଥମେବ ଗୋକୁଳାଦିଷୁ ତ୍ରିଷୁ ଲୋକେଷୁ କ୍ରୀଡ଼ତି ତଥା ତତ୍ ଲୀଳା ଏବ ତସ୍ୟ କାର୍ଯ୍ୟଂ ନତୁ ଅନ୍ୟତ୍ ସୃଷ୍ଟ୍ୟାଦିକଂ କେବଳଲୀଳାମୟତ୍ୱାଦିତ୍ୟର୍ଥଃ ତତ୍ତଲ୍ଲୀଳାର୍ଥମେବ ତ୍ରିଷୁ ସ୍ଥାନେଷୁ ବିଳସତୀତି ଭାବଃ । ୨୧ । ଚ, ଚ,

କେବଲଲୀଳାମୟସ୍ୱରୂପମୁକ୍ତ୍ୱା ମୁକ୍ତିପ୍ରଦଶ୍ରୀନାରାୟଣରୂପଂ ବକ୍ତୁମାହ "ପରବ୍ୟୋମ" ଇତ୍ୟାଦି । ସ୍ୱରୂପସ୍ୟ ନିଜରୂପସ୍ୟ ପ୍ରକାଶଃ ଶ୍ରୀନାରାୟଣରୂପଃ । ୨୨ । ଚ, ଚ,

ଅର୍ଥାତ୍ ଚିନ୍ମୟ ଦୃଷ୍ଟିଶକ୍ତି ହୋଇଅଛି । ସେ ଶ୍ରୀଗୋକୁଳର ଚିନ୍ମୟସ୍ୱରୂପ ଦେଖନ୍ତି ଏବଂ ସେଠାରେ ଗୋପଗୋପୀସହ ଗୋପାଳଙ୍କମାନ ଶ୍ରୀକୃଷ୍ଣଙ୍କର ସ୍ୱୟଂରୂପର ବିଳାସ ଦେଖନ୍ତି । ୧୭।୧୮ ।

ଯେ ଚିନ୍ତାମଣିନିର୍ମିତ ଗୃହମାନଙ୍କଦ୍ୱାରା ସୁଶୋଭିତ ଓ ଲକ୍ଷ ଲକ୍ଷ ସୁଶୋଭନ କଳ୍ପବୃକ୍ଷସମାବୃତ ଅନୁପମ ପୀଠସ୍ଥଳରେ ( ଶ୍ରୀଗୋକୁଳରେ ) କାମଧେନୁମାନଙ୍କୁ ସର୍ବତୋଭାବେ ପ୍ରତିପାଳନ କରୁଅଛନ୍ତି ଏବଂ ଯାହାଙ୍କୁ ଶତସହସ୍ର ଗୋପସୁନ୍ଦରୀମାନେ ସମ୍ଭ୍ରମର ସହିତ ସେବା କରୁଅଛନ୍ତି ସେହି ଆଦିପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନ କରେଁ ।

ଅଭିପାଳୟନ୍ତଂ—ଗୋଶାଳାରୁ ଫିଟାଇ ବାହାରିକୁ ଆଣିବା, ସେଠାରୁ ଗୋଚାରଣଭୂମିକୁ ଚରାଇବାକୁ ନେବା ଓ ପୁନର୍ବାର ଗୋଶାଳାକୁ ଆଣିବା ସେଠାରେ ଖାଦ୍ୟ ପାନୀୟ ଦେଇ ଦୋହନ କରିବା ଇତ୍ୟାଦି । [ ୫ମ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣ ସ୍ୱୟଂରୂପରେ ଶ୍ରୀଗୋକୁଳଧାମରେ ଯେପରି ଲୀଳା କରନ୍ତି ମଥୁରା ଓ ଦ୍ୱାରକାଧାମରେ ମଧ୍ୟ ସେ ପ୍ରକାଶରୂପରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଏହି ନାମଧେୟ ଚତୁର୍ବ୍ୟୂହ ହୋଇ ଦ୍ୱିଭୁଜରୂପରେ ନାନାପ୍ରକାର ଲୀଳା କରନ୍ତି । ଏହି ଦ୍ୱାରକାସ୍ଥ ଚତୁର୍ବ୍ୟୂହ ମାୟାତୀତ ବିଶୁଦ୍ଧ ଚତୁର୍ବ୍ୟୂହ ଏବଂ ଅପର ସବୁ ବୈକୁଣ୍ଠାଦିର ଚତୁର୍ବ୍ୟୂହର ମୂଳ । ଅର୍ଥାତ୍ ଅଂଶୀ । ୧୯।୨୦ ।

ସ୍ୱରୂପବିଗ୍ରହ କୃଷ୍ଣେର କେବଲ ଦ୍ୱିଭୁଜ ।
ନାରାୟଣରୂପେ ସେଇ ତନୁ ଚତୁର୍ଭୁଜ । ୧୩ ।
ଶଙ୍ଖ ଚକ୍ର ଗଦା ପଦ୍ମ ମହୈଶ୍ୱର୍ଯ୍ୟମୟ ।
ଶ୍ରୀ-ଭୂ-ଲୀଳା-ଶକ୍ତି ଯାଁର ଚରଣ ସେବୟ । ୧୪ ।
ଯଦ୍ୟପି କେବଲ ତାଁର କ୍ରୀଡ଼ାମାତ୍ର ଧର୍ମ୍ମ ।
ତଥାପି ଜୀବେର କୃପାୟ କରେ ଏତ କର୍ମ୍ମ ।୧୫।
ସାଲୋକ୍ୟ ସାମୀପ୍ୟ ସାର୍ଷ୍ଟି ସାରୂପ୍ୟ ପ୍ରକାର ।
ଚାରି ମୁକ୍ତି ଦିୟା କରେ ଜୀବେର ନିସ୍ତାର ।୧୬।
ବ୍ରହ୍ମସାୟୁଜ୍ୟମୁକ୍ତେର ତାଁହା ନାହିଁ ଗତି ।
ବୈକୁଣ୍ଠ-ବାହିରେ ତାସଭାର ହୟ ସ୍ଥିତି । ୧୭ ।
ବୈକୁଣ୍ଠ-ବାହିରେ ଏକ ଜ୍ୟୋତିର୍ମ୍ମୟ-ମଣ୍ଡଲ ।
କୃଷ୍ଣେର ଅଙ୍ଗେର ପ୍ରଭା—ପରମ ଉଜ୍ଜ୍ୱଲ । ୧୮ ।

ସ୍ୱରୂପନାରାୟଣରୂପୟୋଃ ସ୍ୱରୂପମାହ "ସ୍ୱରୂପ" ଇତି । ଦ୍ୱିଭୁଜଏବ ଶ୍ରୀକୃଷ୍ଣସ୍ୟ ସ୍ୱରୂପଦେହଃ ସେଇ ତନୁ ସ ଏବ ଦ୍ୱିଭୁଜଦେହଃ ନାରାୟଣରୂପେଣ ଚତୁର୍ଭୁଜଃ । ଦ୍ୱିଭୁଜସ୍ୱରୂପସ୍ୱୟଂରୂପସ୍ୟ ଶ୍ରୀକୃଷ୍ଣସ୍ୟ ଚତୁର୍ଭୁଜରୂପ ଏବ ଶ୍ରୀନାରାୟଣରୂପ ଇତ୍ୟର୍ଥଃ । ୧୩ । ବି, ଚ,

ଶ୍ରୀନାରାୟଣରୂପଂ ବର୍ଣ୍ଣୟତି ଶଙ୍ଖ ଇତି ଅତ୍ର ବଶିଷ୍ଟାର୍ଥେ ମୟଟ୍, ଶଙ୍ଖାଦି ବଶିଷ୍ଟ ଇତ୍ୟର୍ଥଃ ।୧୪। ବି, ଚ,

କିମର୍ଥଂ ସଃ ଶ୍ରୀନାରାୟଣରୂପ ଇତ୍ୟତ ଆହ "ଯଦ୍ୟପୀ" ତି । କରେ ଏତ କର୍ମ୍ମ ଏତତ୍ ବକ୍ଷ୍ୟମାଣଂ କର୍ମ୍ମ କରୋତି । ତଦେବାହ "ସାଲୋକ୍ୟ" ଇତି । କ୍ରୀଡ଼ାମାତ୍ରଂ ତଥା ସାଲୋକ୍ୟାଦି ଚତୁର୍ବ୍ବିଧ ମୁକ୍ତିପ୍ରଦାନଂ ଇତି ତସ୍ୟ କାର୍ଯ୍ୟଦ୍ୱୟଂ ଏତଦର୍ଥଂ ସଃ ଶ୍ରୀନାରାୟଣରୂପ ଇତିଭାବଃ । ୧୫।୧୬ । ବି, ଚ,

ସାୟୁଜ୍ୟମୁକ୍ତିଂ କଥଂ ନ ଦଦାତି ତତ୍ରାହ "ବ୍ରହ୍ମ" ଇତି । ମୁକ୍ତେର ମୁକ୍ତ୍ୟଧିକାରିଣାମିତିଶେଷଃ, ତାହା ତତ୍ର ଶ୍ରୀନାରାୟଣନିକଟେ ଗତିର୍ଗମନଂ ନ ଭବତି ଯତଃ ବୈକୁଣ୍ଠବାହିରେ ପରବ୍ୟୋମବହିରେବ ତେଷାଂ ସ୍ଥିତିର୍ଭବତି । ବ୍ରହ୍ମସାୟୁଜ୍ୟମୁକ୍ତ୍ୟଧିକାରିଣାଂ ପରବ୍ୟୋମବହିରେବ ସାୟୁଜ୍ୟମୁକ୍ତିର୍ଭବତି ଅତସ୍ତାଂ ନ ଦଦାତି ତସ୍ୟ ତଦାନାପେକ୍ଷାତ୍ୱାଦିତିଭାବଃ । ବୈକୁଣ୍ଠ ବହିରିତ୍ୟନେନୈତଲ୍ଲବ୍ଧଂ ମୁକ୍ତେରନ୍ୟମୁକ୍ତିଭ୍ୟଃ ନିକୃଷ୍ଟତ୍ୱ ମପ୍ୟୁକ୍ତମିତିଜ୍ଞେୟଂ । ୧୭ । ବି, ଚ,

ଶ୍ରୀଗୋକୁଳ, ମଥୁରା ଓ ଦ୍ୱାରକାରେ ଶ୍ରୀକୃଷ୍ଣ କେବଳ ଲୀଳା କରନ୍ତି ଅର୍ଥାତ୍ କ୍ରୀଡ଼ା କରନ୍ତି । ଅର୍ଥାତ୍ ସେହି ତିନିଲୋକରେ ତତ୍ରତ୍ୟ ଲୋକସ୍ଥ ପାର୍ଷଦମାନଙ୍କ ସହିତ ଅନନ୍ତକାଳ କ୍ରୀଡ଼ା କରନ୍ତି, ସୃଷ୍ଟିଆଦି କାର୍ଯ୍ୟ କରନ୍ତି ନାହିଁ । ୧ ।

ପରବ୍ୟୋମର ଉପରଭାଗର କଥା କହି, ମଧ୍ୟଭାଗର କଥା କହୁଅଛନ୍ତି । ଶ୍ରୀକୃଷ୍ଣ ପରବ୍ୟୋମରେ ମୁକ୍ତିପଦ ନାରାୟଣରୂପ ହୋଇ ନାନାପ୍ରକାର ଲୀଳା କରନ୍ତି । ୧୨ ।

ଶ୍ରୀକୃଷ୍ଣ ସ୍ୱୟଂ ରୂପରେ ଦୁଇ ଭୁଜ ହେଲେହେଁ ନାରାୟଣ ରୂପରେ ଚତୁର୍ଭୁଜ ହୁଅନ୍ତି । ୧୩ ।

ସେହି ନାରାୟଣ ମହାଐଶ୍ୱର୍ଯ୍ୟମୟ, ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଚତୁର୍ଭୁଜରେ ଧାରଣ କରନ୍ତି ଏବଂ ଶ୍ରୀ ( ମହାଲକ୍ଷ୍ମୀ ) ଭୂ ଓ ଲୀଳା ( ଶ୍ରୀମହାଲକ୍ଷ୍ମୀଙ୍କର ସଖୀଦ୍ୱୟ ) ଏହି ତିନିଶକ୍ତି ତାହାଙ୍କର ଚରଣସେବା କରନ୍ତି । ୧୪ ।

ଯଦ୍ୟପି ଶ୍ରୀକୃଷ୍ଣଙ୍କର କ୍ରୀଡ଼ାମାତ୍ର ଧର୍ମ୍ମ ତଥାପି ସେ ଜୀବମାନଙ୍କପ୍ରତି କୃପାପରବଶ ହୋଇ ଶ୍ରୀନାରାୟଣରୂପରେ ସାଲୋକ୍ୟ, ସାମୀପ୍ୟ, ସାର୍ଷ୍ଟି ଓ ସାରୂପ୍ୟ ଏହି ଚତୁର୍ବିଧପ୍ରକାର ମୁକ୍ତି ଦାନ କରି ସେମାନଙ୍କୁ ଉଦ୍ଧାର କରନ୍ତି । ୧୫।୧୬ ।

ବ୍ରହ୍ମସାୟୁଜ୍ୟମୁକ୍ତିଅଧିକାରୀମାନେ ସେହି ନାରାୟଣଙ୍କ ନିକଟକୁ ଯାଇପାରନ୍ତି ନାହିଁ । କାରଣ ସେମାନଙ୍କର ବୈକୁଣ୍ଠ ଅର୍ଥାତ୍ ପରବ୍ୟୋମର ବାହାରେ ରହିବାର ସ୍ଥାନ । ଏହାର ଭାବ ଏହି ଯେ ସାୟୁଜ୍ୟ ମୁକ୍ତ୍ୟଧିକାରୀମାନେ ପରବ୍ୟୋମର ବାହାରେ ଜ୍ୟୋତିର୍ମ୍ମୟଧାମରେ ସାୟୁଜ୍ୟମୁକ୍ତି

ସିଦ୍ଧଲୋକ ନାମ ତାର—ପ୍ରକୃତିର ପାର ।
ଚିତ୍‌ସ୍ୱରୂପ, ତାହାଁ ନାହିଁ ଚିଚ୍ଛକ୍ତିବିକାର । ୨୯ ।
ସୂର୍ଯ୍ୟେର ମଣ୍ଡଲ ଯୈଛେ ବାହିରେ ନିର୍ବିଶେଷ ।
ଭିତରେ ସୂର୍ଯ୍ୟେର ରଥ-ଆଦି ସବିଶେଷ । ୩୦ ।

ଭକ୍ତିରସାମୃତସିନ୍ଧୌ (୧।୨।୧୩୬)—

ଯଦରୀଣାଂ ପ୍ରିୟାଣାଞ୍ଚ ପ୍ରାପ୍ୟମେକମିବୋଦିତମ୍ ।
ତଦ୍‌ବ୍ରହ୍ମକୃଷ୍ଣୟୋରୈକ୍ୟାତ୍
କିରଣାର୍କୋପମାଜୁଷୋଃ ॥ ୬ ॥ *

ତୈଛେ ପରବ୍ୟୋମେ ନାନା ଚିଚ୍ଛକ୍ତିବିଲାସ ।
ନିର୍ବିଶେଷ ଜ୍ୟୋତିର୍ବିମ୍ବ ବାହିରେ ପ୍ରକାଶ ।୩୧।
ନିର୍ବିଶେଷ ବ୍ରହ୍ମ ସେଇ କେବଲ ଜ୍ୟୋତିର୍ମ୍ମୟ ।
ସାୟୁଜ୍ୟେର ଅଧିକାରୀ ତାହାଁ ପାୟ ଲୟ । ୩୨ ।

ତଥାହି ଭକ୍ତିରସାମୃତସିନ୍ଧୌ (୧।୨।୧୩୮)
ବ୍ରହ୍ମାଣ୍ଡପୁରାଣବଚନମ୍—

ସିଦ୍ଧଲୋକସ୍ତୁ ତମସଃ ପାରେ ଯତ୍ର ବସନ୍ତି ହି ।
ସିଦ୍ଧା ବ୍ରହ୍ମସୁଖେ ମଗ୍ନା ଦୈତ୍ୟାଶ୍ଚ ହରିଣା
ହତାଃ ॥ ୭ ॥ *

ବ୍ରହ୍ମସାୟୁଜ୍ୟମୁକ୍ତ୍ୟଧିକାରିଣାଂ କଥଂ ବୈକୁଣ୍ଠବହିଃ ସ୍ଥିତିଃ । ବୈକୁଣ୍ଠବହିଃସ୍ଥେ ବ୍ରହ୍ମତତ୍ତ୍ୱେ ତତ୍ର ସାୟୁଜ୍ୟମୁକ୍ତ୍ୟଧିକାରିଣାଂ ଲୟୋ ଭବତି ଇତ୍ୟତସ୍ତେଷାଂ ତଦ୍‌ବୈକୁଣ୍ଠବହିରେବ ସ୍ଥିତିରିତି ଦର୍ଶୟିତୁଂ ବ୍ରହ୍ମତତ୍ତ୍ୱକଥନପୂର୍ବ୍ବକଂ ତେଷାଂ ତଲ୍ଲୟମାହ "ବୈକୁଣ୍ଠ" ଇତ୍ୟାଦି "ତାହା ପାୟ ଲୟ" ଇତ୍ୟନ୍ତଂ । ବୈକୁଣ୍ଠବାହିରେ ପରବ୍ୟୋମବହିଃ । ପ୍ରକୃତିର ପାର ଚିନ୍ମୟଂ ନନୁ ବୈକୁଣ୍ଠୋଽପି ଚିନ୍ମୟ ଏବ ତଦା ତତ୍ର କୋ ବିଶେଷଃ ଯତ୍ରତଦ୍‌ବହିଃ ସିଦ୍ଧଲୋକ ନାମ ଚିନ୍ମୟଂ ଜ୍ୟୋତିର୍ମ୍ମଣ୍ଡଲମିତ୍ୟାହ "ଚିତ୍ ସ୍ୱରୂପ" ଇତି । ତଜ୍ଜ୍ୟୋତିର୍ମ୍ମଣ୍ଡଲଂ ଚିତ୍‌ସ୍ୱରୂପମପି ଚିଚ୍ଛକ୍ତିବିଲାସଃ କଶ୍ଚିଦପ୍ୟତ୍ର ନାସ୍ତି ଚିତ୍‌ସ୍ୱରୂପ ବୈକୁଣ୍ଠେ ତୁ ସୋଽସ୍ତୀତି ତୟୋର୍ବିଶେଷ ଇତିଭାବଃ । ୨୮।୨୯ । ବି, ଚ,

ତଂ ବିଶେଷଂ ବିଶଦୟିତୁଂ ସଦୃଷ୍ଟାନ୍ତମାହ "ସୂର୍ଯ୍ୟେର" ଇତି । ଦ୍ୱାଭ୍ୟାଂ । ବାହିରେ ସୂର୍ଯ୍ୟଲୋକାଦ୍ ବହିଃ । ଭିତରେ ସୂର୍ଯ୍ୟଲୋକମଧ୍ୟେ । ସବିଶେଷଜ୍ୟୋତିର୍ମ୍ମୟ ସୂର୍ଯ୍ୟଲୋକାଦ୍ ବହିର୍ଯଥା ନିର୍ବିଶେଷଜ୍ୟୋତିର୍ମ୍ମଣ୍ଡଲଂ ତଥା ସବିଶେଷଚିନ୍ମୟପରମବ୍ୟୋମ୍ନଃ ବହିଃ ନିର୍ବିଶେଷଚିନ୍ମୟ-ଜ୍ୟୋତିର୍ମ୍ମଣ୍ଡଲମିତ୍ୟର୍ଥଃ । ୩୦।୩୧ । ବି, ଚ,

ଉପସଂହରତି ନିର୍ବିଶେଷ ଇତି । ଅନେନେଦଂ ଉକ୍ତଂ ଭବତି ପରବ୍ୟୋମ ବହିଃସ୍ଥ ନିର୍ବିଶେଷ ଚିତ୍‌ସ୍ୱରୂପଂ ଯତ୍ ଶ୍ରୀକୃଷ୍ଣାଙ୍ଗଜ୍ୟୋତିର୍ମ୍ମଣ୍ଡଲଂ ତଦ୍ ବ୍ରହ୍ମତତ୍ତ୍ୱଂ । ତତ୍ରୈବ ତତ୍‌ସାୟୁଜ୍ୟମୁକ୍ତ୍ୟଧି-କାରିଣାଂ ଲୟୋଭବତି ଇତ୍ୟତଃ ବ୍ରହ୍ମସାୟୁଜ୍ୟମୁକ୍ତ୍ୟଧିକାରିଣାଂ ବୈକୁଣ୍ଠବହିଃ ସ୍ଥିତିରିତି "ବୈକୁଣ୍ଠ ବାହିରେ ହୟ" ଏତତ୍ ପୂର୍ବ୍ବବାକ୍ୟେନ ସମ୍ବନ୍ଧଃ । ୩୨ । ବି, ଚ,

ଯତ୍ର ଯସ୍ମିନ୍ ଶାସ୍ତ୍ରେ ଅରୀଣାଂ ଭଗବଦ୍‌ବିଦ୍ୱେଷିଣାଂ ପ୍ରିୟାଣାଞ୍ଚ ଭଗବଦ୍‌ଭକ୍ତାନାଂ ଏକଂ ପ୍ରାପ୍ୟଂ ଉଦିତଂ କଥିତଂ ତତ୍ କିରଣାର୍କୋପମାଜୁଷୋଃ ବ୍ରହ୍ମକୃଷ୍ଣୟୋରୈକ୍ୟାତ୍ ଅନୟୋଃ ପ୍ରାପ୍ତ୍ୟାନାମୃତ୍ତନିର୍ବିଶେଷବ୍ରହ୍ମାର୍କସ୍ଥାନୀୟକୃଷ୍ଣୟୋର୍ବୋଦ୍ଧବ୍ୟମ୍ । [ ୬ଷ୍ଠ ଶ୍ଳୋକଃ ]

ସିଦ୍ଧଲୋକ ଇତି ତମସଃ ପାରେ ମାୟାୟାଃ ପାରେ ସିଦ୍ଧାଃ ଅଷ୍ଟାଙ୍ଗଯୋଗସିଦ୍ଧାଃ ନିର୍ଗର୍ଭାଃ ବ୍ରହ୍ମସୁଖେ ବ୍ରହ୍ମସୁଖବିଷୟେ ମଗ୍ନାଃ ସନ୍ତଃ ଚ ପୁନଃ ଦୈତ୍ୟାଃ ହରିଣା କୃଷ୍ଣେନ କରଣେନ ହତାଃ ସନ୍ତଃ ଯତ୍ର ସିଦ୍ଧଲୋକେ ବ୍ରହ୍ମଣି ବସନ୍ତି ତିଷ୍ଠନ୍ତୀତ୍ୟର୍ଥ । [ ୭ମ ଶ୍ଳୋକଃ ]

ଲାଭକରନ୍ତି । ସୁତରାଂ ସେମାନଙ୍କର ପରବ୍ୟୋମ ଭିତରକୁ ଯିବାର ଶକ୍ତି ଥାଏ ନାହିଁ । ଏହି ମୁକ୍ତି ପରବ୍ୟୋମ ବାହାରେ ପ୍ରାପ୍ତି ହେତୁ ଉପରକଥିତ ମୁକ୍ତିଚତୁଷ୍ଟୟ ଅପେକ୍ଷା ନିକୃଷ୍ଟ ଅଟେ । ୨୭ ।

ବ୍ରହ୍ମସାୟୁଜ୍ୟ ମୁକ୍ତି ଅଧିକାରୀମାନଙ୍କର କ ସକାଶେ ବୈକୁଣ୍ଠ ବାହାରେ ସ୍ଥିତି ହୁଏ ତାହା ବୁଝାଇବାକୁ ଯାଇ ଗ୍ରନ୍ଥକାର ବ୍ରହ୍ମତତ୍ତ୍ୱ ବୁଝାଉଅଛନ୍ତି । ବୈକୁଣ୍ଠ ବାହାରେ ଅର୍ଥାତ୍ ପରବ୍ୟୋମର

| | |
|---|---|
| ସେଇ ପରବ୍ୟୋମେ ନାରାୟଣେର ଚୌପାଶେ । ଦ୍ୱାରକା-ଚତୁର୍ବ୍ୟୂହେର ଦ୍ୱିତୀୟ ପ୍ରକାଶେ । ୩୩ । | ତାହାଁ ଯେ ରାମେର ରୂପ—ମହାସଙ୍କର୍ଷଣ । ଚିଚ୍ଛକ୍ତି-ଆଶ୍ରୟ ତିँହୋ କାରଣେର କାରଣ ।୩୫। |
| ବାସୁଦେବ ସଙ୍କର୍ଷଣ ପ୍ରଦ୍ୟୁମ୍ନାନିରୁଦ୍ଧ । ଦ୍ୱିତୀୟ ଚତୁର୍ବ୍ୟୂହ ଏଇ, ତୁରୀୟ ବିଶୁଦ୍ଧ । ୩୪ । | ଚିଚ୍ଛକ୍ତି-ବିଲାସ ଏକ 'ଶୁଦ୍ଧସତ୍ତ୍ୱ' ନାମ । ଶୁଦ୍ଧସତ୍ତ୍ୱମୟ ଯତ ବୈକୁଣ୍ଠାଦି ଧାମ । ୩୬ । |

ପ୍ରାସଙ୍ଗିକଂ ବ୍ରହ୍ମସାଯୁଜ୍ୟମୁକ୍ତ୍ୱା ପୁନଃ ପ୍ରକୃତମନୁସରତି "ସେଇ" ଇତି । ସେଇ ଯସ୍ୟ ବହିଃ ବ୍ରହ୍ମତତ୍ତ୍ୱଂ ଭବେ । ନାରାୟଣେର "ନାରାୟଣରୂପେ ଭବେନ" ଇତ୍ୟୁକ୍ତସ୍ୟ ଶ୍ରୀନାରାୟଣସ୍ୟ ।୩୩।୩୪। ବି, ଚ,

"ମାୟାତୀତେ" ଏତତ୍ତ୍ର ପ୍ରଥମାର୍ଦ୍ଧସ୍ୟାର୍ଥଂ କୃତ୍ୱା ଅପରାର୍ଦ୍ଧସ୍ୟ "ରୂପଂ ଯସ୍ୟ" ଇତ୍ୟସ୍ୟାର୍ଥମାହ "ତାହା ଯେ" ଇତ୍ୟାଦି । ତାହା ତତ୍ର ଦ୍ୱିତୀୟଚତୁର୍ବ୍ୟୂହମଧ୍ୟେ ଇତ୍ୟର୍ଥଃ । ସଙ୍କର୍ଷଣନାମାନଃ ଶେଷାଦୟଃ ସନ୍ତି ଅୟନ୍ତୁ ମହାସଙ୍କର୍ଷଣଃ । ଶ୍ରୀବଲରାମସ୍ୟାଂଶଃ ଶ୍ରୀମହାସଙ୍କର୍ଷଣ ଇତି ତଦ୍ଭିନ୍ନମୁକ୍ତ ମିତି ଜ୍ଞେୟଂ । କିମର୍ଥଂ ସ ମହାସଙ୍କର୍ଷଣ ଇତ୍ୟତଃ ତସ୍ୟ କାର୍ଯ୍ୟମାହ " ଚିଚ୍ଛକ୍ତି " ଇତି । ଚିଚ୍ଛକ୍ତେରାଶ୍ରୟ ସ୍ତଥା କାରଣସ୍ୟ କାରଣମିତି କାର୍ଯ୍ୟଦ୍ୱୟଂ ଏତତ୍ତ୍ର କାର୍ଯ୍ୟାର୍ଥଂ ସ ମହାସଙ୍କର୍ଷଣ ଇତି ଭାବଃ ।୩୫। ବି, ଚ,

ବହିରାବରଣରୂପରେ ଯେଉଁ ଜ୍ୟୋତିର୍ମ୍ମୟମଣ୍ଡଳ ଅଛି ତାହା ଶ୍ରୀକୃଷ୍ଣଙ୍କର ଅଙ୍ଗପ୍ରଭା ହେତୁ ପରମ ଉଜ୍ଜ୍ୱଳ ଅଟେ । ତାହାର ନାମ ସିଦ୍ଧଲୋକ । ତାହା ପ୍ରକୃତିର ଅତୀତ, ଅର୍ଥାତ୍ ମାୟାତୀତ, ତେଣୁ ଚିତ୍ସ୍ୱରୂପ । କିନ୍ତୁ ସେଠାରେ ଚିତ୍ଶକ୍ତିର ବିକାର ବା ବିଳାସ କୌଣସି ମୂର୍ତ୍ତି ନାହିଁ ଯାହାକି ପରବ୍ୟୋମରେ ଅଛି । ଏହାର ଉଦାହରଣ ସ୍ୱରୂପ ଦେଖାଉଅଛନ୍ତି ଯେ ସୂର୍ଯ୍ୟଲୋକର ବାହାରେ ସୂର୍ଯ୍ୟମଣ୍ଡଳ ଯେପରି କେବଳ ନିର୍ବିଶେଷ ଜ୍ୟୋତିର୍ମ୍ମୟ କିନ୍ତୁ ସୂର୍ଯ୍ୟଲୋକରେ ସୂର୍ଯ୍ୟଙ୍କର ରଥାଦି ସବିଶେଷ ରୂପ ରହିଅଛି, ସେହିପରି ସବିଶେଷ ଚିନ୍ମୟ ପରବ୍ୟୋମରେ ନାନା ଚିତ୍ଶକ୍ତି ବିଳାସ କରୁଅଛି । କିନ୍ତୁ ତାହାର ବାହାରରେ ନିର୍ବିଶେଷ ଚିନ୍ମୟ ଜ୍ୟୋତିର୍ମ୍ମୟମଣ୍ଡଳ ରହିଅଛି । ସେହି ଜ୍ୟୋତିର୍ମ୍ମୟମଣ୍ଡଳ ଯାହାକି ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତି, ତାହାହିଁ ନିର୍ବିଶେଷ ବ୍ରହ୍ମତତ୍ତ୍ୱ ଏବଂ ବ୍ରହ୍ମ-ସାଯୁଜ୍ୟର ଅଧିକାରୀମାନେ ସେଥିରେ ଲୟ ହୁଅନ୍ତି । ଅତଏବ ବୈକୁଣ୍ଠଭିତରେ ସେମାନଙ୍କର ପ୍ରବେଶ ଅଧିକାର ନାହିଁ । ୨୮—୩୨ ।

କୌଣସି୨ ଶାସ୍ତ୍ରରେ ଶ୍ରୀକୃଷ୍ଣଙ୍କର ଶତ୍ରୁଭାବାପନ୍ନ କଂସାଦି ଅସୁରମାନେ ଓ ପ୍ରିୟ ଗୋପ ଓ ଯାଦବମାନେ ଏକଗତି ପ୍ରାପ୍ତ ହୋଇଅଛନ୍ତି ବୋଲି ଯେ ଉଲ୍ଲେଖ ହୋଇଅଛି ତାହା ବ୍ରହ୍ମ ଓ କୃଷ୍ଣଙ୍କ ଐକ୍ୟ କିରଣ ଓ ସୂର୍ଯ୍ୟଙ୍କର ଐକ୍ୟ ସଦୃଶ ଅଟେ । ଏହାର ଭାବ ଏହି ଯେ ଅରିମାନେ ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତି ବ୍ରହ୍ମଗତ ହୁଅନ୍ତି କିନ୍ତୁ ତାଙ୍କର ସ୍ୱରୂପ ପ୍ରାପ୍ତ ହୁଅନ୍ତି ନାହିଁ । କିନ୍ତୁ ପ୍ରିୟମାନେ (ଭକ୍ତମାନେ) ଶ୍ରୀକୃଷ୍ଣଙ୍କର ଅଙ୍ଗକାନ୍ତି ଭେଦକରି ସ୍ୱରୂପ ପ୍ରାପ୍ତ ହୁଅନ୍ତି । [ ୬ଷ୍ଠ ଶ୍ଳୋକାର୍ଥ ]

ନିର୍ବିଶେଷବ୍ରହ୍ମସୁଖନିମଗ୍ନ ସିଦ୍ଧମାନେ ଏବଂ ହରିହତ ଦୈତ୍ୟମାନେ ମାୟାର ଅତୀତ ସିଦ୍ଧଲୋକରେ (ବ୍ରହ୍ମତତ୍ତ୍ୱରେ) ରହନ୍ତି । [ ୭ମ ଶ୍ଳୋକାର୍ଥ ]

ପରବ୍ୟୋମମଧ୍ୟସ୍ଥ ଶ୍ରୀକୃଷ୍ଣଙ୍କର ବିଳାସମୂର୍ତ୍ତି ଶ୍ରୀନାରାୟଣଙ୍କର ଦିବ୍ୟ ଚତୁର୍ବିଧମୁକ୍ତିସମ୍ବନ୍ଧରେ ଲେଖି ପ୍ରସଙ୍ଗକ୍ରମେ ପଞ୍ଚମ ବ୍ରହ୍ମସାଯୁଜ୍ୟ ମୁକ୍ତିବିଷୟ ଲେଖିଲାପରେ ବର୍ତ୍ତମାନ ପୁନରାୟ ସେହି ପରବ୍ୟୋମସମ୍ବନ୍ଧରେ ଲେଖୁଅଛନ୍ତି । ଯଥା,—ଯାହାଙ୍କର ବାହାରେ ବ୍ରହ୍ମତତ୍ତ୍ୱ ସେହି ପରବ୍ୟୋମ ମଧ୍ୟସ୍ଥ ଶ୍ରୀକୃଷ୍ଣଙ୍କର ବିଳାସମୂର୍ତ୍ତି ଶ୍ରୀନାରାୟଣଙ୍କର ଚାରିପାଖରେ ଦ୍ୱାରକାସ୍ଥ ଶ୍ରୀକୃଷ୍ଣଙ୍କର ଯେପ୍ରକାର ଚତୁର୍ବ୍ୟୂହଙ୍କ ବିଷୟ କୁହାହୋଇଅଛି, ସେହିପରି ଶ୍ରୀନାରାୟଣଙ୍କ ଚାରିପାଖରେ ଦ୍ୱିତୀୟ ଚତୁର୍ବ୍ୟୂହ

| | |
|---|---|
| ଷଡ଼୍‌ବିଧ ଐଶ୍ୱର୍ଯ୍ୟ ତାଙ୍କ—ସକଳ ଚିନ୍ମୟ । | ସର୍ବାଶ୍ରୟ ସର୍ବାଭୁତ ଐଶ୍ୱର୍ଯ୍ୟ ଅପାର । |
| ସଙ୍କର୍ଷଣେର ବିଭୂତି ସବ ଜାନିହ ନିଶ୍ଚୟ । ୩୭ । | ଅନନ୍ତ କହିତେ ନାରେ ମହିମା ଯାହାର । ୪୦ । |
| 'ଜୀବ' ନାମ ତଟସ୍ଥାଖ୍ୟ ଏକ ଶକ୍ତି ହୟ । | ତୁରୀୟ ବିଶୁଦ୍ଧସତ୍ତ୍ୱ ସଙ୍କର୍ଷଣ ନାମ । |
| ମହାସଙ୍କର୍ଷଣ ସବ ଜୀବେର ଆଶ୍ରୟ । ୩୮ । | ତେଁହୋ ଯାର ଅଂଶ—ସେଇ ନିତ୍ୟାନନ୍ଦ ରାମ ।୪୧। |
| ଯାହା ହୈତେ ବିଶ୍ୱୋତ୍ପତ୍ତି ଯାହାତେ ପ୍ରଳୟ । | ଅଷ୍ଟମ-ଶ୍ଳୋକେର କୈଲ ସଂକ୍ଷେପେ ବିବରଣ । |
| ସେଇ ପୁରୁଷେର ସଙ୍କର୍ଷଣ ସମାଶ୍ରୟ । ୩୯ । | ନବମ-ଶ୍ଳୋକେର ଅର୍ଥ ଶୁନ ଦିୟା ମନ । ୪୨ । |

ତନ୍ନ ତଟସ୍ଥାଖ୍ୟଶକ୍ତିଂ ପ୍ରପଞ୍ଚୟତି "ଜୀବ" ଇତି ଦ୍ୱିଭ୍ୟାମ୍ । ବୈକୁଣ୍ଠାଦୀନ୍ ପ୍ରକାଶୟତି ତଥା ସର୍ବାନ୍ ଜୀବାନ୍ ପ୍ରାଦୁର୍ଭାବୟତି ଇତ୍ୟର୍ଥଃ । ତସ୍ମାଦନେନ ଚିଚ୍ଛକ୍ତିଜୀବାବେକୀକୃତ୍ୟ ଚିଚ୍ଛକ୍ତ୍ୟା- ଶ୍ରୟତ୍ୱମୁକ୍ତମିତି ଜ୍ଞେୟଂ । ୩୬।୩୭।୩୮ । ଵି, ଚ,

ଚିଚ୍ଛକ୍ତ୍ୟାଶ୍ରୟମେକଂ କାର୍ଯ୍ୟଂ ପ୍ରପଞ୍ଚ୍ୟ ଦ୍ୱିତୀୟଂ କାରଣସ୍ୟ କାରଣଂ ଇତି କାର୍ଯ୍ୟଂ ପ୍ରପଞ୍ଚୟତି "ଯାହା" ଇତି । ଯତୋ ବିଶ୍ୱୋତ୍ପତ୍ତିପ୍ରଳୟୌ ଭବତଃ ତସ୍ୟ ପୁରୁଷସ୍ୟ କାରଣାର୍ଣ୍ଣବଶାୟିନଃ ସମାଶ୍ରୟଃ କାରଣଂ ସଙ୍କର୍ଷଣଃ । ବିଶ୍ୱୋତ୍ପତ୍ତ୍ୟାଦିକାରଣଂ ପୁରୁଷଃ ତସ୍ୟାପି କାରଣଂ ସଙ୍କର୍ଷଣ ଇତି ସ କାରଣସ୍ୟ କାରଣମିତ୍ୟର୍ଥଃ । ବିଶ୍ୱୋତ୍ପତ୍ତ୍ୟାଦ୍ୟର୍ଥଂ ସଙ୍କର୍ଷଣଃ ତଂ ପୁରୁଷମଂଶେନ ପ୍ରକାଶୟତୀତି ଭାବଃ । ଏତତ୍ତୁ ନବମଶ୍ଳୋକବ୍ୟାଖ୍ୟାପଦ୍ୟେ ସବିସ୍ତରବ୍ୟକ୍ତମପି ତତ୍ର ଦ୍ରଷ୍ଟବ୍ୟଂ । ୩୯ । ଵି, ଚ,

"ତଂ ଶ୍ରୀନିତ୍ୟାନନ୍ଦରାମଂ" ଇତ୍ୟସ୍ୟାର୍ଥଂ କୁର୍ବନ୍ ଅଷ୍ଟମଶ୍ଳୋକାର୍ଥମୁପସଂହରନ୍ନାହ "ସର୍ବାଶ୍ରୟ" ଇତି । ସର୍ବାଶ୍ରୟାଦୟମାନ୍ ସଙ୍କର୍ଷଣଃ ଯସ୍ୟ ଶ୍ରୀବଳରାମସ୍ୟାଂଶଃ ସ ଏବ ଶ୍ରୀନିତ୍ୟାନନ୍ଦ ଇତି । ୪୦।୪୧।୪୨ । ଵି, ଚ,

ଅର୍ଥାତ୍ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଅଛନ୍ତି । ଏମାନେ ମଧ୍ୟ ମାୟାତୀତ ଏବଂ ବିଶୁଦ୍ଧତତ୍ତ୍ୱ । ୩୨।୩୪ ।

ଏହି ଦ୍ୱିତୀୟ ଚତୁର୍ବ୍ୟୂହର ମଧ୍ୟସ୍ଥ ସଙ୍କର୍ଷଣହିଁ ଶ୍ରୀବଳରାମଙ୍କର ଅଂଶ ମହାସଙ୍କର୍ଷଣ । ଶେଷ ଆଦି ସଙ୍କର୍ଷଣ ନାମଧେୟ ହେତୁ, ଏହାଙ୍କୁ ମହାସଙ୍କର୍ଷଣ କୁହାଯାଏ । ଏହି ମହାସଙ୍କର୍ଷଣଙ୍କର କାର୍ଯ୍ୟ ଚିତ୍‌ଶକ୍ତିଙ୍କର ଆଶ୍ରୟ ଏବଂ କାରଣର କାରଣ ଏହି ଦୁଇ । ୩୫ ।

ବର୍ତ୍ତମାନ ମହାସଙ୍କର୍ଷଣଙ୍କର ଚିତ୍‌ଶକ୍ତିର ଆଶ୍ରୟତା ବୁଝାଉଅଛନ୍ତି । ଯଥା,—

ରଜ ଓ ତମ ମିଶ୍ରିତ ସତ୍ତ୍ୱକୁ ମିଶ୍ରସତ୍ତ୍ୱ ବା ମାୟିକସତ୍ତ୍ୱ କୁହାଯାଏ । ତଦ୍‌ବହିର୍ଭୂତ ସତ୍ତ୍ୱକୁ ବିଶୁଦ୍ଧସତ୍ତ୍ୱ ବା ଚିନ୍ମୟସତ୍ତ୍ୱ କୁହାଯାଏ । ଏହି ବିଶୁଦ୍ଧସତ୍ତ୍ୱ ଚିତ୍‌ଶକ୍ତିଙ୍କର ବିଳାସ ବା ଅଂଶ । ବୈକୁଣ୍ଠ ଆଦି ଚିନ୍ମୟଧାମମାନ ଶୁଦ୍ଧସତ୍ତ୍ୱମୟ ଏବଂ ଭଗବାନଙ୍କର ଯେଉଁ ଷଡ଼୍‌ବିଧ ଐଶ୍ୱର୍ଯ୍ୟ ଅର୍ଥାତ୍ ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶଃ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଏ ସମସ୍ତ ଚିନ୍ମୟ । ଅତଏବ ଶୁଦ୍ଧସତ୍ତ୍ୱମୟ ବୈକୁଣ୍ଠାଦି ଧାମ ଓ ଉକ୍ତ ଷଡ଼୍‌ବିଧ ଐଶ୍ୱର୍ଯ୍ୟ ଏ ସମସ୍ତ ମହାସଙ୍କର୍ଷଣଙ୍କ ବିଭୂତି ବା ତାହାଙ୍କଦ୍ୱାରା ପ୍ରକାଶିତ ହୁଏ । ଜୀବନାମକ ତଟସ୍ଥଶକ୍ତି ବା ଅଣୁଚୈତନ୍ୟଶକ୍ତି, ପୂର୍ଣ୍ଣଚୈତନ୍ୟ ବା ଚିତ୍‌ଶକ୍ତିର ଅଂଶ ହେତୁ ମହାସଙ୍କର୍ଷଣଙ୍କଦ୍ୱାରା ପ୍ରକାଶିତ । ଅର୍ଥାତ୍ ଶ୍ରୀମନ୍ ବଳରାମଙ୍କର ମହାସଙ୍କର୍ଷଣମୂର୍ତ୍ତିହିଁ ସର୍ବବିଧ ଚିନ୍ମୟ ବସ୍ତୁର ଆଶ୍ରୟ ବା ପ୍ରକାଶକ । ୩୬।୩୭।୩୮ ।

ବର୍ତ୍ତମାନ ମହାସଙ୍କର୍ଷଣଙ୍କର "କାରଣର କାରଣତ୍ୱ" ବୁଝାଉଅଛନ୍ତି । ଯଥା,—

ଯେଉଁ ପୁରୁଷଙ୍କଠାରୁ ( ପ୍ରଥମପୁରୁଷ ବା ମହାବିଷ୍ଣୁ ) ବ୍ରହ୍ମାଣ୍ଡଗଣ ଉତ୍ପତ୍ତି ହୁଅନ୍ତି ଏବଂ ଯାହାଙ୍କଠାରେ ଲୟ ହୁଅନ୍ତି ସେ ଏହି ମହାସଙ୍କର୍ଷଣଙ୍କର ଅଂଶ ଅଟନ୍ତି । ଏଣୁ ବ୍ରହ୍ମାଣ୍ଡଗଣଙ୍କର

ତଥାହି ଶ୍ରୀସ୍ୱରୂପଗୋସ୍ୱାମି-କଡ଼ଚାୟାମ୍—
ମାୟାଭର୍ତ୍ତାଜାଣ୍ଡସଙ୍ଘାଶ୍ରୟାଙ୍ଗଃ,
ଶେତେ ସାକ୍ଷାତ୍ କାରଣାମ୍ଭୋଧିମଧ୍ୟେ ।
ଯସ୍ୟୈକାଂଶଃ ଶ୍ରୀପୁମାନାଦିଦେବ-
ସ୍ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୮ ॥ ※

ବୈକୁଣ୍ଠ-ବାହାରେ ଯେଇ ଜ୍ୟୋତିର୍ମ୍ମୟ ଧାମ ।
ତାହାର ବାହାରେ କାରଣାର୍ଣ୍ଣବ ନାମ । ୪୩ ।

ବୈକୁଣ୍ଠ ବେଢ଼ି ଯା ଏକ ଅଛେ ଜଲନିଧି ।
ଅନନ୍ତ ଅପାର—ତାର ନାହିକ ଅବଧି । ୪୪ ।

ବୈକୁଣ୍ଠେର ପୃଥିବ୍ୟାଦି ସକଲ ଚିନ୍ମୟ ।
ମାୟିକ-ଭୂତେର ତଥି ଜନ୍ମ ନାହିଁ ହୟ । ୪୫ ।

ଚିନ୍ମୟ ଜଲ ସେଇ ପରମ କାରଣ ।
ଯାର ଏକ କଣା ଗଙ୍ଗା ଜଗତ-ପାବନ । ୪୬ ।

୮ ଶ୍ଳୋକ—( ପ୍ରଥମ ପରିଚ୍ଛେଦ ନବମଶ୍ଳୋକରେ ଅନ୍ୱୟ ଦେଖ )

ପ୍ରଥମପରିଚ୍ଛେଦସପ୍ତମଶ୍ଳୋକୋକ୍ତକାରଣତୋୟଶାୟିତତ୍ତ୍ୱବର୍ଣ୍ଣନାମୟସ୍ୟୋକ୍ତଶ୍ଳୋକସ୍ୟାର୍ଥଂ ବଦନ୍ତି ତଦ "କାରଣାମ୍ଭୋଧିମଧ୍ୟେ" ଇତ୍ୟସ୍ୟାର୍ଥମାହ "ବୈକୁଣ୍ଠ" ଇତି ଚତୁର୍ଭିଃ । ଜ୍ୟୋତିର୍ମ୍ମୟଧାମ ନିର୍ବିଶେଷବ୍ରହ୍ମ କାରଣାର୍ଣ୍ଣବନାମ କାରଣନାମା ସମୁଦ୍ରଃ । ତଥାଚୋକ୍ତଂ ପାଦ୍ମୋତ୍ତରଖଣ୍ଡେ "ପ୍ରଧାନପରମବ୍ୟୋମ୍ନୋରନ୍ତରେ ବିରଜାନଦୀ" । ୪୩।୪୪ । ବି, ଚ,

କାରଣାର୍ଣ୍ଣବସ୍ୟ ତତ୍ତ୍ୱଂ ବର୍ଣ୍ଣୟତି "ବୈକୁଣ୍ଠେର" ଇତି । ବୈକୁଣ୍ଠସ୍ୟ ପୃଥିବ୍ୟାଦିନାଂ ପଞ୍ଚଭୂତାନାଂ ଚିନ୍ମୟତ୍ୱେନ ଜଡ଼ପଞ୍ଚଭୂତାନାଞ୍ଚ ତତ୍ର ବୈକୁଣ୍ଠେ ଜନ୍ମାଭାବେନ ଯୁକ୍ତତ୍ୱଂ ତତ୍ର କାରଣାର୍ଣ୍ଣବ-ଜଲଂ ଚିନ୍ମୟଂ ତଜ୍ଜଲସ୍ୟ ବୈକୁଣ୍ଠଗତଚିନ୍ମୟପଞ୍ଚଭୂତୈକତମତ୍ୱାଦିତ୍ୟର୍ଥଃ । ଅଥ ନିରୁକ୍ତ୍ୟା ତସ୍ୟ କାରଣନାମତ୍ୱଂ ପ୍ରତିପାଦୟତି "ପରମ" ଇତି । ଯସ୍ୟ ଅର୍ଣ୍ଣବସ୍ୟ ଏକକଣା ଗଙ୍ଗା ଅତଃ ସଃ ପରମ-କାରଣଂ । ସକଲଭୁବନପବିତ୍ରକାରଣଭୂତାନାଂ ଗଙ୍ଗାଦିତୀର୍ଥାନାଂ କାରଣମିତି ତସ୍ୟ କାରଣନାମତ୍ୱ-ମିତିଭାବଃ । ୪୫।୪୬ । ବି, ଚ,

କାରଣରୂପୀ ପୁରୁଷଙ୍କର ମହାସଙ୍କର୍ଷଣ ମୂଳ ହେତୁ କାରଣର କାରଣ ଅଟନ୍ତି । ( ଏଥିର ବିସ୍ତାରିତ ବ୍ୟାଖ୍ୟା ପରବର୍ତ୍ତୀ ଶ୍ଳୋକ ବ୍ୟାଖ୍ୟାରେ ଦିଆ ହୋଇଅଛି ) । ୩୯ ।

ଏହିପରି ସମସ୍ତଙ୍କର ଆଶ୍ରୟ ଅପାର ଓ ସର୍ବଭୂତ ଐଶ୍ୱର୍ଯ୍ୟମୟ ତୁରୀୟ ( ମାୟାଶୂନ୍ୟ ) ବିଶୁଦ୍ଧ ସତ୍ତ୍ୱମୟ ସଙ୍କର୍ଷଣ ନାମକ ତତ୍ତ୍ୱ ଯାହାଙ୍କର ମହିମା ସ୍ୱୟଂ ଅନନ୍ତଦେବ କହି ଶେଷ କରି-ପାରିବେ ନାହିଁ । ସେ ଯେଉଁ ବଳରାମଙ୍କର ଅଂଶ ସେହି ବଳରାମହିଁ ନିତ୍ୟାନନ୍ଦ । ୪୦।୪୧।୪୨ ।

ମାୟାଦେବୀଙ୍କର ଭର୍ତ୍ତା ବା ନିୟାମକ, ବ୍ରହ୍ମାଣ୍ଡ ସମୂହର ଆଶ୍ରୟୀଭୂତ ଓ ଶରୀର ( ଅର୍ଥାତ୍ ଅସଂଖ୍ୟ ବ୍ରହ୍ମାଣ୍ଡଗଣ ଯାହାଙ୍କର ଶ୍ରୀଅଙ୍ଗକୁ ଆଶ୍ରୟ କରି ରହିଅଛନ୍ତି ) ଓ ସାକ୍ଷାତ୍ କାରଣ ସମୁଦ୍ରଶାୟୀ ଆଦିପୁରୁଷ ( ମହାବିଷ୍ଣୁ, ପ୍ରଥମ ପୁରୁଷାବତାର ) ଯାହାଙ୍କର ଏକାଂଶ ସେହି ନିତ୍ୟାନନ୍ଦନାମା ବଳରାମଙ୍କୁ ମୁଁ ପ୍ରଣାମ କରେଁ । [ ୮ମ ଶ୍ଳୋକାର୍ଥ ]

ପ୍ରଥମ ପରିଚ୍ଛେଦର ସପ୍ତମଶ୍ଳୋକସ୍ଥ କାରଣାର୍ଣ୍ଣବଶାୟୀଙ୍କର ତତ୍ତ୍ୱ ଏହି ଉପରୋକ୍ତ ଶ୍ଳୋକରେ କୁହା ହୋଇଅଛି । ସେହି ଶ୍ଳୋକର ଅର୍ଥ ଗ୍ରନ୍ଥକାର କହୁଅଛନ୍ତି ଯଥାଃ—

ବୈକୁଣ୍ଠ ( ପରବ୍ୟୋମ ) ବହିର୍ଭାଗରେ ଯେଉଁ ( ପୂର୍ବୋକ୍ତ ) ଜ୍ୟୋତିର୍ମ୍ମୟ ଧାମର ( ନିର୍ବିଶେଷ ବ୍ରହ୍ମତତ୍ତ୍ୱର ) ବିଷୟ କୁହା ହୋଇଅଛି ତାହାର ବହିର୍ଭାଗରେ କାରଣ ନାମକ ସମୁଦ୍ର ବୈକୁଣ୍ଠକୁ ବେଷ୍ଟନ କରି ରହିଅଛି । ସେହି ସମୁଦ୍ର ଅନନ୍ତ ଅପାର ଏବଂ ଅସୀମ । ୪୩।୪୪ ।

କାରଣାର୍ଣ୍ଣବର ତତ୍ତ୍ୱ ବୁଝାଉ ଅଛନ୍ତି ଯଥାଃ—ବୈକୁଣ୍ଠର ସମସ୍ତ ଚିନ୍ମୟ ତତ୍ତ୍ୱ ହେତୁରୁ ବୈକୁଣ୍ଠସ୍ଥ କ୍ଷିତ, ଅପ୍, ତେଜ, ମରୁତ୍, ବ୍ୟୋମ ଏହି ପଞ୍ଚମହାଭୂତ ମଧ୍ୟ ଚିନ୍ମୟ । ମାୟିକ ପଞ୍ଚ-

ସେଇ ତ କାରଣାର୍ଣ୍ଣବେ ସେଇ ସଙ୍କର୍ଷଣ ।
ଆପନାର ଏକ ଅଂଶେ କରେନ ଶୟନ । ୪୬ ।
ମହତ୍ସ୍ରଷ୍ଟା ପୁରୁଷ ତେଁହୋ ଜଗତ-କାରଣ ।
ଆଦ୍ୟ ଅବତାର କରେ ମାୟାର ଈକ୍ଷଣ । ୪୮ ।
ମାୟାଶକ୍ତି ରହେ କାରଣାବ୍ଧିର ବାହରେ ।
କାରଣ-ସମୁଦ୍ର ମାୟା ପରଶିତେ ନାରେ । ୪୯ ।
ସେଇ ତ ମାୟାର ଦୁଇବିଧ ଅବସ୍ଥିତ— ।
ଜଗତେର ଉପାଦାନ ପ୍ରଧାନ, ପ୍ରକୃତି । ୫୦ ।

ନବମ ଶ୍ଳୋକୋକ୍ତ "ଶେତେ ସାକ୍ଷାତ୍" ଇତ୍ୟସ୍ୟାର୍ଥମାହ "ସେଇତ" ଇତି । ସେଇ ସଙ୍କର୍ଷଣ ଅଷ୍ଟମ ଶ୍ଳୋକୋକ୍ତସଙ୍କର୍ଷଣଃ । ୪୬ । ଚ, ଚ,

କମର୍ଥଂ ସଃ ସଙ୍କର୍ଷଣ ଏକାଂଶେନ ତତ୍ର ଶେତେ ଇତି ତଦଂଶସ୍ୟ କାର୍ଯ୍ୟମାହ "ମହତ୍" ଇତି । ସ ତାବତ୍ ସଙ୍କର୍ଷଣାଂଶ ଆଦ୍ୟାବତାର ପୁରୁଷରୂପେଣ ମାୟାଂ ଦୃଷ୍ଟ୍ୱା ଜଗତ୍ ସୃଜତି ଏତତ୍ତଦଂଶସ୍ୟ କାର୍ଯ୍ୟଂ ଏତଦର୍ଥଂ ସୋଽଂଶ ଇତି ଭାବଃ । ୪୮ । ଚ, ଚ,

"କରେ ମାୟାର ଈକ୍ଷଣ" ଇତି ଯଦୁକ୍ତଂ ତତ୍ର ସା ମାୟା କୁତ୍ର ତିଷ୍ଠତୀତ୍ୟପେକ୍ଷାୟାଂ ତସ୍ୟାଃ ସ୍ଥିତିମାହ "ମାୟା" ଇତି । କାରଣାବ୍ଧି ବହିରେବ ତସ୍ୟାଃ ସ୍ଥିତିଃ ଯତଃ କାରଣେତ୍ୟାହ । । ୪୯ । ଚ, ଚ,

ସ ଏବ ସଙ୍କର୍ଷଣାଂଶଃ ପୁରୁଷଃ ଜଗତଃ କାରଣମିତ୍ୟୁକ୍ତଂ ତତ୍ର ତାବତ୍ ସାଙ୍ଖ୍ୟମତଂ ନିରାକର୍ତ୍ତୁଂ ତଦୁତ୍ଥାପୟତି "ସେଇତ" ଇତି । ଜଗତ ଉପାଦାନନିମିତ୍ତରୂପେଣ ଦ୍ୱିବିଧଂ ତତ୍ର ଜଗତେର ଇତ୍ୟନେନ ଜଗତ ଉପାଦାନମିତ୍ୟେକବିଧମବସ୍ଥାନମୁକ୍ତଂ । ଜଗତଃ ନିମିତ୍ତମିତ୍ୟପରବିଧମବସ୍ଥାନଞ୍ଚ "ମାୟା ଅଂଶେ କହି" ଇତି ବକ୍ଷ୍ୟମାଣ ପଦ୍ୟେ ବକ୍ଷ୍ୟତେ । ଜଗତ ଉପାଦାନନିମିତ୍ତଂ ପ୍ରକୃତିରିତି ସାଙ୍ଖ୍ୟମତଂ । ତଥୋକ୍ତଂହି କପିଲେନ "ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ପ୍ରକୃତିଃ" ପ୍ରକୃତେର୍ମହାନିତ୍ୟାହ । ୫୦ । ଚ, ଚ,

---

ମହାଭୂତର ସେଠାରେ ଜନ୍ମ ନାହିଁ ବା ସମ୍ବନ୍ଧ ନାହିଁ । ସୁତରାଂ ବୈକୁଣ୍ଠର ଜଳତତ୍ତ୍ୱ ଚିନ୍ମୟ ହେତୁ କାରଣାର୍ଣ୍ଣବର ଜଳ ଚିନ୍ମୟ ଏବଂ ତାହା ପରମକାରଣ । ଯେହେତୁ ସେହି କାରଣାର୍ଣ୍ଣବର ଏକ ଜଳକଣାଦ୍ୱାରା ଗଙ୍ଗାଦିତୀର୍ଥମାନେ ସୃଷ୍ଟ ହୋଇ ସକଳଭୁବନ ପବିତ୍ର କରୁଅଛନ୍ତି । ପବିତ୍ରକାରିଣୀ ଗଙ୍ଗାଦିତୀର୍ଥମାନଙ୍କର କାରଣ ହେତୁ, କାରଣାର୍ଣ୍ଣବକୁ ପରମ କାରଣ କୁହାଯାଇଅଛି । ୪୫।୪୬ ।

ସେଇତ—ଏବଂବିଧ ।

ଏବଂବିଧ କାରଣାର୍ଣ୍ଣବରେ ସେଇ ପୂର୍ବୋକ୍ତ ପ୍ରଥମ ପରିଚ୍ଛେଦର ଅଷ୍ଟମଶ୍ଳୋକବର୍ଣ୍ଣିତ ସଙ୍କର୍ଷଣ ଏକ ଅଙ୍ଗଦ୍ୱାରା ଶୟନ କରନ୍ତି ଅର୍ଥାତ୍ କାରଣାର୍ଣ୍ଣବଶାୟୀ ମହାବିଷ୍ଣୁ ସଙ୍କର୍ଷଣଙ୍କର ଅଂଶ ମାତ୍ର ଏହାହିଁ ମହାବିଷ୍ଣୁ ବା ପ୍ରଥମ ପୁରୁଷାବତାରଙ୍କର ତତ୍ତ୍ୱ । ୪୬ ।

ଏ ପ୍ରକାରରେ ମହାବିଷ୍ଣୁଙ୍କର କାର୍ଯ୍ୟ କହୁଅଛନ୍ତି । ତେହଁ (ସେହି ସଙ୍କର୍ଷଣାଂଶ ମହାବିଷ୍ଣୁ) ଆଦି ଅବତାର ପୁରୁଷରୂପରେ ମାୟାଙ୍କ (ପ୍ରକୃତିଙ୍କ) ପ୍ରତି ଦୃଷ୍ଟିନିକ୍ଷେପ କରି ମହତ୍ତତ୍ତ୍ୱର ସୃଷ୍ଟି କରନ୍ତି । ଏଣୁ ଏହାଙ୍କୁ ମହତ୍ ସ୍ରଷ୍ଟା ପୁରୁଷ ବା ପ୍ରଥମ ପୁରୁଷାବତାର କୁହାଯାଏ । ୪୮ ।

ମାୟାତତ୍ତ୍ୱ ବୁଝାଉ ଅଛନ୍ତି । ଯଥା—ଶକ୍ତିରୂପା ମାୟା ପୂର୍ବୋକ୍ତ ଚିନ୍ମୟ କାରଣାବ୍ଧିର ବହିର୍ଭାଗରେ ଅବସ୍ଥାନ କରନ୍ତି । ଯେହେତୁ ସେ (ମାୟା) କାରଣସମୁଦ୍ରକୁ ସ୍ପର୍ଶ କରିପାରନ୍ତି ନାହିଁ । ଏହାର ଭାବ ଏହି ଯେ ମାୟାତତ୍ତ୍ୱହିଁ ଜଡ଼ ତେଣୁ ସେ ଚିନ୍ମୟତତ୍ତ୍ୱର ବହିର୍ଦ୍ଦେଶରେ ଅବସ୍ଥାନ କରନ୍ତି । ୪୯ ।

ଜଗତ-କାରଣ ନହେ ପ୍ରକୃତି ଜଡ଼ରୂପା ।
ଶକ୍ତି ସଞ୍ଚାରିଯା ତାରେ କୃଷ୍ଣ କରେ କୃପା । ୫୧ ।
କୃଷ୍ଣ-ଶକ୍ତ୍ୟେ ପ୍ରକୃତି ହୟ ଗୌଣ କାରଣ ।
ଅଗ୍ନି ଶକ୍ତ୍ୟେ ଲୌହ ଯୈଛେ କରଯେ ଜାରଣ । ୫୨
ଅତଏବ କୃଷ୍ଣ ମୂଲ ଜଗତ-କାରଣ ।
ପ୍ରକୃତି କାରଣ ଯୈଛେ ଅଜାଗଲସ୍ତନ । ୫୩ ।
ମାୟା-ଅଂଶେ କହି ତାରେ ନିମିତ୍ତକାରଣ ।
ସେହୋ ନହେ ଯାତେ କର୍ତ୍ତା ହେତୁ ନାରାୟଣ । ୫୪

ସାଙ୍ଖ୍ୟମତଂ ପ୍ରଦର୍ଶ୍ୟ ତନ୍ନିରାକରୋତି "ଜଗତ" ଇତି । ନ ତାବତ୍ ସାଙ୍ଖ୍ୟକଳ୍ପିତା ଅଚେତନା ପ୍ରକୃତିଃ ଜଗତଃ କାରଣମୁପାଦାନଂ ଯତଃ ସା ଜଡ଼ରୂପା । ଅଯମର୍ଥଃ । "ତଦୈକ୍ଷତ ବହୁସ୍ୟାଂ ପ୍ରଜାୟେୟ" ଇତି । "ସ ଐକ୍ଷତ ଲୋକାନ୍ନୁ ସୃଜା" ଇତି । "ସ ଇମାନ୍ ଲୋକାନସୃଜତ" ଇତ୍ୟାଦି ଶ୍ରୁତିଷୁ ଜଗତ୍କାରଣସ୍ୟ ଈକ୍ଷଣପୂର୍ବକଂ ଜଗତ୍ସୃଷ୍ଟିଃ ଶ୍ରୂୟତେ । ଈକ୍ଷିତୃତ୍ୱନ୍ତୁ ଚେତନସ୍ୟୈବ ନ ତୁ ଜଡ଼ସ୍ୟ ଅତଃ ଜଡ଼ରୂପା ପ୍ରକୃତିଃ ନ ଜଗତଉପାଦାନଂ । ୫୧ । ବି, ଚ,

ନନୁ "ଅଜାମେକାଂ ଲୋହିତଶୁକ୍ଲକୃଷ୍ଣାଂ ବହ୍ୱୀଃ ପ୍ରଜାଃ ଜନୟନ୍ତୀଂ ସରୂପାଃ" ଇତ୍ୟାଦି ଶ୍ରୁତିବାକ୍ୟେନ ପ୍ରକୃତେଃ କାରଣତ୍ୱଂ ଲଭ୍ୟତ ଇତିଚେତ୍ ସତ୍ୟଂ କିନ୍ତୁ ତଦପି ଗୌଣଂ ନତୁ ସାଙ୍ଖ୍ୟୋକ୍ତଂ ମୂଳମିତ୍ୟାହ "ଶକ୍ତି" ଇତି ସାର୍ଦ୍ଧେକେନ । ପୁରୁଷରୂପେଣ ଈକ୍ଷଣରୂପୟା କୃପୟା ଜଗଜ୍ଜନୟିତ୍ରୀଂ ଶକ୍ତିଂ ପ୍ରକୃତ୍ୟୈ ଶ୍ରୀକୃଷ୍ଣୋ ଦଦାତି ତୟୈବ ସା ପ୍ରଜାଃ ସୃଜତି ଇତି ସା ଗୌଣକାରଣଂ ନତୁ ମୂଲଂ ଯଥା ଅଗ୍ନି ଇତି । ଅସ୍ମାକଂ ଶ୍ରୀକୃଷ୍ଣେନ ଅଧିଷ୍ଠିତା ପ୍ରକୃତିଃ ପ୍ରଜାଃ ଜନୟତି ନତୁ ସ୍ୱଶକ୍ତ୍ୟା ଇତି ସର୍ବଂସାମଞ୍ଜସ୍ୟଂ । ତଥାଚୋକ୍ତଂ ଶ୍ରୀଗୀତୋପନିଷଦି "ମୟାଧ୍ୟକ୍ଷେଣ ପ୍ରକୃତିଃ ସୂୟତେ ସଚରାଚରଂ" ଇତି । ୫୨ । ବି, ଚ,

ଅତଏବ ଇତି ଶ୍ରୀକୃଷ୍ଣଶକ୍ତ୍ୟୈବ ପ୍ରକୃତେର୍କାରଣତ୍ୱାତ୍ ଶ୍ରୀକୃଷ୍ଣ ଏବ ଜଗତଃ ମୂଳକାରଣଂ । ପ୍ରକୃତି ଇତି ଅଜାଗଲମାଂସପିଣ୍ଡସ୍ୟ ଦୁଗ୍ଧାଭାବେଽପି ଯଥା ତତ୍ର ସ୍ତନଶବ୍ଦୋପଚାରଃ ତଥା ପ୍ରକୃତେଃ କର୍ତ୍ତୃତ୍ୱାଭାବେଽପି ତତ୍ର କାରଣଶବ୍ଦୋପଚାର ଇତ୍ୟର୍ଥଃ । ୫୩ । ବି, ଚ,

ପୂର୍ବେ କୁହାହୋଇଅଛି ଯେ ସଙ୍କର୍ଷଣାଂଶ ପୁରୁଷ ଜଗତର କାରଣ । କିନ୍ତୁ ସାଂଖ୍ୟମତରେ ପ୍ରକୃତି ଜଗତର ନିମିତ୍ତ ଓ ଉପାଦାନ ଅଟନ୍ତି । ଏହିହେତୁ ସେହି ବିଷୟ ଖଣ୍ଡନ କରିବା ସକାଶେ ତାହା ଉଲ୍ଲେଖ କରୁଅଛନ୍ତି । ଯଥା—ମାୟା ଦୁଇ ପ୍ରକାରରେ ଅବସ୍ଥାନ କରନ୍ତି । ଏକ ଜଗତର ନିମିତ୍ତ ଏବଂ ଅପର ଜଗତର ଉପାଦାନ । ଜଗତର ଉପାଦାନ ହେତୁ ତାଙ୍କୁ ପ୍ରଧାନ ବା ପ୍ରକୃତି କୁହାଯାଏ । ୫୦ ।

ପୂର୍ବୋକ୍ତ ସାଙ୍ଖ୍ୟମତ ଖଣ୍ଡନ କରୁଅଛନ୍ତି ।—

ଜଡ଼ରୂପା ( ଅଚେତନା ) ପ୍ରକୃତି ଜଗତର ଉପାଦାନରୂପ କାରଣ ହୋଇପାରନ୍ତି ନାହିଁ । ଶ୍ରୀକୃଷ୍ଣ କୃପାପୂର୍ବକ ନିଜ ଅଂଶ ପୁରୁଷରୂପରେ ଦୃଷ୍ଟିଦ୍ୱାରା ପ୍ରକୃତିରେ ଶକ୍ତିଦାନ କରି ତାଙ୍କଦ୍ୱାରା ଜଗତ୍ର ସୃଷ୍ଟି କରନ୍ତି । ୫୧ ।

ଏଣୁ କୃଷ୍ଣଶକ୍ତିହିଁ ସୃଷ୍ଟିର ମୁଖ୍ୟକାରଣ ଏବଂ ପ୍ରକୃତି ସେହି କାର୍ଯ୍ୟର ସହାୟତା କରନ୍ତି ବୋଲି ଗୌଣ କାରଣ । ଅର୍ଥାତ୍ କୃଷ୍ଣଶକ୍ତି ପ୍ରକୃତିରେ ଆରୋପିତ ହେଲେ ତତ୍ଶକ୍ତିସମ୍ପନ୍ନ ପ୍ରକୃତି ଜଗତର ସୃଷ୍ଟି କରନ୍ତି । କିନ୍ତୁ ନିଜଶକ୍ତିଦ୍ୱାରା ତାହା କରିବାକୁ ପ୍ରକୃତି ଅକ୍ଷମ । ଯେପରି କି ଉତ୍ତପ୍ତ-ଲୌହ କାରଣ କାର୍ଯ୍ୟକରେ, କିନ୍ତୁ ତାହା 'ଲୌହ' ଅଗ୍ନିଶକ୍ତିଦ୍ୱାରା ଉତ୍ତପ୍ତ ନ ହୋଇ କେବଳ ନିଜଶକ୍ତିଦ୍ୱାରା କରିପାରେ ନା । ୫୨ ।

ଘଟେର ନିମିତ୍ତ ହେତୁ ଯୈଛେ କୁମ୍ଭକାର ।
ତୈଛେ ଜଗତେର କର୍ତ୍ତା ପୁରୁଷାବତାର ।୫୫।
କୃଷ୍ଣ କର୍ତ୍ତା, ମାୟା ତାର କରେନ ସହାୟ ।
ଘଟେର କାରଣ ଚକ୍ର-ଦଣ୍ଡାଦି ଉପାୟ । ୫୬ ।
ଦୂରେ ହୈତେ ପୁରୁଷ କରେ ମାୟାତେ ଅବଧାନ ।
ଜୀବରୂପ ବୀର୍ଯ୍ୟ ତାତେ କରେନ ଆଧାନ । ୫୭ ।
ଏକ ଅଙ୍ଗାଭାସେ କରେ ମାୟାତେ ମିଳନ ।
ମାୟା ହୈତେ ଜନ୍ମେ ତବେ ବ୍ରହ୍ମାଣ୍ଡେର ଗଣ ।୫୮।

ମାୟାୟାଃ ଦ୍ୱିବିଧାବସ୍ଥାନମଧ୍ୟେ ଯତ୍ତୁ ଜଗଦୁପାଦାନତ୍ୱଂ ତତ୍ତୁ ନିରାକୃତ୍ୟ ଅପରଂ ଜଗନ୍ନିମିତ୍ତତ୍ୱଂ ନିରାକରୋତି "ମାୟା" ଇତି ଦ୍ୱିଭ୍ୟାଃ । ମାୟାଅଂଶେ ଜୀବମାୟାଂଶ ଇତ୍ୟର୍ଥଃ ନାରାୟଣଃ ପ୍ରଥମପୁରୁଷଃ କର୍ତ୍ତା ହେତୁ ନିମିତ୍ତ କାରଣଂ । ଯଥା ଘଟେର ଇତି । ୫୪।୫୫ । ଚ, ଚ,

ଜଗତ୍କର୍ତ୍ତୁଃ ଶ୍ରୀକୃଷ୍ଣସ୍ୟ ତତ୍କାର୍ଯ୍ୟେ ମାୟା ସାହାଯ୍ୟଂ କରୋତି ଇତି ତସ୍ୟାଃ ନିମିତ୍ତତ୍ୱମସ୍ତି କିନ୍ତୁ ନ ସା ମୂଳନିମିତ୍ତମିତି ସର୍ବଂସାମଞ୍ଜସ୍ୟଂ । ୫୬ । ଚ, ଚ,

"ମହତ୍ସ୍ରଷ୍ଟାପୁରୁଷ" ଇତ୍ୟେତତ୍ପଦ୍ୟେ ପୁରୁଷସ୍ୟ ଯତ୍ତୁ ଜଗତ୍କାରଣତ୍ୱମୁକ୍ତଂ ତଚ୍ଚ ସାଙ୍ଖ୍ୟମତଂ ନିରାକୃତ୍ୟ ତଦେବ ପଦ୍ୟଂ ପ୍ରପଞ୍ଚୟତି ବା ନବମଶ୍ଳୋକୋକ୍ତ ମାୟାଭର୍ତ୍ତା ଇତ୍ୟସ୍ୟାର୍ଥଂ ପ୍ରପଞ୍ଚୟନ୍ ପୁରୁଷସ୍ୟୈବ କାରଣତ୍ୱଂ ପ୍ରତିପାଦୟତି "ଦୂରେ" ଇତ୍ୟାଦିଭିଃ । ମାୟାତେ ଅବଧାନ ମାୟାମୀକ୍ଷତେ । ତାତେ କାଳକ୍ଷୋଭିତଗୁଣାୟାଂ ମାୟାୟାଂ । ତଥାହ ତୃତୀୟେ ଦୈବାତ୍ କ୍ଷୁଭିତଧର୍ମିଣ୍ୟାଂ ସ୍ୱସ୍ୟାଂ ଯୋନୌ ପରଃ ପୁମାନ୍ । ଆଧତ୍ତ ବୀର୍ଯ୍ୟଂ ସାସୂତ ମହତ୍ତତ୍ତ୍ୱଂ ହିରଣ୍ମୟଂ । ଇତି । ୫୭ । ଚ, ଚ,

ଏକ ଅଙ୍ଗାଭାସେ ତଦାଭାସଜୀବରୂପେଣ ମାୟାୟାଂ ମିଳତି ଜୀବେନ ସହ ମାୟା ମେଳୟତୀତ୍ୟର୍ଥଃ । ତତୋ ମାୟାୟାଃ ସକାଶାତ୍ ବ୍ରହ୍ମାଣ୍ଡଜନ୍ମ । ନନୁ ତଦପି ତସ୍ୟା ଏବ ତତ୍କାରଣତ୍ୱମାୟାତଂ ତଥାସତି ସାଙ୍ଖ୍ୟମତଂ କଥଂ ନିରାକୃତମୁଚ୍ୟତେ ନ ତାବତ୍ ମାୟାୟାଃ କାରଣତ୍ୱଂ ନିରାକୃତମପି ତୁ ମୂଳକାରଣତ୍ୱମେବ । ଅତ ତୁ ପୁରୁଷାଧୀନଂ ତତ୍କାରଣତ୍ୱଂ ଜ୍ଞେୟମିତି ସର୍ବମନବଦ୍ୟଂ । ୫୮ । ଚ, ଚ,

---

ଏଣୁ ଦେଖାଗଲା ଯେ କୃଷ୍ଣହିଁ ଜଗତ ସୃଷ୍ଟିର ମୂଳକାରଣ ଏବଂ ପ୍ରକୃତି ଅନୁଷଙ୍ଗିକ କାରଣ । ଯେପରି କି ଛାଗଳର ଗଳଦେଶର ସ୍ତନ କେବଳ ମାଂସପିଣ୍ଡ ଏବଂ ସେଥିରେ ସ୍ତନର ପ୍ରୟୋଜନୀୟ କାରଣ ଦୁଗ୍ଧ ନ ଥିଲେ ସୁଦ୍ଧା ସ୍ତନବତ୍ ଦେଖାଯିବାରୁ ସ୍ତନଶବ୍ଦବାଚୀ ହୁଏ । ସେହିପରି ଜଗତସୃଷ୍ଟି ସମ୍ବନ୍ଧରେ ପ୍ରକୃତି କାରଣବାଚୀ । ୫୩ ।

ମାୟାଙ୍କର ପୂର୍ବକଥିତ ଦୁଇବିଧ ଅବସ୍ଥାନ ମଧ୍ୟରୁ ଜଗତର ଉପାଦାନତ୍ୱ ଖଣ୍ଡନ କରି ବର୍ତ୍ତମାନ ଜଗତର ନିମିତ୍ତତ୍ୱ ଖଣ୍ଡନ କରୁଅଛନ୍ତି । ଯଥା—ପ୍ରକୃତିକୁ ଜୀବମାୟାରୂପରେ ଯେ ଜଗତର ନିମିତ୍ତ-କାରଣ ( ମୂଳକାରଣ ) ବୋଲି ସାଙ୍ଖ୍ୟମତରେ କୁହା ହୋଇଅଛି ତାହା ନୁହେଁ । ଯେହେତୁ ପୁରୁଷାବତାର ନାରାୟଣ କର୍ତ୍ତା ଅଟନ୍ତି । ଯେପରିକି କୁମ୍ଭକାର ଘଟସୃଷ୍ଟିର ନିମିତ୍ତ ହେତୁ ( ମୂଳ କାରଣ ) ସେହିପରି ପୁରୁଷାବତାର ନାରାୟଣ ଜଗତସୃଷ୍ଟିର କର୍ତ୍ତା, ଯେପରି ଘଟସୃଷ୍ଟିର ଚକ୍ରଦଣ୍ଡଆଦି ଉପକରଣ କୁମ୍ଭକାରର ଘଟସୃଷ୍ଟିକାର୍ଯ୍ୟରେ ସହାୟତା କରନ୍ତି ସେହିପରି ମାୟା ( ପ୍ରକୃତି ) କୃଷ୍ଣଙ୍କର ଜଗତସୃଷ୍ଟିକାର୍ଯ୍ୟରେ ସହାୟତା କରନ୍ତି, ଏହି ହେତୁ କୃଷ୍ଣ ଜଗତସୃଷ୍ଟିର ମୂଳ ନିମିତ୍ତ ଏବଂ ମାୟା ( ପ୍ରକୃତି ) ସେଥିର ଅନୁଷଙ୍ଗିକ ନିମିତ୍ତ । ୫୪।୫୫।୫୬ ।

ସାଙ୍ଖ୍ୟମତ ଅନୁଯାୟୀ ଯେ ମାୟାସୃଷ୍ଟିର ମୂଳକାରଣ ତାହା ନିରାକରଣପୂର୍ବକ ସଙ୍କର୍ଷଣାଂଶ ପ୍ରଥମପୁରୁଷଙ୍କର ନିମିତ୍ତକାରଣତ୍ୱ ଏବଂ ମାୟାବୃତ୍ତିର କଥନ କହୁଅଛନ୍ତି ।

ଅଗଣ୍ୟ ଅନନ୍ତ ଯତ ଅଣ୍ଡ ସନ୍ନିବେଶ ।
ତତ ରୂପେ ପୁରୁଷ କରେ ସଭାତେ ପ୍ରବେଶ ।୫୯।
ପୁରୁଷ-ନାସାତେ ଯବେ ବାହିରାୟ ଶ୍ୱାସ ।
ନିଃଶ୍ୱାସ-ସହିତେ ହୟ ବ୍ରହ୍ମାଣ୍ଡ ପ୍ରକାଶ । ୬୦ ।

ପୁନରପି ଶ୍ୱାସ ଯବେ ପ୍ରବେଶେ ଅନ୍ତରେ ।
ଶ୍ୱାସ-ସହ ବ୍ରହ୍ମାଣ୍ଡ ପୈଶେ ପୁରୁଷ ଶରୀରେ ।୬୧।
ଗବାକ୍ଷେର ରନ୍ଧ୍ରେ ଯେନ ତ୍ରସରେଣୁ ଚଲେ ।
ପୁରୁଷେର ଲୋମକୂପେ ବ୍ରହ୍ମାଣ୍ଡେର ଜାଲେ ।୬୨।

ସୃଷ୍ଟିପ୍ରକାରମୁକ୍ତ୍ୱା ସ୍ଥିତିପ୍ରକାରମାହ "ଅଗଣ୍ୟ" ଇତି ତଦ୍‌ରୂପେ ତତ୍ତଦଣ୍ଡାନ୍ତର୍ଯ୍ୟାମିରୂପେଣ ସ୍ଥିତିଂ କରୋତୀତ୍ୟର୍ଥଃ । ୫୯ । ଚ, ଚ,

ଲୟପ୍ରକାରମାହ "ପୁରୁଷ" ଇତି । ପୁରୁଷନାସାତେ ଇତ୍ୟାଦି ବାକ୍ୟେନ ନବମ-ସ୍କନ୍ଧୋକ୍ତାଜାଣ୍ଡସଂଘାଶ୍ରୟାଙ୍ଗ ଇତ୍ୟସ୍ୟାପ୍ୟର୍ଥ ଉକ୍ତ ଇତି ଜ୍ଞେୟମ୍ । ୬୦।୬୧।୬୨ । ଚ, ଚ,

କାରଣାର୍ଣ୍ଣବଶାୟୀ ପ୍ରଥମପୁରୁଷ, କାରଣାର୍ଣ୍ଣବବହିଃସ୍ଥିତା ମାୟାଙ୍କ ପ୍ରତି ଅବଲୋକନ କରନ୍ତି । ଏଠାରେ "ଦୂରନ୍ଥିତେ" ଅର୍ଥାତ୍ ଦୂରରୁ । ଏହାର ତାତ୍ପର୍ଯ୍ୟ ଏହି ଯେ, ମାୟାଙ୍କୁ ସ୍ପର୍ଶ ନ କରି ପୃଥକ୍‌ସ୍ଥାନରୁ କେବଳ ଅବ[illegible] କରନ୍ତି । ଏହି ଅବଲୋକନ ଦ୍ୱାରା ମାୟାରେ ଜୀବରୂପୀ ବୀର୍ଯ୍ୟ ବା ଶକ୍ତି ନ୍ୟସ୍ତ କରନ୍ତି । ୫୭ ।

ପୂର୍ବୋକ୍ତପ୍ରକାରେ ଅପଣାର ତେଜୋଂଶ ଜୀବରୂପେ ମାୟାରେ ମିଳିତ ହୁଅନ୍ତି, ବା ଜୀବ ସହିତ ମାୟାଙ୍କର ମିଳନ କରାନ୍ତି । ଏହା ହେଲା ପରେ, ମାୟାଙ୍କଠାରୁ ବ୍ରହ୍ମାଣ୍ଡମାନେ ଜନ୍ମ ହୁଅନ୍ତି । ଏହାର ତାତ୍ପର୍ଯ୍ୟ ଏହି ଯେ ପୁରୁଷଶକ୍ତି ବ୍ୟତୀତ ମାୟାଙ୍କର ବ୍ରହ୍ମାଣ୍ଡ ଜାତ କରିବାର ଶକ୍ତି ନାହିଁ, କିନ୍ତୁ ପୁରୁଷ ଶକ୍ତି ପ୍ରାପ୍ତ ହେଲେ ସେ ତାହା କରନ୍ତି । ଅତଏବ ବ୍ରହ୍ମାଣ୍ଡସୃଷ୍ଟିର କାରଣହିଁ ପୁରୁଷାଧୀନ, ମାୟାଧୀନ ନୁହେଁ । ମାୟା କେବଳ ସହାୟତାକାରିଣୀ । ୫୮ ।

ସୃଷ୍ଟି ପ୍ରକରଣ କହି, ବର୍ତ୍ତମାନ ସ୍ଥିତି ବା ପାଳନ ପ୍ରକରଣ କହୁଅଛନ୍ତି । ଅର୍ଥାତ୍ ଅନନ୍ତ ବ୍ରହ୍ମାଣ୍ଡର ଅନନ୍ତ ଅନ୍ତର୍ଯ୍ୟାମିରୂପରେ ସେହି ପୁରୁଷ (ପ୍ରଥମପୁରୁଷ) ପ୍ରବେଶ କରି ସମସ୍ତଙ୍କର ପାଳନ କରନ୍ତି । ଏହି ବ୍ରହ୍ମାଣ୍ଡ ଅନ୍ତର୍ଯ୍ୟାମିହିଁ ଦ୍ୱିତୀୟପୁରୁଷଟି । ୫୯ ।

ବର୍ତ୍ତମାନ ପ୍ରଳୟର ବିଷୟ କହୁଅଛନ୍ତି । ସେହି ପ୍ରଥମପୁରୁଷଙ୍କର ନାସାରନ୍ଧ୍ରରୁ ନିଃଶ୍ୱାସ ବାହାରିଲେ, ନିଃଶ୍ୱାସର ସହିତ ବ୍ରହ୍ମାଣ୍ଡମାନେ ପ୍ରକାଶ ହୁଅନ୍ତି ବା ସୃଷ୍ଟି ହୁଅନ୍ତି । ଶ୍ୱାସର ପତନକାଳ, ବ୍ରହ୍ମାଣ୍ଡମାନଙ୍କର ସ୍ଥିତିକାଳ ଏବଂ ପୁନରପି ଶ୍ୱାସ ଟାଣିନେବାଦ୍ୱାରା ବ୍ରହ୍ମାଣ୍ଡମାନେ ପୁରୁଷର ଗର୍ଭସ୍ଥ ହୁଅନ୍ତି । ଏହାର ଉଦାହରଣସ୍ୱରୂପ ଦେଖାଉଅଛନ୍ତି । ଗବାକ୍ଷରେ ସୂର୍ଯ୍ୟକିରଣ ପଡ଼ିଲେ ଯେପରି ସେଥିରେ ଅତି ସୂକ୍ଷ୍ମ ଧୂଳିକଣାରୂପ ଦ୍ରବ୍ୟ ଅର୍ଥାତ୍ ତ୍ରସରେଣୁମାନଙ୍କର ଗତାଗତ ଦେଖାଯାଏ ସେହିପରି ଏ ପୁରୁଷଙ୍କର ଲୋମକୂପମଧ୍ୟରେ ବ୍ରହ୍ମାଣ୍ଡମାନଙ୍କର ଗତାଗତ ହୁଏ । ତ୍ରସରେଣୁ—ଛ'ଗୋଟି ପରମାଣୁର ସମଷ୍ଟି । ଏଠାରେ ଏହାହିଁ ପ୍ରତିପାଦିତ ହେଲା ଯେ ସେହି ପ୍ରଥମପୁରୁଷହିଁ ସୃଷ୍ଟି, ସ୍ଥିତି ଓ ପ୍ରଳୟକର୍ତ୍ତା । ତାହାଙ୍କର ଏକ ନିଃଶ୍ୱାସପତନ ଓ ପୁନର୍ଗ୍ରହଣକାଳ ଆମ୍ଭମାନଙ୍କ ହିସାବରେ ନିମ୍ନପ୍ରକାର ଅଟେ ।

ସତ୍ୟ, ତ୍ରେତା, ଦ୍ୱାପର, କଳି ଏହି ଚାରିଯୁଗରେ ଏକ ଦିବ୍ୟଯୁଗ । ୭୧ ଦିବ୍ୟଯୁଗରେ ଏକ ମନ୍ୱନ୍ତର । ୧୪ ମନ୍ୱନ୍ତରରେ ବ୍ରହ୍ମାଙ୍କର ଏକଦିନ । ଏହିପରି ଦିନ ୩୬୦ ଦିନରେ ବ୍ରହ୍ମାଙ୍କର ଏକବର୍ଷ । ଏହିପରି ଏକଶତବର୍ଷ ପରେ ବ୍ରହ୍ମାଣ୍ଡର ପ୍ରଳୟ ହୁଏ । ଏହାହିଁ ବ୍ରହ୍ମାଣ୍ଡର ସ୍ଥିତିକାଳ ବା ପ୍ରଥମପୁରୁଷଙ୍କର ଏକ ନିଃଶ୍ୱାସର ସ୍ଥିତିକାଳ ୧୪୩୧୩୬୦୦୦ ଯୁଗ । ୬୦।୬୧।୬୨ ।

ତଥାହି ବ୍ରହ୍ମସଂହିତାୟାମ୍ ( ୫।୪୮ )—

ଯସ୍ୟୈକନିଃଶ୍ୱସିତକାଲମଥାବଲମ୍ବ୍ୟ,
ଜୀବନ୍ତି ଲୋମବିଲଜା ଜଗଦଣ୍ଡନାଥାଃ ।
ବିଷ୍ଣୁର୍ମହାନ୍ ସ ଇହ ଯସ୍ୟ କଳାବିଶେଷୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି ॥ ୯ ॥ *

ତଥାହି ( ଭାଃ ୧୦।୧୪।୧୧ )—

କ୍ୱାହଂ ତମୋମହଦହଂ-ଖଚରାଗ୍ନିବାର୍ଭୂ-
ସଂବେଷ୍ଟିତାଣ୍ଡଘଟସପ୍ତବିତସ୍ତିକାୟଃ ।
କ୍ୱେଦୃଗ୍ୱିଧାବିଗଣିତାଣ୍ଡପରାଣୁଚର୍ଯ୍ୟା-
ବାତାଧ୍ୱରୋମବିବରସ୍ୟ ଚ ତେ ମହିତ୍ୱମ୍ ॥୧୦॥ *

---

ଯସ୍ୟେତି । ଯସ୍ୟ ମହାବିଷ୍ଣୋରେକନିଃଶ୍ୱସିତଂ ଏକନିଃଶ୍ୱାସେନୋପଲକ୍ଷିତଂ ଯତ୍ର ତତ୍ପରିମାଣଂ କାଳଂ ଅବଲମ୍ବ୍ୟ ସଂବ୍ୟାପ୍ୟ ଲୋମବିଲଜାଃ ମହାବିଷ୍ଣୋର୍ଲୋମକୂପସ୍ଥାଃ ଜଗଦଣ୍ଡନାଥାଃ ବ୍ରହ୍ମାଦୟଃ ଜୀବନ୍ତି ତତ୍ତଦଧିକାରିତୟା ଜଗତ ପ୍ରକଟଂ ତିଷ୍ଠନ୍ତି ସ ମହାବିଷ୍ଣୁରିହ ଗୋଲୋକପଦ୍ମଦଳେ ଯସ୍ୟ ଗୋବିନ୍ଦସ୍ୟ କଳାବିଶେଷଃ ତମାଦିପୁରୁଷଂ ଗୋବିନ୍ଦମହଂ ଭଜାମି । ଇତି ଶ୍ଳୋକମାଳା । [ ୯ମ ଶ୍ଳୋକଃ ]

ତମୋମହଦହଂଖଚରାଗ୍ନିବାର୍ଭୂସଂବେଷ୍ଟିତାଣ୍ଡଘଟସପ୍ତବିତସ୍ତିକାୟଃ ( ତମଃ ପ୍ରକୃତିଃ ମହାନ୍ ମହତ୍ତତ୍ତ୍ୱଂ ଅହଂ ଅହଙ୍କାରଃ ଖମ୍ ଆକାଶଂ ଚରଃ ବାୟୁଃ ଅଗ୍ନିଃ ତେଜଃ ଜଳମ୍ ଆପଃ ଭୂଃ ପୃଥିବୀ ଏତୈଃ ପ୍ରକୃତ୍ୟାଦି ପୃଥିବ୍ୟନ୍ତୈଃ ଯଃ ଅଣ୍ଡଘଟଃ ବ୍ରହ୍ମାଣ୍ଡରୂପଃ ଘଟଃ ଦେହଃ ସ ଏବ ତସ୍ମିନ୍ ବା ଆତ୍ମମାନେନ ସପ୍ତବିତସ୍ତିଃ କାୟଃ ଯସ୍ୟ ସଃ ) ଅହଂ କ୍ୱ ଈଦୃଗ୍ୱିଧାବିଗଣିତାଣ୍ଡପରାଣୁଚର୍ଯ୍ୟା ବାତାଧ୍ୱରୋମବିବରସ୍ୟ ( ଈଦୃଗ୍-ବିଧାନି ଏବଂ ପ୍ରକାରାଣି ଯାନି ଅଗଣିତାନି ଅଣ୍ଡାନି ତାନି ଏବ ପରମାଣବଃ ତେଷାଂ ଚର୍ଯ୍ୟା ପରିଭ୍ରମଣଂ ତଦର୍ଥଂ ବାତାଧ୍ୱାନଃ ଗବାକ୍ଷା ଇବ ରୋମବିବରାଣି ଯସ୍ୟ ତସ୍ୟ ) ତେ ( ତବ ) ମହିତ୍ୱଂ ଚ କ୍ୱ । [ ୧୦ମ ଶ୍ଳୋକଃ ]

---

ଯାହାଙ୍କର ଲୋମକୂପବାସୀ ବ୍ରହ୍ମାଣ୍ଡାଧିପତି ବ୍ରହ୍ମାଆଦି ଯାହାଙ୍କର ଏକ ନିଃଶ୍ୱାସ ପତନର ସମୟବ୍ୟାପୀ ଜଗତରେ ପ୍ରକଟ ରହନ୍ତି ସେହି ମହାବିଷ୍ଣୁ ଯାହାଙ୍କର ଅଂଶାନୁଅଂଶ ଏବମ୍ଭୂତ, ଶ୍ରୀଗୋଲୋକ ପଦ୍ମଦଳସ୍ଥ ଆଦିପୁରୁଷ ଯେ ଗୋବିନ୍ଦ ତାହାଙ୍କୁ ମୁଁ ଭଜନ କରେଁ । [ ୯ମ ଶ୍ଳୋକାର୍ଥ ]

ହେ ଭଗବନ୍, ପ୍ରକୃତି, ମହତ୍ତତ୍ତ୍ୱ, ଅହଙ୍କାର, ଆକାଶ, ବାୟୁ, ତେଜ, ଜଳ ଏବଂ ପୃଥିବୀ ଏହିମାନଙ୍କଦ୍ୱାରା ସଂବେଷ୍ଟିତ ଯେ ବ୍ରହ୍ମାଣ୍ଡରୂପ ଘଟ ସେଥିରେ ଆତ୍ମପରିମାଣରେ ସପ୍ତବିତସ୍ତି ପରିମିତ ( ସାଢ଼େ ତିନି ହାତ ) ମୁଁ କେଉଁଠାରେ ଏବଂ ଏହି ପ୍ରକାର ଅସଂଖ୍ୟ ବ୍ରହ୍ମାଣ୍ଡରୂପ ପରମାଣୁସମୂହ ପରିଭ୍ରମଣର ପଥସ୍ୱରୂପ ଗବାକ୍ଷସଦୃଶ ଲୋମବିବରବିଶିଷ୍ଟ ଯେ ଆପଣଙ୍କର ମହତ୍ତ୍ୱସ୍ରଷ୍ଟା ପ୍ରଥମପୁରୁଷ ସ୍ୱରୂପ ସେ କେଉଁଠାରେ ଏହାହିଁ ଆପଣଙ୍କର ମାହାତ୍ମ୍ୟ । [ ୧୦ମ ଶ୍ଳୋକାର୍ଥ ]

ଅଂଶେର ଅଂଶ ଯେଇ—'କଳା' ତାର ନାମ ।
ଗୋବିନ୍ଦେର ପ୍ରତିମୂର୍ତ୍ତି ଶ୍ରୀବଲରାମ । ୬୩ ।
ତାଁର ଏକ ସ୍ୱରୂପ ଶ୍ରୀମହାସଙ୍କର୍ଷଣ ।
ତାର ଅଂଶ ପୁରୁଷ ହୟ କଳାତେ ଗଣନ । ୬୪ ।

ଯାହାଁକେ ତ କଳା କହି; ତେଁହ ମହାବିଷ୍ଣୁ ।
ମହାପୁରୁଷ ଅବତାରୀ ତେଁହ ସର୍ବଜିଷ୍ଣୁ । ୬୫ ।
ଗର୍ଭୋଦ-କ୍ଷୀରୋଦଶାୟୀ ଦୋହେଁ ପୁରୁଷ ନାମ ।
ସେଇ ଦୁଇ ଯାଁର ଅଂଶ—ବିଷ୍ଣୁ ବିଶ୍ୱଧାମ ।୬୬।

"ଯସ୍ୟୈକ" ଇତ୍ୟସ୍ୟୋକ୍ତ କଳାଶବ୍ଦସ୍ୟାର୍ଥମାହ "ଅଂଶେର" ଇତି । ତତ୍ରୈବ ଯତ୍ର ବିଷ୍ଣୋର୍ଗୋବିନ୍ଦକଳାବିଶେଷତ୍ୱମୁକ୍ତଂ ତଦେବ ଦର୍ଶୟତି "ଗୋବିନ୍ଦେର" ଇତି ସାର୍ଦ୍ଧେକେନ । ବଳଦେବସ୍ୟ ଗୋବିନ୍ଦପ୍ରତିମୂର୍ତ୍ତିତ୍ୱେନ ତୟୋରଭେଦାତ୍ ସଙ୍କର୍ଷଣାଂଶଃ ମହାବିଷ୍ଣୁଃ ଗୋବିନ୍ଦସ୍ୟ କଳାବିଶେଷଃ ଇତ୍ୟୁକ୍ତଂ ଏତଦେବ ମହାବିଷ୍ଣୁତତ୍ତ୍ୱମିତି ଜ୍ଞେୟଂ । ୬୩।୬୪ । ବି, ଟି,

ନବମ ଶ୍ଳୋକୋକ୍ତ "ଯସ୍ୟୈକାଂଶଃ ଶ୍ରୀପୁମାନାଦିଦେବଃ" ଇତ୍ୟସ୍ୟାର୍ଥମାହ "ଯାହାଁକେତ" ଇତ୍ୟାଦି "ହେଇତ ପୁରୁଷ ଯାର" ଇତ୍ୟନ୍ତଂ । ମହାପୁରୁଷ ପ୍ରଥମପୁରୁଷଃ । ଅବତାରୀ ସର୍ବାବ-ତାରାଣାମଂଶୀ । ସର୍ବଜିଷ୍ଣୁଃ ସର୍ବକର୍ତ୍ତା । ୬୫ । ବି, ଟି,

ଯାହାଁକେତ ଇତ୍ୟତ୍ର ମହାବିଷ୍ଣୋଃ ଯତ୍ ପ୍ରଥମପୁରୁଷତ୍ୱମୁକ୍ତଂ ତତ୍ ପ୍ରତିପାଦୟତି "ଗର୍ଭୋଦ" ଇତି । ଦ୍ୱିତୀୟତୃତୀୟପୁରୁଷୌ ଗର୍ଭୋଦକ୍ଷୀରୋଦଶାୟିନୌ ମହାବିଷ୍ଣୋରଂଶୌ ଅତଃ ସଃ ପ୍ରଥମପୁରୁଷ ଇତ୍ୟର୍ଥଃ । ୬୬ । ବି, ଟି,

ଅଂଶର ଅଂଶକୁ କଳା କୁହାଯାଏ, ପୂର୍ବୋକ୍ତ ଶ୍ଳୋକରେ ମହାବିଷ୍ଣୁଙ୍କୁ ଶ୍ରୀଗୋବିନ୍ଦଙ୍କର କଳା ବୋଲି ଯାହା କୁହା ହୋଇଅଛି ଏବଂ ତତ୍ପୂର୍ବେ ଶ୍ରୀମହାବିଷ୍ଣୁଙ୍କୁ ଶ୍ରୀବଳଦେବଙ୍କର ଅଂଶର ଅଂଶ ବୋଲି କୁହା ହୋଇଅଛି ଏହି ପାର୍ଥକ୍ୟର ସାମଞ୍ଜସ୍ୟ କରି ଅର୍ଥ କରୁଅଛନ୍ତି । ଯଥା—

ଶ୍ରୀବଲରାମ ଶ୍ରୀଗୋବିନ୍ଦଙ୍କର ପ୍ରତିମୂର୍ତ୍ତି, ତେଣୁ ଏ ଉଭୟ ଅଭେଦ ବା ଏକାତ୍ମା । ଅତଏବ ଶ୍ରୀମହାସଙ୍କର୍ଷଣଙ୍କର ଅଂଶ ଯେଉଁ ପୁରୁଷ ବା ମହାବିଷ୍ଣୁ ଶ୍ରୀବଲରାମଙ୍କର ଅଂଶାଂଶ ବା କଳା ହେତୁ ଶ୍ରୀଗୋବିନ୍ଦଙ୍କର ମଧ୍ୟ କଳା ଅଟନ୍ତି । ଅତଏବ ଅଷ୍ଟମଶ୍ଳୋକ ଓ ୯ମ ଶ୍ଳୋକର ଅର୍ଥରେ ତତ୍ତ୍ୱଗତ କୌଣସି ପ୍ରଭେଦ ନାହିଁ । ୬୩।୬୪ ।

ଶ୍ରୀନିତ୍ୟାନନ୍ଦଙ୍କର କଳାରୂପୀ ଯେଉଁ ମହାବିଷ୍ଣୁ, ତାହାଙ୍କର ମହିମା କହୁଅଛନ୍ତି । ଯଥା—ସେ ମହାପୁରୁଷ ( ପ୍ରଥମପୁରୁଷ ) ଅବତାରୀ ( ସର୍ବଅବତାରମାନଙ୍କର ମୂଳ ବା ଅଂଶୀ ) ଏବଂ ସର୍ବଜିଷ୍ଣୁ ( ସର୍ବକର୍ତ୍ତା ) ଅଟନ୍ତି । ଅର୍ଥାତ୍ ଏକକଥାରେ ସୃଷ୍ଟି, ସ୍ଥିତି, ପ୍ରଳୟର ନିଦାନ । ୬୫ ।

ବିଶ୍ୱଧାମ ବିଷ୍ଣୁ—ବ୍ରହ୍ମାଣ୍ଡଗଣର ଆଧାର ମହାବିଷ୍ଣୁ । ସେହି ବିଶ୍ୱଧାମ ମହାବିଷ୍ଣୁଙ୍କର ( ପ୍ରଥମପୁରୁଷଙ୍କର ) ଗର୍ଭୋଦଶାୟୀ ଓ କ୍ଷୀରୋଦଶାୟୀ ଦ୍ୱିତୀୟ ଓ ତୃତୀୟପୁରୁଷ ଅଂଶ ଅଟନ୍ତି ।

ପ୍ରଥମ ପୁରୁଷ ( ପ୍ରକୃତି ଅନ୍ତର୍ଯାମୀ )
ଦ୍ୱିତୀୟ ପୁରୁଷ ( ବ୍ରହ୍ମାଣ୍ଡାନ୍ତର୍ଯାମୀ )
ତୃତୀୟ ପୁରୁଷ ( ଜୀବାନ୍ତର୍ଯାମୀ ) । ୬୬ ।

ଲଘୁଭାଗବତାମୃତେପୂର୍ବଖଣ୍ଡେ ( ୨।୯ )
ସାତ୍ୱତତନ୍ତ୍ରବଚନମ୍—
ବିଷ୍ଣୋସ୍ତୁ ତ୍ରୀଣି ରୂପାଣି ପୁରୁଷାଖ୍ୟାନ୍ୟଥୋ ବିଦୁଃ ।
ଏକନ୍ତୁ ମହତଃ ସ୍ରଷ୍ଟୃ ଦ୍ୱିତୀୟଂ ତ୍ୱଣ୍ଡସଂସ୍ଥିତମ୍ ।
ତୃତୀୟଂ ସର୍ବଭୂତସ୍ଥଂ ତାନି ଜ୍ଞାତ୍ୱା ବିମୁଚ୍ୟତେ ॥୧୧॥*
ଯଦ୍ୟପି କହିୟେ ତାଁରେ କୃଷ୍ଣେର କଳା କରି ।
ମତ୍ସ୍ୟକୂର୍ମାଦ୍ୟବତାରେର ତେଁହୋ ଅବତାରୀ ।୨୭।

ତଥାହି ( ଭାଃ ୧।୨୮ )—
ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍ ।
ଇନ୍ଦ୍ରାରିବ୍ୟାକୁଲଂ ଲୋକଂ ମୃଡ଼ୟନ୍ତି ଯୁଗେ
ଯୁଗେ ୧୨ ॥ *
ସେଇତ ପୁରୁଷ ସୃଷ୍ଟି ସ୍ଥିତି ପ୍ରଳୟେର କର୍ତ୍ତା ।
ନାନା ଅବତାର କରେ ଜଗତେର ଭର୍ତ୍ତା । ୨୮ ।

ବିଷ୍ଣୋସ୍ତୁ ଇତି । ବିଷ୍ଣୋର୍ବ୍ୟାପକସ୍ୟ ଭଗବତଃ ପୁରୁଷାଖ୍ୟାନି ତ୍ରୀଣି ରୂପାଣି । ଏକଂ--ରୂପଂ-ମହତଃ ସ୍ରଷ୍ଟୃ କାରଣାର୍ଣ୍ଣବଶାୟି । ଦ୍ୱିତୀୟଂ ରୂପଂ ଅଣ୍ଡସଂସ୍ଥିତଂ ଗର୍ଭୋଦଶାୟି । ତୃତୀୟଂ ରୂପଂ ସର୍ବଭୂତସ୍ଥଂ କ୍ଷୀରୋଦ-ଶାୟି । ତାନି ତ୍ରୀଣି ରୂପାଣି ଜ୍ଞାତ୍ୱା ବିମୁଚ୍ୟତେ ସଂସାରବନ୍ଧନ୍ମୁକ୍ତୋ ଭବତୀତ୍ୟର୍ଥଃ । [ ୧୧ଶ ଶ୍ଳୋକଃ ]

"ଯାହାକେତ" ଇତ୍ୟତ୍ର ମହାବିଷ୍ଣୋଃ ଯତ୍ର ଅବତାରିତ୍ୱମୁକ୍ତଂ ତଦେବ ବିବୃଣୋତି "ଯଦ୍ୟପି" ଇତି । ଶ୍ରୀକୃଷ୍ଣକଳାବିଶେଷତ୍ୱେନ ମହାବିଷ୍ଣୋରବତାରତ୍ୱାଭାବେଽପି ମତ୍ସ୍ୟାଦ୍ୟବତାରସ୍ୟତି ନିଜାଂଶେନ ଇତି ଶେଷଃ ଅତଃ ସୋଽବତାରୀତ୍ୟର୍ଥଃ । ୨୭ । ବ, ଚ,

୧୨ ଶ୍ଳୋକ—ଅନ୍ୱୟ—( ଆଦି ୨ୟ ପରିଚ୍ଛେଦ ୧୩ଶ ଶ୍ଳୋକ )

"ଯାହାକେତ" ଇତ୍ୟତ୍ର ମହାବିଷ୍ଣୋର୍ଯତ୍ସର୍ବକର୍ତ୍ତୃତ୍ୱମୁକ୍ତଂ ତଦେବ ପ୍ରତିପାଦୟତି "ସେଇତ" ଇତି । ସ ଏବ ମହାବିଷ୍ଣୁଃ ସୃଷ୍ଟ୍ୟାଦୀନାଂ ତଥା ଜଗତ୍ପାଳନାର୍ଥଂ ଲୀଳାବତାର ଗୁଣାବତାର ଯୁଗମନ୍ୱନ୍ତରାଦିନାନାବତାର ଇତ୍ୟାଦୀନଂ ସର୍ବେଷଂ କରୋତୀତି ସଃ ସର୍ବକର୍ତ୍ତା ଇତ୍ୟର୍ଥଃ । ୨୮ । ବ, ଚ,

ଭଗବାନଙ୍କର ପୁରୁଷ ନାମକ ତିନଗୋଟି ରୂପ ଅଛି । ପ୍ରଥମରୂପ ( ପ୍ରଥମପୁରୁଷ ) ମହତ୍ ସ୍ରଷ୍ଟା କାରଣାର୍ଣ୍ଣବଶାୟୀ । ଦ୍ୱିତୀୟରୂପ ( ଦ୍ୱିତୀୟ ପୁରୁଷ ) ବ୍ରହ୍ମାଣ୍ଡସଂସ୍ଥିତ ଗର୍ଭୋଦକଶାୟୀ । ତୃତୀୟ ରୂପ ( ତୃତୀୟ ପୁରୁଷ ) ସର୍ବଭୂତସ୍ଥ କ୍ଷୀରୋଦଶାୟୀ । ଏହି ତିନିରୂପର ବିଷୟ ଜାଣିଲେ ଲୋକେ ସଂସାର-ବନ୍ଧନରୁ ମୁକ୍ତ ହୁଅନ୍ତି । ୧୧ଶ [ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ମୂଳ ଅବତାରୀ । ମହାବିଷ୍ଣୁ ତାହାଙ୍କର କଳା । କିନ୍ତୁ ଉପରୋକ୍ତ ୨୬ ପଯ୍ୟାରରେ ତାଙ୍କୁ ଯେ ଅବତାରୀ ବୋଲି କୁହାହୋଇଅଛି ଏବଂ ତଦ୍ୱାରା ଶ୍ରୀକୃଷ୍ଣଙ୍କର ମୂଳ ଅବତାରୀତ୍ୱରେ ବାଧା ପଡୁଥିବାରୁ, ତାହାର ଅର୍ଥ କରୁଅଛନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣ ମୂଳ ଏବଂ ମହାବିଷ୍ଣୁ ତାହାଙ୍କର କଳା ହେଲେହେଁ ସେ ମତ୍ସ୍ୟ, କୂର୍ମ ଆଦି ଅବତାରମାନଙ୍କୁ ନିଜାଂଶରୂପରେ ଅବତୀର୍ଣ୍ଣ କରାନ୍ତି ବୋଲି ସେମାନଙ୍କ ସମ୍ବନ୍ଧରେ ସେ ଅବତାରୀ ଅଟନ୍ତି । ୨୭ ।

ଶ୍ରୀସୂତ କହୁଅଛନ୍ତି—ପୂର୍ବକଥିତ ଉକ୍ତ ଓ ଅନୁକ୍ତ ଅବତାରମାନେ ପରମେଶ୍ୱରଙ୍କର ଅଂଶ ଓ ବିଭୂତି, କିନ୍ତୁ ପୂର୍ବକଥିତ ( ବିଂଶତିତମ ) ଶ୍ରୀକୃଷ୍ଣ ସ୍ୱୟଂ ବା ନିଜେ ଭଗବାନ୍ ବା ପରମେଶ୍ୱର ଅଟନ୍ତି । ଉକ୍ତ ଅବତାରମାନେ ଦୈତ୍ୟମାନଙ୍କଦ୍ୱାରା ଉପଦ୍ରୁତ ସଂସାରକୁ ଯୁଗେ୨ ସୁଖୀ କରନ୍ତି । [ ୧୨ଶ ଶ୍ଳୋକାର୍ଥ ]

ସେହି ପ୍ରଥମପୁରୁଷ ମହାବିଷ୍ଣୁ ସୃଷ୍ଟି, ସ୍ଥିତି ଏବଂ ପ୍ରଳୟକାର୍ଯ୍ୟରେ ଏକମାତ୍ର କର୍ତ୍ତା ଏବଂ ଜଗତ୍ପାଳନ ସଙ୍କାଶେ ନାନା ଅବତାର ହୁଅନ୍ତି । ଅର୍ଥାତ୍ ଲୀଳାବତାର, ଗୁଣାବତାର, ଯୁଗାବତାର, ମନ୍ୱନ୍ତରାବତାର ଇତ୍ୟାଦି ନାନାଅବତାରଙ୍କୁ ଅବତୀର୍ଣ୍ଣ କରାନ୍ତି । ଏଣୁ ସେ ସର୍ବକର୍ତ୍ତା । ୨୮ ।

| | |
|---|---|
| ସୃଷ୍ଟ୍ୟାଦି-ନିମିତ୍ତେ ଯେଇ ଅଂଶେର ଅବଧାନ । | ତଥାହି ( ଭାଃ ୨।୬।୪୦।୪୪ ) |
| ସେଇ ତ ଅଂଶେରେ କହି ଅବତାର ନାମ ।୬୯। | ଆଦ୍ୟୋଽବତାରଃ ପୁରୁଷଃ ପରସ୍ୟ, |
| | କାଲଃ ସ୍ୱଭାବଃ ସଦସନ୍ମନଶ୍ଚ । |
| **ଆଦ୍ୟ** ଅବତାର—ମହାପୁରୁଷ ଭଗବାନ । | ଦ୍ରବ୍ୟଂ ବିକାରୋ ଗୁଣ ଇନ୍ଦ୍ରିୟାଣି, |
| ସର୍ବ-ଅବତାର ବୀଜ ସର୍ବାଶ୍ରୟ ଧାମ । ୭୦ । | ବିରାଟ୍ ସ୍ୱରାଟ୍ ସ୍ଥାସ୍ନୁ ଚରିଷ୍ଣୁ ଭୂମ୍ନଃ ॥ ୧୩ ॥ * |

ଅବତାରସ୍ୟ ଲକ୍ଷଣମାହ "ସୃଷ୍ଟ୍ୟାଦି" ଇତି । ସୃଷ୍ଟ୍ୟାଦିନିମିତ୍ତଂ ସ୍ୱଧାମତଃ ଯୋଽଂଶଃ ପ୍ରପଞ୍ଚେ ପ୍ରାଦୁର୍ଭବତି ତଦଂଶସ୍ୟ ନାମ ଅବତାରଃ । ସ୍ୱଧାମତଃ ପ୍ରପଞ୍ଚେଽବତାରସ୍ତୀତ୍ୟବତାର ଇତ୍ୟର୍ଥଃ । ୬୯ ବି, ଚ,

ନନୁ ବ୍ରହ୍ମବିଷ୍ଣୁଶିବାନାଂ ସୃଷ୍ଟିସ୍ଥିତିଲୟକର୍ତ୍ତୃତ୍ୱଂ ତଥା ଦ୍ୱିତୀୟପୁରୁଷାଦୀନାଂ ନାନାବତାର-କର୍ତ୍ତୃତ୍ୱଂ ତଥା ବ୍ରହ୍ମାଦୀନାଂ ପ୍ରପଞ୍ଚାବତାରତ୍ୱଂ ପ୍ରସିଦ୍ଧଂ ନ ତୁ ମହାବିଷ୍ଣୋଃ ତଦା ସର୍ବକର୍ତ୍ତୃତ୍ୱ-ପ୍ରତିପାଦନାୟ କଥଂ ତସ୍ୟ ତତ୍ତତ୍କର୍ତ୍ତୃତ୍ୱାଦିକମୁକ୍ତମିତି ଚେତ୍ତତ୍ରାହ "ଆଦ୍ୟ ଇତି" । ଆଦ୍ୟ ଅବତାର ପ୍ରଥମାବତାର ଇତ୍ୟନେନ ମହାବିଷ୍ଣୋରବତାରବତ୍ତ୍ୱଂ । ସର୍ବେଷାମବତାରାଣାଂ ବୀଜଂ କାରଣମିତି ତସ୍ୟ ନାନାବତାରକର୍ତ୍ତୃତ୍ୱଂ । ସର୍ବେଷାଂ ଜଗତାଂ ଆଶ୍ରୟାଃ ଯେ ଦ୍ୱିତୀୟପୁରୁଷାଦୟସ୍ତେଷାଂ ଧାମ ଆଶ୍ରୟଃ ବ୍ରହ୍ମାଦିକାରଣାନାମପି କାରଣମିତ୍ୟର୍ଥଃ ଅନେନ ତସ୍ୟ ସୃଷ୍ଟ୍ୟାଦିକର୍ତ୍ତୃତ୍ୱଂ ସିଦ୍ଧଂ । ଦ୍ୱିତୀୟ ପୁରୁଷାଦୀନାଂ ସର୍ବେଷାଂ କାରଣତ୍ୱେନ ସର୍ବଂ କରୋତୀତି ସ ମହାବିଷ୍ଣୁଃ ସର୍ବକର୍ତ୍ତା ଇତିଭାବଃ । ।୭୦। ବି, ଚ,

ପରସ୍ୟ ଭୂମ୍ନଃ ( ସ୍ୱରୂପେଣ ଶକ୍ତ୍ୟା ଚ ସର୍ବାତିଶାୟୀ ଭଗବତଃ ) ଆଦ୍ୟଃ ( ପ୍ରଥମଃ ) ଅବତାରଃ ( ପ୍ରାକୃତବୈଭବେ ସ୍ୱେଚ୍ଛୟା ଆବିର୍ଭବଃ ) ପୁରୁଷଃ ( କାରଣାର୍ଣ୍ଣବଶାୟୀ ପ୍ରକୃତୀ-କ୍ଷଣକର୍ତ୍ତା, ଯଦ୍ୟପି ସର୍ବେଷାଂ ଅବିଶେଷେଣ ଅବତାରତ୍ୱମ୍ ଉଚ୍ୟତେ ତଥାପି ) କାଳଃ ସ୍ୱଭାବଃ ସଦସତ୍କାର୍ଯ୍ୟକାରଣାତ୍ମିକା ପ୍ରକୃତିଶ୍ଚ, ଏତାଃ ଶକ୍ତୟଃ ମନ ଆଦୀନି କାର୍ଯ୍ୟାଣି, ବ୍ରହ୍ମାଦୟୋ ଗୁଣାବତାରାଃ, ଦକ୍ଷାଦୟୋ ବିଭୂତୟଃ ଇତି ବିବେକ୍ତବ୍ୟମ୍ ) ମନଃ ( ମହତ୍ତତ୍ତ୍ୱମ୍ ) ଦ୍ରବ୍ୟଂ ( ମହାଭୂତାନି ) ବିକାରଃ ( ଅହଙ୍କାରଃ ) ଗୁଣଃ ( ସତ୍ତ୍ୱାଦି ) ଇନ୍ଦ୍ରିୟାଣି ବିରାଟ୍ ( ସମଷ୍ଟି ଶରୀରଂ ) ସ୍ୱରାଟ୍ ( ବୈରାଜଃ ) ସ୍ଥାସ୍ନୁ ( ସ୍ଥାବରଂ ) ଚ ଚରିଷ୍ଣୁ (ଜଙ୍ଗମଞ୍ଚବ୍ୟଷ୍ଟି ଶରୀରଂ) [ ୧୩ଶ ଶ୍ଳୋକଃ ]

ସୃଷ୍ଟ୍ୟାଦି କରିବା ନିମିତ୍ତ ଭଗବାନଙ୍କର ଯେଉଁ ଅଂଶ ସ୍ୱଧାମରୁ ପ୍ରପଞ୍ଚରେ ପ୍ରାଦୁର୍ଭୂତ ହୁଅନ୍ତି ସେହି ଅଂଶର ନାମ ଅବତାର । ଅର୍ଥାତ୍ ସ୍ୱଧାମରୁ ପ୍ରପଞ୍ଚରେ ଅବତରଣ କରନ୍ତି ବୋଲି ଅବତାର କୁହାଯାଏ । ୬୯ ।

ଏଠାରେ ଏପରି ଯଦି ସନ୍ଦେହ ହୁଏ ଯେ ବ୍ରହ୍ମା, ବିଷ୍ଣୁ ଓ ଶିବ ଏହି ଗୁଣାବତାରମାନେ ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ଏବଂ ଦ୍ୱିତୀୟପୁରୁଷ, ବ୍ରହ୍ମା ଓ ଯୁଗ ଓ ମନ୍ୱନ୍ତରାଦି ଅବତାରମାନଙ୍କର ମୂଳ । ତାହା ହେଲେ ମହାବିଷ୍ଣୁ ସର୍ବଅବତାରର ମୂଳ ଏବଂ ସର୍ବକର୍ତ୍ତା କିପରି ହେଲେ ? ଏହିପରି ପ୍ରଶ୍ନକୁ ଲକ୍ଷ୍ୟ କରି ଗ୍ରନ୍ଥକାର କହୁଅଛନ୍ତି ଯେ ଉପରୋକ୍ତ ୬୯ ପୟାର କଥିତ ଅବତାର ଲକ୍ଷଣ ଅନୁସାରେ ମହାବିଷ୍ଣୁ ଆଦି ଅବତାର ବା ପ୍ରଥମ ଅବତାର, ତେଣୁ ସର୍ବଅବତାରମାନଙ୍କର ବୀଜ ବା ମୂଳ ଅଟନ୍ତି । ସବୁ ଜଗତମାନଙ୍କର ଆଶ୍ରୟ ଯେ ଦ୍ୱିତୀୟ ପୁରୁଷାଦି ଅବତାରମାନେ ସେମାନଙ୍କର ଧାମ ବା ଆଶ୍ରୟ, ଜଗତର କାରଣସ୍ୱରୂପ ବ୍ରହ୍ମାଦିମାନଙ୍କର କାରଣରୂପୀ ଦ୍ୱିତୀୟପୁରୁଷଙ୍କର କାରଣ ବା ମୂଳ । ଏଣୁ ସେ ସର୍ବ ଅବତାରୀ ଏବଂ ସର୍ବକର୍ତ୍ତା । ୭୦ ।

| | |
|---|---|
| ତଥାହି ( ୧।୩।୧ )—<br>ଜଗୃହେ ପୌରୁଷଂ ରୂପଂ ଭଗବାନ୍ ମହଦାଦିଭିଃ ।<br>ସମ୍ଭୂତଂ ଷୋଡ଼ଶକଳମାଦୌ ଲୋକସିସୃ-<br>କ୍ଷୟା ॥ ୧୪ ॥ *<br>ଯଦ୍ୟପି ସର୍ବାଶ୍ରୟ ତେହେଁ। ତାଁହାତେ ସଂସାର ।<br>ଅନ୍ତରାତ୍ମାରୂପେ ତାଁର ଜଗତ-ଆଧାର । ୭୧ । | ପ୍ରକୃତିସହିତେ ତାଁର ଉଭୟ ସମ୍ବନ୍ଧ ।<br>ତଥାପି ପ୍ରକୃତି ସହ ନାହି ସ୍ପର୍ଶ-ଗନ୍ଧ । ୭୨ ।<br><br>ତଥାହି ( ଭାଃ ୧।୧୧।୩୯ )—<br>ଏତଦୀଶନମୀଶସ୍ୟ ପ୍ରକୃତିସ୍ଥୋଽପି ତଦଗୁଣୈଃ ।<br>ନ ଯୁଜ୍ୟତେ ସଦାତ୍ମସ୍ଥୈର୍ଯଥା ବୁଦ୍ଧିସ୍ତଦାଶ୍ରୟା ॥୧୫॥* |

ଆଦୌ ( ସୃଷ୍ଟ୍ୟାରମ୍ଭେ ) ଭଗବାନ୍ ଲୋକସିସୃକ୍ଷୟା (ଲୋକାନାଂ ଭୁବନାନାମ୍ ସିସୃକ୍ଷୟା ସ୍ରଷ୍ଟୁମ୍ ଇଚ୍ଛୟା) ମହଦାଦିଭିଃ (ମହଦହଙ୍କାର ପଞ୍ଚତନ୍ମାତ୍ର ପଞ୍ଚଭୂତୈକାଦଶେନ୍ଦ୍ରିୟୈଃ) ସମ୍ଭୂତଂ ( ମିଳିତଂ ) ଷୋଡ଼ଷକଳଂ ସୃଷ୍ଟ୍ୟୁପଯୋଗୀ ପୂର୍ଣ୍ଣଶକ୍ତିଃ ଷୋଡ଼ଶଃ ଶ୍ରୀ ଭୂଃ, ଲୀଳା, କୀର୍ତ୍ତିଃ, ଇଳା, କାନ୍ତିଃ, ବିଦ୍ୟା, ଇତ୍ୟସ୍ତ, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା ଇତି ନବ ଚ ଏତାଃ ମୁଖ୍ୟାଃ କଳାଃ ଶକ୍ତ୍ୟଂଶାଃ ଯସ୍ମିନ୍ ତତ୍ ପୌରୁଷଂ (ପୁରୁଷତ୍ୱେନାମ୍ନାୟତେ, ଯତ୍) ରୂପଂ (ସଚ୍ଚିଦାନନ୍ଦମୂର୍ତ୍ତିଂ) ଜଗୃହେ । [ ୧୪ଶ ଶ୍ଳୋକଃ ]

କଥଂ "ଯଦ୍ୟପି" ଇତି । ପ୍ରକୃତ୍ୟା ସହାଧାରାଧେୟସମ୍ବନ୍ଧେ ସତ୍ୟପି ନ ତସ୍ୟ ପ୍ରକୃତିସ୍ପର୍ଶ ଇତ୍ୟର୍ଥଃ । ୭୧।୭୨ । ବି, ଚ,

୧୬ ଶ୍ଳୋକ ( ଅନ୍ୱୟ—ଆଦି ୨ୟ ପରିଚ୍ଛେଦ ୧୧ଶ ଶ୍ଳୋକ )

---

ସ୍ୱରୂପ ଏବଂ ଶକ୍ତିଦ୍ୱାରା ଯିଏ ସର୍ବାତିଶାୟୀ ଅର୍ଥାତ୍ ପରବ୍ୟୋମନାଥ ଶ୍ରୀଭଗବାନ୍ ତାହାଙ୍କର ପ୍ରଥମ ଅବତାର ପ୍ରକୃତିର ଈକ୍ଷଣକର୍ତ୍ତା କାରଣାର୍ଣ୍ଣବଶାୟୀ ପ୍ରଥମପୁରୁଷ । ଯଦ୍ୟପି ସମସ୍ତହିଁ ତାହାଙ୍କର ଅବତାର, ତଥାପି କାଳ, ସ୍ୱଭାବ ଓ ପ୍ରକୃତି ଏ ତିନିଗୋଟି ଶକ୍ତିରୂପ ଅବତାର, ମହତ୍ତତ୍ତ୍ୱ, ପଞ୍ଚମହାଭୂତ ଓ ଅହଂକାର, ସତ୍ତ୍ୱାଦିଗୁଣ, ଏକାଦଶ ଇନ୍ଦ୍ରିୟ, ବିରାଟ୍‌ଶରୀର, ସ୍ୱରାଟ୍ (ସମଷ୍ଟିଜୀବ) ସ୍ଥାବର ଓ ଜଙ୍ଗମ ଏ ସମସ୍ତ କାର୍ଯ୍ୟରୂପ ଅବତାର । [ ୧୩ଶ ଶ୍ଳୋକାର୍ଥ ]

ସୃଷ୍ଟିର ପ୍ରାରମ୍ଭରେ ଶ୍ରୀଭଗବାନ୍ ଲୋକସୃଷ୍ଟିନିମିତ୍ତ ମହଦାଦିତତ୍ତ୍ୱଦ୍ୱାରା ମିଳିତ ଏବଂ ସୃଷ୍ଟ୍ୟୁପଯୋଗୀ ପୂର୍ଣ୍ଣଶକ୍ତି ବା ଶ୍ରୀ, ଭୂ, ଲୀଳା, କୀର୍ତ୍ତି, ଇଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା ଏହି ମୁଖ୍ୟ ଷୋଡ଼ଶଶକ୍ତି ବା ଷୋଡ଼ଶ କଳାପୂର୍ଣ୍ଣ ପୁରୁଷାଖ୍ୟ ବା ପ୍ରଥମପୁରୁଷନାମା ସଚ୍ଚିଦାନନ୍ଦରୂପ ଗ୍ରହଣ କରିଥିଲେ । [ ୧୪ଶ ଶ୍ଳୋକାର୍ଥ ]

ପୂର୍ବେ କୁହାଯାଇଅଛି ଯେ ମହାବିଷ୍ଣୁଙ୍କର ଲୋମକୂପରେ ଅସଂଖ୍ୟ ବ୍ରହ୍ମାଣ୍ଡଗଣ ପରିଭ୍ରମଣ କରୁଅଛନ୍ତି ଏବଂ ମହାବିଷ୍ଣୁ ମଧ୍ୟ ଅନ୍ତର୍ଯାମିରୂପରେ ବ୍ରହ୍ମାଣ୍ଡମାନଙ୍କରେ ପ୍ରବେଶ କରନ୍ତି । ଏହିହେତୁ କହୁଅଛନ୍ତି, ଯଦ୍ୟପି ସେ ଜଗତର ଆଶ୍ରୟ ବା ଆଧାର ଯେହେତୁ ତାଙ୍କଠାରୁ ଜଗତ୍ ସୃଷ୍ଟ ହେଉଅଛି ଏବଂ ସେ ଅନ୍ତର୍ଯାମିରୂପେ ବା ପରମାତ୍ମାରୂପରେ ଜଗତରେ ଥିବାରୁ ଜଗତ୍ ତାହାଙ୍କର ଆଧାର ବା ଆଶ୍ରୟ । ଏପ୍ରକାରରେ ପ୍ରକୃତିଙ୍କ ସହିତ ତାହାଙ୍କର ଉଭୟବିଧସମ୍ବନ୍ଧ ଥିଲେ ସୁଦ୍ଧା, ତଥାପି ପ୍ରକୃତିକୁ ସ୍ପର୍ଶ କରିବା ଦୂରରେ ଥାଉ ପ୍ରକୃତିର ଗନ୍ଧ ସୁଦ୍ଧା ସେ ପାଆନ୍ତି ନାହିଁ । ୭୧।୭୨ ।

ଶ୍ରୀଭଗବତ୍ ଆଶ୍ରୟା ବୁଦ୍ଧି ( ପରମଭାଗବତମାନଙ୍କର ) ଯେପରି ମାୟାକାର୍ଯ୍ୟରେ ଲିପ୍ତ ଥାଇ ସୁଦ୍ଧା ତାହାର ଗୁଣରେ ଲିପ୍ତ ନ ଥାଏ, ସେହିପରି ଈଶ୍ୱର ପ୍ରକୃତିରେ ଅବସ୍ଥାନ କରି ସୁଦ୍ଧା ତାହାର ଗୁଣରେ ଲିପ୍ତ ହୁଅନ୍ତି ନାହିଁ । ଏହାହିଁ ଈଶ୍ୱରଙ୍କର ଐଶ୍ୱର୍ଯ୍ୟ । [ ୧୫ଶ ଶ୍ଳୋକାର୍ଥ ]

| | |
|---|---|
| ଏଇମତ ଗୀତାତେହୋ ପୁନଃପୁନଃ କୟ | ଏଇ ତ ଗୀତାର ଅର୍ଥ କୈଲ ପରଚାର । ୭୫ । |
| ସର୍ବଦା ଈଶ୍ୱରତତ୍ତ୍ୱ ଅଚିନ୍ତ୍ୟ ଶକ୍ତି । ୭୩ । | ସେଇ ତ ପୁରୁଷ ଯାର ଅଂଶ ଧରେ ନାମ |
| ଆମିତ ଜଗତେ ବସି, ଜଗତ ଆମାତେ | ଚୈତନ୍ୟେର ସଙ୍ଗେ ସେଇ ନିତ୍ୟାନନ୍ଦ ରାମ । ୭୬ |
| ନା ଆମି ଜଗତେ ବସି, ନା ଆମା ଜଗତେ । ୭୪ । | ଏଇ ତ ନବମଶ୍ଳୋକେର ଅର୍ଥ ବିବରଣ |
| ଅଚିନ୍ତ୍ୟ ଐଶ୍ୱର୍ଯ୍ୟ ଏଇ ଜାନିହ ଆମାର | ଦଶମଶ୍ଳୋକେର ଅର୍ଥ ଶୁନ ଦିୟା ମନ । ୭୭ |

"ଏଇ" ଇତି । ପ୍ରକୃତଗ୍ରନ୍ଥୋପଯୋଗିତ୍ୱେନାସ୍ୟ ତତ୍ପୂର୍ବାର୍ଦ୍ଧପ୍ରତିଷ୍ଠ୍ୟଂ ଯଥା ଶ୍ରୀମଦ୍ଭାଗବତେ ଉକ୍ତଂ ତଥା ଶ୍ରୀଗୀତାସ୍ୱପୀତ୍ୟର୍ଥଃ । ନ ତାବଦେତଦପୂର୍ବମୁଚ୍ୟତେ ଇତ୍ୟର୍ଥଃ । ନନୁ ଭବତୁ ନାମ ତତ୍ପୂର୍ବା କିନ୍ତୁ ତତ୍ତ୍ୱେଶ ତତ୍ତ୍ୱକରଂ ସମ୍ୟତେ ଇତି ଚେତ୍ତତ୍ର ନ ତର୍କଗମ୍ୟମିତ୍ୟାହ "ସର୍ବଦା" ଇତି । ଅଚିନ୍ତ୍ୟମାଶଙ୍କ୍ୟ, ତର୍କବିଶଙ୍କିତ୍ୱାଦେବ ବସ୍ତୁ ତର୍କଗମ୍ୟଂ ନ ତୁ ତଦେବସତ୍ତ୍ୱଂ, ଈଶ୍ୱରତତ୍ତ୍ୱସ୍ୟ ଅଚିନ୍ତ୍ୟତ୍ୱାନ୍ନ ତତ୍ତ୍ୱ ତର୍କଗମ୍ୟଂ । ଚକ୍ର । ଚ, ଚ,

ଗୀତାସ୍ୱାଂ ଯଦୁଚ୍ୟତେ ତଦେବାହ "ଆମିତ" ଇତି । ତଥାହି ଗୀତାସୁ । ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା । ମତ୍ସ୍ଥାନି ସର୍ବଭୂତାନି ନ ଚାହଂ ତେଷ୍ୱବସ୍ଥିତଃ । ନ ଚ ମତ୍ସ୍ଥାନି ଭୂତାନି ପଶ୍ୟ ମେ ଯୋଗମୈଶ୍ୱରଂ । ୯ଅ।୪ । ଚ, ଚ,

"ତଂ ଶ୍ରୀନିତ୍ୟାନନ୍ଦରାମଂ" ଇତ୍ୟସ୍ୟାର୍ଥଂ ବ୍ରୁବନ୍ ନବମଶ୍ଳୋକାର୍ଥମୁପସଂହରତି "ସେଇତ" ଇତି । ସେଇତ ପୁରୁଷ "ଯାହାକେତ କଲା କରି ତେହୋଁ ମହାବିଷ୍ଣୁ" । ଇତ୍ୟୁକ୍ତ୍ୟ ମହିମବିଶିଷ୍ଟ ମହାବିଷ୍ଣୁଃ ଇତି । ୭୬।୭୭ । ଚ, ଚ,

ଏଇମତ—ଅର୍ଥାତ୍ ମହାବିଷ୍ଣୁ ଏବଂ ପ୍ରକୃତି ଏ ଉଭୟଙ୍କର ଅନ୍ୟୋନ୍ୟ ଆଧାର ଆଧେୟ ସମ୍ବନ୍ଧ ଥିଲେ ସୁଦ୍ଧା ମହାବିଷ୍ଣୁଙ୍କର ଯେ ପ୍ରକୃତିଙ୍କର ସହିତ ସ୍ପର୍ଶ ଟିକେ ସୁଦ୍ଧା ନାହିଁ, ଏହି କଥା ଶ୍ରୀଭଗବାନ୍ ଶ୍ରୀମଦ୍ଭଗବଦ୍ଗୀତା ୯ମ ଅଧ୍ୟାୟ ୪ର୍ଥ ଶ୍ଳୋକରେ ପୁନଃପୁନଃ କହିଅଛନ୍ତି । ଏଣୁ ସର୍ବଦା (ସବୁକାଳରେ) ଈଶ୍ୱରତତ୍ତ୍ୱ ଅଚିନ୍ତ୍ୟହେତୁ ତର୍କର ବିଷୟୀଭୂତ ନୁହେ । ଏହାର ଭାବ ଏହି ଯେ ଏ କଥା ଗ୍ରନ୍ଥକାରଙ୍କର କପୋଳକଳ୍ପିତ ମତ ନୁହେ, ଶ୍ରୀମଦ୍ଭାଗବତ, ଶ୍ରୀମଦ୍ଭଗବଦ୍ଗୀତାର ମତକୁ ସେ ଏଠାରେ ପ୍ରକାଶ କରୁଅଛନ୍ତି । ୭୩ ।

ଗ୍ରନ୍ଥକାର ଶ୍ରୀମଦ୍ଭଗବଦ୍ଗୀତାର ଶ୍ଳୋକର ଭାବ ବ୍ୟକ୍ତ କରୁଅଛନ୍ତି, ଯଥା,—ମୁଁ ଜଗତରେ ଅଛି ଏବଂ ଜଗତ ମୋଠାରେ ଅଛି । ତଥାପି ମୋତେ ଜଗତ୍ସ୍ପର୍ଶ କରେ ନା କିମ୍ବା ମୁଁ ଜଗତକୁ ସ୍ପର୍ଶ କରେ ନାହିଁ । ଏହାହିଁ ମୋର ଅଚିନ୍ତ୍ୟ ଐଶ୍ୱର୍ଯ୍ୟ । ୭୪।୭୫*

ଉପରୋକ୍ତ ପୁରୁଷାବତାର (ମହାବିଷ୍ଣୁ) ଶ୍ରୀଚୈତନ୍ୟଙ୍କ ସଙ୍ଗୀ ଶ୍ରୀନିତ୍ୟାନନ୍ଦ ବଳରାମଙ୍କର ଅଂଶ ଏହି ନାମ ଧାରଣ କରନ୍ତି । ଏହାର ଭାବ ଏହି ଯେ ଯେଉଁ ମହାବିଷ୍ଣୁ ପ୍ରକୃତିର ନିୟନ୍ତା ଏବଂ ଯାହାଙ୍କର ଲୋମକୂପରେ ଅସଂଖ୍ୟ ବ୍ରହ୍ମାଣ୍ଡ ଗବାକ୍ଷରେଣୁ ପରି ଗତାଗତ କରୁଅଛନ୍ତି ଏବଂ ଯାହାଙ୍କର ଐଶ୍ୱର୍ଯ୍ୟ ଅଚିନ୍ତ୍ୟ ସେହି ମହାବିଷ୍ଣୁ ଶ୍ରୀମନ୍ ନିତ୍ୟାନନ୍ଦଙ୍କର ଅଂଶ ଅଟନ୍ତି । ଅତଏବ ଶ୍ରୀନିତ୍ୟାନନ୍ଦ-ତତ୍ତ୍ୱ ଯେ କି ତାହା ଏଥିରୁ ଜଣାଯାଉଅଛି । ୭୬ ।

ତଥାହି ଶ୍ରୀସ୍ୱରୂପଗୋସ୍ୱାମି-କଡ଼ଚାୟାମ୍—

ଯସ୍ୟାଂଶାଂଶଃ ଶ୍ରୀଲଗର୍ଭୋଦଶାୟୀ,
ଯନ୍ନାଭ୍ୟବ୍ଜଂ ଲୋକସଂଘାତନାଳମ୍;
ଲୋକସ୍ରଷ୍ଟୁଃ ସୂତିକାଧାମ ଧାତୁ-
ସ୍ତଂ ଶ୍ରୀନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୧୬ ॥*

ସେଇ ପୁରୁଷ ଅନନ୍ତ ବ୍ରହ୍ମାଣ୍ଡ ସୃଜିୟା
ସବ ଅଣ୍ଡେ ପ୍ରବେଶିଲା ବହୁମୂର୍ତ୍ତି ହଞା । ୭୮ ।
ଭିତରେ ପ୍ରବେଶି ଦେଖେ—ସବ ଅନ୍ଧକାର
ରହିତେ ନାହିଁକ ସ୍ଥାନ, କରିଲ ବିଚାର । ୭୯ ।

ନିଜ ଅଙ୍ଗେ ସ୍ୱେଦଜଲ କରିଲ ସୃଜନ
ସେଇ ଜଲେ କୈଲ ଅର୍ଦ୍ଧ ବ୍ରହ୍ମାଣ୍ଡ ଭରଣ । ୮୦ ।
ବ୍ରହ୍ମାଣ୍ଡ ପ୍ରମାଣ-ପଞ୍ଚାଶତକୋଟି ଯୋଜନ ।
ଆୟାମ-ବିସ୍ତାର ଦୁଇ ହୟ ଏକ ସମ । ୮୧ ।
ଜଲେ ଭରି ଅର୍ଦ୍ଧ ତାହାଁ କୈଲ ନିଜବାସ ।
ଆର ଅର୍ଦ୍ଧେ କୈଲ ଚୌଦ୍ଦ ଭୁବନ ପ୍ରକାଶ ।୮୨।
ତାହାଁଇ ପ୍ରକଟ କୈଲ ବୈକୁଣ୍ଠ ନିଜଧାମ ।
ଶେଷ ଶୟନ-ଜଲେ କରିଲ ବିଶ୍ରାମ । ୮୩ ।
ଅନନ୍ତ ଶଯ୍ୟାତେ ତାହା କରିଲ ଶୟନ ।
ସହସ୍ର ମସ୍ତକ ତାର ସହସ୍ର ବଦନ । ୮୪ ।

୧୬ଶ ଶ୍ଳୋକ ( ଅନ୍ୱୟ-ଆଦି ୧ମ ପରିଚ୍ଛେଦ ୧୦ମ ଶ୍ଳୋକରେ ଦେଖ )
ଦଶମ ଶ୍ଳୋକୋକ୍ତ "ଶ୍ରୀଲଗର୍ଭୋଦଶାୟୀ" ଇତ୍ୟସ୍ୟାର୍ଥମାହ "ସେଇତ" ଇତ୍ୟାଦ୍ୟଷ୍ଟଭିଃ
ସୈଇତ ପୁରୁଷ ସ ଏବ ମହାବିଷ୍ଣୁଃ । ୭୮-୮୪ । ଚ, ଚ, ।

ଚତୁର୍ଦ୍ଦଶ ଭୁବନାତ୍ମକ ଲୋକସମୂହ ଯାହାଙ୍କର ନାଭିପଦ୍ମର ମୃଣାଳ ଓ ଯାହା ଲୋକସ୍ରଷ୍ଟା ବ୍ରହ୍ମାଙ୍କର ଉତ୍ପତ୍ତିସ୍ଥାନ ସେହି ଗର୍ଭୋଦକଶାୟୀ ( ହିରଣ୍ୟଗର୍ଭ ନାମ୍ନୁ ପୁରୁଷ ) ଯାହାଙ୍କର ଅଂଶର ଅଂଶ ସେହି ଶ୍ରୀନିତ୍ୟାନନ୍ଦ ରାମଙ୍କୁ ପ୍ରଣାମ କରେଁ । [ ୧୬ଶ ଶୋକାର୍ଥ ]

ଗ୍ରନ୍ଥକାର ଉପରୋକ୍ତ ଶ୍ଳୋକର ଅର୍ଥ କରୁଅଛନ୍ତି । ଯଥା —

ସେଇ ପୁରୁଷ (ପୂର୍ବକଥିତ ମହାବିଷ୍ଣୁ) ଅନନ୍ତ ବ୍ରହ୍ମାଣ୍ଡ ସୃଷ୍ଟି କରି ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଏକ ଏକ ମୂର୍ତ୍ତି ହୋଇ ପ୍ରବେଶ କଲେ । ବ୍ରହ୍ମାଣ୍ଡ ଭିତରେ ପ୍ରବେଶ କରି ଅନ୍ଧକାର ଦେଖି ରହିବାର ସ୍ଥାନ ନିରୂପଣ କରି ନ ପାରି ନିଜ ଦେହର ଘର୍ମଦ୍ୱାରା ଜଳ ସୃଷ୍ଟି କରି ତଦ୍ଦ୍ୱାରା ବ୍ରହ୍ମାଣ୍ଡର ଅର୍ଦ୍ଧ ପୂର୍ଣ୍ଣ କଲେ । ବ୍ରହ୍ମାଣ୍ଡର ମାପ ପଞ୍ଚାଶତକୋଟି ଯୋଜନ । (୧ଯୋଜନ=୪କ୍ରୋଶ) । ଆୟାମ (ଦୈର୍ଘ୍ୟ) ଓ ବିସ୍ତାର (ପ୍ରସ୍ଥ) ଉଭୟ ସମାନ । ସେହି ନିଜସୃଷ୍ଟଜଳଦ୍ୱାରା ଅର୍ଦ୍ଧବ୍ରହ୍ମାଣ୍ଡ ପୂର୍ଣ୍ଣ କଲେ; ତାହାର ଉପରେ ନିଜର ବାସସ୍ଥାନ କଲେ ଏବଂ ଅବଶିଷ୍ଟ ଅର୍ଦ୍ଧେକ ବ୍ରହ୍ମାଣ୍ଡରେ ୧୪ ଭୁବନ ସୃଷ୍ଟି କଲେ । ସେହି ଜଳ ଉପରେ ମାୟାତୀତ ସ୍ୱଧାମ ବୈକୁଣ୍ଠ ବ୍ୟକ୍ତ କଲେ । ଶେଷ ଅନନ୍ତ ସେହି ଜଳରେ ଶଯ୍ୟା ହେଲେ ଏବଂ ସେହି ଅନନ୍ତ ଶଯ୍ୟାରେ ସେ (ଗର୍ଭୋଦକଶାୟୀ ବିଷ୍ଣୁ) ଶୋଇଲେ । ତାହାଙ୍କର ସହସ୍ର ସହସ୍ର ମସ୍ତକ, ବଦନ, ନୟନ, ହସ୍ତ, ଚରଣ ଅଛି । ସେ ସବୁ ଅବତାରର ବୀଜ ଏବଂ ଜଗତର ଅର୍ଥାତ୍ ବ୍ରହ୍ମାଣ୍ଡଗତ ସୃଷ୍ଟିର ମୂଳ ଅଟନ୍ତି । ଏହାର ଭାବ ଏହି ଯେ ପୂର୍ବେ ଶ୍ରୀ ମହାବିଷ୍ଣୁଙ୍କୁ ମତ୍ସ୍ୟକୂର୍ମାଦି ଯେ ସମସ୍ତ ଲୀଳା ଅବତାରର ବୀଜ ବୋଲି କୁହା ହୋଇଅଛି, ତଦ୍ବ୍ୟତୀତ ଅପରାପର ଅବତାର, ଅର୍ଥାତ୍ ଗୁଣାବତାର, ଯୁଗାବତାର ଆଦି ମାନଙ୍କର ଏ ମୂଳ ଅଟନ୍ତି ଏବଂ ବ୍ରହ୍ମାଙ୍କର ଜନକ ହେତୁ ବ୍ରହ୍ମାଙ୍କ ଦ୍ୱାରା ଯେ ସମସ୍ତ ସୃଷ୍ଟି ହୁଏ ତାହାର କାରଣ ଅଟନ୍ତି । ସେ ତାହାଙ୍କର ନାଭିକମଳରୁ ଗୋଟିଏ ପଦ୍ମ ଉତ୍ପନ୍ନ କଲେ ଏବଂ ସେହି ପଦ୍ମ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ଜନ୍ମସ୍ଥାନ, ଅର୍ଥାତ୍ ବ୍ରହ୍ମାଙ୍କୁ ସେହି ପଦ୍ମରୁ ଜନ୍ମ କଲେ । ଅର୍ଥାତ୍ ନିଜେ ଅଂଶଦ୍ୱାରା ବ୍ରହ୍ମା ହୋଇ ଜୀବ ସୃଷ୍ଟି କଲେ ଏବଂ ସେହି ପଦ୍ମନାଳରେ ଚଉଦଭୁବନ ସୃଷ୍ଟି କଲେ । ୭୮-୮୪ ।

ସହସ୍ର ନୟନ ହସ୍ତ, ସହସ୍ର ଚରଣ ।
ସର୍ବ-ଅବତାର-ବୀଜ ଜଗତ-କାରଣ ॥୮୫॥
ତାଁର ନାଭିପଦ୍ମ ହୈତେ ଉଠିଲ ଏକ ପଦ୍ମ ।
ସେହ ପଦ୍ମ ହୈଲ ବ୍ରହ୍ମାର ଜନ୍ମସଦ୍ମ ॥୮୬॥
ସେହ ପଦ୍ମନାଲେ ହୈଲ ଚୌଦଭୁବନ ।
ତେଁହୋ ବ୍ରହ୍ମା ହୈଯ୍ୟା ସୃଷ୍ଟି କରିଲ ସୃଜନ ॥୮୭॥
ବିଷ୍ଣୁ ରୂପ ହୈଯ୍ୟା କରେ ଜଗତ-ପାଲନେ ।
ଗୁଣାତୀତ ବିଷ୍ଣୁ ସ୍ପର୍ଶ ନାହିଁ ମାୟାଗୁଣେ ॥୮୮॥
ରୁଦ୍ର-ରୂପ ଧରି କରେ ଜଗତ-ସଂହାର ।
ସୃଷ୍ଟି ସ୍ଥିତି ପ୍ରଳୟ ଇଚ୍ଛାୟ ଯାହାର ॥୮୯॥
ହିରଣ୍ୟଗର୍ଭ-ଅନ୍ତର୍ଯାମୀ ଜଗତକାରଣ ।
ଯାର ଅଂଶ କରି କରେ ବିରାଟ-କଲ୍ପନ ॥୯୦॥
ହେନ ନାରାୟଣ ଯାଁର ଅଂଶେର ଅଂଶ ।
ସେଇ ପ୍ରଭୁ ନିତ୍ୟାନନ୍ଦ ସର୍ବ-ଅବତଂସ ॥୯୧॥
ଦଶମଶ୍ଳୋକେର ଏଇ କୈଲ ବିବରଣ ।
ଏକାଦଶଶ୍ଳୋକେର ଅଥ ଶୁନ ଦିୟା ମନ ॥୯୨॥

ଅଥ ତସ୍ୟ କାର୍ଯ୍ୟମାହ "ସର୍ବ" ଇତି । ବ୍ରହ୍ମାଦିଗୁଣାବତାରାଣାଂ ବୀଜଂ ଅତଃ ଜଗତଃ କାରଣଂ । ଏତତ୍ତ୍ରୟ କାର୍ଯ୍ୟମପ୍ୟୁକ୍ତଂ ॥୮୫ ବି; ଚ, ॥

"ଯନ୍ନାଭ୍ୟମ୍ବୁ" ଇତ୍ୟସ୍ୟାର୍ଥମାହ "ତାଁର" ଇତି । "ଲୋକସ୍ରଷ୍ଟୁଃ ସୂତିକାଧାମ ଧାତୁଃ" ଇତ୍ୟସ୍ୟାର୍ଥମାହ "ସେଇ" ଇତି ॥୮୬॥ ବି, ଚ, ।

"ଲୋକସଂଘାତନାଳଂ" ଇତ୍ୟସ୍ୟାର୍ଥମାହ "ସେଇ" ଇତି । ସର୍ବାବତାର ବୀଜ ଇତ୍ୟୁକ୍ତଂ ବିବୃଣୋତି "ତେହୋଁ" ଇତି ଦ୍ୱୟେନ । ବ୍ରହ୍ମବିଷ୍ଣୁରୁଦ୍ରାବତାରାଣାଂ ବୀଜମିତ୍ୟର୍ଥଃ । ତତ୍ର ଯଦା ଯୋଗ୍ୟ ଜୀବାଭାବଃ ତଦୈବ ସଃ ସ୍ୱୟଂ ବ୍ରହ୍ମା ଭବତି ଇତ୍ୟର୍ଥଃ । ଏତେନ ଜଗତ୍କାରଣମିତ୍ୟୁକ୍ତଂ ବିବୃତଂ ॥୮୭॥ ବିଃ ଚଃ

ଗୁଣାବତାରତ୍ୱେନ କଥିତସ୍ୟାପି ବିଷ୍ଣୋର୍ବ୍ରହ୍ମାଦିବତ୍ ନ ସଗୁଣତ୍ୱମିତ୍ୟାହ "ଗୁଣାତୀତ" ଇତି । ଗୁଣାତୀତତ୍ୱେନ ବିଷ୍ଣୋର୍ନ ଗୁଣୈର୍ଲୀଃ । ଅପୃଷ୍ଟାଵଃ ସତ୍ତ୍ୱଗୁଣପ୍ରେରକତ୍ୱେନୈବ ତସ୍ୟ ସଗୁଣତ୍ୱମୁଚ୍ୟତେ; କିନ୍ତୁ ବ୍ରହ୍ମାଦିବତ୍ ସ୍ୱରୂପତସ୍ତସ୍ୟ ସଗୁଣତ୍ୱଂ ଗୁଣାତୀତତ୍ୱାତ୍ ॥୮୮॥୮୯॥ ବି, ଚ, ।

"ଯସ୍ୟାଂଶାଂଶାଂଶଃ" ତଥା "ତଂ ଶ୍ରୀ ନିତ୍ୟାନନ୍ଦରାମଂ" ଇତ୍ୟସ୍ୟାର୍ଥଂକୁର୍ବନ୍ ଦଶମ ଶ୍ଳୋକାର୍ଥମୁପସଂହରତି "ସୃଷ୍ଟି" ଇତି ସାର୍ଦ୍ଧଦ୍ୱୟେନ । ଯାର ଅଂଶ ଇତି ଯସ୍ୟ ଚରଣାଦ୍ୟଂଶୈଃ ପାତାଳାଦିଲୋକାଃ କଲ୍ପ୍ୟନ୍ତେ । ନାରାୟଣ ଗର୍ଭୋଦକଶାୟୀ ଇତି ॥୯୦॥୯୧॥୯୨॥ ବି, ଚ,

ସେହି ଗର୍ଭୋଦକଶାୟୀ ଦ୍ୱିତୀୟ ପୁରୁଷ ଗୁଣାବତାର ବିଷ୍ଣୁରୂପ ହୋଇ ଜଗତର ପାଳନ ବା ସ୍ଥିତିକାର୍ଯ୍ୟ କରନ୍ତି । ବିଷ୍ଣୁ ସତ୍ତ୍ୱଗୁଣର ପ୍ରେରକହେତୁ ତାହାଙ୍କର ପ୍ରାକୃତଗୁଣ ସହିତରେ ସ୍ପର୍ଶ ନାହିଁ । ଅର୍ଥାତ୍ ସେ ବ୍ରହ୍ମା ଓ ରୁଦ୍ରଙ୍କ ପରି ପ୍ରାକୃତଗୁଣଯୁକ୍ତ ନୁହନ୍ତି । ତେଣୁ ସେ ଗୁଣାତୀତ । ସେହି ଗର୍ଭୋଦକଶାୟୀ ରୁଦ୍ରରୂପ ଧରି ଜଗତର ସଂହାର କାର୍ଯ୍ୟ କରନ୍ତି ଏବଂ ତାହାଙ୍କର ଇଚ୍ଛାନୁସାରେ ସୃଷ୍ଟିକାର୍ଯ୍ୟ, ପାଳନକାର୍ଯ୍ୟ ଏବଂ ସଂହାରକାର୍ଯ୍ୟ ହୁଏ । ଏତଦ୍ୱାରା କଥିତ ହେଲା ଯେ ସେ ଅଂଶରୂପରେ ବ୍ରହ୍ମା, ବିଷ୍ଣୁ ଓ ରୁଦ୍ରରୂପୀ ଗୁଣାବତାର ହୁଅନ୍ତି । ଏଣୁ ସେ ଗୁଣାବତାରର ବୀଜ ବା ମୂଳ ଅଟନ୍ତି ଏବଂ ଜଗତର ସୃଷ୍ଟି, ସ୍ଥିତି ଓ ସଂହାରକାରୀମାନଙ୍କର ପ୍ରେରକହେତୁ ଜଗତର କାରଣ ଅଟନ୍ତି ॥୮୮-୮୯॥

ଯେ ବ୍ରହ୍ମାଙ୍କର ଅନ୍ତର୍ଯାମୀ ଏବଂ ଯାହାଙ୍କର ଅବୟବରେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ସମନ୍ୱିତ ବିରାଟ ପୁରୁଷ କଳ୍ପନା କରାଯାଏ ଏପରି ଯେ ନାରାୟଣ (ଗର୍ଭୋଦକଶାୟୀ) ଯେଉଁ ବଳରାମଙ୍କର ଅଂଶର ଅଂଶ ସେହି ବଳରାମ ଶ୍ରୀନିତ୍ୟାନନ୍ଦ, ଏବଂ ସେ ସମସ୍ତଙ୍କର ମୂଳ ॥୯୦-୯୧-୯୨॥

ତଥାହି ଶ୍ରୀସ୍ୱରୂପଗୋସ୍ୱାମି-କଡ଼ଚାୟାମ୍—

ଯସ୍ୟାଂଶାଂଶାଂଶଃ ପରାତ୍ମାଖିଳାନାଂ,
ପୋଷ୍ଟା ବିଷ୍ଣୁର୍ଭାତି ଦୁଗ୍ଧାବ୍ଧିଶାୟୀ।
କ୍ଷୌଣୀଭର୍ତ୍ତା ଯତ୍କଳା ସୋଽପ୍ୟନନ୍ତ-
ସ୍ତଂ ଶ୍ରୀ ନିତ୍ୟାନନ୍ଦରାମଂ ପ୍ରପଦ୍ୟେ ॥ ୧୭ ॥

ନାରାୟଣେର ନାଭିନାଳମଧ୍ୟେ ତ ଧରଣୀ।
ଧରଣୀର ମଧ୍ୟେ ସପ୍ତ ସମୁଦ୍ର ଯେ ଗଣି। ୯୩।
ତାହାଁ କ୍ଷୀରୋଦଧିମଧ୍ୟେ ଶ୍ୱେତଦ୍ୱୀପ ନାମ।
ପାଳୟିତା ବିଷ୍ଣୁ; ତାଁର ସେଇ ନିଜ ଧାମ। ୯୪।
ସକଲ ଜୀବେର ତେଁହୋ ହୟେନ୍ ଅନ୍ତର୍ଯାମୀ।
ଜଗତ-ପାଳକ ତେଁହୋ ଜଗତେର ସ୍ୱାମୀ। ୯୫।
ଯୁଗ-ମନ୍ୱନ୍ତରେ ଧରି ନାନା ଅବତାର।
ଧର୍ମସଂସ୍ଥାପନ କରେ ଅଧର୍ମ-ସଂହାର। ୯୬।
ଦେବଗଣ ନାହିଁ ପାୟ ଯାହାର ଦର୍ଶନ।
କ୍ଷୀରୋଦକତୀରେ ଯାଇ କରେନ ସ୍ତବନ। ୯୭।
ତବେ ଅବତରି କରେ ଜଗତ-ପାଳନ।
ଅନନ୍ତ ବୈଭବ ତାଁର ନାହିଁକ ଗଣନ। ୯୮।
ସେଇ ବିଷ୍ଣୁ ହୟ ଯାଁର ଅଂଶାଂଶେର ଅଂଶ।
ସେଇ ପ୍ରଭୁ ନିତ୍ୟାନନ୍ଦ ସର୍ବ-ଅବତଂସ। ୯୯।

ସପ୍ତଦଶ ଶ୍ଲୋକ ( ଅଦ୍ୟ ପ୍ରଥମ ପରିଚ୍ଛେଦ ଏକାଦଶ ଶ୍ଲୋକରେ ଅନ୍ୱୟ ଦେଖ )।

ଏକାଦଶ ଶ୍ଲୋକୋକ୍ତ "ଦୁଗ୍ଧାବ୍ଧିଶାୟୀ" ଇତ୍ୟସ୍ୟାର୍ଥମାହ "ନାରାୟଣ" ଇତି। ୯୩,୯୪, ଶ୍ଲୋକଃ "ପରାତ୍ମାଖିଳାନାଂ" ଇତ୍ୟସ୍ୟାର୍ଥମାହ "ସକଳ" ଇତି। "ପୋଷ୍ଟା" ଇତ୍ୟସ୍ୟାର୍ଥ-ମାହ "ଜଗତ" ଇତି। "ବିଷ୍ଣୁ" ଇତ୍ୟସ୍ୟାର୍ଥମାହ "ଜଗତେର" ଇତି। ୯୫। ଚ, ବ,

ଜଗତ ପାଳକ ଇତ୍ୟୁକ୍ତଂ ପୋଷ୍ଟା ଇତ୍ୟସ୍ୟାର୍ଥଂ ବିବୃଣ୍ୱନ୍ ତସ୍ୟ କାର୍ଯ୍ୟମାହ "ଯୁଗ" ଇତି ଦ୍ୱିଭିଃ। ଯୁଗମନ୍ୱନ୍ତରେ ପ୍ରତିଯୁଗଂ ପ୍ରତିମନ୍ୱନ୍ତରଂ ଚ ଭବେ ଅବତୀର୍ଯ୍ୟ ତଦା ଯୁଗମନ୍ୱନ୍ତରାବତାର-ରୂପେଣ ଅବତୀର୍ଯ୍ୟ। ତାଁରତେ ଯୁଗମନ୍ୱନ୍ତରାବତାରଃ। ବିଷ୍ଣୋର୍ଦେବତାଭିଃ ଜଗତ୍ପାଳନଂ ତତ୍କାର୍ଯ୍ୟ-ମିତ୍ୟର୍ଥଃ। ୯୬। ୯୭। ୯୮। ୯୯। ଚ, ବ,

ଅଖିଳ ବ୍ୟଷ୍ଟି ଜୀବମାନଙ୍କର ପରମାତ୍ମା ଓ ପାଳନକର୍ତ୍ତା କ୍ଷୀରୋଦଶାୟୀ ବିଷ୍ଣୁ ଯାହାଙ୍କର ଅଂଶର ଅଂଶର ଅଂଶରୂପରେ ବିରାଜିତ, ଏବଂ ଧରଣୀଧର ଅନନ୍ତଦେବ ଯାହାଙ୍କର କଳା, ସେହି ଶ୍ରୀନିତ୍ୟାନନ୍ଦରାମଙ୍କୁ ପ୍ରଣାମ କରେଁ। ୧୭ଶ ଶ୍ଲୋକାର୍ଥଃ।

ସେହି ନାରାୟଣଙ୍କର (ଗର୍ଭୋଦକଶାୟିଙ୍କର) ପୂର୍ବ କଥିତ ମତେ ନାଭିପଦ୍ମର ନାଳମଧ୍ୟରେ ଚତୁର୍ଦ୍ଦଶଭୁବନ ସମନ୍ୱିତ ଧରଣୀ ଅଛି। ସେହି ଧରଣୀ ମଧ୍ୟରେ ଲବଣ, ଇକ୍ଷୁରସ, ସୁରା, ଘୃତ, ଦଧିଖଣ୍ଡ, କ୍ଷୀର ଓ ସ୍ୱାଦୂଦକ ଏହି ସପ୍ତସମୁଦ୍ର ଅଛି। ତନ୍ମଧ୍ୟରୁ କ୍ଷୀରସମୁଦ୍ର ମଧ୍ୟରେ ଜଗତ୍ପାଳନକର୍ତ୍ତା ବିଷ୍ଣୁଙ୍କର ଶ୍ୱେତଦ୍ୱୀପନାମକ ଧାମ (ବାସସ୍ଥାନ) ଅଛି। ସେହି ବିଷ୍ଣୁ ସବୁଜୀବମାନଙ୍କର ଅନ୍ତର୍ଯ୍ୟାମୀ, ଜଗତର ପାଳନହେତୁ ସେ ଜଗତର ସ୍ୱାମୀ। ସେହି ବିଷ୍ଣୁ ପ୍ରତିଯୁଗରେ ଏବଂ ପ୍ରତିମନ୍ୱନ୍ତରରେ ଅବତୀର୍ଣ୍ଣ ହୋଇ ଜଗତରେ ଧର୍ମର ସ୍ଥାପନ ଏବଂ ଅଧର୍ମର ବିନାଶ କରନ୍ତି। ଦେବତାମାନେ ତାହାଙ୍କର ସ୍ୱରୂପ ଦର୍ଶନ କରିପାରନ୍ତି ନାହିଁ। ତେଣୁ ସେମାନେ ତାହାଙ୍କୁ ଅବତୀର୍ଣ୍ଣ କରାଇବା ନିମନ୍ତେ କ୍ଷୀରୋଦସମୁଦ୍ରକୂଳରେ ଯାଇ ତାହାଙ୍କର ସ୍ତବ କରନ୍ତି। ତତ୍ପରେ ସେ ଯୁଗ ବା ମନ୍ୱନ୍ତରାବତାରରୂପରେ ଅବତୀର୍ଣ୍ଣ ହୋଇ ଜଗତର ପାଳନକାର୍ଯ୍ୟ କରନ୍ତି। ତାହାଙ୍କର ବୈଭବର ସୀମା ନାହିଁ। ଏଣୁ ଗଣନା ହୋଇପାରେ ନା। ଏପରି ଯେଉଁ ବିଷ୍ଣୁ, ଯେଉଁ ବଳରାମଙ୍କର ଅଂଶାଂଶର ଅଂଶ ସେହି ବଳରାମହିଁ ସର୍ବ ଅବତଂସ ଶ୍ରୀନିତ୍ୟାନନ୍ଦ। ୯୩—୯୯।

ସେଇତ ଅନନ୍ତ ଯାଁର କହି 'ଏକ କଲା' ।
ହେନ ପ୍ରଭୁ ନିତ୍ୟାନନ୍ଦ, କେ ଜାନେ ତାଁର
ଖେଲା । ୧୦୮ ।

ଏ ସବ ପ୍ରମାଣେ ଜାନି ନିତ୍ୟାନନ୍ଦ-ସୀମା ।
ତାଁହାକେ ଅନନ୍ତ କହି କି ତାଁର ମହିମା । ୧୦୯।
ଅଥବା ଭକ୍ତେର ବାକ୍ୟ ମାନି ସତ୍ୟ କରି ।
ସେହୋ ତ ସମ୍ଭବେ ତାଁତେ, ଯାତେ ଅବତାରୀ ॥
ଅବତାର-ଅବତାରୀ ଅଭେଦ ଯେ ଜାନେ ।
ପୂର୍ବ୍ବେ ଯୈଛେ କୃଷ୍ଣକେ କେହୋ କାହୋ କରି
ମାନେ । ୧୧୧ ।

କେହୋ କହେ; କୃଷ୍ଣ ସାକ୍ଷାତ୍ ନର-ନାରାୟଣ
କେହୋ କହେ; କୃଷ୍ଣ ହୟ ସାକ୍ଷାତ୍
ବାମନ । ୧୧୨ ।

କେହୋ କହେ; କୃଷ୍ଣ କ୍ଷୀରୋଦଶାୟୀ-ଅବତାର
ଅସମ୍ଭବ ନହେ, ସତ୍ୟବଚନ ସଭାର । ୧୧୩ ।
କୃଷ୍ଣ ଯବେ ଅବତରେ ସର୍ବ୍ବାଂଶ-ଆଶ୍ରୟ ।
ସର୍ବ୍ବ-ଅଂଶ ଆସି ତବେ କୃଷ୍ଣେତେ ମିଲୟ ।୧୧୪ ।
ଯେଇ ଯେଇ-ରୂପେ ଜାନେ, ସେଇ ତାହା କହେ ।
ସକଲ ସମ୍ଭବେ କୃଷ୍ଣେ, କିଛୁ ମିଥ୍ୟା ନହେ ।୧୧୫।

ଶ୍ଳୋକାର୍ଥ ମୁପସଂହରନ୍ "ଯସ୍ୟାଂଶକଳା ସୋଽପ୍ୟନନ୍ତସ୍ତଂ ଶ୍ରୀନିତ୍ୟାନନ୍ଦରାମଂ"
ଇତ୍ୟସ୍ୟାର୍ଥମାହ "ସେଇତ" ଇତି । ୧୦୮ । ଚ, ତ, ।
ତତ୍ର ପରମତଂ ଖଣ୍ଡୟତି "ଏ ସବ" ଇତି । ୧୦୯-୧୧୫ । ଚ , ତ,

ଏପରି ଯେ ଅନନ୍ତଦେବ ଯେଉଁ ଶ୍ରୀବଳରାମଙ୍କର ଗୋଟିଏ କଳା ଅଟନ୍ତି, ସେହି ବଳରାମହିଁ ଶ୍ରୀନିତ୍ୟାନନ୍ଦ, ଅତଏବ ତାହାଙ୍କ ଲୀଳା କିଏ ଜାଣିପାରେ । ୧୦୮ ।

ଉପରୋକ୍ତ ପାଞ୍ଚଶ୍ଲୋକ ଏବଂ ତାହାର ଅର୍ଥ ବର୍ଣ୍ଣନାଦ୍ୱାରା ଅସୀମଗୁଣଶାଳୀ ଶ୍ରୀମନ୍ ନିତ୍ୟାନନ୍ଦଙ୍କ ତତ୍ତ୍ୱର କେତେକ ପ୍ରକାଶ ହେଲା; ଏବମ୍ଭୂତ ଶ୍ରୀନିତ୍ୟାନନ୍ଦଙ୍କୁ ଲୋକେ ଯେ ଅନନ୍ତ ଦେବ କହନ୍ତି ଏତଦ୍ୱାରା ତାଙ୍କର ମହିମାର ହାନି ହୁଏ । କିନ୍ତୁ ଏହା ଭକ୍ତଙ୍କର ବାକ୍ୟ ହେତୁ ମିଥ୍ୟା ନୁହେ । ଯେହେତୁ ସେ ଅବତାରୀ ହେତୁ ତାଙ୍କଠାରେ ସବୁ ଅବତାର ମିଳି ରହିଅଛନ୍ତି । ଭକ୍ତଙ୍କର ଅବତାର ଅବତାରୀରେ ଅଭେଦ ଜ୍ଞାନ । ଯେପରି କି ପୂର୍ବ୍ବେ ( ଶ୍ରୀମଦ୍ଭାଗବତାଦିରେ ) ଶ୍ରୀକୃଷ୍ଣଙ୍କୁ ନାନା ଋଷି ନାନାରୂପରେ ବର୍ଣ୍ଣନ କରିଅଛନ୍ତି । ୧୦୯।୧୧୦।୧୧୧ ।

କେହି ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ନରନାରାୟଣ ଋଷି, ( ନରସଖା ନାରାୟଣ ) କେହି ବା ସାକ୍ଷାତ୍ ବାମନ, କେହି ବା କ୍ଷୀରାବ୍ଧିଶାୟୀ ବିଷ୍ଣୁ ବୋଲି ବର୍ଣ୍ଣନା କରିଅଛନ୍ତି । ଏ ସମସ୍ତ ବଚନ ମଧ୍ୟ ସତ୍ୟ ଅଟେ । ତାହାର କାରଣ ଏହି ଯେ ଶ୍ରୀକୃଷ୍ଣ ମୂଳ ଅବତାରୀ ଏବଂ ସର୍ବ୍ବ ଅବତାରମାନଙ୍କର ଆଶ୍ରୟ ହେତୁ, ସେ ସ୍ୱୟଂ ଅବତୀର୍ଣ୍ଣ ହେଲେ ତାଙ୍କର ସହିତ ଅଂଶକଳାରୂପୀ ସମସ୍ତ ଅବତାରମାନେ ଆସି ମିଳିତ ହୁଅନ୍ତି, ଅତଏବ ଯେ ତାହାଙ୍କୁ ଯେଉଁ ରୂପରେ ଜାଣେ ସେହିରୂପ ବୋଲି ତାଙ୍କୁ କହେ । ଅର୍ଥାତ୍ ଯାହାଙ୍କର ଯେଉଁ ରୂପ ଭଜନୀୟ ବା ଆଶ୍ରୟ ସେ ସେହିରୂପରେ ଶ୍ରୀକୃଷ୍ଣଙ୍କୁ ଦେଖନ୍ତି । ଅଥଚ ଶ୍ରୀକୃଷ୍ଣ ମୂଳ ହେତୁ ଏବଂ ସବୁ ଅବତାରତତ୍ତ୍ୱ ତାଙ୍କଠାରେ ନିହିତ ହେବାରୁ ଦେଖିବାରେ କିଛି ବ୍ୟାଘାତ ହୁଏ ନାହିଁ । ଅତଏବ ସେ ଭକ୍ତମାନଙ୍କର ବର୍ଣ୍ଣନା ମିଥ୍ୟା ନୁହେ । ୧୧୨।୧୧୩।୧୧୪।୧୧୫ ।

ଅତଏବ ଶ୍ରୀକୃଷ୍ଣଚୈତନ୍ୟ ଗୋସାଞି ।
ସର୍ବ-ଅବତାର-ଲୀଳା କରି ସଭାରେ
ଦେଖାଇ । ୧୧୬ ।
ଏଇ ରୂପେ ନିତ୍ୟାନନ୍ଦ ଅନନ୍ତ-ପ୍ରକାଶ ।
ସେଇ ଭାବେ କହେ—'ମୁଞି ଚୈତନ୍ୟେର
ଦାସ' । ୧୧୭ ।
କଭୁ ଗୁରୁ କଭୁ ସଖା କଭୁ ଭୃତ୍ୟ-ଲୀଲା ।
ପୂର୍ବେ ଯେନ ତିନ ଭାବେ ବ୍ରଜେ କୈଲ ଖେଲା ॥
ବୃଷ ହୈଞା କୃଷ୍ଣସନେ ମାଥାମାଥି ରଣ ।
କଭୁ କୃଷ୍ଣ କରେ ତାଁର ପାଦସମ୍ବାହନ । ୧୧୯ ।
ଆପନାକେ 'ଭୃତ୍ୟ' କରି, 'କୃଷ୍ଣ ପ୍ରଭୁ' ଜାନେ ।
'କୃଷ୍ଣେର କଳାର କଳା' ଆପନାକେ ମାନେ ।୧୨୦।

ତଥାହି ( ଭାଃ ୧୦ । ୧୧ । ୪୦ )—
ବୃଷାୟମାଣୌ ନର୍ଦ୍ଦନ୍ତୌ ଯୁଯୁଧାତେ ପରସ୍ପରମ୍ ।
ଅନୁକୃତ୍ୟ ରୁତୈର୍ଜନ୍ତୂଂଶ୍ଚେରତୁଃ ପ୍ରାକୃତୌ
ଯଥା । ୧୮ । *

ସର୍ବାବତାରାଣାଂ ସ୍ୱାନ୍ତର୍ଗତତ୍ୱେନ ତେଷାଂ ଲୀଳାଂ ଦର୍ଶୟତି । ୧୧୬,୧୧୭,୧୧୮ । ଚ,ତ,)
ଉକ୍ତ ସଖାଦିଭାବତ୍ରୟଂ ଦର୍ଶୟତି ବୃଷଇତି ବୃଷ ହଞ୍ୟା କମ୍ପଳା ବରଣାଦନ୍ତଃ ବୃଷ ଦର୍ପିଣୋ ଭୃତ୍ୟେତ୍ୟର୍ଥଃ । ୧୧୯ । ଚ,ତ, ।
ବୃଷାୟମାଣୌ (ବୃଷବତ୍ ଆଚରନ୍ତୌ ) ନର୍ଦ୍ଦନ୍ତୌ (ତଦନୁକାର ଶବ୍ଦାନ୍ କୁର୍ବନ୍ତୌ ରାମକୃଷ୍ଣୌ) ପରସ୍ପରଂ ଯୁଯୁଧାତେ । ରୁତୈଃ (ତତ୍ତଜ୍ଜାତଶବ୍ଦୈଃ) ଜନ୍ତୂନ୍ ( ହଂସମୟୂରାଦୀନ୍ ) ଅନୁକୃତ୍ୟ ପ୍ରାକୃତୌ (ବାଳକୌ ) ଯଥା ( ତଥା) ଚେରତୁଃ । ୧୮ଶ ଶ୍ଳୋକଃ ।

ଅତଏବ ଶ୍ରୀକୃଷ୍ଣ ଚୈତନ୍ୟ ସ୍ୱୟଂ ଅବତାରୀ ହେତୁ ତାଙ୍କର ଅନ୍ତର୍ଗତ ସମସ୍ତ ଅବତାର-ମାନଙ୍କର ଲୀଳା ସେ ସମସ୍ତଙ୍କୁ ଦେଖାଇଅଛନ୍ତି । ୧୧୬ ।

ସେହିପରି ଶ୍ରୀନିତ୍ୟାନନ୍ଦ ପ୍ରଭୁ ଅବତାରୀ ହେତୁରୁ ତାଙ୍କ ଅନ୍ତର୍ଗତ ଅବତାରମାନଙ୍କର ଲୀଳା ସେ ଦେଖାଇଅଛନ୍ତି, ଯେପରି କି ସେ ଶ୍ରୀ ଅନନ୍ତଦେବଙ୍କର ଭାବାପନ୍ନ ହେଲେ ସେହି ଭାବରେ ଭାବିତ ହୋଇ "ମୁଁ ଚୈତନ୍ୟଙ୍କର ଦାସ" ଏହି କଥା ସମସ୍ତଙ୍କୁ କହନ୍ତି । ଏ ସ୍ଥଳେ ଯେଉଁ ଭକ୍ତ ତାଙ୍କୁ ଶ୍ରୀ ଅନନ୍ତଦେବ ବୋଲି କହନ୍ତି ତାଙ୍କ କଥା ମଧ୍ୟ ସତ୍ୟ । ୧୧୭ ।

ଏହିପରି ଶ୍ରୀନିତ୍ୟାନନ୍ଦ ପ୍ରଭୁ ଶ୍ରୀଚୈତନ୍ୟଙ୍କର କେତେବେଳେ ଗୁରୁ, କେତେବେଳେ ସଖା ଅଥବା କେତେବେଳେ ଭୃତ୍ୟ ଏହିପରି ଲୀଳା କରନ୍ତି । ଯେପରି କି ପୂର୍ବେ ବ୍ରଜଲୀଳା ଓ ପୁରଲୀଳା ସମୟରେ ବ୍ରଜଧାମରେ ଶ୍ରୀବଳରାମରୂପରେ ଏହିପରି ତିନଭାବରେ ଅର୍ଥାତ୍ ବାତ୍ସଲ୍ୟ, ସଖ୍ୟ ଓ ଦାସ୍ୟଭାବରେ ଲୀଳା କରିଥିଲେ । ୧୧୮ ।

ବ୍ରଜଲୀଳାର ଉଦାହରଣ ଦେଉଅଛନ୍ତି । ଶ୍ରୀବଳରାମ ଓ ଶ୍ରୀକୃଷ୍ଣ ଉଭୟ କମ୍ବଳାଦି ଯୋଡ଼ି-ହୋଇ ପ୍ରତ୍ୟେକେ ଆପଣାକୁ ବୃଷଭ ମନେ କରି ପରସ୍ପର ବୃଷଭୁଲ୍ୟ ରଣ ଅଭିନୟ କରି କ୍ରୀଡ଼ା କରୁଥିଲେ । କେତେବେଳେ ବା ଶ୍ରୀବଳରାମ କ୍ରୀଡ଼ା ଅବସାନରେ କ୍ଳାନ୍ତ ହୋଇ ଉପବେଶନ କଲେ ଶ୍ରୀକୃଷ୍ଣ ତାହାଙ୍କର ପାଦ ସମ୍ବାହନ କରୁଥିଲେ । କେତେବେଳେ ବା ଶ୍ରୀବଳରାମ ଆପଣାକୁ ଶ୍ରୀକୃଷ୍ଣଙ୍କର ଦାସ ବୋଲି ମନେ କରି ଶ୍ରୀକୃଷ୍ଣଙ୍କୁ ପ୍ରଭୁ ବୋଲି ପ୍ରକାଶ କରୁଥିଲେ । ପୁରଲୀଳାରେ କେତେବେଳେ ଆପଣାକୁ ଶ୍ରୀକୃଷ୍ଣଙ୍କର ଅଂଶର ଅଂଶ ବୋଲି ମନେ କରୁଥିଲେ । ୧୧୯।୧୨୦ ।

ଶ୍ରୀକୃଷ୍ଣ ଓ ଶ୍ରୀବଳରାମ ବୃଷବତ୍ ଆଚରଣ କରି ଏବଂ ସେହିପରି ଶବ୍ଦ କରି ପରସ୍ପର ଯୁଦ୍ଧ କରନ୍ତି ଏବଂ ଅନ୍ୟାନ୍ୟ ଜନ୍ତୁର ଶବ୍ଦ ଅନୁକରଣ କରି ପ୍ରାକୃତ ବାଳକ ପରି କ୍ରୀଡ଼ା କରନ୍ତି ।
[ ୧୮ଶ ଶ୍ଳୋକାର୍ଥ ]

ଶ୍ରୀମଦ୍ଭାଗବତେ ( ୧୦ । ୧୫ । ୧୪ )—

କ୍ୱଚିତ୍ କ୍ରୀଡାପରିଶ୍ରାନ୍ତଂ ଗୋପୋତ୍ସଙ୍ଗୋପବର୍ହଣମ୍,

ସ୍ୱୟଂ ବିଶ୍ରମୟତ୍ୟାର୍ଯ୍ୟଂ ପାଦସମ୍ବାହନାଦିଭିଃ ॥୧୪॥ *

ତତ୍ରୈବ ( ୧୦ । ୧୩ । ୩୭ )—

କେୟଂ ବା କୁତ ଆୟାତା ଦୈବୀ ବା ନାର୍ଯ୍ୟୁତାସୁରୀ ।

ପ୍ରାୟୋ ମାୟାସ୍ତୁ ମେ ଭର୍ତ୍ତୁର୍ନାନ୍ୟା ମେଽପି ବିମୋହିନୀ ॥୧୦॥ *

ତତ୍ରୈବ ( ୧୦ । ୬୮ । ୩୭ )—

ଯସ୍ୟାଙ୍ଘ୍ରିପଙ୍କଜରଜୋଽଖିଲଲୋକପାଲୈ-

ର୍ମୌଲ୍ୟୁତ୍ତମୈର୍ଧୃତମୁପାସିତତୀର୍ଥତୀର୍ଥମ୍ ।

ବ୍ରହ୍ମା ଭବୋଽହମପି ଯସ୍ୟ କଳାଃ କଳାୟାଃ

ଶ୍ରୀଶ୍ଚୋଦ୍ୱହେମ ଚିରମସ୍ୟ ନୃପାସନଂ କ୍ୱ ॥୧୬॥

କ୍ୱଚିତ୍ କ୍ରୀଡାପରିଶ୍ରାନ୍ତଂ ( କ୍ରୀଡ଼ୟା ପରିଶ୍ରାନ୍ତଂ ) ଗୋପୋତ୍ସଙ୍ଗୋପବର୍ହଣମ୍ ( ଗୋପୋତ୍ସଙ୍ଗଃ ଉପବର୍ହଣମ୍ ଉପଧାନଂ ଯସ୍ୟ ତମ୍ ) ଆର୍ଯ୍ୟଂ (ଅଗ୍ରଜଂ ବଳଦେବଂ ସ୍ୱୟଂ) ପାଦସମ୍ବାହନାଦିଭିଃ ( ପାଦସମ୍ମର୍ଦ୍ଦନାଦିଭିଃ ) ସ୍ୱୟଂ ( ଶ୍ରୀକୃଷ୍ଣଃ ) ବିଶ୍ରମୟତି ( ବିଗତଶ୍ରମଂ କରୋତି ) । ୧୪ଶ ଶ୍ଳୋକଃ ।

ଇୟଂ ( ମାୟା ) କା ? କୁତଃ ବା ଆୟାତା ? ( ଇୟଂ ) ଦୈବୀ ( ଦେବସମ୍ବନ୍ଧିନୀ ) ନାରୀ ( ନରସମ୍ବନ୍ଧିନୀ ) ବା ଉତ ( ଅଥବା ) ଆସୁରୀ ( ଅସୁରସମ୍ବନ୍ଧିନୀ ) ? ପ୍ରାୟଃ (ପ୍ରାୟଶ ଇୟଂ) ମେ ଭର୍ତ୍ତୁଃ ( ମମ ପ୍ରଭୋଃ ଶ୍ରୀକୃଷ୍ଣସ୍ୟ ଏବ ) ମାୟା ଅସ୍ତୁ ଅନ୍ୟା ( ମାୟା ) ନ ( ଯତଃ ) ମେ (ମମ) ଅପି ବିମୋହିନୀ । ୧୦ଶ ଶ୍ଳୋକଃ ।

ଯସ୍ୟ ( ଶ୍ରୀକୃଷ୍ଣସ୍ୟ ) ଅଙ୍ଘ୍ରିପଙ୍କଜରଜଃ ଅଖିଲଲୋକପାଲୈଃ ମୌଲ୍ୟୁତ୍ତମୈଃ ( ମୌଳି-ଯୁକ୍ତୈଃ ଉତ୍ତମାଙ୍ଗୈଃ) ଧୃତମ୍ (ଧାରଣେନ ସମ୍ମାନିତଂ) ଉପାସିତତୀର୍ଥତୀର୍ଥମ୍ ( ଉପାସିତାନି ତୀର୍ଥାନି ଯୈଃ ଯୋଗିଭିଃ ତେଷାଂ ଅପି ତୀର୍ଥଂ ପବିତ୍ରତାଦିହିତଂ ଯଦ୍ୱା ସେବିତଂ ଯତ୍ ତୀର୍ଥଂ ଗଙ୍ଗା ତସ୍ୟାପି ତୀର୍ଥଂ ତୀର୍ଥତ୍ୱକାରୀତ୍ୱ ) ଯସ୍ୟ କଳାୟାଃ ( ଅଂଶସ୍ୟ ) କଳାଃ ( ଅଂଶାଃ ) ବ୍ରହ୍ମା ଭବଃ ଅହମ୍ ( ବଳଦେବଃ ) ଶ୍ରୀଃ (ଲକ୍ଷ୍ମୀଃ) ଚ ଅପି ଚିରଂ (ଧରନ୍ତଂ ବ୍ୟାପ୍ୟ) ଉଦ୍ୱହେମ (ଶିରସି ଉଦ୍ୱୋଢ଼ୁଂ ପ୍ରାର୍ଥୟାମହେ) ଅସ୍ୟ ( ଶ୍ରୀକୃଷ୍ଣସ୍ୟ ) ନୃପାସନଂ କ୍ୱ ( କୁତ୍ର ) ୧୬ଶ ଶ୍ଳୋକଃ ।

କେତେବେଳେ ଶ୍ରୀବଳଦେବ କ୍ରୀଡ଼ାପରିଶ୍ରାନ୍ତହୋଇ କୌଣସି ଗୋପବାଳକର କୋଳରେ ମସ୍ତକ ରଖି ଶୟନ କଲେ ଶ୍ରୀକୃଷ୍ଣ ନିଜେ ତାହାଙ୍କର ପାଦସମ୍ବାହନ ଓ ବ୍ୟଜନାଦିଦ୍ୱାରା ତାଙ୍କର ଶ୍ରମ ଦୂର କରି ଦେଉଥାନ୍ତି । [ ୧୪ଶ ଶ୍ଳୋକାର୍ଥ ]

ବ୍ରହ୍ମମୋହନ ସମୟରେ ଶ୍ରୀକୃଷ୍ଣ ଯେଉଁ ସମସ୍ତ ଗୋବତ୍ସ ଓ ବାଳକ ହୋଇଥିଲେ ଶ୍ରୀବଳରାମ ସେ ସମସ୍ତଙ୍କ ପ୍ରତି ନିଜର ଓ ବ୍ରଜବାସୀମାନଙ୍କର ଶ୍ରୀକୃଷ୍ଣପ୍ରତି ଯେପରି ପ୍ରେମ ସ୍ନେହାଦିର ଦେଖି କହୁଅଛନ୍ତି । ଏ କିଅଣ ମାୟା ! ଏ କାହାର ମାୟା ? ଏ କଣ ଦୈବୀ, ମାନୁଷୀ କିମ୍ବା ଆସୁରୀ ମାୟା ? କିନ୍ତୁ ତାହା ନୁହେ । ଯେହେତୁ ଏଦ୍ୱାରା ମୁଁ ନିଜେ ମୋହିତ ହୋଇଅଛି । ଏ ନିଶ୍ଚୟ ମୋର ପ୍ରଭୁ ଶ୍ରୀକୃଷ୍ଣଙ୍କର ମାୟା । [ ୧୦ଶ ଶ୍ଳୋକାର୍ଥ ]

ଶ୍ରୀକୃଷ୍ଣଙ୍କୁ ମାର ରାଜା ଦୁର୍ଯ୍ୟୋଧନଙ୍କ ଗୃହରେ ଅବରୁଦ୍ଧ ହେବାରୁ ଶ୍ରୀବଳଦେବ ତାହାଙ୍କୁ ଛଡ଼ାଇବାକୁ ଯାଇ କୌରବମାନଙ୍କଠାରୁ ଶ୍ରୀକୃଷ୍ଣଙ୍କର ଅପମାନସୂଚକ କଥା ଶୁଣି କହୁଅଛନ୍ତି ଯଥା,—

ଯେଉଁ ଶ୍ରୀକୃଷ୍ଣଙ୍କର ପାଦପଦ୍ମରେଣୁ ସମସ୍ତ ବ୍ରହ୍ମାଣ୍ଡର ଲୋକପାଳମାନେ ଅଳଙ୍କୃତ ମସ୍ତକରେ ଧାରଣ କରନ୍ତି, ଯାହାଙ୍କର ସେହି ପାଦପଦ୍ମରେଣୁ ଗଙ୍ଗାଦି ତୀର୍ଥମାନଙ୍କୁ ତୀର୍ଥ କରୁଅଛନ୍ତି ଏବଂ ବ୍ରହ୍ମା, ମହାଦେବ, ମୁଁ ( ବଳରାମ ) ଓ ଲକ୍ଷ୍ମୀଦେବୀ ଯାହାଙ୍କର ଅଂଶର ଅଂଶ ଏବଂ ଯାହାଙ୍କର ପାଦପଦ୍ମରେଣୁ ଆମ୍ଭେମାନେ ଚିରକାଳ ବନ୍ଦନା କରୁଁ ସେହି ଶ୍ରୀକୃଷ୍ଣଙ୍କର ରାଜସିଂହାସନ କେଉଁଠାରେ ? [ ୧୬ଶ ଶ୍ଳୋକ ]

ଏକଲେ ଈଶ୍ୱର କୃଷ୍ଣ, ଆର ସବ ଭୃତ୍ୟ ।
ଯାରେ ଯୈଛେ ନାଚାୟ, ସେ ତୈଛେ କରେ ନୃତ୍ୟ ।୧୬୧ ।
ଏଇମତ ଚୈତନ୍ୟ ଗୋସାଞି ଏକଲେ ଈଶ୍ୱର ।
ଆର ସବ ପାରିଷଦ—କେହୋ ବା କିଙ୍କର ।୧୬୨।

ଗୁରୁବର୍ଗ—ନିତ୍ୟାନନ୍ଦ ଅଦ୍ୱୈତ ଆଚାର୍ଯ୍ୟ ।
ଶ୍ରୀବାସାଦି ଆର ଯତ—ଲଘୁ ସମ ଆର୍ଯ୍ୟ ।୧୬୩।

---

ନନୁ "କାଙ୍ଗୁରୁ" ଇତି ପଦେନ ଶ୍ରୀନିତ୍ୟାନନ୍ଦସ୍ୟ ଯତ୍ ଶ୍ରୀଚୈତନ୍ୟଗୁରୁତ୍ୱମୁକ୍ତଂ ତେନ ସର୍ବେଶ୍ୱରସ୍ୟ ଶ୍ରୀଚୈତନ୍ୟସ୍ୟ ଈଶ୍ୱରତ୍ୱହାନିଦୋଷଃ ସ୍ୟାତ୍ ଶ୍ରୀନିତ୍ୟାନନ୍ଦସ୍ୟ ଗୁରୁତ୍ୱେନ ଶ୍ରୀଚୈତନ୍ୟସ୍ୟ ଶିଷ୍ୟତ୍ୱାପତ୍ତେରିତି ଚେତ୍ତତ୍ର ଦୃଷ୍ଟାନ୍ତମାହ "ଏକଲେ" ଇତି ସାର୍ଦ୍ଧେନ । ଏକସ୍ୟୈବ ଶ୍ରୀକୃଷ୍ଣସ୍ୟ ସର୍ବେଶ୍ୱରତ୍ୱେନ ଅପରେ ଶ୍ରୀବଳଦେବାଦୟଃ ସର୍ବେ ସ୍ୱରୂପତଃ ଏବ ତଦ୍‌ଭୃତ୍ୟାଃ ତାନ୍ ଯଂ ଯତ୍ ଶ୍ରୀକୃଷ୍ଣଃ କାରୟତି ସ ତଥା କରୋତି । ତେନ ଯଥା ଶ୍ରୀକୃଷ୍ଣସ୍ୟ ନ ଈଶ୍ୱରତ୍ୱହାନିଦୋଷଃ ତଦ୍ବଦେବାତ୍ରାପି ଶ୍ରୀଚୈତନ୍ୟସ୍ୟ ସର୍ବେଶ୍ୱରତ୍ୱେନ ଅପରେ ଶ୍ରୀନିତ୍ୟାନନ୍ଦାଦୟଃ ସର୍ବେ ସ୍ୱରୂପତଃ ତଦ୍‌ଭୃତ୍ୟାଃ ଅତଏବ ଶ୍ରୀନିତ୍ୟାନନ୍ଦସ୍ୟ ସ୍ୱରୂପତଃ ଶ୍ରୀଚୈତନ୍ୟଭୃତ୍ୟତ୍ୱେନ ନ ତଦ୍ଦୋଷଃ । ଉକ୍ତଂ ହି ଶ୍ରୀଅଦ୍ୱୈତପ୍ରଭୁ ପାଦେନ "ମୁଞି ଯେ ଚୈତନ୍ୟଦାସ ଆର ନିତ୍ୟାନନ୍ଦ" ଇତି ।୧୬୧।୧୬୨।୧୬୩। ଚ, ଚ,

---

ପୂର୍ବୋକ୍ତ ୧୧୮ ପୟାରରେ କୁହାହୋଇଅଛି ଯେ ଶ୍ରୀନିତ୍ୟାନନ୍ଦ ଶ୍ରୀଚୈତନ୍ୟଙ୍କର କୌଣସିବେଳେ ଗୁରୁ ହୁଅନ୍ତି । ଏତଦ୍ଦ୍ୱାରା ଶ୍ରୀଚୈତନ୍ୟଙ୍କର ସର୍ବେଶ୍ୱରତ୍ୱରେ ଦୋଷ ଘଟେ ! ଏହା ଦୃଷ୍ଟାନ୍ତ ଦ୍ୱାରା ବୁଝାଇବା ସକାଶେ କହୁଅଛନ୍ତି । ଯଥାଃ—ଶ୍ରୀକୃଷ୍ଣ ଏକମାତ୍ର ସର୍ବେଶ୍ୱର ଏବଂ ବଳରାମ ଆଦି ସମସ୍ତେ ତାହାଙ୍କର ଭୃତ୍ୟ । ଶ୍ରୀକୃଷ୍ଣ ଯାହାଦ୍ୱାରା ଯେପରି କରାନ୍ତି ସେ ସେହିପରି କରନ୍ତି । ଏହିପରି ଶ୍ରୀଚୈତନ୍ୟ ଗୋସାଇଁ ମଧ୍ୟ ଏକମାତ୍ର ସର୍ବେଶ୍ୱର । ଶ୍ରୀନିତ୍ୟାନନ୍ଦ ଅଦ୍ୱୈତାଦି ସମସ୍ତେ ତାହାଙ୍କର ପାରିଷଦ ଏବଂ କେହି୨ ମଧ୍ୟ ଦାସ । ଏ ସ୍ଥଳରେ ଶ୍ରୀକୃଷ୍ଣ ଚୈତନ୍ୟ ଶ୍ରୀନିତ୍ୟାନନ୍ଦାଦିଙ୍କ ଯାହାଙ୍କ ଦ୍ୱାରା ଯାହା କରାନ୍ତି ସେମାନେ ତାହା କରନ୍ତି,—ଅର୍ଥାତ୍ ଯାହାଙ୍କୁ ଗୁରୁପଦବୀ ଦେଇଅଛନ୍ତି ସେମାନେ ଗୁରୁ ହୋଇଅଛନ୍ତି । ଯାହାଙ୍କୁ ସମତାରେ ରଖିଅଛନ୍ତି ସେମାନେ ସମ ହୋଇ ରହିଅଛନ୍ତି ଓ ଯାହାଙ୍କୁ ଲଘୁତ୍ୱରେ ରଖାଇଅଛନ୍ତି ସେ ଲଘୁ ହୋଇ ରହିଅଛନ୍ତି ।୧୬୧।୧୬୨ ।

ଏହି ଭାବରେ ଶ୍ରୀମନ୍ ନିତ୍ୟାନନ୍ଦ ଓ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଏମାନେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଗୁରୁବର୍ଗ ଏବଂ ଶ୍ରୀନିବାସ ( ଶ୍ରୀବାସ ପଣ୍ଡିତ ) ଆଦି ଭକ୍ତମାନଙ୍କ ମଧ୍ୟରେ କେହି କେହି କନିଷ୍ଠ, କେହି କେହି ସମ ( ସଖା ) ଏବଂ କେହି କେହି ଆର୍ଯ୍ୟ ( ମାନ୍ୟପାତ୍ର ) କିନ୍ତୁ ତାହା ହେଲେହେଁ ସମସ୍ତେ ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଏହି ନାମ ପ୍ରେମଦାନ ଲୀଳାର ସହାୟତା କରିବା କାରଣ ପାର୍ଷଦ ଅଟନ୍ତି । ଏ ସମସ୍ତଙ୍କ ସେନା ଶ୍ରୀଗୌରଚନ୍ଦ୍ର ଆପଣାର କାର୍ଯ୍ୟ, ଅର୍ଥାତ୍ ନାମ ପ୍ରେମଦାନ କରନ୍ତି । ଅର୍ଥାତ୍ ଶ୍ରୀଗୌର ପାର୍ଷଦଗଣ ଶ୍ରୀଗୌରଚନ୍ଦ୍ରଙ୍କ ଆଦେଶାନୁସାରେ ଜଗତ୍‌କୁ ନାମ ପ୍ରେମଦାନ କରିଅଛନ୍ତି ୧୬୩ । ୧୬୪ ।

ସବେ ପାରଷଦ, ସବେ ଲୀଳାର ସହାୟ ।
ସଭା ଲୟାଁ ନିଜକାର୍ଯ୍ୟ ସାଧେ ଗୌର ରାୟ । ୧୨୪
ଅଦ୍ୱୈତ-ଆଚାର୍ଯ୍ୟ ନିତ୍ୟାନନ୍ଦ—ଦୁଇ ଅଙ୍ଗ ।
ଦୁଇ ଜନ ଲଞା ପ୍ରଭୁର ଯତ କିଛୁ ରଙ୍ଗ । ୧୨୫ ।
ଅଦ୍ୱୈତ-ଆଚାର୍ଯ୍ୟ ଗୋସାଞି ସାକ୍ଷାତ୍ ଈଶ୍ୱର ।
ପ୍ରଭୁ 'ଗୁରୁ' କରି ମାନେ ତେହୋ ତ 'କିଙ୍କର' । ୧୨୬
ଆଚାର୍ଯ୍ୟ ଗୋସାଞିର ତତ୍ତ୍ୱ ନା ଯାୟ କଥନ ।
କୃଷ୍ଣ ଅବତାରି ଯେହୋ ତାରିଲ ଭୁବନ । ୧୨୭ ।
ନିତ୍ୟାନନ୍ଦ ସ୍ୱରୂପ ପୂର୍ବେ ହଇଲା ଲକ୍ଷ୍ମଣ ।
ଲଘୁ ଭ୍ରାତା ହୈୟା କରେ ରାମେର ସେବନ । ୧୨୮ ।
ରାମେର ଚରିତ୍ର ସବ ଦୁଃଖେର କାରଣ ।
ସ୍ୱତନ୍ତ୍ର ଲୀଳାୟ ଦୁଃଖ ସହେନ ଲକ୍ଷ୍ମଣ । ୧୨୯ ।
ନିଷେଧ କରିତେ ନାରେ, ଯାତେ ଛୋଟ ଭାଇ ।
ମୌନ କରି ରହେ ଲକ୍ଷ୍ମଣ ମନେ ଦୁଃଖ ପାଇ । ୧୩୦
କୃଷ୍ଣାବତାରେ ଜ୍ୟେଷ୍ଠ ହୈଲା ସେବାର କାରଣ ।
କୃଷ୍ଣକେ କରାଇଲ ନାନା ସୁଖ ଆସ୍ୱାଦନ । ୧୩୧ ।
ରାମ-ଲକ୍ଷ୍ମଣ କୃଷ୍ଣ-ରାମେର ଅଂଶ-ବିଶେଷ ।
ଅବତାରକାଲେ ଦୋହେଁ ଦୋହାତେ ପ୍ରବେଶ । ୧୩୨ ।
ସେଇ ଅଂଶ ଲଞା ଜ୍ୟେଷ୍ଠ-କନିଷ୍ଠାଭିମାନ ।
ଅଂଶାଂଶିରୂପେ ଶାସ୍ତ୍ରେ କରୟେ ବ୍ୟାଖ୍ୟାନ । ୧୩୩

ନନୁ ପ୍ରେମପ୍ରଦାନାଦ୍ୟର୍ଥମବତୀର୍ଣ୍ଣସ୍ୟ ଶ୍ରୀଚୈତନ୍ୟସ୍ୟ ଅପରୈଃ ପାର୍ଷଦୈଃ କମିତ୍ୟତେତ୍ରାହ "ସବେ" ଇତି । ତଲ୍ଲୀଳା ସାହାଯ୍ୟାର୍ଥଂ ପାର୍ଷଦାବତାରପ୍ରୟୋଜନମିତ୍ୟର୍ଥଃ । ୧୨୩ । ୧୨୪ । ୧୨୬ । ବି, ଚ,

ନନୁ ଶ୍ରୀଲକ୍ଷ୍ମଣ ରୂପାନୁସାରେଣାର୍ଯ୍ୟୌ ଶ୍ରୀନିତ୍ୟାନନ୍ଦଃ ଶ୍ରୀଚୈତନ୍ୟକନିଷ୍ଠତାମେବାର୍ହତି କିନ୍ତୁ ଜ୍ୟେଷ୍ଠତ୍ୱଂ ତଥା କଥମ୍ବା ଭ୍ରାତ୍ୟସ୍ୟ ତସ୍ୟ ଗୁରୁତ୍ୱଂ ତତ୍ରାହ "ନିତ୍ୟାନନ୍ଦ" ଇତ୍ୟାଦି "ଶ୍ରୀଚୈତନ୍ୟ" ଇତ୍ୟନ୍ତଂ । ଅୟମ୍ଭାବଃ ଶ୍ରୀଲକ୍ଷ୍ମଣରୂପେଣ ଶ୍ରୀରାମଂ ସ୍ୱୈର' ସ୍ୱଚ୍ଛନ୍ଦାରବର୍ତ୍ତିଂ ଦୃଷ୍ଟ୍ୱା ଖିନ୍ନଃ ସ୍ୱାଦତ ଶ୍ରୀକୃଷ୍ଣାବତାରେ ସ୍ୱାତନ୍ତ୍ର୍ୟେଣ ଶ୍ରୀକୃଷ୍ଣସ୍ୟ ସୁଖଂ କର୍ତ୍ତୁମିଚ୍ଛୟା ଜ୍ୟେଷ୍ଠତ୍ୱେନ ଶ୍ରୀବଳଦେବୋଽବତୀର୍ଣ୍ଣଃ ତଦ୍ ଶ୍ରୀଚୈତନ୍ୟ ଏବ ସଃ ଶ୍ରୀକୃଷ୍ଣଃ ଶ୍ରୀ ନିତ୍ୟାନନ୍ଦ ଏବ ସଃ ବଳଦେବ ଇତି ଜ୍ୟେଷ୍ଠତ୍ୱେନୈବ ଗୁରୁତ୍ୱଂ । ୧୨୮ । ୧୩୪ । ବି, ଚ,

ଏହି ସମସ୍ତ ପାର୍ଷଦମାନଙ୍କ ମଧ୍ୟରେ ଶ୍ରୀଅଦ୍ୱୈତାଚାର୍ଯ୍ୟ ଓ ଶ୍ରୀନିତ୍ୟାନନ୍ଦଚନ୍ଦ୍ର ଏ ଦୁହେଁ ପ୍ରଧାନ ବା ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଦୁଇ ଅଙ୍ଗ ତୁଲ୍ୟ । ଏ ଦୁହିଙ୍କ ଦ୍ୱାରା ମହାପ୍ରଭୁ ଶ୍ରୀଚୈତନ୍ୟ ନାନାପ୍ରକାର ଲୀଳା ସମାଧା କରିଥିଲେ । ୧୨୫ ।

ଶ୍ରୀଅଦ୍ୱୈତାଚାର୍ଯ୍ୟ ସ୍ୱୟଂ ଈଶ୍ୱର, ଅର୍ଥାତ୍ ମହାବିଷ୍ଣୁ । ମହାପ୍ରଭୁ ଶ୍ରୀଗୌରଚନ୍ଦ୍ର ତାହାଙ୍କୁ ଗୁରୁ ରୂପରେ ମାନ୍ୟ କରିଲେହେଁ ଆଚାର୍ଯ୍ୟ ପ୍ରଭୁ ଆପଣାକୁ ଗୌରଦାସ ବୋଲି ମାନନ୍ତି । ୧୨୬ ।

ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କର ତତ୍ତ୍ୱ ଅଧିକ ଆଉ କଅଣ କୁହାଯିବ ? ଏହାହିଁ କହିଲେ ଯଥେଷ୍ଟ ହେବ ଯେ ସେ ଶ୍ରୀକୃଷ୍ଣଙ୍କୁ ଅବତୀର୍ଣ୍ଣ କରାଇ ଜଗଦ୍ବାସୀ ଜୀବମାନଙ୍କୁ ଉଦ୍ଧାର କଲେ । ୧୨୭ ।

ଶ୍ରୀ ନିତ୍ୟାନନ୍ଦ ପୂର୍ବେ (ତ୍ରେତା ଯୁଗରେ) ଶ୍ରୀକୃଷ୍ଣଙ୍କର ରାମ ଅବତାର ସମୟରେ ଶ୍ରୀ ଲକ୍ଷ୍ମଣ ରୂପରେ କନିଷ୍ଠ ଭ୍ରାତା ହୋଇ ଶ୍ରୀରାମଙ୍କର ସେବା କରିଥିଲେ । ଶ୍ରୀରାମ ସ୍ୱ ଇଚ୍ଛାରେ ଲୀଳାଦ୍ୱାରା କେବଳ ଦୁଃଖ ଭୋଗ କରିଥିଲେ । ସୁତରାଂ ଶ୍ରୀ ଲକ୍ଷ୍ମଣ ଶ୍ରୀ ରାମଙ୍କ ଦୁଃଖରେ ବଡ଼ ଦୁଃଖିତ ହୋଇଥିଲେ । କିନ୍ତୁ କନିଷ୍ଠ ଭ୍ରାତା ହେତୁରୁ ଶ୍ରୀରାମଙ୍କର କାର୍ଯ୍ୟରେ ତାହାଙ୍କୁ ନିଷେଧ କରି ନ ପାରି ସର୍ବଦା ଦୁଃଖରେ ମୌନାବଲମ୍ବନ କରି ରହିଥିଲେ । ଅର୍ଥାତ୍ ନିଜ ଇଚ୍ଛାମତ ସେବାଦ୍ୱାରା ଶ୍ରୀରାମଙ୍କୁ ସୁଖଦାନ କରିପାରି ନ ଥିଲେ । ତେଣୁ ସେବାଦ୍ୱାରା ସୁଖଦାନ କରିବାନିମିତ୍ତ ଶ୍ରୀକୃଷ୍ଣାବତାରରେ ସେ ଜ୍ୟେଷ୍ଠ ଭ୍ରାତା ବଳରାମ ହୋଇ ଶ୍ରୀକୃଷ୍ଣଙ୍କୁ ନାନାପ୍ରକାରରେ ସୁଖ ଆସ୍ୱାଦନ କରାଇଥିଲେ ।

ତଥାହି ବ୍ରହ୍ମସଂହିତାୟାମ୍ ( ଅ ୩୯ )—

ରାମାଦିମୂର୍ତ୍ତିଷୁ କଳାନିୟମେନ ତିଷ୍ଠନ୍,
ନାନାବତାରମକରୋଦ୍ଭୁବନେଷୁ କିନ୍ତୁ ।
କୃଷ୍ଣଃ ସ୍ୱୟଂ ସମଭବତ୍ ପରମଃ ପୁମାନ୍ ଯୋ,
ଗୋବିନ୍ଦମାଦିପୁରୁଷଂ ତମହଂ ଭଜାମି । ୨୨ ।*

ଶ୍ରୀଚୈତନ୍ୟ ସେଇ କୃଷ୍ଣ, ନିତ୍ୟାନନ୍ଦ ରାମ ।
ନିତ୍ୟାନନ୍ଦ ପୂର୍ଣ୍ଣ କରେ ଚୈତନ୍ୟେର କାମ । ୧୩୪

ନିତ୍ୟାନନ୍ଦ-ମହିମା-ସିନ୍ଧୁ ଅନନ୍ତ ଅପାର ।
ଏକ କଣ ସ୍ପର୍ଶି - ମାତ୍ର ସେହ କୃପା ତାଁହାର । ୧୩୫
ଆର ଏକ ଶୁନ ତାଁର କୃପାର ମହିମା ।
ଅଧମ-ଜୀବେରେ ଚଢ଼ାଇଲ ଊର୍ଦ୍ଧ୍ୱସୀମା । ୧୩୬ ।
ବେଦଗୁହ୍ୟ କଥା ଏହି—ଅଯୋଗ୍ୟ କହିତେ ।
ତଥାପି କହିୟେ ତାଁର କୃପା ପ୍ରକାଶିତେ । ୧୩୭
ଉଲ୍ଲାସେର ବଶେ ଲିଖି ତୋମାର ପ୍ରସାଦ ।
ନିତ୍ୟାନନ୍ଦ ପ୍ରଭୁ ! ମୋର କ୍ଷମ ଅପରାଧ । ୧୩୮ ।

ଯ ଏବ କଦାଚିତ୍ ପ୍ରପଞ୍ଚେ ନିଜାଂଶେନ ସ୍ୱୟମପ୍ୟବତରତିତ୍ୟାହ ରାମାଦୀତି । ଯଃ ଶ୍ରୀକୃଷ୍ଣାଖ୍ୟଃ ପରମଃ ପୁମାନ୍ କଳା ନିୟମେନ ତତ୍ର ତତ୍ର ନିୟତାନାମେବ ଶକ୍ତୀନାଂ ପ୍ରକାଶେନ ରାମାଦି ମୂର୍ତ୍ତିଷୁ ତିଷ୍ଠନ୍ ତତ୍ତନ୍ମୂର୍ତ୍ତି ପ୍ରକାଶୟନ୍ ନାନାବତାରମକରୋଦିତି । ଯ ଏବ ଚ ସ୍ୱୟଂ ସମଭବତ୍ ଅବତତାର ତଂ ଲୀଳାବିଶେଷେଣ ଗୋବିନ୍ଦଂ ସନ୍ତଂ ଅହଂ ଭଜାମୀତ୍ୟର୍ଥଃ । ୨୨ଶ ଶ୍ଳୋକଃ ।

ନିତ୍ୟାନନ୍ଦତତ୍ତ୍ୱମୁପସଂହରତି " ନିତ୍ୟାନନ୍ଦ " ଇତି । ନିତ୍ୟାନନ୍ଦକୃପୟୈବ ମାଦୃଶସ୍ୟ କଠିନାନାଂ ବର୍ତ୍ତିତମିତ୍ୟର୍ଥଃ ଇତି । ୧୩୫ ବି, ଚି,

" ସେହ କୃପା ତାଁହାର " ଇତ୍ୟୁକ୍ତମତସ୍ତସ୍ୟ କୃପାଂ ବର୍ଣ୍ଣୟନ୍ନାହ " ଆର ଏକ " ଇତି ।
୧୩୬ । ୧୩୭ । ୧୩୮ । ଚି, ଚ,

ରାମ ଲକ୍ଷ୍ମଣ ଏ ଦୁହେଁ ଶ୍ରୀକୃଷ୍ଣ ବଳରାମଙ୍କର ବିଶେଷାଂଶ । ଅର୍ଥାତ୍ ବିଶେଷ ଅବତାର । ଅତଏବ ଶ୍ରୀକୃଷ୍ଣ ବଳରାମଙ୍କର ଅବତାର ସମୟରେ ସେ ଦୁହେଁ ( ରାମ ଲକ୍ଷ୍ମଣ ) ଏ ଦୁହିଁଙ୍କର ( କୃଷ୍ଣ ବଳରାମଙ୍କ ) ଠାରେ ରହିବାରୁ ଶ୍ରୀବଳରାମ ଶ୍ରୀକୃଷ୍ଣଙ୍କର ଜ୍ୟେଷ୍ଠ ହେଲେ ହେଁ ଲକ୍ଷ୍ମଣ ଭାବାପନ୍ନ ହୋଇ ଆପଣଙ୍କୁ କନିଷ୍ଠ ଜ୍ଞାନ କରନ୍ତି; ଏ ବିଷୟ ଶାସ୍ତ୍ରରେ ମଧ୍ୟ ନିରୂପିତ ଅଛି । ୧୨୮ । ଲ । ୧୩୩ ।

ଶ୍ରୀବ୍ରହ୍ମା ——ଶ୍ରୀକୃଷ୍ଣଙ୍କୁ ସ୍ତବ କରୁଅଛନ୍ତି ।

ଯେଉଁ ପରମ ପୁରୁଷ ଶ୍ରୀକୃଷ୍ଣ କଳାନିୟମରେ ( ଅଂଶ ରୂପରେ ) ରାମାଦି ମୂର୍ତ୍ତିରେ ରହି ଅର୍ଥାତ୍ ସେହି ସେହି ମୂର୍ତ୍ତିରେ ନିୟତ ଶକ୍ତିସମୂହ ପ୍ରକାଶ ଦ୍ୱାରା ସେହି ସେହି ମୂର୍ତ୍ତି ପ୍ରକାଶ କରି ବିବିଧ ଅବତାର ଗ୍ରହଣ କରିଥିଲେ ଏବଂ ଯେ ନିଜେ ମଧ୍ୟ ଅବତୀର୍ଣ୍ଣ ହୋଇଥିଲେ, ଲୀଳାବିଶେଷ-ବିଶିଷ୍ଟ ସେହି ଆଦି ପୁରୁଷ ଗୋବିନ୍ଦଙ୍କୁ ମୁଁ ଭଜନା କରେଁ । ୨୨ ଶ୍ଳୋକାର୍ଥ ।

ଅପରନ୍ତୁ ଶ୍ରୀରାମଙ୍କ ଅଂଶୀ କୃଷ୍ଣହିଁ ଶ୍ରୀଚୈତନ୍ୟ ଏବଂ ଶ୍ରୀଲକ୍ଷ୍ମଣଙ୍କ ଅଂଶୀ ଶ୍ରୀବଳରାମହିଁ ଶ୍ରୀନିତ୍ୟାନନ୍ଦ । ଅତଏବ ଶ୍ରୀନିତ୍ୟାନନ୍ଦ ଜ୍ୟେଷ୍ଠ କନିଷ୍ଠଭାବମୟ ସେବାଦ୍ୱାରା ଶ୍ରୀଚୈତନ୍ୟଙ୍କର ଅଭିଳାଷ ପୂର୍ଣ୍ଣ କରନ୍ତି । ୧୩୪ ।

ଗ୍ରନ୍ଥକାର ଶ୍ରୀନିତ୍ୟାନନ୍ଦଙ୍କ ତତ୍ତ୍ୱବର୍ଣ୍ଣନା ଉପସଂହାରରେ କହୁଅଛନ୍ତି ଯେ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର ମହିମା ସମୁଦ୍ରବତ୍ ଅପାର ଓ ଅନନ୍ତ । କେବଳ ତାଙ୍କର କୃପାରୁ ମୁଁ ( ଗ୍ରନ୍ଥକାର ) ସେଥିର କଣାମାତ୍ର ବର୍ଣ୍ଣନା କଲି । ୧୩୫ ।

୧୩୬ ପୟାର ଠାରୁ ଗ୍ରନ୍ଥକାର ନିଜର ଅନୁଭବ ବିଷୟ ବ୍ୟକ୍ତ କରୁଅଛନ୍ତି ।

୧୩୬—ଅଧମ ଜୀବ——ଗ୍ରନ୍ଥକାର ।

୧୩୮—ଉଲ୍ଲାସେର ବଶେ——ଅତ୍ୟନ୍ତ ଆନନ୍ଦର ସହିତ ।

ଅବଧୂତ ଗୋସାଞିର ଏକ ଭୃତ୍ୟ ପ୍ରେମ ଧାମ ।
ମୀନକେତନ ରାମଦାସ - ହୟ ତାର ନାମ । ୧୩୯ ।
ଆମାର ଆଲୟେ ଅହୋରାତ୍ର ସଙ୍କୀର୍ତ୍ତନ ।
ତାହାତେ ଆଇଲ ତେହୋଁ ପାଞା ନିମନ୍ତ୍ରଣ । ୧୪୦ ।
ମହା ପ୍ରେମମୟ ତେହେଁ। ବସିଲା ଅଙ୍ଗନେ ।
ସକଳ ବୈଷ୍ଣବ ତାଁର ବନ୍ଦିଲ ଚରଣେ । ୧୪୧ ।
ନମସ୍କାର କରିତେ କାରେ ଉପରେତେ ଚଢ଼େ ।
ପ୍ରେମେ କାରେ ବଂଶୀ ମାରେ, କାହାରେ
ଚାପଡ଼େ । ୧୪୨ ।

---

କୃପାମ୍ବା ହେତୁଃ ପାଦପ୍ରସାଦଗ୍ରନ୍ଥେଽସିନ୍ନୀ ଶ୍ରୀନିତ୍ୟାନନ୍ଦ ବିଗ୍ରହାସ୍ୟଭୂତବନ୍ତଂ ଭୃତ୍ୟରଂ ପ୍ରତି ଭକ୍ତିନତୁଣ୍ଡ ନିଜ କୃପାକାରଣଂ ଲତ୍ୟାଦୌ ସନ୍ଦେହରୂକଂ ତଦର୍ଥୟୁକ୍ତ " ଅବଧୂତ " ଇତ୍ୟାଦି " ଏଇତ " କହିଲ ଇତ୍ୟଦ୍ରେନ । ୧୩୯ । ୧୪୨ । ଚି, ଚ,

---

ଶ୍ରୀମନ୍ ଗ୍ରନ୍ଥକାରଙ୍କ ଉପରେ ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କର ଯେ ଅନୁଗ୍ରହ ତାହା ବେଦଗୁହ୍ୟ ଅର୍ଥାତ୍ ଅତି ଗୋପନୀୟ ହେଲେହେଁ ଗ୍ରନ୍ଥକାର ମହାଶୟ ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କର ଗୁଣକୀର୍ତ୍ତନରେ ଏପରି ଅନନ୍ଦିତ ହୋଇଅଛନ୍ତି ଯେ ତାହା ପ୍ରକାଶ ନ କରି ସ୍ଥିର ରହିପାରୁନାହାନ୍ତି । ତେଣୁ ତାହା ପ୍ରକାଶ କରିବାପ୍ରତି ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କର କ୍ଷମା ପ୍ରାର୍ଥନା କରୁଅଛନ୍ତି । ୧୩୭ । ୧୩୮ ।

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କ କୃପାରୁ ଗ୍ରନ୍ଥକାରଙ୍କର ତାହାଙ୍କ ପ୍ରତି ଯେ ବିଶ୍ୱାସ ଓ ତତ୍ତ୍ୱଜ୍ଞାନ ହୋଇଅଛି ତାହା ସେ ୧୩୯ ପୟାରଠାରୁ ୧୫୨ ପୟାର ଦ୍ୱାରା ପ୍ରକାଶ କରିଅଛନ୍ତି ।

ଅବଧୂତ ଗୋସାଞି——ଶ୍ରୀମନ୍ ନିତ୍ୟାନନ୍ଦପ୍ରଭୁ ।
ପ୍ରେମଧାମ——ପ୍ରେମମୟ ।

ମୀନକେତନରାମଦାସ——ମୀନକେତନ ଉପାଧିକ ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କର ପାର୍ଷଦ ବିଶେଷ । ( ଦ୍ୱାଦଶ ଗୋପାଳଙ୍କ ମଧ୍ୟରୁ ଅନ୍ୟତମ ) ୧୩୯
ଅହୋରାତ୍ର ସଙ୍କୀର୍ତ୍ତନ——ଅଷ୍ଟପ୍ରହରୀ ଶ୍ରୀହରିସଙ୍କୀର୍ତ୍ତନ ।
ତେହେଁ।——ସେ । ( ଶ୍ରୀମୀନକେତନ ରାମଦାସ ) । ୧୪୦

ମହାପ୍ରେମମୟ——୧୪୩ରୁ ୧୪୫ ପୟାର ଦ୍ୱାରା ଶ୍ରୀମୀନକେତନ ରାମଦାସଙ୍କର ମହାପ୍ରେମର ଲକ୍ଷଣ ଉକ୍ତ ହୋଇଅଛି । ୧୪୧ ।

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁଙ୍କର ପାର୍ଷଦମାନେ ସର୍ବଦା ଗୋପବେଶରେ ଥାଆନ୍ତି । ତେଣୁ ଶ୍ରୀମୀନକେତନଦାସ ସର୍ବଦା ବଂଶୀ ବ୍ୟବହାର କରୁଥିଲେ । ୧୪୨ ।

ଯେ ନେତ୍ରେ ଦେଖିଲେ ଅଶ୍ରୁ, ମନେ ହୟ ଯାର ।
ସେଇ ନେତ୍ରେ ଅବଚ୍ଛିନ୍ନ ବହେ ଅଶ୍ରୁଧାର । ୧୪୩
କଭୁ କୋନ ଅଙ୍ଗେ ଦେଖି ପୁଲକ-କଦମ୍ବ ।
ଏକ ଅଙ୍ଗେ ଜାଡ୍ୟ ତାର—ଆର ଅଙ୍ଗେ କମ୍ପ । ୧୪୪
'ନିତ୍ୟାନନ୍ଦ' ବଲି ଯବେ କରେନ ହୁଙ୍କାର ।
ତାହା ଦେଖି ଲୋକେର ହୟ ମହା ଚମତ୍କାର । ୧୪୫
ଗୁଣାର୍ଣ୍ଣବମିଶ୍ର ନାମେ ଏକ ବିପ୍ର ଆର୍ଯ୍ୟ ।
ଶ୍ରୀମୂର୍ତ୍ତି-ନିକଟେ ତେହେଁ। କରେ
ସେବାକାର୍ଯ୍ୟ । ୧୪୬ ।
ଅଙ୍ଗନେ ଆସିୟା ତେହୋ ନା କୈଲ ସମ୍ଭାଷ ।
ତାହା ଦେଖି କ୍ରୁଦ୍ଧ ହଞା ବୋଲେ
ରାମଦାସ— । ୧୪୭ ।
ଏଇ ତ ଦ୍ୱିତୀୟ ସୂତ ଶ୍ରୀ ରୋମହର୍ଷଣ ।
ବଲଦେବେ ଦେଖି ଯେ ନା କରିଲ
ପ୍ରତ୍ୟୁଦ୍ଗମ । ୧୪୮ ।
ଏତ ବଲି ନାଚେ ଗାୟ—କରୟେ ସନ୍ତୋଷ ।
କୃଷ୍ଣକାର୍ଯ୍ୟ କରେ ବିପ୍ର—ନା କରିଲ ରୋଷ । ୧୪୯
ଉତ୍ସବାନ୍ତେ ଗେଲା ତେହେଁ। କରିୟା ପ୍ରସାଦ ।
ମୋର ଭ୍ରାତା ସନେ ତାର କିଛୁ ହୈଲ ବାଦ । ୧୫୦
ଚୈତନ୍ୟ ଗୋସାଞିତେ ତାଁର ସୁଦୃଢ଼ ବିଶ୍ୱାସ ।
ନିତ୍ୟାନନ୍ଦ ପ୍ରତି ତାଁର ବିଶ୍ୱାସ-ଆଭାସ । ୧୫୧ ।
ଇହା ଜାନି ରାମଦାସେର ଦୁଃଖ ହୈଲ ମନେ ।
ତବେ ତ ଭ୍ରାତାରେ ଆମି କରିନୁ ଭର୍ତ୍ସନେ । ୧୫୨
ଦୁଇ ଭାଇ ଏକତନୁ—ସମାନ ପ୍ରକାଶ ।
ନିତ୍ୟାନନ୍ଦ ନା ମାନ, ତୋମାର ହବେ
ସର୍ବନାଶ । ୧୫୩ ।

"ମହାପ୍ରେମମୟ" ଇତ୍ୟେକ୍ରମ୍ୟ ଲକ୍ଷଣଂ ଦର୍ଶୟିତ୍ୱା "ଯେ ନୟନେ" ଇତି ଲିଖ୍ୟ
୧୪୩ । ୧୫୩ । ବି, ଚି,

୧୪୩—ଯେ ନୟନେ——ଶ୍ରୀମୀନକେତନ ରାମଦାସଙ୍କର ଯେଉଁ ନୟନରେ ।
୧୪୪—ପୁଲକ କଦମ୍ବ——ପୁଲକ ସମୂହ ।
ଜାଡ୍ୟ——ଜଡ଼ତା, ନିଶ୍ଚେଷ୍ଟତା ।
୧୪୬— ଆର୍ଯ୍ୟ——ମାନନୀୟ ।
ଶ୍ରୀମୂର୍ତ୍ତି——ଶ୍ରୀରାଧାମଦନମୋହନ । ( ଗ୍ରନ୍ଥକାରଙ୍କର କୁଳଦେବତା )

ଶ୍ରୀଗୁଣାର୍ଣ୍ଣବମିଶ୍ର ଶ୍ରୀରାମଦାସଙ୍କୁ ସମ୍ଭାଷଣ କରିବାକୁ ନ ଆସିବାରୁ ଶ୍ରୀରାମଦାସ କ୍ରୁଦ୍ଧ ହୋଇ ଶ୍ରୀଗୁଣାର୍ଣ୍ଣବମିଶ୍ରଙ୍କୁ ଦ୍ୱିତୀୟ ରୋମହର୍ଷଣ ସୂତ ବୋଲି କହିଲେ । ଅର୍ଥାତ୍ ରୋମହର୍ଷଣ ସୂତ ନୈମିଷାରଣ୍ୟରେ ପୁରାଣ ପାଠ କରୁଥିବା ସମୟରେ ଶ୍ରୀବଳଦେବ ତୀର୍ଥଭ୍ରମଣ ଉଦ୍ଦେଶ୍ୟରେ ସେଠାରେ ଉପସ୍ଥିତ ହୁଅନ୍ତେ ସେଠାରେ ଥିବା ଋଷିମାନେ ସମସ୍ତେ ଆସନରୁ ଉଠି ଶ୍ରୀବଳଦେବଙ୍କୁ ସମ୍ଭାଷଣ କଲେ । କିନ୍ତୁ ରୋମହର୍ଷଣ ବ୍ୟାସାସନରେ ଥିବାରୁ ଶ୍ରୀବଳଦେବଙ୍କୁ ସମ୍ଭାଷଣ କଲେନାହିଁ । ତେଣୁ ଶ୍ରୀବଳଦେବଙ୍କ କୋପରୁ ହତ ହେଲେ । ଶ୍ରୀରାମଦାସ ନିତ୍ୟାନନ୍ଦ ଆବେଶରେ ଉପରୋକ୍ତ ଘଟଣାକୁ ଲକ୍ଷ୍ୟ କରି ଗୁଣାର୍ଣ୍ଣବମିଶ୍ରଙ୍କୁ ଦ୍ୱିତୀୟ ରୋମହର୍ଷଣ ବୋଲି କହିଥିଲେ । ୧୪୬ । ୧୪୮ ।

୧୫୦—ମୋର ଭ୍ରାତା——ଗ୍ରନ୍ଥକାରଙ୍କ ଭାଇ ।
ତାଁର——ମୀନକେତନ ରାମଦାସ ।
ହୈଲ ବାଦ——କଳହ ହେଲା ।
୧୫୧—ତାଁର——ଗ୍ରନ୍ଥକାରଙ୍କ ଭାଇଙ୍କର ।
ଆଭାସ——ନାମମାତ୍ର ।
୧୫୨—ଆମି——ଗ୍ରନ୍ଥକାର ।

ଏକେତେ ବିଶ୍ୱାସ, ଅନ୍ୟେ ନାକର ସମ୍ମାନ ।
ଅର୍ଦ୍ଧ କୁକ୍କୁଟୀ-ନ୍ୟାୟ ତୋମାର ପ୍ରମାଣ । ୧୨୪ ।
କିଂବା ଦୁଇ ନା ମାନିଞା ହଓ ତ ପାଷଣ୍ଡ ।
ଏକେ ମାନ ଆରେ ନା ମାନ—ଏଇ ମତ ଭଣ୍ଡ । ୧୨୫ ।

କ୍ରୁଦ୍ଧ ହୋଇ୍ଡା ବଂଶୀ ଭାଙ୍ଗି ଚଲେ ରାମଦାସ ।
ତତ୍କାଲେ ଆମାର ଭ୍ରା,ତାର ହୈଲ ସର୍ବନାଶ ।୧୨୬
...
ଏଇ ତ କହିଲ ତାଁର ସେବକ-ପ୍ରଭାବ ।
ଆର ଏକ କହି ତାଁର ଦୟାର ସ୍ୱଭାବ । ୧୨୭।

କୁକ୍କୁଟୀ । ସ୍ୟାତ୍ କୁକ୍କୁଟୋ ବାମ୍ରଚୂଡ଼ଃ । ୧୨୪ । ୧୨୭ । କ, ତ,

ଦୁଇଭାଇ——ଶ୍ରୀଚୈତନ୍ୟ, ଶ୍ରୀନିତ୍ୟାନନ୍ଦ ।
ଏକ ତନୁ———ଏକତତ୍ତ୍ୱ ।

ସମାନ ପ୍ରକାଶ ——ସ୍ୱୟଂ ରୂପରେ ପ୍ରକାଶ । ଅଂଶକଳାଦିରେ ନୁହେଁ ।

ଏହାର ଭାବ ଏହି ଯେ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଚୈତନ୍ୟ ଏବଂ ତାହାଙ୍କର ଅଭେଦାତ୍ମ-ବ୍ୟୂହ ଶ୍ରୀମନ୍ ନିତ୍ୟାନନ୍ଦ ତତ୍ତ୍ୱତଃ ଏକବସ୍ତୁ ହୋଇ ଲୀଳାରସକାରଣେ ବିଭିନ୍ନ ସ୍ୱରୂପ ପ୍ରକାଶ କରିଅଛନ୍ତି ! ନିତ୍ୟ ଲୀଳାରେ (ପ୍ରକଟଲୀଳାରେ) ସେହି ସ୍ୱରୂପଦ୍ୱୟଙ୍କୁ ପ୍ରକଟଲୀଳାରେ ପ୍ରକାଶ କରିଅଛନ୍ତି । ଏଠାରେ ଦୁହିଙ୍କ ମଧ୍ୟରୁ କେହି ସ୍ୱୟଂରୂପରେ ଏବଂ ଅପର ଅଂଶ କଳାଦିର ଅବତାରୀ ନୁହନ୍ତି । ଅତଏବ ଏକରେ ଅତ୍ୟନ୍ତ ବିଶ୍ୱାସ ଏବଂ ଅପରରେ ଅବିଶ୍ୱାସ ବା ବିଶ୍ୱାସାଭାସ ହେଲେ ସର୍ବନାଶ ହୁଏ । ୧୨୩ ।

ଉପରୋକ୍ତ ପ୍ରକାର ବିଶ୍ୱାସ ଓ ଅବିଶ୍ୱାସାଭାସ ଦୁହେଁ ଅଜ୍ଞାନତାପରିଚାୟକ; ଯେହେତୁ ତାହା ନ୍ୟାୟଶାସ୍ତ୍ରୋକ୍ତ ଅର୍ଦ୍ଧକୁକ୍କୁଟୀ ପ୍ରମାଣତୁଲ୍ୟ । ୧୨୪ ।

ଅର୍ଦ୍ଧକୁକ୍କୁଟୀ ନ୍ୟାୟ—ଜଣକର ଗୋଟିଏ କୁକ୍କୁଟୀ ଥିଲା । ସେ ପ୍ରତ୍ୟହ ଡିମ୍ବ ପ୍ରସବ କରେ, ଏବଂ ତଦ୍ୱାରା ତାହାର ଜୀବିକା ନିର୍ବାହ ହୁଏ । ଦିନେ ସେ ମାଂସଭୋଜନ ଲୋଭରେ ସ୍ଥିର କଲା ଯେ କୁକ୍କୁଟୀର ପଶ୍ଚାଦ୍ଭାଗରୁ ଡିମ୍ବ ପ୍ରସବ ହେଉଅଛି ବୋଲି ତଦ୍ୱାରା ଜୀବିକା ନିର୍ବାହ ହେଉଅଛି ! କିନ୍ତୁ ଏହାର ସମ୍ମୁଖଭାଗଦ୍ୱାରା ମୋର କିଛି ଉପକାର ହେଉନାହିଁ । ଅତଏବ ଏହାର ପଶ୍ଚାତ୍ ଅର୍ଦ୍ଧ ରଖି ଅନୁପକାରୀ ସମ୍ମୁଖ ଅର୍ଦ୍ଧ ଭୋଜନ କଲେ ଜୀବିକାର କୌଣସି କ୍ଷତି ହେବନାହିଁ ! ଏବଣି ମାଂସ ଭୋଜନର ସୁଖ ମିଳିବ ! ଏହା ସ୍ଥିର କରି ସମ୍ମୁଖ ଅର୍ଦ୍ଧ କାଟି ଭୋଜନ କଲା ଏବଂ ପଶ୍ଚାତ୍ ଅର୍ଦ୍ଧ ଯତ୍ନପୂର୍ବକ ରଖିଲା । କିନ୍ତୁ ଶେଷରେ ପଶ୍ଚାତ୍ ଅର୍ଦ୍ଧରୁ ଡିମ୍ବ ପ୍ରସୂତ ନ ହୋଇ ତାହା ପଚି ନଷ୍ଟ ହୋଇଗଲା । ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ କୁକ୍କୁଟ ଶବ୍ଦର ବାମ୍ରଚୂଡ଼ ଅର୍ଥ ବ୍ୟକ୍ତ କରିଅଛନ୍ତି । ୧୨୪ ।

ଶ୍ରୀ ନିତ୍ୟାନନ୍ଦ ଓ ଶ୍ରୀଚୈତନ୍ୟ ଏ ଦୁହିଙ୍କୁ ନ ମାନି ବରଂ ପାଷଣ୍ଡ ହେବା ଶ୍ରେୟସ୍କର, ତଥାପି ଏକକୁ ମାନି ଅନ୍ୟକୁ ନ ମାନିବା ଦ୍ୱାରା ଭଣ୍ଡ ହେବା ଭଲ ନୁହେଁ । ୧୨୫ ।

ପୂର୍ବୋକ୍ତ ପ୍ରସଙ୍ଗଦ୍ୱାରା ଗ୍ରନ୍ଥକାର ମହାଶୟ ଶ୍ରୀନିତ୍ୟାନନ୍ଦପ୍ରଭୁଙ୍କର ସେବକ ଶ୍ରୀରାମ-ଦାସଙ୍କର ମହିମା ବ୍ୟକ୍ତ କଲେ । ବର୍ତ୍ତମାନ ପ୍ରଭୁଙ୍କର ନିଜପ୍ରତି ଦୟାର ବିଷୟ କହୁଅଛନ୍ତି । ୧୨୭ ।

ସ୍ୱାଇକେ ଭତ୍ସିଁନୁ ମୂର୍ତ୍ତି, ଲକ୍ଷ୍ମୀ ଏଇ ଗୁଣ ।
ସେଇ ଗ୍ରନ୍ଥ ପ୍ରଭୁ ମୋତେ ଦିଲ ଦରଶନ । ୧୫୮
ନୈହାଟୀ-ନିକଟେ ଝାମଟପୁର-ନାମେ ଗ୍ରାମ ।
ତହିଁ ସ୍ୱପ୍ନେ ଦେଖା ଦିଲ ନିତ୍ୟାନନ୍ଦ ରାମ । ୧୫୯
ଦଣ୍ଡବତ ହୈୟା ଆମି ପଡ଼ିନୁ ପାୟେତେ ।
ନିଜ ପାଦପଦ୍ମ ପ୍ରଭୁ ଦିଲ ମୋର ମାଥେ । ୧୬୦ ।
'ଉଠ ଉଠ' ବଲି ମୋରେ ବୋଲେ ବାରବାର ।
ଉଠି ତାଁର ରୂପ ଦେଖି ହୈନୁ ଚମତ୍କାର । ୧୬୧
ଶ୍ୟାମ ଚିକ୍କଣ କାନ୍ତି—ପ୍ରକାଣ୍ଡ ଶରୀର ।
ସାକ୍ଷାତ୍ କନ୍ଦର୍ପ ଯୈଛେ ମହାମଲ୍ଲ ବୀର । ୧୬୨
ସୁବଳିତ ହସ୍ତ-ପଦ, କମଲନୟାନ ।
ପଟ୍ଟବସ୍ତ୍ର ଶିରେ ପଟ୍ଟବସ୍ତ୍ର ପରିଧାନ । ୧୬୩ ।
ସୁବର୍ଣ୍ଣକୁଣ୍ଡଲ କର୍ଣ୍ଣେ, ସ୍ୱର୍ଣ୍ଣାଙ୍ଗଦ ବାଲା ।
ପାୟେତେ ନୂପୁର ବାଜେ କଣ୍ଠେ ପୁଷ୍ପମାଲା । ୧୬୪
ଚନ୍ଦନ-ଲେପିତ ଅଙ୍ଗ, ତିଲକ ସୁଠାମ ।
ମତ୍ତଗଜ ଜିନି ମଦ-ମନ୍ଥର ପୟାଣ । ୧୬୫ ।
କୋଟିଚନ୍ଦ୍ର ଜିନି ମୁଖ, ଉଜ୍ଜ୍ୱଲ ବରଣ ।
ଦାଡ଼ିମ୍ବବୀଜ-ସମ ଦନ୍ତ ତାମ୍ବୂଲ ଚର୍ବଣ । ୧୬୬ ।
ପ୍ରେମେ ମତ୍ତ ଅଙ୍ଗ ଡାହିନେ-ବାମେ ଦୋଲେ ।
'କୃଷ୍ଣକୃଷ୍ଣ' ବଲିୟା ଗମ୍ଭୀର ବୋଲ ବଲେ । ୧୬୭
ରାଙ୍ଗା ଯଷ୍ଟି ହସ୍ତେ, ଦୋଲେ ଯେନ ମତ୍ତସିଂହ
ଚାରିପାଶେ ବେଢ଼ି ଆଛେ ଚରଣେତେ

ଭୃଙ୍ଗ । ୧୬୮ ।
ପାରିଷଦଗଣେ ଦେଖି ସବ ଗୋପ ବେଶ ।
'କୃଷ୍ଣକୃଷ୍ଣ' କହେ ସଭେ ସପ୍ରେମ ଆବେଶ । ୧୬୯
ଶିଙ୍ଗା ବଂଶୀ ବାଜାୟ କେହୋ, କେହୋ

ନାଚେ ଗାୟ ।
ସେବକ ଯୋଗାୟ ତାମ୍ବୂଲ-ଚାମର ଢୁଲାୟ । ୧୭୦
ନିତ୍ୟାନନ୍ଦ ସ୍ୱରୂପେର ଦେଖିୟା ବୈଭବ ।
କିବା ରୂପ ଗୁଣ ଲୀଲା-ଅଲୌକିକ ସବ । ୧୭୧ ।
ଆନନ୍ଦେ ବିହ୍ୱଲ ଆମି କିଛୁଇ ନା ଜାନି ।
ତବେ ହାସି ପ୍ରଭୁ ମୋରେ କହିଲେନ ବାଣୀ । ୧୭୨
ଅରେ ଅରେ କୃଷ୍ଣଦାସ ! ନା କର ତ ଭୟ ।
ବୃନ୍ଦାବନେ ଯାହ, ତାଁହା ସର୍ବ ଲଭ୍ୟ ହୟ । ୧୭୩
ଏତ ବଲି ପ୍ରେରିଲା ମୋରେ ହାଥସାନି ଦିୟା ।
ଅନ୍ତର୍ଦ୍ଧାନ କୈଲ ପ୍ରଭୁ ନିଜ-ଗଣ ଲୈୟା । ୧୭୪ ।

---

ରୂପଂ ବର୍ଣ୍ଣୟତି "ଶ୍ୟାମଳ" ଇତି । ଗ୍ରନ୍ଥକୃତ୍ ଗୁରୁତ୍ୱେନ ସ୍ୱସ୍ୟ ଶ୍ରୀକୃଷ୍ଣାଭିନ୍ନରୂପେଣ ଶ୍ୟାମଳତ୍ୱଂ ଦର୍ଶିତଂ । ୧୬୨—୧୭୯ । ଚ, ତି,

---

ଗ୍ରନ୍ଥକାର କହୁଅଛନ୍ତି, ମୁଁ ଉପରୋକ୍ତ ପ୍ରକାରରେ ମୋର ଭ୍ରାତାକୁ ତିରସ୍କାର କରି-ବାରୁ ତାହା ମୋପ୍ରତି ଶ୍ରୀ ନିତ୍ୟାନନ୍ଦ ପ୍ରଭୁଙ୍କର କରୁଣାର କାରଣ ହେଲା । ତେଣୁ ସେ ରାତ୍ରରେ ସ୍ୱପ୍ନଦ୍ୱାରା ମୋତେ ଦର୍ଶନ ଦାନ କରି କୃପାକଲେ । ୧୫୮ ।

ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର ପ୍ରକୃତ କାନ୍ତି ରକ୍ତମିଶ୍ର ଗୌର । ତେବେ ଗ୍ରନ୍ଥକାର ମହାଶୟ ତାଙ୍କୁ ଚିକ୍କଣ ଶ୍ୟାମ ରୂପରେ ଦର୍ଶନ କରିବାର କାରଣ ଏହି ଯେ ସେ ଗ୍ରନ୍ଥକାରଙ୍କର ଗୁରୁ ହେତୁରୁ ଗୁରୁ କୃଷ୍ଣ ଅଭିନ୍ନ, ଏହା ଦେଖାଇବାସକାଶ ନିତ୍ୟାନନ୍ଦପ୍ରଭୁ ତାଙ୍କୁ ଶ୍ୟାମବର୍ଣ୍ଣରେ ଦର୍ଶନ ଦେଇଥିଲେ । ଗ୍ରନ୍ଥକାରଙ୍କର ଗୁରୁ କୃଷ୍ଣ ଏକତ୍ୱ ଭାବନାନୁରୂପ ଶ୍ରୀରୂପର ସେ ଦର୍ଶନ ପାଇଲେ । ୧୬୨ ।

ଅରୁ ଅରୁ-ଆହେ । ସର୍ବଲଭ୍ୟହୟ-ସର୍ବଲାଭ ହେବ । ୧୭୩ ।

ହାତ ସାନି ଦିୟା—ଦେହରେ ହାତ ଦେଇ ଆଶ୍ୱାସପୂର୍ବକ ଅର୍ଥାତ୍ କେହି ଗୁରୁଜନ ଅଧୀନସ୍ଥଙ୍କୁ କୌଣସି କାର୍ଯ୍ୟରେ ପ୍ରେରଣ କଲେ ସ୍ନେହରେ ପିଠିରେ ହାତ ଦେଇ ଯେପରି କହନ୍ତି ସେହିପରି । ୧୭୪ ।

ମୂର୍ଚ୍ଛିତ ହଞା ମୁଞି ପଡ଼ିନୁ ଭୂମିତେ ।
ସ୍ୱପ୍ନଭଙ୍ଗ ହୈଲ ଦେଖି ହଞାଛେ ପ୍ରଭାତେ । ୧୭୫ ।
କି ଦେଖିନୁ କି ଶୁନିନୁ—କରିୟେ ବିଚାର ।
ପ୍ରଭୁ-ଆଜ୍ଞା ହୈଲ ବୃନ୍ଦାବନ ଯାଇବାର । ୧୭୬ ।
ସେଇକ୍ଷଣେ ବୃନ୍ଦାବନେ କରିନୁ ଗମନ ।
ପ୍ରଭୁର କୃପାତେ ସୁଖେ ଆଇନୁ ବୃନ୍ଦାବନ । ୧୭୭ ।
ଜୟ ଜୟ ନିତ୍ୟାନନ୍ଦ ନିତ୍ୟାନନ୍ଦ ରାମ ।
ଯାହାର କୃପାତେ ପାଇନୁ ବୃନ୍ଦାବନଧାମ । ୧୭୮ ।
ଜୟ ଜୟ ନିତ୍ୟାନନ୍ଦ ଜୟ କୃପାମୟ ।
ଯାଁହା ହୈତେ ପାଇନୁ ରୂପ-ସନାତନାଶ୍ରୟ । ୧୭୯ ।
ଯାଁହା ହୈତେ ପାଇନୁ ରଘୁନାଥମହାଶୟ ।
ଯାଁହା ହୈତେ ପାଇନୁ ଶ୍ରୀସ୍ୱରୂପ-ଆଶ୍ରୟ । ୧୮୦ ।
ସନାତନ-କୃପାୟ ପାଇନୁ ଭକ୍ତିର ସିଦ୍ଧାନ୍ତ ।
ଶ୍ରୀରୂପ-କୃପାୟ ପାଇନୁ ଭକ୍ତିରସ-ପ୍ରାନ୍ତ । ୧୮୧ ।
ଜୟ ଜୟ ନିତ୍ୟାନନ୍ଦ-ଚରଣାରବିନ୍ଦ ।
ଯାଁହା ହୈତେ ପାଇଲମ ଶ୍ରୀରାଧାଗୋବିନ୍ଦ । ୧୮୨ ।
ଜଗାଇ-ମାଧାଇ ହୈତେ ମୁଞି ସେ ପାପିଷ୍ଠ ।
ପୁରୀଷେର କୀଟ ହୈତେ ମୁଞି ସେ ଲଘିଷ୍ଠ । ୧୮୩ ।
ମୋର ନାମ ଶୁନେ ଯେଇ, ତାର ପୁଣ୍ୟ କ୍ଷୟ ।
ମୋର ନାମ ଲୟ ଯେଇ, ତାର ପାପ ହୟ । ୧୮୪ ।
ଏମନ ନିର୍ଘୃଣ ମୋରେ କେବା କୃପା କରେ ।
ଏକ ନିତ୍ୟାନନ୍ଦ ବିନୁ ଜଗତ-ଭିତରେ ? । ୧୮୫ ।
ପ୍ରେମେ ମତ୍ତ ନିତ୍ୟାନନ୍ଦ କୃପା-ଅବତାର ।
ଉତ୍ତମ-ଅଧମ କିଛୁ ନା କରେ ବିଚାର । ୧୮୬ ।
ଯେ ଆଗେ ପଡ଼ୟେ, ତାରେ କରୟେ ନିସ୍ତାର ।
ଅତଏବ ନିସ୍ତାରିଲା ମୋ-ହେନ ଦୁରାଚାର । ୧୮୭ ।
ମୋ-ପାପିଷ୍ଠେ ଆନିଲେନ ଶ୍ରୀବୃନ୍ଦାବନ ।
ମୋ-ହେନ ଅଧମେ ଦିଲା ଶ୍ରୀରୂପଚରଣ । ୧୮୮ ।
ଶ୍ରୀମଦନଗୋପାଳ-ଶ୍ରୀଗୋବିନ୍ଦ-ଦରଶନ ।
କହିବାର ଯୋଗ୍ୟ ନହେ ଏ ସବ କଥନ । ୧୮୯ ।

ନିତ୍ୟାନନ୍ଦମୟ ଶ୍ରୀ ନିତ୍ୟାନନ୍ଦ ବଳରାମଙ୍କର ଜୟ ହେଉ । ୧୭୮ ।

ରଘୁନାଥ—ଶ୍ରୀ ରଘୁନାଥଦାସ ଗୋସ୍ୱାମୀ ।

ଯେଉଁ ନିତ୍ୟାନନ୍ଦ ପ୍ରଭୁଙ୍କର କୃପାରୁ ମୁଁ ( ଗ୍ରନ୍ଥକାର ) ଶ୍ରୀ ରଘୁନାଥଦାସ ଗୋସ୍ୱାମୀଙ୍କ ସେବା ଏବଂ ତାଙ୍କ କୃପାରୁ ତାଙ୍କ ଲକ୍ଷ୍ୟ ଶ୍ରୀ ସ୍ୱରୂପଦାମୋଦରଙ୍କ ଦର୍ଶନ ଓ ତାଙ୍କ ପ୍ରଭାବ ଶିକ୍ଷାଲାଭ କଲି । ଅର୍ଥାତ୍ ଗ୍ରନ୍ଥକାର ଶ୍ରୀରଘୁନାଥ ଦାସଙ୍କୁ ଶିକ୍ଷାଗୁରୁ କରି ଶ୍ରୀ ସ୍ୱରୂପ ଦାମୋଦରଙ୍କର ଗଣ ହେଲେ । ୧୮୦ ।

ଶ୍ରୀସନାତନଙ୍କ ଅନୁଗ୍ରହରୁ ଭକ୍ତିର ତତ୍ତ୍ୱଜ୍ଞାନ ଏବଂ ଶ୍ରୀରୂପଗୋସ୍ୱାମୀଙ୍କ ଅନୁଗ୍ରହରୁ ଭକ୍ତିର ରସଜ୍ଞାନ ଲାଭ କଲି । ୧୮୧ ।

ପୁରୀଷ—ବିଷ୍ଠା ।

ଲଘିଷ୍ଠ-କ୍ଷୁଦ୍ର । ଅର୍ଥାତ୍ ବିଷ୍ଠାର କୀଟଠାରୁ ଅଧମ । ୧୮୩ ।

ଗ୍ରନ୍ଥକାର କହୁଅଛନ୍ତି ମୁଁ ପୁରୀଷକୀଟ ଅପେକ୍ଷା ଅଧମ ହେତୁ ଅତି ଘୃଣ୍ୟ; ଏଣୁ ମୋତେ ସମସ୍ତେ ଘୃଣା କରନ୍ତି । କିନ୍ତୁ ଏ ଜଗତ ମଧ୍ୟରେ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କ ବ୍ୟତୀତ ଅପର କେହି ଏପରି ଘୃଣାଶୂନ୍ୟ (ନିର୍ଘୃଣ) ନାହାନ୍ତି । ଯେ କି ମତ୍ତୁଲ୍ୟ ଘୃଣିତ ଜୀବକୁ କୃପା କରିପାରନ୍ତି । ୧୮୫ ।

ଶ୍ରୀନିତ୍ୟାନନ୍ଦ ପ୍ରଭୁ ନିର୍ଘୃଣ ହେବାରୁ ଉତ୍ତମ, ଅଧମ ବିଚାର ତାଙ୍କଠାରେ ଥାଏ ନା । ୧୮୬ ।

ଅତଏବ ନିତ୍ୟାନନ୍ଦ ପ୍ରଭୁଙ୍କର ଯେ ସମ୍ମୁଖରେ ପଡ଼େ ସେ ଯେତେ ଘୃଣିତ ଜୀବ ହେଉନା କାହିଁକି, ସେ ତତ୍କ୍ଷଣାତ୍ ତାକୁ କୃପାଦାନ କରି ଉଦ୍ଧାର କରନ୍ତି । ଏଣୁପରି ମୁଁ ତାହାଙ୍କର କୃପାଲାଭ କରିଅଛି । ୧୮୭ ।

ବୃନ୍ଦାବନପୁରନ୍ଦର ମଦନଗୋପାଳ ।
ରାସବିଳାସୀ ସାକ୍ଷାତ୍ ବ୍ରଜେନ୍ଦ୍ର କୁମାର । ୧୯୦ ।
ଶ୍ରୀରାଧା-ଲଳିତା-ସଙ୍ଗେ ରାସବିଳାସ ।
ମନ୍ମଥମନ୍ମଥ-ରୂପେ ଯାହାର ପ୍ରକାଶ । ୧୯୧ ।
ତଥାହି ( ଭାଃ ୧୦।୩୨।୨ )—
ତାସାମାବିରଭୂଚ୍ଛୌରିଃ ସ୍ମୟମାନମୁଖାମ୍ବୁଜଃ ।
ପୀତାମ୍ବରଧରଃ ସ୍ରଗ୍ବୀ ସାକ୍ଷାନ୍ମନ୍ମଥମନ୍ମଥଃ । ୨୩
ସ୍ୱମାଧୁର୍ଯ୍ୟେ ଲୋକେର ମନ କରେ ଆକର୍ଷଣ ।
ଦୁଇପାଶେ ରାଧା-ଲଲିତା କରେନ ସେବନ ।୧୯୨
ନିତ୍ୟାନନ୍ଦଦୟା ମୋରେ ତାଁରେ ଦେଖାଇଲ ।
ଶ୍ରୀରାଧା-ମଦନମୋହନେ 'ପ୍ରଭୁ' କରି ଦିଲ । ୧୯୩
ମୋ-ଅଧମେ ଦିଲ ଶ୍ରୀଗୋବିନ୍ଦ-ଦରଶନ ।
କହିବାର କଥା ନହେ—ଅକଥ୍ୟ କଥନ । ୧୯୪
ବୃନ୍ଦାବନେ ଯୋଗ ପୀଠ କଳ୍ପତରୁବନେ ।
ରତ୍ନମଣ୍ଡପ ତାହେ ରତ୍ନସିଂହାସନେ । ୧୯୫ ।
ଶ୍ରୀଗୋବିନ୍ଦ ବସି ଆଛେନ ବ୍ରଜେନ୍ଦ୍ରନନ୍ଦନ ।
ମାଧୁର୍ଯ୍ୟ ପ୍ରକାଶି କରେନ ଜଗତ-ମୋହନ । ୧୯୬
ବାମପାର୍ଶ୍ୱେ ଶ୍ରୀରାଧିକା ସଖୀଗଣ-ସଙ୍ଗେ ।
ରାସାଦିକ ଲୀଳ ପ୍ରଭୁ କରେ କତ ରଙ୍ଗେ । ୧୯୭
ଯାଁର ଧ୍ୟାନ ନିଜ-ଲୋକେ କରେ ପଦ୍ମାସନ ।

ଉକ୍ତଂ ଶ୍ରୀମଦନଗୋପାଳଂ ବର୍ଣ୍ଣୟତି " ବୃନ୍ଦାବନ " ଇତ୍ୟାଦି । ପ୍ରତିମୂର୍ତ୍ତିତ୍ୱେଽପି ସାକ୍ଷାଦ୍ ବ୍ରଜେନ୍ଦ୍ରକୁମାରତ୍ୱେନ ତସ୍ୟ ରାସବିଳାସିତ୍ୱଂ । ୧୯୦ । ଚ, ଚ,

ତାସାଂ (ରୁଦନ୍ତୀନାଂ ଗୋପୀନାଂ ମଧ୍ୟେ) ସ୍ମୟମାନ ମୁଖାମ୍ବୁଜଃ(ସ୍ମୟମାନଂ ମନ୍ଦହାସ୍ୟଯୁକ୍ତଂ ମୁଖାମ୍ବୁଜଂ ଯସ୍ୟ ସଃ) ପୀତାମ୍ବରଧରଃ, ସ୍ରଗ୍ବୀ (ମାଳା-ଧାରୀ) ସାକ୍ଷାନ୍ମନ୍ମଥମନ୍ମଥଃ (ଜଗନ୍ମୋହନସ୍ୟାପି କାମସ୍ୟ ମନସ୍ୟୁଦ୍ଭୂତଃ କାମଃ , ସାକ୍ଷାତ୍ ତସ୍ୟାପି ମୋହକଃ) ଶୌରିଃ (ଶ୍ରୀକୃଷ୍ଣଃ) ଆବିର୍ଭୂତଃ [୨୩ଟ ଶ୍ଳୋକ ]

" ଶ୍ରୀମଦନ ଗୋପାଳ" ଇତ୍ୟନେନୋକ୍ତଂ ଶ୍ରୀମଦନଗୋପାଳଂ ବର୍ଣ୍ଣୟିତ୍ୱା ତଦୁକ୍ତଂ ଶ୍ରୀଗୋବିନ୍ଦଂ ବର୍ଣ୍ଣୟିତୁମାହ " ମୋ ଅଧମେ " ଇତି । ୧୯୪ ।

ଦିଲ ଶ୍ରୀରୂପ ଚରଣ—ଶ୍ରୀରୂପ ଗୋସ୍ୱାମିଙ୍କୁ ଶିକ୍ଷାଗୁରୁ କରାଇଦେଲେ । ଗ୍ରନ୍ଥକାର ମହାତ୍ମାଙ୍କର ଛଅ ଗୋସ୍ୱାମିଗଣ (ଶ୍ରୀସନାତନ, ରୂପ, ଗୋପାଳ ଭଟ୍ଟ, ରଘୁନାଥ ଭଟ୍ଟ, ରଘୁନାଥ ଦାସ ଗୋସ୍ୱାମି ଓ ଜୀବ ଗୋସ୍ୱାମୀ) ଶିକ୍ଷାଗୁରୁ ଏ କଥା ସେ ପ୍ରକାଶ କରିଅଛନ୍ତି । ହେଲେହେଁ ଶ୍ରୀରୂପ ଗୋସ୍ୱାମୀ ଓ ଶ୍ରୀରଘୁନାଥ ଦାସ ଗୋସ୍ୱାମୀ ଏ ଦୁଇଜଣ ତାଙ୍କର ବିଶିଷ୍ଟ ଶିକ୍ଷାଗୁରୁ । ଏଣୁ ଗ୍ରନ୍ଥକାର ପ୍ରତିପରିଚ୍ଛେଦର ଶେଷରେ ଏ ଦୁହିଙ୍କ ଚରଣ ବନ୍ଦନ କରିଅଛନ୍ତି । ୧୮୮ ।

ମଦନ ଗୋପାଳ—ଶ୍ରୀମଦନମୋହନ । ୧୮୯ ।

ବୃନ୍ଦାବନଇନ୍ଦ୍ର ଶ୍ରୀମଦନମୋହନ ପ୍ରାକୃତଚକ୍ଷୁରେ ମୌନଗୁଣାବଲମ୍ବୀ ପ୍ରତିମାବତ୍ ପ୍ରତୀୟମାନ ହେଲେହେଁ, ସେ ସ୍ୱୟଂ ରାସବିଳାସୀ ଶ୍ରୀନନ୍ଦନନ୍ଦନ । ୧୯୦ ।

ଯେ ପ୍ରାକୃତ ମନ୍ମଥର କାମପ୍ରଦ ସେ ଅପ୍ରାକୃତ ମନ୍ମଥ ତାହାଙ୍କର ମନ୍ମଥତ୍ୱ ପ୍ରକାଶକରୂପରେ ଉଭୟପାର୍ଶ୍ୱରୁ ଶ୍ରୀରାଧା ଓ ଲଳିତାଙ୍କ ସଙ୍ଗେ ନିତ୍ୟ ରାସବିଳାସ କରୁଅଛନ୍ତି । ୧୯୧ ।

ସେହି ରୋଦନପରାୟଣା ଗୋପୀମାନଙ୍କ ମଧ୍ୟରେ ସହାସ୍ୟବଦନ ପୀତାମ୍ବରଧାରୀ ପୁଷ୍ପମାଳାଳଙ୍କୃତ ସାକ୍ଷାତ୍ ଅପ୍ରାକୃତ ମଦନର ମୋହକରୂପରେ ଶ୍ରୀକୃଷ୍ଣ ଆବିର୍ଭୂତ ହେଲେ, (ଏହା ଶ୍ରୀଗୋପୀଗୀତାରେ ଶ୍ରୀକୃଷ୍ଣଙ୍କର ପୁନର୍ମିଳନସମୟର ବୃତ୍ତାନ୍ତ) ୨୩ ଶ୍ଳୋକାର୍ଥ ।

କରେନ ସେବନ— ମଦନମୋହନଙ୍କୁ ସେବା କରନ୍ତି । ୧୯୨ ।

ଶ୍ରୀନିତ୍ୟାନନ୍ଦପ୍ରଭୁଙ୍କ କୃପାବଳରୁ ମୁଁ (ଗ୍ରନ୍ଥକାର) ଶ୍ରୀରାଧାମଦନମୋହନ ଜିଉଙ୍କର ଦର୍ଶନ ପାଇଲି ଏବଂ ତାଙ୍କ ଶ୍ରୀଚରଣର ଆଶ୍ରୟ ପାଇଲି । ୧୯୩ ।

ସେହି ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କ ଦୟାରୁ ଶ୍ରୀରାଧାଗୋବିନ୍ଦଜିଉଙ୍କର ଦର୍ଶନ ପାଇଲି । ୧୯୪ ।

ରାସାଦିକ—ରାସ, ଝୁଲଣ ଓ ଦୋଳ ଇତ୍ୟାଦି । ୧୯୭ ।

ଅଷ୍ଟାଦଶାକ୍ଷର-ମନ୍ତ୍ରେ କରେ ଉପାସନ । ୧୯୮ ।
ଚୌଦ୍ଦଭୁବନେ ଯାଁର ସତେ କରେ ଧ୍ୟାନ ।
ବୈକୁଣ୍ଠାଦିପୁରେ ଯାଁର ଲୀଳାଗୁଣ ଗାନ । ୧୯୯ ।
ଯାଁର ମାଧୁରୀତେ କରେ ଲକ୍ଷ୍ମୀ-ଆକର୍ଷଣ ।
ରୂପଗୋସାଞି କରିଯାଛେନ ସେ ରୂପ-ବର୍ଣ୍ଣନ । ୨୦୦
ତଥାହି ଭକ୍ତିରସାମୃତସିନ୍ଧୌ, ପୂର୍ବବିଭାଗେ,

୨ୟ-ଲହର୍ଯ୍ୟାମ୍ ( ୧୧୧ )—
ସ୍ମେରାଂ ଭଙ୍ଗୀତ୍ରୟପରିଚିତାଂ ସାଚିବିସ୍ତୀର୍ଣ୍ଣଦୃଷ୍ଟିଂ,
ବଂଶୀନ୍ୟସ୍ତାଧରକିଶଲୟାମୁଜ୍ଜ୍ୱଳାଂ ଚନ୍ଦ୍ରକେଣ ।
ଗୋବିନ୍ଦାଖ୍ୟାଂ ହରିତନୁମିତଃ କେଶୀତୀର୍ଥୋପକଣ୍ଠେ,
ମା ପ୍ରେକ୍ଷିଷ୍ଠାସ୍ତବ ଯଦି ସଖେ ବନ୍ଧୁସଙ୍ଗେଽସ୍ତି
ରଙ୍ଗଃ । ୨୪ ।*

ତମେବ ବର୍ଣ୍ଣୟତି "ବୃନ୍ଦାବନେ" ଇତ୍ୟାଦି । ୧୯୮ । ସ୍ୱ, ଚ,

( ହେ ) ସଖେ ! ଯଦି ତବ ବନ୍ଧୁସଙ୍ଗେ ( ବନ୍ଧୂନାଂ ସ୍ତ୍ରୀ ପୁତ୍ରାଦୀନାଂ ସଙ୍ଗେ ) ରଙ୍ଗଃ (କୌତୂହଳଂ ) ଅସ୍ତି ( ବିଦ୍ୟତେ, ତଦା ) ଇତଃ ( ଅସ୍ମିନ୍ ) କେଶୀତୀର୍ଥୋପକଣ୍ଠେ (କେଶୀ-ତୀର୍ଥସ୍ୟ ସମୀପେ ) ସ୍ମେରାଂ ( ସ୍ମିତଯୁକ୍ତାଂ ) ଭଙ୍ଗୀତ୍ରୟପରିଚିତାଂ ( ଗ୍ରୀବାକଟିଜାନୁଷୁ ଭଙ୍ଗୀତ୍ରୟେଣ ଯୁକ୍ତାଂ ) ସାଚିବିସ୍ତୀର୍ଣ୍ଣଦୃଷ୍ଟିଂ ( ବକ୍ରପ୍ରଶସ୍ତାବଲୋକନାଂ ) ବଂଶୀନ୍ୟସ୍ତାଧରକିଶଲୟାଂ ( ବଂଶ୍ୟାଂ ନ୍ୟସ୍ତମ୍ ଅଧର ଏବ କିଶଲୟଃ ଯସ୍ୟା ତାମ୍ ) ଚନ୍ଦ୍ରକେଣ ( ମୟୂରପିଚ୍ଛେନ ) ଉଜ୍ଜ୍ୱଳାଂ ଗୋବିନ୍ଦାଖ୍ୟାଂ ହରିତନୁଂ ( ନନ୍ଦନନ୍ଦନବିଗ୍ରହଂ ) ମା ପ୍ରେକ୍ଷିଷ୍ଠାଃ ( ଅବଲୋକୟ ଇତି ନିଷେଧବ୍ୟାଜେନ ଅବଶ୍ୟକ-ବିଧିରୟମ୍ ) ତଦେତନ୍ମାଧୁର୍ଯ୍ୟେଽନୁଭୂୟମାନେ ସ୍ୱୟମେବ ସର୍ବମେବ ତୁଚ୍ଛଂ ମଂସ୍ୟସେ ତସ୍ମାତ୍ ଏନାମେବ ପଶ୍ୟେତ୍ୟଭିପ୍ରାୟଃ ) । ୨୪ଶ ଶ୍ଲୋକଃ ।

ଶ୍ରୀଗୋବିନ୍ଦଙ୍କର ସାକ୍ଷାତ୍ ଦର୍ଶନର ଦୁର୍ଲ୍ଲଭତ୍ୱ ଜଣାଉଅଛନ୍ତି । ୧୯୮ ।

ପଦ୍ମାସନ ବ୍ରହ୍ମା ନିଜଲୋକରେ ( ବ୍ରହ୍ମଲୋକରେ ) ଯାର ) ଯେଉଁ ଶ୍ରୀ ଗୋବିନ୍ଦଙ୍କର ) ଧ୍ୟାନ ଏବଂ ଅଷ୍ଟାଦଶାକ୍ଷର ମନ୍ତ୍ରରେ ( ମନ୍ତ୍ରରାଜ ଶ୍ରୀଗୋପାଳ ମନ୍ତ୍ରରେ ) ଉପାସନା କରନ୍ତି । କିନ୍ତୁ ସାକ୍ଷାତ୍ ଦର୍ଶନ ପାଆନ୍ତି ନାହିଁ । ଚତୁର୍ଦ୍ଦଶଭୁବନର ଲୋକମାନେ ମଧ୍ୟ ଯେଉଁ ଗୋବିନ୍ଦଙ୍କର ଧ୍ୟାନ କରନ୍ତି ଏବଂ ବୈକୁଣ୍ଠ ଆଦି ଅପ୍ରାକୃତ ଧାମମାନଙ୍କରେ ତଲ୍ଲୋକବାସିମାନେ ଯେଉଁ ଗୋବିନ୍ଦଙ୍କର ଗୁଣ କୀର୍ତ୍ତନ କରନ୍ତି; ଏହାର ଭାବ ଏହି ଯେ ବୈକୁଣ୍ଠବାସିମାନେ ବୈକୁଣ୍ଠନାଥ ଶ୍ରୀମନ୍ ନାରାୟଣଙ୍କର ନିକଟରେ ରହି ମଧ୍ୟ ଶ୍ରୀରାଧାଗୋବିନ୍ଦଙ୍କ ଲୀଳାଗୁଣ କୀର୍ତ୍ତନ କରନ୍ତି । ଏତଦ୍ଦ୍ୱାରା ଶ୍ରୀନାରାୟଣଙ୍କ ଅପେକ୍ଷା ଶ୍ରୀଗୋବିନ୍ଦଙ୍କର ଗୁଣର ଆଧିକ୍ୟ ପ୍ରକାଶ ହେଉଅଛି । ୧୯୯ ।

ଶ୍ରୀଗୋବିନ୍ଦଙ୍କର ମାଧୁର୍ଯ୍ୟର ବିଶେଷତ୍ୱ ଦେଖାଉଅଛନ୍ତି । ଯାର ( ଶ୍ରୀ ଗୋବିନ୍ଦଙ୍କର ) ମାଧୁର୍ଯ୍ୟରେ ବୈକୁଣ୍ଠନାଥ ଶ୍ରୀମନ୍ ନାରାୟଣଙ୍କର ବକ୍ଷସ୍ଥିତା ପ୍ରିୟତମା ଲକ୍ଷ୍ମୀଦେବୀ ମଧ୍ୟ ଆକୃଷ୍ଟ ହୁଅନ୍ତି । କିନ୍ତୁ ସାକ୍ଷାତ୍ ସଙ୍ଗଲାଭ କରିପାରନ୍ତି ନାହିଁ ।

ଏହି ପ୍ରକାର ଶ୍ରୀଗୋବିନ୍ଦଦେବଙ୍କର ଦୁର୍ଲ୍ଲଭ ସାକ୍ଷାତ୍ ଦର୍ଶନ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କ କୃପାରୁ ମୁଁ ( ଗ୍ରନ୍ଥକାର ) ପାଇଲି । ଏହି କଥା ଗ୍ରନ୍ଥକାର ୧୯୪ ପୟାରରେ ଅକୃଥ୍ୟକଥନ ପଦଦ୍ୱାରା ପ୍ରକାଶ କରିଅଛନ୍ତି । ୨୦୦ ।

ହେ ସଖେ ! ଯଦି ତୁମ୍ଭର ସ୍ତ୍ରୀ ପୁତ୍ରାଦି ବନ୍ଧୁମାନଙ୍କ ସହିତ ସହବାସ କରିବାର ଅଭିଳାଷ ଥାଏ ତେବେ ତୁମ୍ଭେ ଶ୍ରୀବୃନ୍ଦାବନସ୍ଥ କେଶୀଘାଟ-ସନ୍ନିକଟସ୍ଥ ବିରାଜିତ ଶ୍ରୀଗୋବିନ୍ଦନାମା ନନ୍ଦନନ୍ଦନ ଶ୍ରୀକୃଷ୍ଣମୂର୍ତ୍ତି ଯେ କି ଈଷତ୍ ହାସ୍ୟଯୁକ୍ତ, ତ୍ରିଭଙ୍ଗଭଙ୍ଗିମ ବଙ୍କିମ ବିଶାଳ ନୟନଯୁକ୍ତ, ବଂଶୀଯୁକ୍ତାଧର-କିଶଳୟ, ମୟୂରପୁଚ୍ଛପରିଶୋଭିତ ଚୂଡ଼ା ତାହାଙ୍କୁ ଦର୍ଶନ କରନାହିଁ । ଅର୍ଥାତ୍ ଏଠାରେ ନିଷେଧ-ଛଳରେ ଦର୍ଶନର ଆବଶ୍ୟକ ବିଧି ପ୍ରଦାନ କରୁଅଛନ୍ତି । କାରଣ ଏହି କି ଶ୍ରୀନନ୍ଦନନ୍ଦନଙ୍କର ମାଧୁର୍ଯ୍ୟ ଅନୁଭବ ହେଲେ ଜଗତର ସ୍ତ୍ରୀବର୍ଗାଦି ବିଷୟ ସମ୍ବନ୍ଧ ତୁଚ୍ଛ ହୋଇଯିବ । ୨୪ଶ ଶ୍ଲୋକାର୍ଥ ।

ସାକ୍ଷାତ ବ୍ରଜେନ୍ଦ୍ର-ସୁତ ଇଥେ ନାହି ଆନ ।
ଯେବା ଅଜ୍ଞ କରେ ତାଁରେ ପ୍ରତିମାଦି-ଜ୍ଞାନ । ୨୦୧
ସେଇ ଅପରାଧେ ତାର ନାହିକ ନିସ୍ତାର ।
ଘୋର ନରକେତେ ପଡ଼େ କି ବଳିବ ଆର । ୨୦୨ ।
ହେନ ଯେ ଗୋବିନ୍ଦପ୍ରଭୁ ପାଇନୁ ଯାଁହା ହୈତେ ।
ତାଁହାର ଚରଣକୃପା କେ ପାରେ ବର୍ଣ୍ଣିତେ । ୨୦୩ ।
ବୃନ୍ଦାବନେ ବୈସେ ଯତ ବୈଷ୍ଣବ-ମଣ୍ଡଳ ।
କୃଷ୍ଣନାମପରାୟଣ ପରମମଙ୍ଗଳ । ୨୦୪ ।
ଯାର ପ୍ରାଣଧନ ନିତ୍ୟାନନ୍ଦ-ଶ୍ରୀଚୈତନ୍ୟ ।
ରାଧାକୃଷ୍ଣଭକ୍ତି ବିନେ ନାହି ଜାନେ ଅନ୍ୟ । ୨୦୫ ।
ସେ ବୈଷ୍ଣବେର ପଦରେଣୁ, ତାର ପଦ-ଛାୟା ।
ମୋ-ଅଧମେ ଦିଲ ନିତ୍ୟାନନ୍ଦ କରି ଦୟା । ୨୦୬ ।

'ତାହାଁ ସର୍ବ ଲଭ୍ୟ ହୟ', ପ୍ରଭୁର ବଚନ ।
ସେ-ଇ ସୂତ୍ର, ଏଇ ତାଁର କୈଲ ବିବରଣ । ୨୦୭ ।
ସେ ସବ ପାଇନୁ ଆମି ବୃନ୍ଦାବନେ ଆୟ ।
ସେଇ ସବ ଲଭ୍ୟ—ଏଇ ପ୍ରଭୁର ଅଭିପ୍ରାୟ । ୨୦୮
ଆପନାର କଥା ଲିଖି ନିର୍ଲଜ୍ଜ ହଇୟା ।
ନିତ୍ୟାନନ୍ଦଗୁଣେ ଲେଖାୟ "ଉନ୍ମତ୍ତ" କରିୟା । ୨୦୯
ନିତ୍ୟାନନ୍ଦପ୍ରଭୁର ଗୁଣ-ମହିମା ଅପାର ।
ସହସ୍ରବଦନେ ଶେଷ ନାହି ପାୟ ଯାର । ୨୧୦ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୨୧୧ ।
ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ
ଶ୍ରୀନିତ୍ୟାନନ୍ଦତତ୍ତ୍ୱନିରୂପଣଂ ନାମ ପଞ୍ଚମ ପରିଚ୍ଛେଦଃ ॥

---

ଏତତ୍ ଗୋବିନ୍ଦପ୍ରତିମୂର୍ତ୍ତେରୁକ୍ତବର୍ଣ୍ଣନଂ ସମ୍ୟାକ୍ସିଦ୍ଧଂ ତସ୍ୟ ଶ୍ରୀନନ୍ଦନନ୍ଦନତ୍ୱଂ ବଦତି "ସାକ୍ଷାତ୍" ଇତି ଦ୍ୱାଭ୍ୟାଂ । ସ୍ୱୟଂ ଶ୍ରୀନନ୍ଦନନ୍ଦନତ୍ୱେନ ତସ୍ୟ ତତ୍ର ସମ୍ଭବେତ୍ତ୍ୱଂ । ୨୦୧ । ବି, ଚ,

ତସ୍ୟ ଅନ୍ୟାର୍ଥଂ ନିରାକରୋତିମାହ "ସେ ସବ" ଇତି । ଶ୍ରୀବୃନ୍ଦାବନମାଗତ୍ୟ ମୟା ଯଦ୍ ଯତ୍ ଲବ୍ଧଂ ଅତିଦୁର୍ଲଭଂ ତତ୍ତତ୍ ପ୍ରଭୋରଭିପ୍ରାୟଂ ବିନା ନ ଭବେତ୍, ଅତଃ ପ୍ରଭୁକ୍ତ ସର୍ବଲଭ୍ୟ ଶବ୍ଦସ୍ୟ ସ ଏବାର୍ଥ ଇତ୍ୟର୍ଥଃ । ୨୦୭ । ୨୦୮ । ବି, ଚ,

ଶ୍ରୀନିତ୍ୟାନନ୍ଦତତ୍ତ୍ୱମୁପସଂହରତି "ନିତ୍ୟାନନ୍ଦ" ଇତି । ନିତ୍ୟାନନ୍ଦଗୁଣମହିମ୍ନୋଃ ଶେଷତ୍ୱେନ କିଞ୍ଚିତ୍ ବର୍ଣ୍ଣିତମିତିଭାବଃ । ୨୧୦ । ବି, ଚ,

---

ଶ୍ରୀଗୋବିନ୍ଦଦେବଙ୍କଠାରେ ସ୍ୱୟଂ ଶ୍ରୀକୃଷ୍ଣଜ୍ଞାନ ବ୍ୟତୀତ ପ୍ରତିମା (ପୁତ୍ତଳି)ଜ୍ଞାନ ମହା ଅଜ୍ଞତାର ପରିଚାୟକ । ୨୦୧ ।

୧୭୩ ପୟାରରେ ଗ୍ରନ୍ଥକାରଙ୍କୁ ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର ଆଜ୍ଞା ହେଲା, ତୁମ୍ଭେ ଶ୍ରୀବୃନ୍ଦାବନ ଗଲେ ସେଠାରେ ତୁମ୍ଭର ସର୍ବ ଲାଭ ହେବ । ଏହା କି ପ୍ରକାରରେ ହେଲା ତାହା ଗ୍ରନ୍ଥକାର ୧୭୪ ଠାରୁ ୨୦୬ ପର୍ଯ୍ୟନ୍ତ ପୟାରମାନଙ୍କରେ ବର୍ଣ୍ଣନ କରି ଉପସଂହାର କରୁଅଛନ୍ତି । ସେ ପ୍ରଭୁର ବଚନ (ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର ବଚନ )ଏଥିପାଇ ସାର୍ଥକ ହେଲା । ଅର୍ଥାତ୍ ପ୍ରଭୁଆଜ୍ଞାମତେ ଶ୍ରୀବୃନ୍ଦାବନକୁ ଆସି ପୂର୍ବବର୍ଣ୍ଣିତରୂପ ସମସ୍ତ ଲାଭ କଲି । ୨୦୭ । ୨୦୮ ।

ଶେଷ (ଶେଷ ଦେବ) ସହସ୍ରବଦନରେ ବର୍ଣ୍ଣନ କରି ସୁଦ୍ଧା ଶ୍ରୀନିତ୍ୟାନନ୍ଦପ୍ରଭୁଙ୍କର ଗୁଣ ବର୍ଣ୍ଣନ ଶେଷ କରିପାରନ୍ତି ନାହିଁ । ୨୧୦ ।

ପଞ୍ଚମ ପରିଚ୍ଛେଦ ସମାପ୍ତ ।

—:o:—

## ଷଷ୍ଠ ପରିଚ୍ଛେଦଃ ।

ବନ୍ଦେ ତଂ ଶ୍ରୀମଦଦ୍ୱୈତାଚାର୍ଯ୍ୟମଦ୍ଭୁତଚେଷ୍ଟିତମ୍ ।
ଯସ୍ୟ ପ୍ରସାଦାଦଜ୍ଞୋଽପି ତତ୍ସ୍ୱରୂପଂ ନିରୂପୟେତ୍ ।୧
ଜୟଜୟ ଶ୍ରୀକୃଷ୍ଣଚୈତନ୍ୟ ଦୟାମୟ ।
ଜୟ ନିତ୍ୟାନନ୍ଦ ଜୟାଦ୍ୱୈତ ମହାଶୟ । ୧ ।
ପଞ୍ଚଶ୍ଲୋକେ କହିଲି ଏଇ ନିତ୍ୟାନନ୍ଦ-ତତ୍ତ୍ୱ ।
ଶ୍ଲୋକଦ୍ୱୟେ କହି ଅଦ୍ୱୈତାଚାର୍ଯ୍ୟେର ମହତ୍ତ୍ୱ ।୨।
ତଥାହି ଶ୍ରୀସ୍ୱରୂପଗୋସ୍ୱାମୀ-କଡ଼ଚାୟାମ୍—

ମହାବିଷ୍ଣୁର୍ଜଗତ୍କର୍ତ୍ତା ମାୟୟା ଯଃ ସୃଜତ୍ୟଦଃ ।
ତସ୍ୟାବତାର ଏବାୟମଦ୍ୱୈତାର୍ଯ୍ୟ
ଈଶ୍ୱରଃ । ୨ । *
ଅଦ୍ୱୈତଂ ହରିଣାଦ୍ୱୈତାଦାଚାର୍ଯ୍ୟଂ ଭକ୍ତିଶଂସନାତ୍ ।
ଭକ୍ତାବତାରମୀଶଂ ତମଦ୍ୱୈତାଚାର୍ଯ୍ୟମାଶ୍ରୟେ ।୩।*
ଅଦ୍ୱୈତ-ଆଚାର୍ଯ୍ୟଗୋସାଞି ସାକ୍ଷାତ୍ ଈଶ୍ୱର ।
ଯାଁହାର ମହିମା ନହେ ଜୀବେର ଗୋଚର । ୩ ।
ମହାବିଷ୍ଣୁ ସୃଷ୍ଟି କରେନ ଜଗଦାଦି କାର୍ଯ୍ୟ ।
ତାଁର ଅବତାର ସାକ୍ଷାତ୍ ଅଦ୍ୱୈତ ଆଚାର୍ଯ୍ୟ । ୪ ।

ଯସ୍ୟ (ଅଦ୍ୱୈତାଚାର୍ଯ୍ୟସ୍ୟ) ପ୍ରସାଦାତ୍ ଅଜ୍ଞଃ ଅପି ତତ୍ସ୍ୱରୂପଂ ନିରୂପୟେତ୍ (ନିରୂପୟିତୁଂ ସମର୍ଥଃ ଭବେତ୍) ତମ୍ ଅଦ୍ଭୁତଚେଷ୍ଟିତମ୍ (ଅଦ୍ଭୁତାନି ଚେଷ୍ଟିତାନି ଯସ୍ୟ ତଂ) ଶ୍ରୀମଦଦ୍ୱୈତାର୍ଯ୍ୟଂ ବନ୍ଦେ । ୧ମ ଶ୍ଲୋକଃ ।

" ମହାବିଷ୍ଣୁ " ଇତିପଦ୍ୟସ୍ୟାର୍ଥମାହ " ଅଦ୍ୱୈତ " ଇତି ଦ୍ୱାଭ୍ୟାଂ । ୩ । ୪ । ଚ, ଚ,

ଯାହାଙ୍କ ପ୍ରସାଦରୁ ଅଜ୍ଞ ବ୍ୟକ୍ତିସୁଦ୍ଧା ତାହାଙ୍କର ସ୍ୱରୂପତତ୍ତ୍ୱନିରୂପଣରେ ସମର୍ଥ ହୁଏ ସେହି ଅଲୌକିକଚରିତସମ୍ପନ୍ନ ଶ୍ରୀମତ୍ ଅଦ୍ୱୈତାଚାର୍ଯ୍ୟଙ୍କୁ ବନ୍ଦନା କରେଁ । ୧ମ ଶ୍ଲୋକାର୍ଥ ।

ଗ୍ରନ୍ଥକାର ମହାଶୟ ପ୍ରଥମ ପରିଚ୍ଛେଦୋକ୍ତ ୭ମ ଶ୍ଲୋକଠାରୁ ୧୧ଶ ଶ୍ଲୋକ ପର୍ଯ୍ୟନ୍ତ ଏହି ପାଞ୍ଚ ଶ୍ଲୋକ ଯଦ୍ୱାରା ଶ୍ରୀମନ୍ ନିତ୍ୟାନନ୍ଦତତ୍ତ୍ୱ ନିରୂପିତ ହୋଇଅଛି ତାହା ପୂର୍ବୋକ୍ତ ପଞ୍ଚମ ପରିଚ୍ଛେଦରେ ବ୍ୟାଖ୍ୟା କରି ବର୍ତ୍ତମାନ ଉକ୍ତ ପ୍ରଥମପରିଚ୍ଛେଦୋକ୍ତ ଦ୍ୱାଦଶ ଓ ତ୍ରୟୋଦଶ ଶ୍ଲୋକ ଯହିଁରେ କି ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ତତ୍ତ୍ୱ ନିରୂପିତ ହୋଇଅଛି ତାହାର ବ୍ୟାଖ୍ୟା କରୁଅଛନ୍ତି । ୨ ।

(୨ୟ ଶ୍ଲୋକ ଅନ୍ୱୟ—୧ମ ପରିଚ୍ଛେଦ ୧୨ଶ ଶ୍ଲୋକ)

ଯେ ଜଗତ୍କର୍ତ୍ତା କାରଣାବ୍ଧିଶାୟୀ ମହାବିଷ୍ଣୁ ମାୟାଦ୍ୱାରା ବିଶ୍ୱ ସୃଜନ କରନ୍ତି ଏହି ଅଦ୍ୱୈତାଚାର୍ଯ୍ୟ ଈଶ୍ୱର ତାହାଙ୍କର ଅବତାର । ୨ୟ ଶ୍ଲୋକାର୍ଥ ।

(୩ୟ ଶ୍ଲୋକର ଅନ୍ୱୟ—୧ମ ପରିଚ୍ଛେଦ ୧୩ଶ ଶ୍ଲୋକରେ ଦେଖ)

ହରିଙ୍କ ସହିତ (ମହା ବିଷ୍ଣୁଙ୍କ ସହିତ) ଦ୍ୱୈତଭାବ ନ ଥିବା ହେତୁରୁ ଯେ ଅଦ୍ୱୈତ ଏବଂ ଭକ୍ତି ଉପଦେଶ କରନ୍ତି ବୋଲି ଯେ ଆଚାର୍ଯ୍ୟ (ଗୁରୁ) ଏବଂ ଯେ ଭକ୍ତରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ସେହି ଅଦ୍ୱୈତାଚାର୍ଯ୍ୟ ଈଶ୍ୱରଙ୍କୁ ମୁଁ ପ୍ରଣାମ କରେଁ । ୩ୟ ଶ୍ଲୋକାର୍ଥ ।

ଉପରୋକ୍ତ ମହାବିଷ୍ଣୁ ଶ୍ଲୋକର ଅର୍ଥ କହୁଅଛନ୍ତି । ଅଦ୍ୱୈତାଚାର୍ଯ୍ୟ ଗୋସାଇଁ ସ୍ୱୟଂ ଈଶ୍ୱର (ସୃଷ୍ଟିକର୍ତ୍ତା), ତାଙ୍କର ମହିମା ଜୀବମାନେ ଜାଣନ୍ତି ନାହିଁ । ୩ୟ ପୟାର ।

ମହାବିଷ୍ଣୁ (ପ୍ରଥମପୁରୁଷ) ଯେ କି ଜଗତ୍ ପ୍ରଭୃତି ସୃଷ୍ଟି କରନ୍ତି । ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁ ହିଁ ତାହାଙ୍କର ବିଶେଷ ଅବତାର । ୪ ।

ଯେ ପୁରୁଷ ସୃଷ୍ଟି-ସ୍ଥିତି କରେନ ମାୟାୟ ।
ଅନନ୍ତ ବ୍ରହ୍ମାଣ୍ଡ ସୃଷ୍ଟି କରେନ ଲୀଲାୟ । ୫ ।
ଇଚ୍ଛାୟ ଅନନ୍ତ ମୂର୍ତ୍ତି କରେନ ପ୍ରକାଶେ ।
ଏକ ଏକ ମୂର୍ତ୍ତ୍ୟେ କରେନ ବ୍ରହ୍ମାଣ୍ଡେ
ପ୍ରବେଶେ । ୬ ।
ସେ-ପୁରୁଷେର ଅଂଶ ଅଦ୍ୱୈତ-ନାହି କିଛୁ ଭେଦ ।
ଶରୀର-ବିଶେଷ ତାଁର ନାହିକ ବିଚ୍ଛେଦ । ୭ ।
ସହାୟ କରେନ ତାଁର ଲଇୟା ପ୍ରଧାନେ ।
କୋଟି-ବ୍ରହ୍ମାଣ୍ଡ କରେନ ଇଚ୍ଛାୟ ନିର୍ମ୍ମାଣେ । ୮ ।
ଜଗତ-ମଙ୍ଗଲାଦ୍ୱୈତ — ମଙ୍ଗଲଗୁଣଧାମ ।
ମଙ୍ଗଲଚରିତ୍ର ସଦା, ମଙ୍ଗଲ ଯାର ନାମ । ୯ ।
କୋଟି ଅଂଶ କୋଟି ଶକ୍ତି କୋଟି ଅବତାର ।
ଏତ ଲଞା ସୃଜେ ପୁରୁଷ ସକଲ ସଂସାର । ୧୦ ।

ଉକ୍ତ ମେବାର୍ଥଂ ବିଶଦୟିତି " ଯେ ପୁରୁଷ " ଇତ୍ୟାଦି " ଅଂଶ ନା କହୟା "
ଇତ୍ୟନ୍ତଂ । ୫ । ୬ । ୭ । ବି, ଚ, ।

ମହାବିଷ୍ଣୁକୃତ-ବ୍ରହ୍ମାଣ୍ଡସୃଷ୍ଟୌ ଅଦ୍ୱୈତୋ ଯତ୍ସାହାଯ୍ୟଂ କରୋତି ଇତ୍ୟେତତ୍
ତସ୍ୟ କାର୍ଯ୍ୟଂ । ୮ । ବି, ଚ,

'ଯେ ପୁରୁଷ (ଯେଉଁ ମହାବିଷ୍ଣୁ) ମାୟାକୁ ଅବଲମ୍ବନ କରି ଜଗତର ସୃଜନ ଓ ପାଳନ କରନ୍ତି ଅର୍ଥାତ୍ ଇଚ୍ଛାମାତ୍ର ଅନନ୍ତ ବ୍ରହ୍ମାଣ୍ଡ ସୃଷ୍ଟି କରି ଭିନ୍ନ ଭିନ୍ନ ମୂର୍ତ୍ତିରେ ପ୍ରତ୍ୟେକ ବ୍ରହ୍ମାଣ୍ଡ ମଧ୍ୟରେ ପ୍ରବିଷ୍ଟ ହୋଇ ପାଳନ କରନ୍ତି ସେହି ମହାବିଷ୍ଣୁଙ୍କର ଶ୍ରୀମନ୍ ଅଦ୍ୱୈତ ଅଭେଦ ଅଂଶ ଅର୍ଥାତ୍ ଶରୀରବିଶେଷ ଏହାଙ୍କ ନିତ୍ୟରୂପୀ ଅଦ୍ୱୈତଙ୍କ ତତ୍ତ୍ୱ । ୫ । ୬ । ୭ ।

ଶ୍ରୀଅଦ୍ୱୈତ ପ୍ରଧାନଙ୍କ (ପ୍ରକୃତି) ସହଯୋଗରେ ତାଁର (ପ୍ରଥମ ପୁରୁଷଙ୍କର) ସହାୟତା କରନ୍ତି । ଅର୍ଥାତ୍ ଇଚ୍ଛା ମାତ୍ର କୋଟୀ କୋଟୀ ବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି ଅର୍ଥାତ୍ ପ୍ରଥମ ପୁରୁଷ ସେହି ପୁରୁଷଭାବରେ କେବଳ କୋଟୀ କୋଟୀ ବ୍ରହ୍ମାଣ୍ଡ ସୃଷ୍ଟିର ଇଚ୍ଛା କଲେ । ପୁଣି ସେ ଶ୍ରୀଅଦ୍ୱୈତଭାବରେ ପ୍ରକୃତିକୁ ଅବଲମ୍ବନ କରି ପୂର୍ବୋକ୍ତ ଇଚ୍ଛାକୁ ଆପଣାର ସୃଷ୍ଟିନୈପୁଣ୍ୟଇଚ୍ଛା ଦ୍ୱାରା କାର୍ଯ୍ୟରେ ପରିଣତ କଲେ । ଅର୍ଥାତ୍ ଆପଣାର ରୁଚି ଅନୁସାରେ ବ୍ରହ୍ମାଣ୍ଡ ସୃଷ୍ଟି କଲେ । ୮ ।

ଶ୍ରୀଅଦ୍ୱୈତ ଜଗତର ମଙ୍ଗଳକାରକ, ମଙ୍ଗଳଗୁଣମାନଙ୍କର ଆଧାର । ତାହାଙ୍କର ଚରିତ ମଙ୍ଗଳମୟ ଏବଂ ତାହାଙ୍କର ନାମ ସଦାମଙ୍ଗଳ । ମଙ୍ଗଳ ଶବ୍ଦର ଅର୍ଥ ଶିବ । ଅତଏବ ଶ୍ରୀଅଦ୍ୱୈତ ମାୟାଶ୍ରିତ ସଦାଶିବତତ୍ତ୍ୱ । ୯ ।

ପୁରୁଷ (ମହା ବିଷ୍ଣୁ) ଆପେ କୋଟୀ କୋଟୀ ଅଂଶ ହୋଇ କୋଟୀ କୋଟୀ ଶକ୍ତି ପ୍ରକାଶ କରି ଏବଂ କୋଟୀ କୋଟୀ ରୂପରେ ଅବତୀର୍ଣ୍ଣ ହୋଇ ଜଗତ୍ ବ୍ରହ୍ମାଣ୍ଡମାନ ସୃଷ୍ଟି କରନ୍ତି । ୧୦ ।

ମାୟା ଯେଉଁଛେ ଦୁଇ ଅଂଶ—ନିମିତ୍ତ ଉପାଦାନ ।
ମାୟା—ନିମିତ୍ତହେତୁ, ଉପାଦାନ—ପ୍ରଧାନ । ୧୧
ପୁରୁଷ ଈଶ୍ୱର ଐଛେ ଦ୍ୱିମୂର୍ତ୍ତି କରିୟା ।
ବିଶ୍ୱ ସୃଷ୍ଟି କରେ ନିମିତ୍ତ-ଉପାଦାନ ଲୈଞା । ୧୨ ।
ଆପନେ ପୁରୁଷେ ବିଶ୍ୱେର ନିମିତ୍ତ-କାରଣ ।
ଅଦ୍ୱୈତରୂପେ ଉପାଦାନ ହୟ ନାରାୟଣ । ୧୩ ।
ନିମିତ୍ତାଂଶେ କରେ ତେଁହୋ ମାୟାତେ ଈକ୍ଷଣ ।
ଉପାଦାନ ଅଦ୍ୱୈତ କରେନ ବ୍ରହ୍ମାଣ୍ଡ ସୃଜନ । ୧୪

( ଯଦ୍ୟପି ସାଂଖ୍ୟ ମାନେ—ପ୍ରଧାନ କାରଣ ।
ଜଡ଼ ହଇତେ କଭୁ ନହେ ଜଗତ-ସୃଜନ । ୧୫ ।
ନିଜ ସୃଷ୍ଟିଶକ୍ତି ପ୍ରଭୁ ସଞ୍ଚାରେ ପ୍ରଧାନେ ।
ଈଶ୍ୱରେର ଶକ୍ତ୍ୟେ ତବେ ହୟେ ତ
ନିର୍ମାଣେ । ୧୬ ।
ଅଦ୍ୱୈତ-ରୂପେ କରେ ଶକ୍ତି ସଞ୍ଚାରଣ ।
ଅତଏବ ଅଦ୍ୱୈତ ହୟେନ ମୁଖ୍ୟ କାରଣ । ) ୧୭
ଅଦ୍ୱୈତ-ଆଚାର୍ଯ୍ୟ କୋଟି-ବ୍ରହ୍ମାଣ୍ଡେର କର୍ତ୍ତା ।
ଆର ଏକ ଏକ ମୂର୍ତ୍ତ୍ୟେ ବ୍ରହ୍ମାଣ୍ଡେର ଭର୍ତ୍ତା । ୧୮ ।

"ଯେ ପୁରୁଷ" ଇତ୍ୟାଦି ପଦ୍ୟେନ ପୁରୁଷୋ ମହାବିଷ୍ଣୁଃ ମାୟୟା ସୃଷ୍ଟିମ୍ବିଧାୟ କରୋତି ଅଦ୍ୱୈତସ୍ତୁ ତତ୍ ସାହାଯ୍ୟଂ କରୋତି ଇତି ଯଦୁକ୍ତଂ ତଦେବ ବିବୃଣୋତି "ମାୟା ଯେଉଁଛେ" ଇତି ଚତୁର୍ଭିଃ । ବ୍ରହ୍ମାଣ୍ଡ ସୃଷ୍ଟ୍ୟର୍ଥଂ ପୁରୁଷ ଈକ୍ଷଣେନୈବ ଗୁଣତ୍ରୟସାମ୍ୟାଂ ମାୟାଂ କ୍ଷୋଭୟତି ଅଦ୍ୱୈତସ୍ତୁ କ୍ଷୋଭିତୟା ତୟା ମାୟୟା ବ୍ରହ୍ମାଣ୍ଡଂ ସୃଜତୀତ୍ୟର୍ଥଃ । ପୁରୁଷଲକ୍ଷଣଂ ଯଥା ସନ୍ଦର୍ଭପଞ୍ଚଭାଗବତାମୃତେ । "ପରମେଶାଂଶରୂପୋ ଯଃ ପ୍ରଧାନଗୁଣଭାଗିବ । ତଦୀକ୍ଷାଦି-କୃତନାନାବତାରଃ ପୁରୁଷଃ ସ୍ମୃତଃ" ଇତି । ଟୀକା ଚ ତସ୍ମିନ୍ ପ୍ରଧାନେ ଈକ୍ଷଂ ଈକ୍ଷଣଂ ଆଦିକୃତଃ ପ୍ରଥମକ୍ରିୟା ଯସ୍ୟ ମହାବିଷ୍ଣୋଃ । ନାନାବତାରୋ ଯସ୍ମାତ୍ । ୧୧-୧୮ । ବି, ଚ,

ପୂର୍ବେ ପଞ୍ଚମ ପରିଚ୍ଛେଦରେ କୁହାହୋଇଅଛି, ମାୟା ଗୌଣ ନିମିତ୍ତ ଓ ଉପାଦାନ ଅଂଶରେ ମହାବିଷ୍ଣୁଙ୍କର ବିଶ୍ୱସୃଷ୍ଟିକାର୍ଯ୍ୟରେ ସହାୟତା କରନ୍ତି ଏବଂ ମହାବିଷ୍ଣୁ ନିଜେ ସୃଷ୍ଟିର ମୁଖ୍ୟ ନିମିତ୍ତ ଏବଂ ଉପାଦାନ ଅଟନ୍ତି । ବର୍ତ୍ତମାନ କହୁଅଛନ୍ତି, ମାୟାଙ୍କର ପୂର୍ବକଥିତ ନିମିତ୍ତ ଓ ଉପାଦାନ ଅଂଶର ନାମ ଅର୍ଥାତ୍ ନିମିତ୍ତାଂଶର ନାମ "ମାୟା" ଏବଂ ଉପାଦାନ ଅଂଶର ନାମ "ପ୍ରଧାନ" । ୧୧ ।

ମାୟାଙ୍କର ଏ ଦୁଇ ଅଂଶକୁ ଅବଲମ୍ବନ କରି ପୁରୁଷ ( ପ୍ରଥମ ପୁରୁଷ) ଈଶ୍ୱର (ଶ୍ରୀଅଦ୍ୱୈତ) ଏହି ଦୁଇମୂର୍ତ୍ତି ହୋଇ ମୁଖ୍ୟ ନିମିତ୍ତ ଓ ମୁଖ୍ୟ ଉପାଦାନରୂପରେ ବିଶ୍ୱସୃଷ୍ଟି କରନ୍ତି । ନାରାୟଣଙ୍କର ପୁରୁଷରୂପ ଅର୍ଥାତ୍ ମହାବିଷ୍ଣୁରୂପହିଁ ନିମିତ୍ତ ଏବଂ ତାଙ୍କର ଅଦ୍ୱୈତରୂପ (ଈଶ୍ୱର-ରୂପ) ଉପାଦାନ । ସେହି ନିମିତ୍ତାଂଶରେ ଅର୍ଥାତ୍ ମହାବିଷ୍ଣୁରୂପରେ ନାରାୟଣ ମାୟାଙ୍କପ୍ରତି ଈକ୍ଷଣ କରନ୍ତି । ଅର୍ଥାତ୍ ସୃଷ୍ଟିଶକ୍ତି ସଞ୍ଚାଳନ କରନ୍ତି ଏବଂ ଅଦ୍ୱୈତରୂପରେ ଉପାଦାନ ହୋଇ ଗୌଣ ଉପାଦାନ ପ୍ରଧାନର ସହାୟତାରେ ବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି । ଏହାର ଭାବ ଏହି ଯେ ମହାବିଷ୍ଣୁ ବ୍ରହ୍ମାଣ୍ଡ ସୃଷ୍ଟି କରିବାଇଚ୍ଛାରେ ଗୁଣତ୍ରୟ ସାମ୍ୟାବସ୍ଥାପନ୍ନ ମାୟାଙ୍କୁ ଦୃଷ୍ଟି ମାତ୍ର ଉତ୍ତେଜିତ ବା ବିଚଳିତ କରନ୍ତି, ଏବଂ ସେ ଅଦ୍ୱୈତରୂପରେ ମାୟାଙ୍କ ସହିତ ମିଳିତ ହୋଇ ବ୍ରହ୍ମାଣ୍ଡଗଣ ସୃଷ୍ଟି କରନ୍ତି । ୧୨ । ୧୩ । ୧୪ ।

(୧୫, ୧୬ ଓ ୧୭ ଏହି ତିନି ପୟାର କୌଣସି କୌଣସି ପୁସ୍ତକରେ ନ ଥିବାରୁ ବନ୍ଧନୀ ମଧ୍ୟରେ ରଖାଗଲା ।)

ଗ୍ରନ୍ଥକାର କହୁଅଛନ୍ତି ସାଂଖ୍ୟମତରେ ପ୍ରଧାନ (ମାୟା) ଏ ଜଗତ୍‌ସୃଷ୍ଟିର କାରଣ ଅଟନ୍ତି କିନ୍ତୁ ମାୟା ଜଡ଼ ହେତୁ ତାଙ୍କ ଦ୍ୱାରା ସ୍ୱତନ୍ତ୍ର ସୃଷ୍ଟିକାର୍ଯ୍ୟ ହୋଇପାରେ ନା । ୧୫ ।

ସେଇ ନାରାୟଣେର 'ଅଙ୍ଗ', ମୁଖ୍ୟ ଅଦ୍ୱୈତ ।
'ଅଙ୍ଗ' ଶବ୍ଦେ 'ଅଂଶ' କରି କହେ ଭାଗବତ ।୧୯
ତଥାହି ( ଭାଃ ୧୦ । ୧୪ । ୧୪ ) —
ନାରାୟଣସ୍ତ୍ୱଂ ନହି ସର୍ବଦେହିନା-
ମାତ୍ମାସ୍ୟଧୀଶାଖିଲଲୋକସାକ୍ଷୀ ।
ନାରାୟଣୋଽଙ୍ଗଂ ନରଭୂଜଲାୟନା-
ତ୍ତଚ୍ଚାପି ସତ୍ୟଂ ନ ତବୈବ ମାୟା । ୪ । *
ଈଶ୍ୱରେର ଅଙ୍ଗ ଅଂଶ ଚିଦାନନ୍ଦମୟ ।
ମାୟାର ସମ୍ବନ୍ଧ ନାହି—ଏଇ ଶ୍ଳୋକେ କୟ । ୨୦

ମୁଖ୍ୟାଙ୍ଗଂ ମୁଖ୍ୟାଂଶଃ ଶରୀରବିଶେଷ ଇତ୍ୟର୍ଥଃ । ୧୯ । ଚ, ଚ,
ବ୍ରହ୍ମାଣ୍ଡସୃଷ୍ଟୌ ଅଦ୍ୱୈତସ୍ୟ ମାୟାସମ୍ବନ୍ଧରାହିତ୍ୟମାହ " ଈଶ୍ୱରେର " ଇତି ଚିଦାନନ୍ଦ-ମୟତ୍ୱେନ ନ ତସ୍ୟ ତବ ମାୟାସମ୍ବନ୍ଧଃ । ୨୦ । ଚ, ଚ,

ପ୍ରଭୁ ଶ୍ରୀନାରାୟଣ ପ୍ରଥମପୁରୁଷରୂପରେ ମାୟାରେ ସୃଷ୍ଟିଶକ୍ତି ନ୍ୟସ୍ତ କରି ଈଶ୍ୱର-ରୂପରେ (ଅଦ୍ୱୈତରୂପରେ) ସ୍ୱ ଶକ୍ତିଦ୍ୱାରା ମାୟାଙ୍କ ଅବଲମ୍ବନରେ ସୃଷ୍ଟି କରନ୍ତି; ଏଣୁ ଶ୍ରୀଅଦ୍ୱୈତ ସୃଜନଶକ୍ତିପ୍ରବର୍ତ୍ତକ ହେତୁରୁ ସୃଷ୍ଟିକାର୍ଯ୍ୟରେ ପ୍ରଧାନ ଅଟନ୍ତି । ୧୬ । ୧୭ ।

ଉପରୋକ୍ତ ସୃଷ୍ଟିକର୍ତ୍ତା ଅଦ୍ୱୈତ ସ୍ୱୟଂ ଅଦ୍ୱୈତାଚାର୍ଯ୍ୟ ହୋଇ ଅବତୀର୍ଣ୍ଣ ହୋଇଅଛନ୍ତି । ତେଣୁ ଶ୍ରୀଅଦ୍ୱୈତାଚାର୍ଯ୍ୟ କୋଟି କୋଟି ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ଅଟନ୍ତି । ପୁଣି ସେ ଭିନ୍ନ ଭିନ୍ନ ମୂର୍ତ୍ତି ହୋଇ ବ୍ରହ୍ମାଣ୍ଡାନ୍ତର୍ଯାମୀ ରୂପରେ ବ୍ରହ୍ମାଣ୍ଡମାନ ପାଳନ କରନ୍ତି । ୧୮ ।

ସେହି ନାରାୟଣଙ୍କର (ଅର୍ଥାତ୍ ପୂର୍ବୋକ୍ତ ମାୟା ଈକ୍ଷଣକର୍ତ୍ତା ପ୍ରଥମ ପୁରୁଷଙ୍କର) ଅଦ୍ୱୈତ ଆଚାର୍ଯ୍ୟ ଶ୍ରେଷ୍ଠ ଅଙ୍ଗ ବା ଶରୀରବିଶେଷ ଅଟନ୍ତି । ଏ ଅଙ୍ଗ ଶବ୍ଦକୁ ଶ୍ରୀମଦ୍ଭାଗବତରେ ଅଂଶ ବୋଲି କହିଅଛନ୍ତି । ୧୯ ।

(୪ର୍ଥ ଶ୍ଳୋକର ଅନ୍ୱୟ-୨ୟ ପରିଚ୍ଛେଦ ୯ମ ଶ୍ଳୋକରେ ଦେଖ)

ଶ୍ରୀକୃଷ୍ଣଙ୍କ ପ୍ରତି ବ୍ରହ୍ମ ସ୍ତୁତି ।

ଆପଣ ଦେହିମାନଙ୍କର ପରମାତ୍ମା ହେତୁ ଆପଣ କି ନାରାୟଣ ନୁହନ୍ତି ? କାରଣ ନାର ଶବ୍ଦର ଅର୍ଥ ଜୀବସମୂହ, ଅୟନଶବ୍ଦର ଅର୍ଥ ଆଶ୍ରୟ, ଜୀବସମୂହ ଯାହାଙ୍କର ଆଶ୍ରୟ ସେହି ପରମାତ୍ମାହିଁ ନାରାୟଣଶବ୍ଦବାଚ୍ୟ । ଅତଏବ ଆପଣ ପରମାତ୍ମା ହେତୁ ନାରାୟଣ ଅଟନ୍ତି । (ପୁଣି) ଆପଣ ଅଧୀଶ୍ୱର ଅର୍ଥାତ୍ ସର୍ବପ୍ରବର୍ତ୍ତକ ହେତୁରୁ ନାରାୟଣ ଅଟନ୍ତି ; କାରଣ ନାର-ଶବ୍ଦର ଅର୍ଥ ଜୀବସମୂହ ବା ତତ୍ତ୍ୱସମୂହ, ସେଥିର ପ୍ରବର୍ତ୍ତକ ଈଶ୍ୱରଙ୍କୁ ନାରାୟଣ କୁହାଯାଏ । (ପୁଣି) ଆପଣ ସର୍ବଲୋକସାକ୍ଷୀ ହେତୁ ନାରାୟଣ ଅଟନ୍ତି, କାରଣ ଯେ ଲୋକସମୂହକୁ ଜାଣନ୍ତି ବା ସାକ୍ଷାତ୍ ଦର୍ଶନ କରନ୍ତି ତାହାଙ୍କୁ ନାରାୟଣ କୁହାଯାଏ । (ପୁନଶ୍ଚ) ନାର ଅର୍ଥାତ୍ ପରମାତ୍ମାଙ୍କଠାରୁ ଉଦ୍ଭୂତ ଯେ ଚତୁର୍ବିଂଶ ତତ୍ତ୍ୱ (ଜୀବ, ପ୍ରକୃତି, ମହତ୍‌ତତ୍ତ୍ୱ, ଅହଙ୍କାର, ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ, ଆକାଶ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଚକ୍ଷୁ, କର୍ଣ୍ଣ, ନାସିକା, ତ୍ୱକ୍, ଜିହ୍ୱା, ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ) ଏବଂ ସେଥିରୁ ଜାତ ଯେ ଜଳ ଏହି ଦୁଇଟି ଯାହାଙ୍କର ଆଶ୍ରୟ ସେହି ପ୍ରସିଦ୍ଧ ନାରାୟଣ ଆପଣଙ୍କର ଅଂଶ ଅର୍ଥାତ୍ ମୂର୍ତ୍ତିବିଶେଷ । ଏହେତୁ ସେ ଆପଣଙ୍କଠାରୁ ଭିନ୍ନ ନୁହନ୍ତି । ତେବେ ସେହି ନାରାୟଣଙ୍କର ଯେ ତାଦୃଶ ପରିଚ୍ଛିନ୍ନତ୍ୱ ତାହା ସତ୍ୟ ନୁହେଁ । କେବଳ ଆପଣଙ୍କର ଲୀଳା ଅଟେ । ଅଥବା ନାରାୟଣରୂପ ଆପଣଙ୍କର ସେହି ମୂର୍ତ୍ତି ସତ୍ୟ ଅଟେ । ତାହା ମାୟିକ ନୁହେଁ । । ୪ର୍ଥ ଶ୍ଳୋକାର୍ଥ ।

ନାରାୟଣଙ୍କର ଅଙ୍ଗ ଏବଂ ଅଂଶ ସମସ୍ତ ଚିଦାନନ୍ଦମୟ, ତେଣୁ ସେମାନଙ୍କର ମାୟାସହିତ ସମ୍ବନ୍ଧ ଥାଏ ନା । ଅର୍ଥାତ୍ ଭଗବଦଂଶ ମାୟାବଦ୍ଧ ବା ମାୟିକ ନୁହେଁ ।୨୦।

ଅଂଶ ନା କହିଯ଼ି! କେନେ କହି ତାରେ ଅଙ୍ଗ ?
ଅଂଶ ହୈତେ ଅଙ୍ଗ ଯାତେ ହଯ଼ ଅନ୍ତରଙ୍ଗ । ୨୧
ମହାବିଷ୍ଣୁର ଅଂଶ—ଅଦ୍ୱୈତ ଗୁଣଧାମ ।
ଈଶ୍ୱରେର ଅଭେଦ ତେଇଁତେ 'ଅଦ୍ୱୈତ' ପୂର୍ଣ୍ଣନାମ । ୨୨
ପୂର୍ବେ ଯୈଛେ କୈଲ ସର୍ବବିଶ୍ୱେର ସୃଜନ ।
ଅବତରି କୈଲ ଏବେ ଭକ୍ତି-ପ୍ରବର୍ତ୍ତନ । ୨୩ ।
ଜୀବ ନିସ୍ତାରିଲ କୃଷ୍ଣଭକ୍ତି କରି ଦାନ ।
ଗୀତା-ଭାଗବତେ କୈଲ ଭକ୍ତିର ବ୍ୟାଖ୍ୟାନ । ୨୪
ଭକ୍ତି-ଉପଦେଶ ବିନୁ ତାଁର ନାହି କାର୍ଯ୍ୟ ।
ଅତଏବ ନାମ ତାଁର ହଇଲ 'ଆଚାର୍ଯ୍ୟ' । ୨୫ ।
ବୈଷ୍ଣବେର ଗୁରୁ ତେଁହୋ ଜଗତେର ଆର୍ଯ୍ୟ ।
ଦୁଇ ନାମ ମିଲନେ ହୈଲ ଅଦ୍ୱୈତ-ଆଚାର୍ଯ୍ୟ । ୨୬
କମଲନଯ଼ନେର ତେଁହୋ ଯାତେ ଅଙ୍ଗ-ଅଂଶ ।
'କମଲାକ୍ଷ' କରି ଧରେ ନାମ-ଅବତଂସ । ୨୭ ।
ଈଶ୍ୱରସାରୂପ୍ୟ ପାଯ଼ ପାରିଷଦଗଣ ।
ଚତୁର୍ଭୁଜ ପୀତବାସ ଯୈଛେ ନାରାଯ଼ଣ । ୨୮ ।
ଅଦ୍ୱୈତ-ଆଚାର୍ଯ୍ୟ ଈଶ୍ୱରେର ଅଂଶବର୍ଯ୍ୟ ।
ତାଁର ତତ୍ତ୍ୱ ନାମ ଗୁଣ — ସକଲି ଆଶ୍ଚର୍ଯ୍ୟ । ୨୯ ।

ପ୍ରଥମ ଶ୍ଳୋକସ୍ୟାର୍ଥମୁକ୍ତ୍ୱା ଦ୍ୱିତୀଯ଼ସ୍ୟ ଅଦ୍ୱୈତଂ ହରଣାଦ୍ୱୈତାତ୍ "ଇତ୍ୟସ୍ୟାର୍ଥମାହ "ମହାବିଷ୍ଣୁର" ଇତି । ୨୨ । ବି, ଚ,

"ଆଚାର୍ଯ୍ୟଂ ଭକ୍ତିଶଂସନାତ୍" ଇତ୍ୟସ୍ୟାର୍ଥମାହ "ପୂର୍ବେ" ଇତି ସାର୍ଦ୍ଧଦ୍ୱଯ଼େନ । ୨୩ । ବି, ଚ
ନାମ ପ୍ରସଙ୍ଗେନୈବ ଅଦ୍ୱୈତସ୍ୟ ନାମାନ୍ତରମାହ "କମଲ" ଇତି । ୨୭ । ବି, ଚ,

ନନୁ ମହାବିଷ୍ଣୋଃ କମଲନଯ଼ନନାମ କଥଂ ତଦଂଶସ୍ୟ ଶ୍ରୀଅଦ୍ୱୈତସ୍ୟ ଇତି ଚେତ୍ତତ୍ରାହ "ଈଶ୍ୱରେର" ଇତି ଦ୍ୱାଭ୍ୟାଂ । ଈଶ୍ୱରପାରିଷଦାନାଂ ଯଦି ତତ୍ସାରୂପ୍ୟଲାଭଃ ତଦା ଶ୍ରୀଅଦ୍ୱୈତସ୍ୟ ତନ୍ନାମଲାଭେ କା ବାର୍ତ୍ତା ? ଯତଃ ସଃ ତସ୍ୟ ପ୍ରଧାନାଂଶଃ ତଥା ନସ୍ୟ ତତ୍ତ୍ୱାଦଯ଼ସ୍ତୁ ଆଶ୍ଚର୍ଯ୍ୟା ଇତ୍ୟର୍ଥଃ
୨୮ । ୨୯ । ବି, ଚ

ଅଂଶଠାରୁ ଅଙ୍ଗ ବିଶେଷ ଆତ୍ମୀଯ଼ । ୨୧

ଅଦ୍ୱୈତଗୁଣଧାମ ( ଅର୍ଥାତ୍ ଶ୍ରୀଅଦ୍ୱୈତାଚାର୍ଯ୍ୟପ୍ରଭୁ, ମହାବିଷ୍ଣୁଙ୍କର ପ୍ରଧାନ ଅଂଶ ବା ଈଶ୍ୱରବିଶେଷ, ତେଣୁ ମହାବିଷ୍ଣୁଙ୍କ ସହିତ ପୂର୍ବ ; ବର୍ତ୍ତମାନରେ ଅଭେଦତ୍ୱହେତୁ ) ଅଦ୍ୱୈତ ଆଚାର୍ଯ୍ୟ ପ୍ରଭୁଙ୍କର ପୂର୍ବନାମ ( ଅପ୍ରକଟ ଅବସ୍ଥାରେ ନାମ ) ମଧ୍ୟ ଅଦ୍ୱୈତ । ଏହାର ଭାବ ଏହି ଯେ ମହାବିଷ୍ଣୁ ଯେଉଁ ଅଦ୍ୱୈତରୂପରେ ବ୍ରହ୍ମାଣ୍ଡଗଣ ସୃଷ୍ଟି କରନ୍ତି ସ୍ୱଯ଼ଂ ସେହି ଅଦ୍ୱୈତ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁରୂପରେ ପ୍ରକଟିତ ହୋଇଅଛନ୍ତି । ୨୨ ।

ପୂର୍ବେ ( ଅପ୍ରକଟକାଳରେ ) ସେ (ଅଦ୍ୱୈତ ) ବ୍ରହ୍ମାଣ୍ଡଗଣ ସୃଷ୍ଟି କରିଥିଲେ । ଏବେ ( ବର୍ତ୍ତମାନ ଅର୍ଥାତ୍ ଅବତୀର୍ଣ୍ଣ ବା ପ୍ରକଟ କାଳମଧ୍ୟରେ ) ଭକ୍ତି ( ଶ୍ରୀକୃଷ୍ଣଭକ୍ତି ) ପ୍ରଚାର କଲେ । ୨୩

ଶ୍ରୀକୃଷ୍ଣଭକ୍ତି ଦାନ କରି ଜୀବମାନଙ୍କ ଉଦ୍ଧାର କଲେ ଏବଂ ଶ୍ରୀମଦ୍‌ଭଗବଦ୍‌ଗୀତା ଏବଂ ଶ୍ରୀମଦ୍‌ଭାଗବତଙ୍କର ବିଶୁଦ୍ଧ ଭକ୍ତିମାର୍ଗର ବ୍ୟାଖ୍ୟା କଲେ । ୨୪ ।

ଅପ୍ରକଟରେ ବିଶ୍ୱସୃଷ୍ଟି ଏବଂ ପ୍ରକଟରେ ଭକ୍ତିଉପଦେଶ ଏହାହିଁ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର କାର୍ଯ୍ୟ । ଏଣୁ ବିଶ୍ୱସ୍ରଷ୍ଟାହେତୁ ଜଗତର ଆର୍ଯ୍ୟ ( ପୂଜ୍ୟ ) ଏବଂ ଭକ୍ତି ଉପଦେଶ ହେତୁ ବୈଷ୍ଣବମାନଙ୍କର ଶିକ୍ଷାଗୁରୁ ( ଆଚାର୍ଯ୍ୟ ) ଏ ଦୁଇନାମ ମିଳି ତାହାଙ୍କର ନାମ ଅଦ୍ୱୈତାଚାର୍ଯ୍ୟ । ୨୫ । ୨୬ ।

ଯାହାର ତୁଳସୀଜଳେ ଯାହାର ହୁଙ୍କାରେ ।
ସ୍ୱଗଣ-ସହିତେ ଚୈତନ୍ୟେର ଅବତାରେ । ୩୦ ।
ଯାଁର ଦ୍ୱାରା କୈଲ ପ୍ରଭୁ କୀର୍ତ୍ତନ-ପ୍ରଚାର ।
ଯାଁର ଦ୍ୱାରା କୈଲ ପ୍ରଭୁ ଜଗତ-ନିସ୍ତାର । ୩୧ ।
ଆଚାର୍ଯ୍ୟଗୋସାଞିର ଗୁଣ-ମହିମା ଅପାର ।
ଜୀବକୀଟ କୋଥାୟ ପାଇବେକ ତାର ପାର । ୩୨ ।

ଆଚାର୍ଯ୍ୟଗୋସାଞି ଚୈତନ୍ୟେର ମୁଖ୍ୟ ଅଙ୍ଗ ।
ଆର ଏକ ଅଙ୍ଗ ତାଁର — ପ୍ରଭୁ ନିତ୍ୟାନନ୍ଦ । ୩୩ ।
ପ୍ରଭୁର ଉପାଙ୍ଗ — ଶ୍ରୀବାସାଦି ଭକ୍ତଗଣ ।
ହସ୍ତ-ମୁଖ-ନେତ୍ର-ଅଙ୍ଗ-ଚକ୍ରାଦ୍ୟସ୍ତ୍ର-ସମ । ୩୪ ।
ଏଇ ସବ ଲଞା ଚୈତନ୍ୟପ୍ରଭୁର ବିହାର ।
ଏଇ ସବ ଲଞା କରେନ ବାଞ୍ଛିତ ପ୍ରଚାର । ୩୫ ।

ଅଥ ତସ୍ୟ ଗୁଣ ମହିମାନଂ ବର୍ଣ୍ଣୟତି "ଯାହାର" ଇତି ଦ୍ୱିଭିଃ । ୩୦-୩୨ । ବି, ଚ,

"ଭକ୍ତାବତାରଂ" ଇତ୍ୟସ୍ୟାର୍ଥଂ ବଦନ୍ ତଦାଦୌ ଶ୍ରୀଅଦ୍ୱୈତସ୍ୟ ଭକ୍ତତ୍ୱଂ ପ୍ରତିପାଦୟତି "ଆଚାର୍ଯ୍ୟ" ଇତ୍ୟାଦି । ୩୩ । ୩୫ ।

ଶ୍ରୀମନ୍ ଅଦ୍ୱୈତ ଆଚାର୍ଯ୍ୟଙ୍କର ଆଉ ଏକ ନାମ କମଳାକ୍ଷ, କମଳନୟନ, ଶ୍ରୀନାରାୟଣଙ୍କର ଅଦ୍ୱୈତ ଆଚାର୍ଯ୍ୟ ଅଙ୍ଗ ଅଂଶ ( ପ୍ରଧାନ ଅଂଶ ) ଅବତଂସ ( ଅବତାର ) ହେତୁ ସେ ନାରାୟଣଙ୍କର କମଳନୟନ ନାମ ଅର୍ଥାତ୍ "କମଳାକ୍ଷ" ନାମ ଧାରଣ କରିଅଛନ୍ତି । ଯଦି ପ୍ରଶ୍ନ ହୁଏ ଯେ ଅଦ୍ୱୈତ ଆଚାର୍ଯ୍ୟ ନାରାୟଣଙ୍କର ଅଂଶ ହୋଇ ତାଙ୍କର ନାମ କିପରି ଧାରଣ କଲେ ? ଏହାର ଉତ୍ତରରେ ଗ୍ରନ୍ଥକାର କହୁଅଛନ୍ତି ଯେ ନାରାୟଣଙ୍କର ପାର୍ଷଦମାନେ ତାହାଙ୍କର ସାରୂପ୍ୟ ଲାଭ କରନ୍ତି ଅର୍ଥାତ୍ ତାଙ୍କ ତୁଲ୍ୟ ଚତୁର୍ଭୁଜ ପୀତବାସ ଆଦି ଲାଭ କରନ୍ତି । ପାର୍ଷଦମାନଙ୍କ ପକ୍ଷରେ ଯଦି ଏପରି ଲାଭ ହୁଏ ତେବେ ମୁଖ୍ୟାଂଶ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର "କମଳାକ୍ଷ" ନାମ ଗ୍ରହଣ କରିବାରେ ଆଉ ବାଧା କଣ ? ଅତଏବ ଶ୍ରୀମନ୍ ଅଦ୍ୱୈତ ଆଚାର୍ଯ୍ୟ ପ୍ରଭୁଙ୍କର ତତ୍ତ୍ୱ, ନାମ, ଗୁଣ ପ୍ରଭୃତି ସମସ୍ତ ଆଶ୍ଚର୍ଯ୍ୟ । ୨୭ । ୨୮ । ୨୯ ।

ଶ୍ରୀମନ୍ ଅଦ୍ୱୈତ ଆଚାର୍ଯ୍ୟଙ୍କର ନାମର ମାହାତ୍ମ୍ୟ ବର୍ଣ୍ଣନ କଲାପରେ ଗ୍ରନ୍ଥକାର ତାହାଙ୍କର ଗୁଣ ବର୍ଣ୍ଣନ କରୁଅଛନ୍ତି । ଯେଉଁ ଅଦ୍ୱୈତ ଆଚାର୍ଯ୍ୟଙ୍କର ଜଳତୁଳସୀ ଦ୍ୱାରା ଆରାଧନା ଏବଂ ହୁଙ୍କାରର ଆକର୍ଷଣରେ ପାର୍ଷଦାଦି ସହ ଶ୍ରୀକୃଷ୍ଣଚୈତନ୍ୟ ଅବତୀର୍ଣ୍ଣ ହେଲେ । ଯାହାଙ୍କଦ୍ୱାରା ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ଶ୍ରୀହରି ନାମ ସଙ୍କୀର୍ତ୍ତନ ପ୍ରଚାର କଲେ ଏବଂ ଭକ୍ତି ଦାନ କରି ଜଗଦ୍ ଜୀବମାନଙ୍କ ଉଦ୍ଧାର କଲେ ।

ଏପରି ଯେ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁ ତାହାଙ୍କର ଗୁଣର ମାହାତ୍ମ୍ୟ ଅପାର । କ୍ଷୁଦ୍ରଜୀବ-ପକ୍ଷରେ ତାହା ବର୍ଣ୍ଣନା କରିବା ଅସମ୍ଭବ । ୩୦ । ୩୧ । ୩୨ ।

ଉପରୋକ୍ତ ୩୬ ଶ୍ଳୋକ କଥିତ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର ଭକ୍ତାବତାରତ୍ୱ ବୁଝାଇବା-କାରଣ ଗ୍ରନ୍ଥକାର ତାହାଙ୍କର ଭକ୍ତତ୍ୱ ପ୍ରତିପାଦନ କରୁଅଛନ୍ତି ।

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଓ ଶ୍ରୀମନ୍ ନିତ୍ୟାନନ୍ଦ ଶ୍ରୀଚୈତନ୍ୟଙ୍କର ପ୍ରଧାନ ଅଙ୍ଗ, ଏବଂ ଶ୍ରୀବାସାଦି ଭକ୍ତମାନେ ଉପାଙ୍ଗ ( ଅଙ୍ଗର ଅଙ୍ଗ ) ଯେପରି କି ହସ୍ତ, ମୁଖ, ଚକ୍ଷୁ ପ୍ରଭୃତି ଅବୟବ ଓ ଚକ୍ର ପ୍ରଭୃତି ଅସ୍ତ୍ରତୁଲ୍ୟ । ଏହି ସବୁ ଭକ୍ତ ଅର୍ଥାତ୍ ଶ୍ରୀନିତ୍ୟାନନ୍ଦ ଶ୍ରୀଅଦ୍ୱୈତ ଓ ଶ୍ରୀଶ୍ରୀବାସାଦି ଯେଉଁମାନେ କି ଶ୍ରୀମନ୍ ଚୈତନ୍ୟ ପ୍ରଭୁଙ୍କର ଅଙ୍ଗ, ଉପାଙ୍ଗ ଅସ୍ତ୍ରଭୂତ ସେମାନଙ୍କ ସହ ପ୍ରଭୁ ଶ୍ରୀଚୈତନ୍ୟ ଲୀଳା କରି ବାଞ୍ଛିତ ପ୍ରଚାର ( ନାମପ୍ରେମ ପ୍ରଚାର ) କରନ୍ତି । ଏହାର ଭାବ ଏହି ଯେ ଶ୍ରୀମନ୍ ମହାପ୍ରଭୁ ଓ ତାଙ୍କ ଇଚ୍ଛାନୁସାରେ ତାହାଙ୍କର ଲୀଳାପରିକରଭକ୍ତମାନେ ଶ୍ରୀମନ୍ ମହାପ୍ରଭୁଙ୍କର ଅଭୀପ୍ସିତ ନାମ ପ୍ରେମ ପ୍ରଚାର କରନ୍ତି । ୩୩ । ୩୪ । ୩୫ ।

'ମାଧବେନ୍ଦ୍ରପୁରୀର ଇଁହୋ ଶିଷ୍ୟ' ଏଇ ଜ୍ଞାନେ ।
ଆଚାର୍ଯ୍ୟଗୋସାଞ୍ଚିରେ ପ୍ରଭୁ 'ଗୁରୁ' କରି ମାନେ । ୩୬
ଲୌକିକଲୀଲାତେ ଧର୍ମ୍ମ-ମର୍ଯ୍ୟାଦା-ରକ୍ଷଣ ।
ସ୍ତୁତି-ଭକ୍ତ୍ୟେ କରେନ ତାଁର ଚରଣବନ୍ଦନ । ୩୭
ଚୈତନ୍ୟଗୋସାଞ୍ଚିକେ ଆଚାର୍ଯ୍ୟ କରେ ପ୍ରଭୁ-ଜ୍ଞାନ ।
ଆପନାକେ କରେନ ତାଁର ଦାସ ଅଭିମାନ । ୩୮
ସେଇ ଅଭିମାନେ ସୁଖେ ଆପନା ପାସରେ ।
'କୃଷ୍ଣଦାସ ହଓ' ଜୀବେ ଉପଦେଶ କରେ । ୩୯
କୃଷ୍ଣଦାସ-ଅଭିମାନେ ଯେ ଆନନ୍ଦ ସିନ୍ଧୁ ।
କୋଟିବ୍ରହ୍ମସୁଖ ନହେ ତାର ଏକ ବିନ୍ଦୁ । ୪୦ ।

ମାଧବେନ୍ଦ୍ରପୁରୀଶିଷ୍ୟଜ୍ଞାନେନୈବ ସର୍ବେଶ୍ୱରଃ ଶ୍ରୀଚୈତନ୍ୟଃ ଅଦ୍ୱୈତଂ ଗୁରୁଂ ମନ୍ୟତେ, ତଥା ଲୌକିକଲୀଲାୟାଂ ଗୁରୁମର୍ଯ୍ୟାଦାସ୍ଥାପନାର୍ଥମେବସ୍ତୁତ୍ୟାଦନା ଅଦ୍ୱୈତସ୍ୟ ଚରଣବନ୍ଧନଂ କରୋତି ନ ତୁ ତତ୍ତ୍ୱଦୃଷ୍ଟ୍ୟା ଇତିଭାବଃ । ୩୬ ୩, ୮,

ଶ୍ରୀକୃଷ୍ଣଚୈତନ୍ୟସ୍ୟାଭେଦତ୍ୱ ବ୍ୟବହାରୋ ଦୃଶ୍ୟତେ କୃଷ୍ଣଃ କ୍ୱଚିତ୍ ଚୈତନ୍ୟ ଇତ୍ୟୁକ୍ତଂ ନାଚେତ୍ତୁ " ତାଁର ଦାସ ଅଭିମାନ " ତଥା " କୃଷ୍ଣଦାସ " ଇତି ବାକ୍ୟଦ୍ୱୟଂ ନ ସମ୍ଭବେତ୍ତୁ । ୩୯ ବ , ଚ ,

ଏପରି ଯଦି ପ୍ରଶ୍ନ ହୁଏ ଯେ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁ ଯଦି ଶ୍ରୀମନ୍ ମହାପ୍ରଭୁଙ୍କର ଭକ୍ତ ତେବେ ମହାପ୍ରଭୁ ତାଙ୍କୁ ଗୁରୁଜ୍ଞାନ କରନ୍ତି କାହିଁକି ? ଏହାର ଉତ୍ତରରେ ଗ୍ରନ୍ଥକାର କହୁଅଛନ୍ତି ଯେ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଶ୍ରୀମନ୍ ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ହେତୁ ଶ୍ରୀମନ୍ ମହାପ୍ରଭୁ ତାଙ୍କୁ ଗୁରୁମର୍ଯ୍ୟାଦା ଦାନ କରନ୍ତି । ଏହାର ଭାବ ଏହି ଯେ ଶ୍ରୀମନ୍ ମହାପ୍ରଭୁଙ୍କର ଲୌକିକଗୁରୁ ଶ୍ରୀମନ୍ ଈଶ୍ୱରପୁରୀ ଗୋସାଇଁ ଶ୍ରୀମନ୍ ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ଏବଂ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ମଧ୍ୟ ଶ୍ରୀମନ୍ ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ, ଏଣୁ ଶ୍ରୀମନ୍ ଅଦ୍ୱୈତ ଓ ଶ୍ରୀମନ୍ ଈଶ୍ୱରପୁରୀ ସତୀର୍ଥ ( ଗୁରୁଭାଇ ) , ଏଣୁ ଶ୍ରୀଅଦ୍ୱୈତାଚାର୍ଯ୍ୟ ଶ୍ରୀମନ୍ ମହାପ୍ରଭୁଙ୍କର ଗୁରୁସ୍ଥାନୀୟ । ୩୬ ।

ଏଣୁ ଶ୍ରୀମନ୍ ମହାପ୍ରଭୁ ପ୍ରକଟଲୀଳାରେ ଲୌକିକଧର୍ମରେ ଗୁରୁମର୍ଯ୍ୟାଦା ସ୍ଥାପନନିମିତ୍ତ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କୁ ଗୁରୁତୁଲ୍ୟ ଭକ୍ତି , ସ୍ତୁତି ଓ ପ୍ରଣାମ କରନ୍ତି । କିନ୍ତୁ ତାହା ହେଲେହେଁ ପରମାର୍ଥତତ୍ତ୍ୱବିତ୍ତ ଶ୍ରୀମନ ଅଦ୍ୱୈତାଚାର୍ଯ୍ୟ ପ୍ରଭୁ ଶ୍ରୀଚୈତନ୍ୟମହାପ୍ରଭୁଙ୍କୁ ନିଜର ପ୍ରଭୁ ଜ୍ଞାନ କରି ଅପଣାକୁ ତାହାଙ୍କର ଦାସ ବୋଲି ଅଭିମାନ କରନ୍ତି । ୩୭ । ୩୮ ।

ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣଚୈତନ୍ୟ ଏହୁଇ ଏକତତ୍ତ୍ୱ ଏବଂ ଅଭେଦ, ଏହି ଜ୍ଞାନରେ ଗ୍ରନ୍ଥକାର କେଉଁଠାରେ ବା କୃଷ୍ଣ ଓ କେଉଁଠାରେ ବା ଚୈତନ୍ୟ ଏରୂପ ବ୍ୟବହାର କରିଅଛନ୍ତି । ସେଇ ଅଭିମାନେ ଅର୍ଥାତ୍ ଚୈତନ୍ୟଦାସ ଅଭିମାନରେ ଶ୍ରୀଅଦ୍ୱୈତାଚାର୍ଯ୍ୟ ଆତ୍ମବିସ୍ମୃତ ହୁଅନ୍ତି ଏବଂ ସେହି ଭାବରେ ଜୀବମାନଙ୍କୁ କୃଷ୍ଣଦାସ ହୁଅ ବୋଲି ଉପଦେଶ କରନ୍ତି । ୩୯ ।

କୃଷ୍ଣଦାସର ଶ୍ରେଷ୍ଠତ୍ୱ ଦେଖାଉଅଛନ୍ତି । କୃଷ୍ଣଦାସ୍ୟାନନ୍ଦ ବ୍ରହ୍ମାନନ୍ଦଠାରୁ ଏତେ ଅଧିକ ଯେ ତାହା ତୁଳନା ହୋଇପାରେ ନା । ଅର୍ଥାତ୍ ପ୍ରାକୃତଭାବରେ ଯଦି ତୁଳନା କରାଯାଏ ତାହା ହେଲେ କୃଷ୍ଣଦାସ୍ୟାନନ୍ଦ ଯଦି ସମୁଦ୍ର ହୁଏ ତେବେ ବ୍ରହ୍ମାନନ୍ଦ ସେଥିର ତୁଳନାରେ ଏକ ବିନ୍ଦୁଜଳର ସମାନ ମଧ୍ୟ ନୁହେ । ୪୦ ।

"ମୁଞି ଯେ ଚୈତନ୍ୟ-ଦାସ ଆର ନିତ୍ୟାନନ୍ଦ ।"
ଦାସଭାବ-ସମ ନହେ ଅନ୍ୟେର ଆନନ୍ଦ । ୪୧ ।
ପରମପ୍ରେୟସୀ ଲକ୍ଷ୍ମୀ—ହୃଦୟେ ବସତି ।
ତେହୋ ଦାସ୍ୟ ସୁଖ ମାଗେ କରିଯା ମିନତି ।୪୨
ଦାସ୍ୟଭାବେ ଆନନ୍ଦିତ ପାରିଷଦଗଣ ।
ବିଧି ଭବ ନାରଦ ଆର ଶୁକ ସନାତନ । ୪୩।
ନିତ୍ୟାନନ୍ଦ ଅବଧୂତ—ସଭାତେ ଆଗଲ ।
ଚୈତନ୍ୟେର ଦାସ୍ୟପ୍ରେମେ ହଇଲା ପାଗଲ ।୪୪

ଶ୍ରୀବାସ ହରିଦାସ ରାମଦାସ ଗଦାଧର ।
ମୁରାରି ମୁକୁନ୍ଦ ଚନ୍ଦ୍ରଶେଖର ବକ୍ରେଶ୍ୱର । ୪୫ ।
ଏ ସବ ପଣ୍ଡିତଲୋକ ପରମ-ମହତ୍ତ୍ୱ ।
ଚୈତନ୍ୟେର ଦାସ୍ୟେ ସଭାୟ କରୟେ ଉନ୍ମତ୍ତ ।୪୬
ଏଇମତ ଗାୟ୍ ନାଚେ କରେ ଅଟ୍ଟହାସ ।
ଲୋକେ ଉପଦେଶ—'ହଓ ଚୈତନ୍ୟେର ଦାସ' । ୪୭ ।

ଦାସଭାବେ ଆନନ୍ଦାଧିକ୍ୟମେବ ଈଶ୍ୱରସ୍ୟାପି ଶ୍ରୀଅଦ୍ୱୈତସ୍ୟ ଭକ୍ତାବତାରତ୍ୱେ କାରଣ-ମେତଦ୍ଦର୍ପୟନ୍ନେବୋକ୍ତମିତି ଜ୍ଞେୟଂ । ୪୧ । ଚ, ଚ,

ଲକ୍ଷ୍ମୀ ସ୍ୱରୂପଶକ୍ତିବୃତ୍ତିରପି ଅତ୍ର ଲକ୍ଷ୍ମୀପଦେନ ସର୍ବ୍ବଲକ୍ଷ୍ମୀମୟୀ ଶ୍ରୀରାଧା ଜ୍ଞେୟା । ଏତତ୍ତୁ ପ୍ରକରଣେ ତଦୈବୋଚିତ୍ୟାତ୍ । ୪୨ । ଚ, ଚ,

"ମୁଇଁ ଯେ ଚୈତନ୍ୟଦାସ ଆଉ ନିତ୍ୟାନନ୍ଦ" ଏହା ଶ୍ରୀଅଦ୍ୱୈତପ୍ରଭୁଙ୍କର ଉକ୍ତି । ମୁଇଁ (ଶ୍ରୀଅଦ୍ୱୈତାଚାର୍ଯ୍ୟ), ଅଦ୍ୱୈତାଚାର୍ଯ୍ୟ କହନ୍ତି ମୁଁ ଓ ନିତ୍ୟାନନ୍ଦ ଏ ଉଭୟ ଶ୍ରୀଚୈତନ୍ୟଙ୍କର ଦାସ । ଏହାର କାରଣ ଗ୍ରନ୍ଥକାର କହୁଅଛନ୍ତି ଯେ ଚୈତନ୍ୟଙ୍କର ଦାସଭାବରେ ଯେଉଁ ଆନନ୍ଦ ହୁଏ ଅର୍ଥାତ୍ ପୂର୍ବ ପୟାରୋକ୍ତ ଯେ ଅପାର ଆନନ୍ଦ ଲାଭ ହୁଏ, ସେପରି ଅନ୍ୟର (ଅନ୍ୟଭାବରେ) ହୁଏ ନା । ତାହାର ଉଦାହରଣ ସେ ସ୍ଥଳରେ ଦେଉଅଛନ୍ତି । ୪୧ ।

ଶ୍ରୀନାରାୟଣଙ୍କର ପରମ ପ୍ରେୟସୀ ଶ୍ରୀଲକ୍ଷ୍ମୀଠାକୁରାଣୀ ଯେ କି ( ଶ୍ରୀବତ୍ସରେଖାରୂପରେ ) ତାଙ୍କ ହୃଦୟରେ ସଦା ରହିଅଛନ୍ତି ସେ ମଧ୍ୟ ଅନେକ ମିନତି କରି ଦାସୀ ସେବା ଦ୍ୱାରା ଦାସ୍ୟ-ସୁଖ ପ୍ରାର୍ଥନା କରନ୍ତି ।

(ଏଠାରେ ଲକ୍ଷ୍ୟ ଅର୍ଥପଦ ଶ୍ରୀଚୈତନ୍ୟ ହେଲେ, ତାହାଙ୍କର " ପରମ ପ୍ରେୟସୀ ଲକ୍ଷ୍ମୀ " ଶବ୍ଦର ଅର୍ଥ ସର୍ବଲକ୍ଷ୍ମୀମୟୀ ଶ୍ରୀରାଧା ହେବ) । ୪୨ ।

ବୈକୁଣ୍ଠର ପାରିଷଦମାନେ ବା ଚତୁର୍ବିଧ ମୁକ୍ତିପ୍ରାପ୍ତ ଜୀବମାନେ ବିଧି ( ବ୍ରହ୍ମା ) ଭବ (ଶିବ) ନାରଦ ପ୍ରଭୃତି ଋଷି, ଶୁକଦେବ, ସନାତନ (ସନକ, ସନନ୍ଦ, ସନାତନ, ସନତ୍କୁମାର) ଏମାନେ ସମସ୍ତେ ଶ୍ରୀଚୈତନ୍ୟଙ୍କର ଦାସ୍ୟଭାବରେ ବିହ୍ୱଳ । ୪୩ ।

ଆଗଲ— ଅଗ୍ରଗଣ୍ୟ ।

ପ୍ରକଟଲୀଳାରେ ଶ୍ରୀଚୈତନ୍ୟ ପାର୍ଷଦମାନଙ୍କ ମଧ୍ୟରେ ଶ୍ରୀଚୈତନ୍ୟଙ୍କ ଦାସ୍ୟ ପ୍ରେମରେ ଅବଧୂତ ନିତ୍ୟାନନ୍ଦ ପ୍ରଭୁ ସମସ୍ତଙ୍କର ଅଗ୍ରଗଣ୍ୟ ଏବଂ ସେ ଦାସ୍ୟଭାବରେ ଉନ୍ମତ୍ତ । ୪୪ ।

ଶ୍ରୀବାସ, ହରିଦାସ, ରାମଦାସ, ଗଦାଧର, ମୁରାରି, ମୁକୁନ୍ଦ, ଚନ୍ଦ୍ରଶେଖର ଓ ବକ୍ରେଶ୍ୱର ଏମାନେ ସମସ୍ତେ ପଣ୍ଡିତ ଏବଂ ସଂସାରରେ ବିଶେଷ ମାନନୀୟ ବ୍ୟକ୍ତି । ଏମାନେ ସମସ୍ତେ ଶ୍ରୀଚୈତନ୍ୟଙ୍କ ଦାସଭାବରେ ବିହ୍ୱଳ, ଏମାନେ ଏଇମତ (ଉନ୍ମତ୍ତବତ୍) ନାଚନ୍ତି, ଗାଆନ୍ତି ଓ ଅଟ୍ଟଅଟ୍ଟ ହସନ୍ତି ଏବଂ ଲୋକମାନଙ୍କୁ ଚୈତନ୍ୟଙ୍କର ଦାସ ହେବାକୁ ଉପଦେଶ ଦିଅନ୍ତି । ୪୫ । ୪୬ । ୪୭ ।

"ଚୈତନ୍ୟଗୋସାଞି ମୋରେ କରେ ଗୁରୁ-ଜ୍ଞାନ ।
ତଥାପିହ ମୋର ହୟ ଦାସ-ଅଭିମାନ" । ୪୮ ।
କୃଷ୍ଣପ୍ରେମେର ଏଇ ଏକ ଅପୂର୍ବପ୍ରଭାବ ।
ଗୁରୁ ସମ ଲଘୁକେ କରାୟ ଦାସ୍ୟଭାବ । ୪୯ ।
ଇହାର ପ୍ରମାଣ ଶୁଣ ଶାସ୍ତ୍ରେର ବ୍ୟାଖ୍ୟାନ ।
ମହଦନୁଭବ ଯାତେ ସୁଦୃଢ଼ ପ୍ରମାଣ । ୫୦ ।
ଅନ୍ୟେର କା କଥା, ବ୍ରଜେ ନନ୍ଦମହାଶୟ ।
ତାଁର ସମ ଗୁରୁ କୃଷ୍ଣେର ଆର କେହୋ ନୟ ।୫୧
ଶୁଦ୍ଧବାତ୍ସଲ୍ୟ,—ଈଶ୍ୱରଜ୍ଞାନ ନାହିଁ ଯାର ।
ତାଁହାକେଇ ପ୍ରେମେ କରାୟ ଦାସ୍ୟ-ଅନୁକାର ।୫୨
ତେଁହୋ ରତ-ମତ ମାଗେ କୃଷ୍ଣେର ଚରଣେ ।
ତାଁହାର ଶ୍ରୀମୁଖବାଣୀ ତାହାତେ ପ୍ରମାଣେ— ।୫୩
ଶୁନ ଉଦ୍ଧବ ! ସତ୍ୟ କୃଷ୍ଣ ଆମାର ତନୟ ।
ତେଁହୋ ଈଶ୍ୱର, ହେନ ଯଦି ତୋମାର ମନେ ଲୟ ।୫୪।
ତଥାପି ତାହାତେ ମୋର ରହୁ ମନୋବୃତ୍ତି ।
ତୋମାର ଈଶ୍ୱର କୃଷ୍ଣେ ହଉକ ମୋର ରତି ।୫୫

"ଚୈତନ୍ୟ ଗୋସାଞିକେ ଆଚାର୍ଯ୍ୟ" ଇତ୍ୟାଦିନା ଯଦୁକ୍ତଂ ତଦେବ ଶ୍ରୀଅଦ୍ୱୈତ ବାକ୍ୟେନ ଦୃଢ଼ୟତି "ଚୈତନ୍ୟ" ଇତ୍ୟାଦି "ଚୈତନ୍ୟେର ଦାସ ମୁଞି" ଇତ୍ୟନେନ ।୪୮। ବି, ଚ,

ନନୁ ଗୁରୁବର୍ଗସ୍ୟ ତବ କଥଂ ଦାସାଭିମାନ ଇତ୍ୟତାହ "କୃଷ୍ଣ" ଇତି । କୃଷ୍ଣପ୍ରେମ୍ନ ଅପୂର୍ବସ୍ୱଭାବେନୈବ ସ ଭବେଦିତ୍ୟର୍ଥଃ । "ସେଇ କୃଷ୍ଣ ଅବତୀର୍ଣ୍ଣ" ଇତ୍ୟନେନ କୃଷ୍ଣଦାସା ଏବ ଚୈତନ୍ୟଦାସା ଇତି ବକ୍ତୁମେତତ୍ ପଦ୍ୟମୁକ୍ତଂ । ୪୯ । ୫୦ । ବି, ଚ,

"ଗୁରୁସମଲଘୁ" ଇତ୍ୟାଦେରୁକ୍ତସ୍ୟ ଗୁରୋଃ କୃଷ୍ଣଦାସ୍ୟଭାବେ ପ୍ରମାଣଂ ଦର୍ଶୟତି "ଅନ୍ୟେର" ଇତି । ୫୧-୫୫ । ବି, ଚ,

ମୋରେ (ଅଦ୍ୱୈତପ୍ରଭୁଙ୍କୁ)

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ପ୍ରଭୁ କହନ୍ତି ଶ୍ରୀଚୈତନ୍ୟ ଗୋସାଇଁ ମୋତେ ଗୁରୁଜ୍ଞାନ କଲେ ସୁଦ୍ଧା ମୋର ତାହାଙ୍କଠାରେ ଦାସ୍ୟଭାବ ଥାଏ । ୪୮ ।

ଶ୍ରୀଚୈତନ୍ୟ ଗୋସାଇଁ ଯାହାଙ୍କୁ ଗୁରୁମାନ୍ୟ କରନ୍ତି ତାହାଙ୍କର ଶ୍ରୀଚୈତନ୍ୟଙ୍କଠାରେ ଦାସ ଅଭିମାନ ହୁଏ କାହିଁକି ? ଏହା ବୁଝାଇବା ପାଇଁ ଗ୍ରନ୍ଥକାର କହୁଅଛନ୍ତି "କୃଷ୍ଣପ୍ରେମର" (ଶ୍ରୀକୃଷ୍ଣ ଓ ଶ୍ରୀଚୈତନ୍ୟ ଏକ ତତ୍ତ୍ୱ ହେତୁ ଶ୍ରୀକୃଷ୍ଣସମ୍ବନ୍ଧରେ ଯାହା କୁହାହେଉଅଛି ତାହା ଶ୍ରୀଚୈତନ୍ୟସମ୍ବନ୍ଧରେ ମଧ୍ୟ ପ୍ରଯୋଜ୍ୟ) ।

ସ୍ୱାଭାବିକ କୃଷ୍ଣପ୍ରେମର ଏହାହିଁ ଗୋଟିଏ ଅପୂର୍ବତା ଯେ ସେ ପ୍ରେମ ଶ୍ରୀକୃଷ୍ଣଙ୍କର ଗୁରୁବର୍ଗ, ସମବର୍ଗ ଓ ଲଘୁବର୍ଗ ( କନିଷ୍ଠ ) ଏ ସମସ୍ତଙ୍କର ଶ୍ରୀକୃଷ୍ଣଙ୍କଠାରେ ଦାସଭାବ ଜନ୍ମାଏ । ଏ କଥା ଯେ ଗ୍ରନ୍ଥକାରଙ୍କର କଳ୍ପିତ ମତ ନୁହେଁ; ତାହା ପ୍ରମାଣ କରିବା ସକାଶେ ସେ କହୁଅଛନ୍ତି ଯେ ଉପରୋକ୍ତ ବିଷୟ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହୋଇଅଛି, ଏବଂ ମହଦନୁଭବଦ୍ୱାରା ଦୃଢ଼ରୂପେ ପ୍ରମାଣିତ ହୋଇଅଛି । ତାହା ନିମ୍ନରେ ପ୍ରକାଶ କରୁଅଛନ୍ତି —୪୯ । ୫୦ ।

ଶ୍ରୀବ୍ରଜଲୀଳା ସମୟରେ ଶ୍ରୀକୃଷ୍ଣଙ୍କର ପିତା ଶ୍ରୀନନ୍ଦମହାଶୟଙ୍କ ତୁଲ୍ୟ ଶ୍ରୀକୃଷ୍ଣଙ୍କର ଅନ୍ୟ କେହି ଗୁରୁ ନାହାନ୍ତି । ସେହି ନନ୍ଦମହାଶୟଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ବିଶୁଦ୍ଧ ବାତ୍ସଲ୍ୟଭାବ ହେତୁ ତାଙ୍କ ପ୍ରତି ଶ୍ରୀନନ୍ଦଙ୍କର କଦାପି ଈଶ୍ୱର ଜ୍ଞାନ ଥାଏ ନା ! ତଥାପି ଶ୍ରୀକୃଷ୍ଣପ୍ରେମର ଅପୂର୍ବ ଭାବ, ଶ୍ରୀନନ୍ଦଙ୍କର ମଧ୍ୟ ଦାସ୍ୟଭାବ ଆନୟନ କରେ । ଅର୍ଥାତ୍ ସେ ଶ୍ରୀକୃଷ୍ଣଙ୍କର ଚରଣରେ ନିଜର ରତି ହେବା ସକାଶେ ପ୍ରାର୍ଥନା କରିଥିଲେ, ଏହା ତାହାଙ୍କର ଶ୍ରୀମୁଖବଚନ ଦ୍ୱାରା ପ୍ରମାଣିତ ।୫୧।୫୨। ୫୩।

ତଥାହି ( ଭାଃ ୧୦।୪୭।୬୬,୬୭ )—

ମନସୋ ବୃତ୍ତୟୋ ନଃ ସ୍ୟୁଃ କୃଷ୍ଣପାଦାମ୍ବୁଜାଶ୍ରୟାଃ ।
ବାଚୋଽଭିଧାୟିନୀର୍ନାମ୍ନାଂ କାୟସ୍ତତ୍ପ୍ରହ୍ୱଣାଦିଷୁ ।୫୪।*
କର୍ମ୍ମଭିର୍ଭ୍ରାମ୍ୟମାଣାନାଂ ଯତ୍ର କ୍ୱାପୀଶ୍ୱରେଚ୍ଛୟା ।
ମଙ୍ଗଳାଚରିତୈର୍ଦାନୈ ରତିର୍ନଃ କୃଷ୍ଣ ଈଶ୍ୱରେ ।୫୫।*

ଶ୍ରୀଦାମାଦି ବ୍ରଜେ ଯତ ସଖାର ନିଚୟ ।
ଐଶ୍ୱର୍ଯ୍ୟଜ୍ଞାନହୀନ-କେବଲ ସଖ୍ୟମୟ । ୫୬ ।
କୃଷ୍ଣସଙ୍ଗେ ଯୁଦ୍ଧ କରେ—ସ୍କନ୍ଧେ ଆରୋହଣ ।
ତାଁରା ଦାସ୍ୟଭାବେ କରେ ଚରଣ ସେବନ ।୫୭ ।

( ଅନୁରାଗେଣ ପ୍ରୋଚୁଃ ) ନଃ ( ଅସ୍ମାକଂ ) ମନସଃ ବୃତ୍ତୟଃ କୃଷ୍ଣପାଦାମ୍ବୁଜାଶ୍ରୟାଃ ସ୍ୟୁଃ, ବାଚଃ ( ତୁ ) ନାମ୍ନାଂ ( ତନ୍ନାମ୍ନାମ୍ ) ଅଭିଧାୟିନ୍ୟ ( ଅଭିଧାୟିନ୍ୟଃ ସ୍ୟୁଃ ) କାୟଃ ( ଦେହଃ ତୁ ) ତତ୍ ପ୍ରହ୍ୱଣାଦିଷୁ ( ତନ୍ନମସ୍କାରାଦିଷୁ ଅସ୍ତୁ ) । ୫ ମ ଶ୍ଳୋକ ।

କର୍ମ୍ମଭିଃ ( ପୁଣ୍ୟପାପାତ୍ମକୈଃ ତଦନୁଗୁଣ୍ୟା ) ଈଶ୍ୱରେଚ୍ଛୟା ( ଚ ) ( ଯତ୍ର କ୍ୱାପି ଭ୍ରାମ୍ୟମାଣାନାଂ ଦେବମନୁଷ୍ୟାଦିଷୁ ଜାୟମାନାନାଂ ) ନଃ ( ଅସ୍ମାକଂ ) ମଙ୍ଗଳାଚରିତୈଃ ଦାନୈଃ ( ତତ୍କୃତୈଃ ପୁଣ୍ୟୈଃ ) ଈଶ୍ୱରେ ( ଈଶ୍ୱରରୂପେଽପି ) କୃଷ୍ଣେ ରତିଃ ( ଅନୁରାଗ ଅସ୍ତୁ । ୬ଷ୍ଠ ଶ୍ଳୋକ ।

"ଗୁରୁ ସମ ଲଘୁ" ଇତ୍ୟବୋକ୍ତସ୍ୟ ଗୁର୍ବୋଃ କୃଷ୍ଣଦାସଭାବେ ପ୍ରମାଣଂ ଦର୍ଶୟିତ୍ୱା ତଦବୋକ୍ତସ୍ୟ ସମସ୍ୟ ତତ୍ ଦର୍ଶୟତି "ଶ୍ରୀଦାମାଦି" ଇତି । ୫୬ । ୫୭ । ବି, ଚ,

ଶ୍ରୀନନ୍ଦ ମହାରାଜ ଉଦ୍ଧବଙ୍କୁ କହିଥିଲେ, ହେ ଉଦ୍ଧବ ; ଶ୍ରୀକୃଷ୍ଣ ମୋର ପୁତ୍ର ଏହା ସତ୍ୟ ଅର୍ଥାତ୍ ଏହା ଅତିରଞ୍ଜିତ ନୁହେଁ, ତେଣୁ କୃଷ୍ଣପ୍ରତି ମୋର ସ୍ନେହ, ମମତା ଆଦି ସମ୍ପୂର୍ଣ୍ଣ ରହିଅଛି, ଏବଂ ତାହାଙ୍କର ସହିତ ବିଚ୍ଛେଦଦ୍ୱାରା ବରଂ ବୃଦ୍ଧିପ୍ରାପ୍ତ ହୋଇଅଛି । ସେହି ମୋର ପୁତ୍ର କୃଷ୍ଣଙ୍କୁ ଯଦି ତୁମ୍ଭେ ଈଶ୍ୱର ବୋଲି ସ୍ୱୀକାର କର ଏବଂ ମୋତେ ସ୍ୱୀକାର କରିବାକୁ କହ ତେବେ ତୁମ୍ଭର କଥିତ ଈଶ୍ୱର କୃଷ୍ଣଙ୍କଠାରେ ମୋର ସମସ୍ତ ମତି ଏବଂ ଅନୁରାଗ ରହୁ । ୫୪ । ୫୫ ।

ଶ୍ରୀନନ୍ଦ ମହାରାଜ ଉଦ୍ଧବଙ୍କୁ ବ୍ରଜପୁରରୁ ବିଦାୟ ଦେବାସମୟରେ କହୁଅଛନ୍ତି ଃ—

ହେ ଉଦ୍ଧବ ! ତୁମ୍ଭେ ଯେଉଁ ଈଶ୍ୱର କୃଷ୍ଣଙ୍କ ବିଷୟ କହୁଥିଲ ଆମ୍ଭମାନଙ୍କର ସମସ୍ତ ମନୋବୃତ୍ତି ସେହି କୃଷ୍ଣଙ୍କର ଚରଣକମଳ ଆଶ୍ରୟ କରୁ, ବାକ୍ୟ ତାହାଙ୍କର ନାମ ଉଚ୍ଚାରଣ କରୁ, ଶରୀର ତାଙ୍କଠାରେ ନତ ହେଉ । ୫ମ ଶ୍ଳୋକାର୍ଥ ।

ଈଶ୍ୱରଇଚ୍ଛାରେ କର୍ମ୍ମବଶତଃ ଯେଉଁ ଜନ୍ମ ହେଉ ନା କାହିଁକି ମଙ୍ଗଳକାର୍ଯ୍ୟର ଫଳ-ସ୍ୱରୂପ ଏବଂ ଦାନର ଫଳସ୍ୱରୂପ ଆମ୍ଭମାନଙ୍କର ରତି ଈଶ୍ୱର ଶ୍ରୀକୃଷ୍ଣଙ୍କଠାରେ ରହୁ । ୬ଷ୍ଠ ଶ୍ଳୋକାର୍ଥ ।

ଗ୍ରନ୍ଥକାର ଗୁରୁବର୍ଗଙ୍କର ଶ୍ରୀକୃଷ୍ଣଦାସ୍ୟ, ଉଦାହରଣଦ୍ୱାରା ଦେଖାଇ ସମବର୍ଗଙ୍କ ଶ୍ରୀକୃଷ୍ଣଦାସ୍ୟ ବିଷୟ କହୁଅଛନ୍ତି ଃ—

ବ୍ରଜେ ( ବୃନ୍ଦାବନେ ) ଶ୍ରୀଦାମ ପ୍ରଭୃତି ସଖାମାନେ ବିଶୁଦ୍ଧ ସଖ୍ୟଭାବମୟ । ସେମାନେ ଶ୍ରୀକୃଷ୍ଣଙ୍କ ଐଶ୍ୱର୍ଯ୍ୟଜ୍ଞାନଶୂନ୍ୟ । ସଖାଗଣ ସମଭାବାପନ୍ନ ହେତୁ ଶ୍ରୀକୃଷ୍ଣଙ୍କ ସହିତ କୌତୁକରେ ଯୁଦ୍ଧ କରନ୍ତି ଏବଂ ଶ୍ରୀକୃଷ୍ଣଙ୍କର ସ୍କନ୍ଧରେ ମଧ୍ୟ ଆରୋହଣ କରନ୍ତି । ଏ ପ୍ରକାର ସମଭାବାପନ୍ନ ସଖାମାନେ ଯେଉଁମାନେ ଶ୍ରୀକୃଷ୍ଣଙ୍କୁ ପୂଜ୍ୟ ବୋଲି କଦାପି ମନେ କରନ୍ତି ନାହିଁ, ସେମାନେ ମଧ୍ୟ ଦାସ୍ୟ ଭାବରେ ଶ୍ରୀକୃଷ୍ଣଙ୍କର ଚରଣସେବାଦି କରନ୍ତି ।୫୬ । ୫୭ ।

ତଥାହି ତତ୍ରୈବ ( ୧୦।୧୫।୧୭)—

ପାଦସମ୍ବାହନଂ ଚକ୍ରୁଃ କେଚିତ୍ତସ୍ୟ ମହାତ୍ମନଃ ।
ଅପରେ ହତପାପ୍ମାନୋ ବ୍ୟଜନୈଃ ସମବୀଜୟନ୍ ॥ ୭ ॥

କୃଷ୍ଣେର ପ୍ରେୟସୀ ବ୍ରଜେ ଯତ ଗୋପୀଗଣ ।
ଯାଁର ପଦଧୂଲି କରେ ଉଦ୍ଧବ ପ୍ରାର୍ଥନ ॥ ୫୮ ॥
ଯାଁ-ସଭା-ଉପରେ କୃଷ୍ଣେର ପ୍ରିୟ ନାହିଁ ଅନ ।
ତାଁରା ଆପନାକେ କରେ ଦାସୀ-ଅଭିମାନ ॥ ୫୯ ॥

ତଥାହି ( ଭାଃ ୧୦।୩୧।୬ )—

ବ୍ରଜଜନାର୍ତ୍ତିହନ୍ ବୀରଯୋଷିତାଂ,
ନିଜଜନସ୍ମୟଧ୍ୱଂସନସ୍ମିତ ।
ଭଜ ସଖେ ଭବତ୍କିଙ୍କରୀଃ ସ୍ମ ନୋ,
ଜଲରୁହାନନଂ ଚାରୁ ଦର୍ଶୟ ॥ ୮ ॥

ହତପାପ୍ମାନଃ ( ହତଃ ନଷ୍ଟଃ ତତ୍ସେବାନ୍ତରାୟରୂପଃ ପାପ୍ମା ଯୈଃ ) କେଚିତ୍ ( ଗୋପବାଳକାଃ ) ମହାତ୍ମନଃ ( ଶ୍ରୀକୃଷ୍ଣସ୍ୟ ) ତସ୍ୟ ପାଦସମ୍ବାହନଂ ଚକ୍ରୁଃ । ଅପରେ ( ଗୋପବାଳକାଃ ) ବ୍ୟଜନୈଃ ( ପତ୍ରବାଦନନିର୍ମିତୈଃ ) ସମବୀଜୟନ୍ ( ସମ୍ୟକ୍ ମନ୍ଦମଧୁରଶୀତଳବାୟୁ ମୃଦ୍ବ୍ୟାଞ୍ଚାଳୟନ୍ ) ୭ମ ଶ୍ଳୋକ ।

"ଚାରୁ ଦର୍ଶୟ" ଇତ୍ୟନ୍ତୋକ୍ତ୍ୟା ଲବ୍ଧୋଃ କୃଷ୍ଣଦାସଭାବେ ପ୍ରମାଣଂ ଦର୍ଶୟତି "କୃଷ୍ଣେର" ଇତ୍ୟାଦିଭିଃ । ୫୮ । ୫୯ । ବି, ନ,

ହେ ବ୍ରଜଜନାର୍ତ୍ତିହନ୍ ! ବୀର ( ଦୟାବୀର ) ନିଜଜନସ୍ମୟଧ୍ୱଂସନସ୍ମିତ ( ନିଜଜନାନାଂ ସ୍ମୟଃ ଗର୍ବଃ ତଂ ଧ୍ୱଂସୟତି ଇତି ତଥାଭୂତଂ ସ୍ମିତଂ ଯସ୍ୟ ତଥାଭୂତ ! ) ସଖେ ! ସ୍ମ ( ନିଶ୍ଚିତଂ ) ଭବତ୍କିଙ୍କରୀଃ ନଃ ( ଅସ୍ମାନ୍ ) ଭଜ ( ଆଶ୍ରୟ, ଅନୁବର୍ତ୍ତୀ ) ଚାରୁ ( ମନୋହରଂ ) ଜଲରୁହାନନଂ ( ମୁଖକମଲଂ ) ଯୋଷିତାଂ ( ଅସ୍ମାକଂ ) ଦର୍ଶୟ । ୮ମ ଶ୍ଳୋକ ।

ଶ୍ରୀମନ୍ତ କୃଷ୍ଣ ଗୋପବାଳକମାନଙ୍କ ସହିତ ଗୋବର୍ଦ୍ଧନପ୍ରଦେଶରେ ବନମଧ୍ୟରେ ନାନା-ପ୍ରକାର କ୍ରୀଡ଼ା କୌତୁକ କରୁଁ କରୁଁ ଶ୍ରୀକୃଷ୍ଣ ପରିଶ୍ରାନ୍ତ ହୋଇ କୌଣସି ଗୋପବାଳକର ଅଙ୍କରେ ମସ୍ତକ ରଖି ପଲ୍ଲବଶଯ୍ୟାରେ ଶୟନ କଲେ ( ତାହାଙ୍କର ସେବାରେ ବିଘ୍ନ ଉତ୍ପାଦକ ପାପମାନଙ୍କୁ ନାଶ କରିଅଛନ୍ତି ଅର୍ଥାତ୍ ନିର୍ବିଘ୍ନରେ ) ସେହି ପବିତ୍ରମନ ଗୋପବାଳକମାନଙ୍କ ମଧ୍ୟରୁ କେହି କେହି ତାହାଙ୍କର ଚରଣସେବା କରିଥିଲେ ଓ ଅପର କେହି କେହି ତାହାଙ୍କ ପତ୍ର ଦ୍ୱାରା ମନ୍ଦ-ମଧୁର ବାୟୁ ସଞ୍ଚାଳନ କରିଥିଲେ । ୭ମ ଶ୍ଳୋକାର୍ଥ ।

ଗ୍ରନ୍ଥକାର ବର୍ତ୍ତମାନ ଭକ୍ତବର୍ଗଙ୍କ ଶ୍ରୀକୃଷ୍ଣଦାସ୍ୟବିଷୟ କହୁଅଛନ୍ତି । ବ୍ରଜେ ( ଶ୍ରୀ ବୃନ୍ଦାବନରେ ) ଶ୍ରୀକୃଷ୍ଣପ୍ରେୟସୀ ଗୋପୀମାନେ ଯେଉଁମାନଙ୍କର ପଦଧୂଳି ପାଇବାପାଇଁ ଉଦ୍ଧବଙ୍କ ପରି ମହାତ୍ମା ପ୍ରାର୍ଥନା କରିଥିଲେ ଏବଂ ଯେଉଁମାନଙ୍କ ତୁଲ୍ୟ ଶ୍ରୀକୃଷ୍ଣଙ୍କର ଆଉ କେହି ପ୍ରେୟସୀ ନାହାନ୍ତି ( ଅର୍ଥାତ୍ ଶ୍ରୀକୃଷ୍ଣଙ୍କର ପ୍ରେୟସୀବର୍ଗମଧ୍ୟରେ ଶ୍ରେଷ୍ଠତମ ) ଏପରି ଯେ ଗୋପୀ-ମାନେ ସେମାନେ ମଧ୍ୟ ଆପଣାକୁ ଶ୍ରୀକୃଷ୍ଣଙ୍କର ଦାସୀ ବୋଲି ଅଭିମାନ କରନ୍ତି ।

ଉଦ୍ଧବ-ଯାଦବଶ୍ରେଷ୍ଠ, ପ୍ରଧାନ ମନ୍ତ୍ରୀ ।

ବଳିଷ୍ଠତମ ଶ୍ରୀକୃଷ୍ଣଙ୍କର ପ୍ରିୟ ସୁହୃତ୍, ସଖା, ଶିଷ୍ୟ ଏବଂ ପ୍ରଧାନ ଭକ୍ତ । ୫୮ । ୫୯ ।

ରାସରେ ଶ୍ରୀ କୃଷ୍ଣଙ୍କର ଅନ୍ତର୍ଦ୍ଧାନ ପରେ ଗୋପୀମାନଙ୍କର ବାକ୍ୟ ।

ହେ ବ୍ରଜଜନ-ଦୁଃଖବିନାଶନ, ହେ ଦୟାବତାର, ହେ ନିଜଜନଗର୍ବଖର୍ବକର, ହାସ୍ୟ-ଯୁକ୍ତ, ହେ ସଖେ, ଆମ୍ଭେମାନେ ତୁମ୍ଭର ଦାସୀ, ଆମ୍ଭମାନଙ୍କୁ ଭଜନା କର, ଆମ୍ଭମାନଙ୍କ ତୁଲ୍ୟ ସେବିକା-ମାନଙ୍କୁ ମନୋହର ଶ୍ରୀମୁଖକମଳ ଦର୍ଶନ କରାଅ । ୮ମ ଶ୍ଳୋକାର୍ଥ ।

ତତ୍ରୈବ ( ୧୦।୪୭।୧୯ )—
ଅପି ବତ ମଧୁପୁର୍ଯ୍ୟାମାର୍ଯ୍ୟପୁତ୍ରୋଽଧୁନାସ୍ତେ,
ସ୍ମରତି ସ ପିତୃଗେହାନ୍ ସୌମ୍ୟ ବନ୍ଧୂଂଶ୍ଚ ଗୋପାନ୍ ।
କ୍ୱଚିଦପି ସ କଥା ନଃ କିଙ୍କରୀଣାଂ ଗୃଣୀତେ ।
ଭୁଜମଗୁରୁସୁଗନ୍ଧଂ ମୂର୍ଦ୍ଧ୍ନ୍ୟଧାସ୍ୟତ୍ କଦା ନୁ ॥ ୯ ॥
ତାଁ-ସଭାର ଗଣ ଯତ ରହୁ, ଶ୍ରୀମତୀ ରାଧିକା ।
ସଭି ହୈତେ ସକଲାଂଶେ ପରମ-ଅଧିକା ॥
ତେଁହୋ ଯାଁର ଦାସୀ ହୈଞା ସେବେନ ଚରଣ ।
ଯାଁର ପ୍ରେମଗୁଣେ କୃଷ୍ଣ ବଦ୍ଧ ଅନୁକ୍ଷଣ ॥

ତଥାହି ( ଭାଃ ୧୦।୩୦।୩୯ )—
ହା ନାଥ ରମଣ ପ୍ରେଷ୍ଠ କ୍ୱାସି କ୍ୱାସି ମହାଭୁଜ ।
ଦାସ୍ୟାସ୍ତେ କୃପଣାୟା ମେ ସଖେ ଦର୍ଶୟ ସନ୍ନିଧିମ୍ ॥ ୧୦ ॥
ଦ୍ୱାରକାତେ ରୁକ୍ମିଣ୍ୟାଦି ଯତେକ ମହିଷୀ ।
ତାହାରାଓ ଆପନାକେ ମାନେ କୃଷ୍ଣଦାସୀ ॥ ୭୧ ॥

( ହେ ) ସୌମ୍ୟ ! ଅପି ବତ ଆର୍ଯ୍ୟପୁତ୍ରଃ ( ଆର୍ଯ୍ୟସ୍ୟ ପୂଜ୍ୟସ୍ୟ ନନ୍ଦସ୍ୟ ପୁତ୍ରଃ ) ଅଧୁନା ( କିଂ ) ମଧୁପୁର୍ଯ୍ୟାମ୍ ଆସ୍ତେ ? ( ସଃ ) ସ ପିତୃଗେହାନ୍ ( ପିତ୍ରୋଃ ଗେହେଷୁ ସହିତାନ୍ ) ବନ୍ଧୂନ୍ ( ଜ୍ଞାତୀନ୍ ଉପନନ୍ଦାଦୀନ୍ ) ଗୋପାନ୍ ( ଶ୍ରୀଦାମାଦୀନ୍ ) ଚ ( କିଂ ) ସ୍ମରତି ? କ୍ୱଚିତ୍ ( କଦାଚିତ୍ ଅପି କିଙ୍କରୀଣାଂ ) ନଃ ( ଅସ୍ମାକଂ ) କଥାଂ ( ବାର୍ତ୍ତାଂ ) ସଃ ଗୃଣୀତେ ( ସ୍ୱମୁଖେ-ନୋଚ୍ଚାରୟେତ୍ ) ? କଦା ନୁ ( ବା ) ଅଗୁରୁସୁଗନ୍ଧଂ ( ଅଗୁରୁସକାଶାଦପି ସୁଷ୍ଠୁ ଗନ୍ଧଃ ଯସ୍ୟ ତାଦୃଶଃ ଭୁଜଂ ( ସ୍ୱଭୁଜଂ ଅସ୍ମାକଂ ) ମୂର୍ଦ୍ଧ୍ନି ଅଧାସ୍ୟତ୍ ( ନିଧାସ୍ୟତି ) ? ୯ମ ଶ୍ଳୋକ ।

ତାଁ ସବାର ଇତ୍ୟାଦି ପୟାରଦ୍ୱୟର ଅର୍ଥ ସ୍ପଷ୍ଟ ଏବଂ ପର ପରାର ୮।୭୦।୭୧। ହ, ନ,

ହା ( ଖେଦେ ଆର୍ତ୍ତିସମ୍ବୋଧନେ ବା ) ନାଥ ( ସ୍ୱାମିତ୍ୱପ୍ରାପକ ) ରମଣ ( କାନ୍ତୋ-ଚିତସୁଖପ୍ରଦ ) ପ୍ରେଷ୍ଠ ( ମଦ୍ବିଷୟକ ଅତ୍ୟୁଚ୍ଚପ୍ରେମବିସ୍ତାରକ ) ମହାଭୁଜ କ୍ୱାସି ( ତ୍ୱଂ ) କ୍ୱାସି ? ( ହେ ) ସଖେ ! କୃପଣାୟାଃ ( ଦୀନାୟାଃ ) ତେ ( ତବ ) ଦାସ୍ୟାଃ ମେ ( ମମ ) ସନ୍ନିଧିଂ ( ନିଜ ସନ୍ନିଧାନଂ ) ଦର୍ଶୟ । ୧୦ମ ଶ୍ଳୋକ ।

ଶ୍ରୀଉଦ୍ଧବଙ୍କୁ ଦର୍ଶନ କରି ଶ୍ରୀରାଧା ଭ୍ରମରକୁ କହିବାଛଳରେ କହୁଅଛନ୍ତି, ହେ ସୌମ୍ୟ ! ଆର୍ଯ୍ୟପୁତ୍ର ( ଶ୍ରୀକୃଷ୍ଣ ) ଅଧୁନା ମଥୁରାରେ ଅଛନ୍ତି କି ? ସେ ତାଙ୍କର ପିତା, ଗୃହ ଓ ବନ୍ଧୁମାନଙ୍କୁ ମନେ କରନ୍ତି ତ ? ତାଙ୍କର ଦାସୀ ଆମ୍ଭମାନଙ୍କ କଥା କି କେବେ କହନ୍ତି ? ହାୟ କେବେ ସେ ତାଙ୍କର ଅଗୁରୁଚନ୍ଦନଲିପ୍ତ ସୁବାସିତ ଶ୍ରୀଭୁଜ ଆମ୍ଭମାନଙ୍କ ମସ୍ତକରେ ନ୍ୟସ୍ତ କରିବେ । ୯ମ ଶ୍ଳୋକାର୍ଥ ।

ଗ୍ରନ୍ଥକାର କହୁଅଛନ୍ତି , କେବଳ ଗୋପମାନେ ଯେ ଶ୍ରୀକୃଷ୍ଣଙ୍କର ଦାସ୍ୟ ଅଭିମାନ କରି-ଥିଲେ ତାହା ନୁହେଁ, ଶ୍ରୀମତୀ ରାଧିକା ଯେ କି ସମସ୍ତ ଗୋପୀମାନଙ୍କ ମଧ୍ୟରେ ରୂପ ଗୁଣାଦି ସବୁବିଷୟରେ ଶ୍ରୀକୃଷ୍ଣଙ୍କର ପ୍ରେୟସୀମାନଙ୍କ ମଧ୍ୟରେ ଶ୍ରେଷ୍ଠା ସେ ମଧ୍ୟ ଦାସୀ ହୋଇ ଶ୍ରୀକୃଷ୍ଣଙ୍କର ଚରଣସେବା କରନ୍ତି ୭୦ । ୭୧

ରାସରେ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କ ସହ ଗୋପୀମଣ୍ଡଳୀ ମଧ୍ୟରୁ ଅନ୍ତର୍ହିତ ହେଲାପରେ ଶ୍ରୀରାଧାଙ୍କୁ ବନମଧ୍ୟରେ ଏକାକୀ ଛାଡ଼ି ଅନ୍ତର୍ହିତ ହେବାରୁ ଶ୍ରୀରାଧା ବିଳାପ କରି କହୁଅଛନ୍ତି , ହେ ନାଥ , ହେ ପ୍ରିୟତମ , ହେ ରମଣ, ହେ ମହାବାହୁ, ତୁମ୍ଭେ କେଉଁଠାରେ ଅଛ । ସଖେ ! ମୁଁ ଅତିଦୀନା , ତୁମ୍ଭର ଦାସୀ, ମୋତେ ତୁମ୍ଭର ସନ୍ନିଧି ଦର୍ଶନ କରାଅ ଅର୍ଥାତ୍ ଶ୍ରୀଚରଣ ଦର୍ଶନ କରାଅ । ୧୦ମ ଶ୍ଳୋକାର୍ଥ ।

କେବଳ ଶ୍ରୀବୃନ୍ଦାବନସ୍ଥ ପ୍ରିୟାମାନେ ଯେ ଶ୍ରୀକୃଷ୍ଣଙ୍କର ଦାସ୍ୟାଭିମାନ କରନ୍ତି ଏମନ୍ତ ନୁହେଁ ଐଶ୍ୱର୍ଯ୍ୟ ପ୍ରଧାନ ଦ୍ୱାରକାର ରୁକ୍ମିଣୀ ଆଦି ମହିଷୀମାନେ ମଧ୍ୟ ଦାସୀ ଅଭିମାନ କରନ୍ତି । ୭୧ ।

ତଥାହି ( ଭାଃ ୧୦ । ୮୩ । ୧୧ )—
ତପଶ୍ଚରନ୍ତୀମାଜ୍ଞାୟ ସ୍ୱପାଦସ୍ପର୍ଶନାଶୟା ।
ସଖ୍ୟୋପେତ୍ୟାଗ୍ରହୀତ୍ ପାଣିଂ ସାହଂ ତଦ୍‌ଗୃହମାର୍ଜ୍ଜନୀ ॥

ତତ୍ରୈବ ( ୧୦ । ୮୩ । ୩୪ )—
ଆତ୍ମାରାମସ୍ୟ ତସ୍ୟେମା ବୟଂ ବୈ ଗୃହଦାସିକାଃ ।
ସର୍ବସଙ୍ଗନିବୃତ୍ତ୍ୟାଦ୍ଧା ତପସା ଚ ବଭୂବିମ ॥ ୧୬୩

ମା ( ମାଂ ) ଚୈଦ୍ୟାୟ ( ଶିଶୁପାଳାୟ ) ଅର୍ପୟିତୁଂ ରାଜସୁ ( ଜରାସନ୍ଧାଦିଷୁ ) ଉଦ୍ୟତକାର୍ମ୍ମୁକେଷୁ ( ସତ୍ସୁ ) ମୃଗେନ୍ଦ୍ରଃ ( ସିଂହଃ ) ଅଜାବିୟୂଥାତ୍ ( ଅଜା ଛାଗାଶ୍ଚ ଅବୟଃ ମେଷାଶ୍ଚ ତେଷାଂ ଯୂଥାତ୍ ) ଭାଗମିବ ଅଜେୟଭଟଶେଖରତାଙ୍ଘ୍ରିରେଣୁଃ ( ଅଜେୟାଃ ଯେ ଯୋଦ୍ଧାରଃ ତେଷାଂ ଶେଖରତା ମୁକୁଟବତ୍ କୃତା ଅଙ୍ଘ୍ରିରେଣବୋ ଯେନ ତେଷାଂ ମୂର୍ଦ୍ଧସୁ ପଦଂ ଦଧତ୍ ଯଦ୍ୱାଜେୟାଃ ଯେ ଭଟାଃ ଯୋଦ୍ଧାରଃ ତୈଃ ଅପି ନିଜାଜେୟତ୍ୱାର୍ଥଂ ଶେଖରତା ଅଙ୍ଘ୍ରିରେଣବୋଽପି ଇତି ସର୍ବୋପରି ବର୍ତ୍ତିତ ଇତ୍ୟର୍ଥଃ ମାଂ ଯଃ ) ନିନ୍ୟେ ( ଶ୍ରୀମଥୁରାଂ ଆନୀତବାନ୍ ) ତତ୍ ଶ୍ରୀନିକେତଚରଣଃ ମମ ଅର୍ଚ୍ଚନାୟ ଅସ୍ତୁ । ୧୧ଶ ଶ୍ଳୋକ ।

ସ୍ୱପାଦସ୍ପର୍ଶନାଶୟା ( ସ୍ୱସ୍ୟ ଶ୍ରୀକୃଷ୍ଣସ୍ୟ ପାଦସ୍ପର୍ଶନସ୍ୟ ଆଶୟା ଚତ୍ତଂ ଯସ୍ୟାଃ ସା ) ତପଶ୍ଚରନ୍ତୀଂ ମା ( ମାଂ ) ଆଜ୍ଞାୟ ( ଜ୍ଞାତ୍ୱା ) ସଃ ( ଶ୍ରୀକୃଷ୍ଣଃ ) ସଖ୍ୟା ( ଅର୍ଜ୍ଜୁନେନ ସହ ) ଉପେତ୍ୟ ( ସମୀପେ ଆଗତ୍ୟ, ମମ ) ପାଣିମ୍ ଅଗ୍ରହୀତ୍ ( ଯଥାଶାସ୍ତ୍ରଂ ମାଂ ବ୍ୟୂଢ଼ବାନ୍ ) । ନନୁ ( ତପଶ୍ଚରଣାଦ୍ଧ୍ରୁମେବ ତସ୍ୟ ଯୋଗ୍ୟା ଭାର୍ଯ୍ୟା ନେତ୍ୟାହ ) ସା ଅହଂ ତତ୍ ( ତସ୍ୟ ) ଗୃହମାର୍ଜ୍ଜନୀ ( ଦାସୀ ଚ ନ ତ ପତ୍ନୀଯୋଗ୍ୟା ଇତ୍ୟର୍ଥଃ ) ୧୨ଶ ଶ୍ଳୋକ ।

ଇମାଃ ବୟଂ ସର୍ବସଙ୍ଗନିବୃତ୍ତ୍ୟା ( ସର୍ବେଷୁ ଧନପୁତ୍ରାଦିଷୁ ସଙ୍ଗଃ ଆସକ୍ତିଃ ତସ୍ୟ ନିବୃତ୍ତ୍ୟା ଉପେକ୍ଷୟା ଯଦ୍ୱା ସର୍ବସଙ୍ଗନିବୃତ୍ତ୍ୟା ମୁମୁକ୍ଷାପର୍ଯ୍ୟନ୍ତରାହିତ୍ୟେନ ) ତପସା ( ସ୍ୱଧର୍ମ୍ମେଣ ଦାସୀକର୍ମ୍ମେଣ ) ଆତ୍ମାରାମସ୍ୟ ତସ୍ୟ ( ଶ୍ରୀକୃଷ୍ଣସ୍ୟ ) ଅଦ୍ଧା ( ସାକ୍ଷାତ୍ ) ଗୃହଦାସିକାଃ ବଭୂବିମ ।

୧୩ଶ ଶ୍ଳୋକ ।

ଶ୍ରୀ ଦ୍ରୌପଦୀଙ୍କୁ ଶ୍ରୀ ରୁକ୍ମିଣୀ କହୁଅଛନ୍ତି ; ଉଦ୍ୟତଧନୁ ରାଜାମାନେ ଚୈଦ୍ୟାଧିପତି ଶିଶୁପାଳଙ୍କୁ ମୋତେ ସମର୍ପଣ କରିବା ସକାଶେ ପ୍ରଥମେ ସ୍ଥିର କରିଥିଲେ, କିନ୍ତୁ ପରେ ସେହି ଅଜେୟ ସୈନ୍ୟମାନଙ୍କର ମସ୍ତକରେ ଚରଣ ପ୍ରଦାନପୂର୍ବକ ଛାଗ, ମେଷମାନଙ୍କର ଦଳ ମଧ୍ୟରୁ ସ୍ୱୀୟଭାଗହାରୀ ସିଂହର ନ୍ୟାୟ ଶ୍ରୀକୃଷ୍ଣ ମୋତେ ହରଣ କଲେ । ସେହି ଶ୍ରୀନିକେତନ ଶ୍ରୀକୃଷ୍ଣଙ୍କର ପାଦପଦ୍ମ ସର୍ବଦା ମୋର ଅର୍ଚ୍ଚନୀୟ ହେଉ । ୧୧ ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣ ମହିଷୀ କାଳିନ୍ଦୀ ଦ୍ରୌପଦୀଙ୍କୁ କହୁଅଛନ୍ତି । ଶ୍ରୀକୃଷ୍ଣଙ୍କର ପାଦପଦ୍ମ ସ୍ପର୍ଶ ବାସନାରେ ମୁଁ ତପସ୍ୟା କରୁଅଛି ଜାଣି ସେ ସଖା ଅର୍ଜ୍ଜୁନଙ୍କର ସହିତ ଉପସ୍ଥିତ ହୋଇ ମୋର ପାଣି ଗ୍ରହଣ କଲେହେଁ ମୁଁ ତାଙ୍କର ଗୃହମାର୍ଜ୍ଜନକାରିଣୀ ଦାସୀମାତ୍ର । ୧୨ଶ ଶ୍ଳୋକାର୍ଥ ।

ଶ୍ରୀମତୀ ଲକ୍ଷ୍ମଣା ଦ୍ରୌପଦୀଙ୍କୁ କହୁଅଛନ୍ତି, ଏହି ଆମ୍ଭେମାନେ ଅଠଜଣ ( ଅଷ୍ଟପାଟମହିଷୀ ) ଚତୁର୍ବର୍ଗଫଳକାମନା ତ୍ୟାଗ କରି କେବଳ ଦାସ୍ୟସେବା କରିବାକାରଣ ତପସ୍ୟାଦ୍ୱାରା ଆତ୍ମାରାମ ଶ୍ରୀକୃଷ୍ଣଙ୍କର ସାକ୍ଷାତ୍ ଗୃହଦାସୀ ବା ସର୍ବଦାଦାସୀ ହୋଇଅଛୁଁ । ୧୩ଶ ଶ୍ଳୋକାର୍ଥ ।

ଆନେର କା କଥା, ବଲଦେବ ମହାଶୟ ।
ଯାଁର ଭାବ – ଶୁଦ୍ଧସଖ୍ୟ-ବାତ୍ସଲ୍ୟାଦିମୟ ॥ ୭୩ ॥
ତେଁହୋ ଆପନାକେ କରେନ୍ ଦାସ-ଭାବନା ।
କୃଷ୍ଣଦାସଭାବ ବିନୁ ଆଛେ କୋନ୍ ଜନା ? ॥ ୭୪ ॥
ସହସ୍ରବଦନେ ଯେଁହୋ ଶେଷ ସଙ୍କର୍ଷଣ ।
ଦଶ ଦେହ ଧରି କରେନ କୃଷ୍ଣେର ସେବନ ॥ ୭୫ ॥
ଅନନ୍ତ ବ୍ରହ୍ମାଣ୍ଡେ ରୁଦ୍ର—ସଦାଶିବେର ଅଂଶ ।
ଗୁଣାବତାର ତେଁହୋ ସର୍ବ-ଅବତଂସ ॥ ୭୬ ॥
ତେଁହୋ ଯେ କରେନ୍ କୃଷ୍ଣେର ଦାସ୍ୟ-ପ୍ରତ୍ୟାଶ ।
ନିରନ୍ତର କହେ ଶିବ—ମୁଞି କୃଷ୍ଣଦାସ ॥ ୭୭ ॥
କୃଷ୍ଣପ୍ରେମେ ଉନ୍ମତ୍ତ ବିହ୍ୱଳ ଦିଗମ୍ବର ।
କୃଷ୍ଣଗୁଣଲୀଳା ଗାୟ ନାଚେ ନିରନ୍ତର ॥ ୭୮ ॥
ପିତା-ମାତା-ଗୁରୁ-ସଖା ଭାବ କେନେ ନୟ ।
ପ୍ରେମେର ସ୍ୱଭାବେ ଦାସ୍ୟଭାବ ସେ କରୟ ॥ ୭୯ ॥
ଏକ କୃଷ୍ଣ ସର୍ବସେବ୍ୟ ଜଗତ-ଈଶ୍ୱର ।
ଆର ଯତ ସବ – ତାଁର ସେବକାନୁଚର ॥ ୮୦ ॥

ବ୍ରଜ ପରିକର ପୁରପରିକରରୈକ୍ୟେନାହ ଶ୍ରୀବଲଦେବସ୍ୟ ଶ୍ରୀକୃଷ୍ଣଦାସତ୍ୱମୁଦାହୃତଂ । ୭୩ । ୭୪ । ବି, ଚ,

"ଆଛେ କୋନ ଜନା" ଇତ୍ୟସ୍ୟ ବିଭ୍ରମାବଂ ଦର୍ଶୟତି "ସହସ୍ର"ଇତ୍ୟାଦିନା ।୭୫। ବି, ଚ,

"କୃଷ୍ଣପ୍ରେମେର" ଇତ୍ୟୁକ୍ତବାକ୍ୟମୁପସଂହରତି "ପିତା" ଇତି । ଅତଏବ " ଏକ " ଇତି । ୭୯ । ୮୦ । ବି, ଚ

ଗ୍ରନ୍ଥକାର କହୁଅଛନ୍ତି—

ଅପର ସମସ୍ତେ ଯେ କୃଷ୍ଣଦାସ ଅଭିମାନୀ ହେବେ ସେ ବିଷୟରେ ଅଧିକ କଅଣ କହିବି, ମହା-ମହିମାସମ୍ପନ୍ନ ଶ୍ରୀମନ୍ ବଳଦେବ, ଯେ କି ଶ୍ରୀକୃଷ୍ଣଙ୍କର ଆଦିକାୟବ୍ୟୂହ ଏବଂ ବ୍ରଜଲୀଳା ଓ ପୁରଲୀଳାରେ ବଡ଼ଭାଇ ଏବଂ ଯେଉଁ ବଳଦେବଙ୍କର ଶ୍ରୀକୃଷ୍ଣଙ୍କପ୍ରତି ଈଶ୍ୱରଭାବଶୂନ୍ୟ, କେବଳ ଶୁଦ୍ଧ ସଖ୍ୟ ଓ ବାତ୍ସଲ୍ୟଭାବ ପୂର୍ଣ୍ଣ, ସେହି ବଳଦେବ ଆପଣାକୁ ଶ୍ରୀକୃଷ୍ଣଙ୍କର ଦାସ ବୋଲି ଭାବନ୍ତି । ଏଥିରୁ ଜଣାଯାଏ ଯେ ଶ୍ରୀକୃଷ୍ଣଙ୍କର ଲୀଳାଗତ କି ଗୁରୁବର୍ଗ, କି ସମବର୍ଗ, କି ଲଘୁବର୍ଗ ସମସ୍ତେ ଶ୍ରୀକୃଷ୍ଣଙ୍କର ଦାସ; କେହି ସେ ଦାସ୍ୟଭାବ ଛାଡ଼ିନାହାଁନ୍ତି । ୭୩ । ୭୪ ।

ଶେଷଦେବ, ଯେ କି ସଙ୍କର୍ଷଣାଂଶ ହେତୁ ସଙ୍କର୍ଷଣ ବୋଲି କଥିତ, ଯାହାଙ୍କର ସହସ୍ର ବଦନ ସେ ଦଶଦେହ ଧରି ଅର୍ଥାତ୍ ଦଶରୂପରେ (ଛତ୍ର, ପାଦୁକା, ଶଯ୍ୟା, ଉପାଧାନ, ବସନ, ଉପବନ, ବାସଗୃହ, ଯଜ୍ଞସୂତ୍ର, ସିଂହାସନ, ଏବଂ ପୃଥ୍ୱୀଧାରଣ) ଶ୍ରୀକୃଷ୍ଣଙ୍କର ସେବା କରନ୍ତି । ୭୫ ।

ଅନନ୍ତବ୍ରହ୍ମାଣ୍ଡସହାୟକାରୀ ରୁଦ୍ରଗଣ, ଯେଉଁମାନେ କି ପରବ୍ୟୋମବାସୀ ସଦାଶିବଙ୍କର ଅଂଶ ଅର୍ଥାତ୍ ଯେଉଁ ରୁଦ୍ରମାନଙ୍କର ସଦାଶିବ ଅବତଂସ (ମୂଳ) ସେହି ଗୁଣାବତାର ସଦାଶିବ ସର୍ବଦା ଶ୍ରୀକୃଷ୍ଣଙ୍କର ଦାସ୍ୟ ଅଭିଳାଷ କରନ୍ତି ଏବଂ ସର୍ବଦା କହନ୍ତି ମୁଁ କୃଷ୍ଣଦାସ । କୃଷ୍ଣପ୍ରେମରେ ଉନ୍ମତ୍ତ ହେତୁ ବିହ୍ୱଳ ଏବଂ ଦିଗମ୍ବର ହୋଇ କୃଷ୍ଣଙ୍କର ଲୀଳା କୀର୍ତ୍ତନ କରି ସର୍ବଦା ନୃତ୍ୟ କରନ୍ତି । ୭୬ । ୭୭ । ୭୮ ।

କୃଷ୍ଣପ୍ରେମ ଯେ ସମସ୍ତଙ୍କୁ କୃଷ୍ଣଦାସ କରାଏ ଏହା ଉଦାହରଣ ଦ୍ୱାରା ବୁଝାଇ ଗ୍ରନ୍ଥକାର ଉପସଂହାରରେ କହୁଅଛନ୍ତି, ଯେ ପିତା, ମାତା, ଗୁରୁ, ସଖା ଇତ୍ୟାଦି ଭାବଯୁକ୍ତ ଶ୍ରୀକୃଷ୍ଣଙ୍କର ଲୀଳା-ପରିକର ଯେ ହେଉନ୍ତୁ ନା କାହିଁକି, କୃଷ୍ଣପ୍ରେମର ସ୍ୱାଭାବିକ ଧର୍ମ ଏହି କି ଯେ ସର୍ବଭାବର ଲୀଳାପରିକରମାନଙ୍କର କୃଷ୍ଣଙ୍କ ଠାରେ ଦାସ୍ୟଭାବ ଉଦୟ କରାଏ, କାରଣ ଶ୍ରୀକୃଷ୍ଣହିଁ ସମସ୍ତଙ୍କର ଏକମାତ୍ର ସେବ୍ୟ, ତେଣୁ ଜଗତର ଈଶ୍ୱର ଅର୍ଥାତ୍ ଏକମାତ୍ର ଆଶ୍ରୟ ଅଟନ୍ତି, ଆଉ ସମସ୍ତେ ତାହାଙ୍କର ସେବକ ଅନୁଚର, ଇତ୍ୟାଦି । ୭୯ । ୮୦ ।

ସେଇ କୃଷ୍ଣ ଅବତୀର୍ଣ୍ଣ—ଚୈତନ୍ୟ ଈଶ୍ୱର ।
ଅତଏବ ଆର ସବ ତାଁହାର କିଙ୍କର ॥ ୭୧ ॥
କେହୋ ମାନେ, କେହୋ ନା ମାନେ, ସବ ତାଁର ଦାସ ।
ଯେ ନା ମାନେ, ତାର ହୟ ସେଇ ପାପେ ନାଶ ॥୭୨॥
ଚୈତନ୍ୟେର ଦାସ ମୁଞି ଚୈତନ୍ୟେର ଦାସ ।
ଚୈତନ୍ୟେର ଦାସ ମୁଞି ତାଁର ଦାସେର ଦାସ ॥୭୩
ଏତ ବଲି ନାଚେ ଗାୟ ହୁଙ୍କାର ଗମ୍ଭୀର ।
କ୍ଷଣେକେ ବସିଲା ଆଚାର୍ଯ୍ୟ ହଇୟା ସୁସ୍ଥିର ॥ ୭୪ ॥

"ତଥାପିହ ମୋର ହୟ ଦାସ ଅଭିମାନ" ଇତ୍ୟେତଦ୍ ବାକ୍ୟଂ ପ୍ରତିପାଦୟିତୁଂ ସର୍ବେଷାଂ ଶ୍ରୀକୃଷ୍ଣଦାସତ୍ୱମୁକ୍ତ୍ୱା ଶ୍ରୀଚୈତନ୍ୟଦାସତ୍ୱମାହ "ସେଇ"ଇତି । ଶ୍ରୀନନ୍ଦାଦୟଃ ସର୍ବେ ଯସ୍ୟ ଦାସାଃ ସ ଏବ ଶ୍ରୀକୃଷ୍ଣଃ ଶ୍ରୀଚୈତନ୍ୟଃ ଅତଃ ଶ୍ରୀକୃଷ୍ଣଦାସା ଏବ ସର୍ବେ ଶ୍ରୀଚୈତନ୍ୟଦାସା ଇତ୍ୟର୍ଥଃ । ୭୧ । ବି,ଚ,

ତତ୍ର "କେହୋ" ଇତି । ତଥା ଚୋକ୍ତଂ ଶ୍ରୀମଦ୍ଭାଗବତେ "ମୁଖବାହୂରୁପାଦେଭ୍ୟଃ ପୁରୁଷସ୍ୟାଶ୍ରମୈଃ ସହ । ଚତ୍ୱାରୋ ଜଜ୍ଞିରେ ବର୍ଣ୍ଣାଃ ଗୁଣୈର୍ବିପ୍ରାଦୟଃ ପୃଥକ୍ । ଯଃ ଏଷାଂ ପୁରୁଷଂ ସାକ୍ଷାଦାତ୍ମପ୍ରଭବମୀଶ୍ୱରଂ । ନ ଭଜନ୍ତ୍ୟବଜାନନ୍ତି ସ୍ଥାନାଦ୍ଭ୍ରଷ୍ଟାଃ ପତନ୍ତ୍ୟଧଃ" ଅସ୍ୟାର୍ଥଃ ସତ୍ତ୍ୱେନ ବିପ୍ରଃ ସତ୍ତ୍ୱରଜୋଭ୍ୟାଂ କ୍ଷତ୍ରିୟଃ, ରଜସ୍ତମୋଭ୍ୟାଂ ବୈଶ୍ୟଃ, ତମସା ଶୂଦ୍ରଃ । ଏଷାଂ ମଧ୍ୟେ ଅଜ୍ଞାତ୍ୱା ଯେ ନ ଭଜନ୍ତି ଯେ ଚ ଜ୍ଞାତ୍ୱାପ୍ୟବଜାନନ୍ତି ତେ ସ୍ଥାନାଦ୍ଭ୍ରଷ୍ଟାଃ ଅଧଃ ପତନ୍ତି । ତତ୍ରାଜ୍ଞାନିନାଂ ସଂସାରସ୍ୟାନିବୃତ୍ତିରେବାଧଃପାତଃ ଅବଜାନତାନ୍ତୁ ମହାନରକେ ପାତ ଇତି ବିବେକଃ । ଅମୃତଃ ପ୍ରଭବୋ ଜନ୍ମ ଯସ୍ମାତ୍ ତସ୍ମାତ୍ ଅଭକ୍ତା ଗୁରୁଦ୍ରୋହେଣ ଇତି ଭାବଃ । ଈଶ୍ୱରଂ ନିୟନ୍ତାରଂ । ସ୍ଥାନାତ୍ ବର୍ଣ୍ଣାଶ୍ରମାତ୍ ଭ୍ରଷ୍ଟଃ ସ୍ୱଧର୍ମସ୍ଥା ଅପି ଅଭକ୍ତାସ୍ତତୋ ଭ୍ରଷ୍ଟା ଇତ୍ୟର୍ଥଃ । ୭୨ । ବି, ଚ,

"ଚୈତନ୍ୟେର" ଇତି । ଯତଃ ସର୍ବ ଏବ ଶ୍ରୀଚୈତନ୍ୟଦାସା ଅତୋଽହମଦ୍ୱୈତୋଽପି ଶ୍ରୀଚୈତନ୍ୟଦାସ ଇତ୍ୟର୍ଥଃ । ତଦାସଦାସ ଇତି ଦୈନ୍ୟୋକ୍ତିରିୟଂ । ୭୩ । ବି, ଚ,

"ଏତବଲି" ଇତ୍ୟାଦ୍ୟା ପରିଚ୍ଛେଦସମାପ୍ତିଃ ଶ୍ରୀ ଗ୍ରନ୍ଥକୃଦ୍‌ବାକ୍ୟଂ ଜ୍ଞେୟଂ । ୭୪ ।ବି, ଚ,

୬୮ ପୟାର ଲକ୍ଷିତ "ତଥାପି ମୋର ହୟ ଦାସଅଭିମାନ" ଏହି କଥା ପ୍ରତିପାଦନ କରିବାପାଇଁ ଗ୍ରନ୍ଥକାର ନନ୍ଦାଦି ସମସ୍ତେ ଯେ କୃଷ୍ଣଦାସ ଏହି କଥା ଉଲ୍ଲେଖ କରି କହୁଅଛନ୍ତି ଯେ "ସେଇକୃଷ୍ଣ" ଅର୍ଥାତ୍ ନନ୍ଦ ବଳରାମ ସଦାଶିବ ଆଦି ଯାହାଙ୍କର ଦାସ, ସେ ଶ୍ରୀଚୈତନ୍ୟରୂପେ ଅବତୀର୍ଣ୍ଣ ହୋଇଅଛନ୍ତି, ଅତଏବ ସମସ୍ତେ ଶ୍ରୀ ଚୈତନ୍ୟଙ୍କର ଦାସ ଅଟନ୍ତି । ଅର୍ଥାତ୍ ଯେଉଁମାନେ କୃଷ୍ଣ-ଦାସ, ସେମାନେ ଶ୍ରୀ ଚୈତନ୍ୟ-ଦାସ, ଏଥିଦ୍ୱାରା ଶ୍ରୀକୃଷ୍ଣ ଚୈତନ୍ୟ ଯେ ଏକମାତ୍ର ଅଦ୍ୱିତୀୟତତ୍ତ୍ୱ ଏହା ନିରୂପିତ ହେଲା । ୭୧ ।

ଶ୍ରୀକୃଷ୍ଣଚୈତନ୍ୟ ସମସ୍ତଙ୍କର ପ୍ରଭୁ, ଏବଂ ସମସ୍ତେ ତାହାଙ୍କର ଦାସ, ତାଙ୍କୁ କେହି ପ୍ରଭୁ ବୋଲି ମାନନ୍ତି କେହି ବା ନ ମାନନ୍ତି । ଯେ ନ ମାନନ୍ତି ସେ ସେହି ପାପରେ ବିନାଶପ୍ରାପ୍ତ ହୁଅନ୍ତି ।

ଏହାର ଭାବ ଏହି ଯେ ଶ୍ରୀ ଚୈତନ୍ୟ ସ୍ୱାଭାବିକ ପ୍ରଭୁ ହେବାରୁ ତାଙ୍କୁ ପ୍ରଭୁ ବୋଲି ସ୍ୱୀକାର ନ କଲେ ତାଙ୍କର ପ୍ରଭୁତ୍ୱର କ୍ଷତି ହୁଏ ନା, କିନ୍ତୁ ଯେଉଁ ଜୀବମାନେ ସ୍ୱୀକାର ନ କରନ୍ତି ସେମାନେ ପ୍ରଭୁଦ୍ରୋହୀ ଅପରାଧରୁ ନରକଗାମୀ ହୁଅନ୍ତି । ୭୨ ।

ଗ୍ରନ୍ଥକାର ଶ୍ରୀଅଦ୍ୱୈତାଚାର୍ଯ୍ୟଙ୍କ ବିଷୟ କହୁଅଛନ୍ତି :—

ପୂର୍ବକଥିତମତେ ଶ୍ରୀଚୈତନ୍ୟଙ୍କର ଦାସ ହେବାରୁ, ଶ୍ରୀଅଦ୍ୱୈତ ମଧ୍ୟ ସ୍ୱାଭାବିକ ଚୈତନ୍ୟଦାସ ; ତେଣୁ ଅଦ୍ୱୈତାଚାର୍ଯ୍ୟ କହନ୍ତି ମୁଁ ଚୈତନ୍ୟଙ୍କରଦାସ, ଏପରି କି ସେ ଦୈନ୍ୟ ପ୍ରକାଶ କରି କହନ୍ତି ମୁଁ ଚୈତନ୍ୟଙ୍କର ଦାସାନୁଦାସ ଏହିପରି କହି ଗାନ, ନର୍ତ୍ତନ ଓ ଗମ୍ଭୀର ଗର୍ଜନ କରି ସେ ...ାଇ ବସିଥିଲେ । ୭୩ । ୭୪ ।

ଭକ୍ତ-ଅଭିମାନ ମୂଳ-ଶ୍ରୀବଳରାମେ ।
ସେଇ ଭାବେ ଅନୁଗତ ତାଁର ଅଂଶଗଣେ ॥ ୭୫ ॥
ତାଁର ଅବତାର ଏକ ଶ୍ରୀ ସଙ୍କର୍ଷଣ ।
'ଭକ୍ତ' କରି ଅଭିମାନ କରେ ସର୍ବକ୍ଷଣ ॥ ୭୬ ॥
ତାଁର ଅବତାର ଆର—ଶ୍ରୀଯୁତ ଲକ୍ଷ୍ମଣ ।
ଶ୍ରୀରାମେର ଦାସ୍ୟ ତେଁହୋ କୈଲ ଅନୁକ୍ଷଣ ।୭୭
ସଙ୍କର୍ଷଣ ଅବତାର କାରଣାବ୍ଧିଶାୟୀ ।
ତାଁହାର ହୃଦୟେ ଭକ୍ତଭାବ ଅନୁଯାୟୀ ॥ ୭୮ ॥
ତାଁହାର ପ୍ରକାଶଭେଦ ଅଦ୍ୱୈତ ଆଚାର୍ଯ୍ୟ ।
କାୟମନୋବାକ୍ୟେ ତାଁର ଭକ୍ତି ସଦା କାର୍ଯ୍ୟ ।୭୯॥
ବାକ୍ୟେ କହେ—ମୁଞି ଚୈତନ୍ୟେର ଅନୁଚର ।
ମୁଞି ତାଁର ଭକ୍ତ-ମନେ ଭାବେ ନିରନ୍ତର ॥ ୮୦ ॥
ଜଲ-ତୁଲସୀ ଦିୟା କରେ କାୟେ ତ ସେବନ ।
ଭକ୍ତି ପ୍ରଚାରିୟା ସବ ତାରିଲ ଭୁବନ ॥ ୮୧ ॥

---

ନନୁ ମହାବିଷ୍ଣୁ ପ୍ରକାଶରୂପସ୍ୟ ଶ୍ରୀଅଦ୍ୱୈତସ୍ୟ କଥଂ ଦାସାଭିମାନଃ ନ ହି ଈଶ୍ୱରସ୍ୟ ତଥା ସମ୍ଭବତି ଇତି ଚେତ୍ତତ୍ର ତସ୍ୟ ଦାସାଭିମାନେ କାରଣମାହ "ଭକ୍ତ" ଅଂଶିଗୁଣାଃ ଅଂଶେଽପି ସମ୍ଭବନ୍ତୀତି ଅଂଶିନ ଶ୍ରୀବଳଦେବାଦୌ ଦାସାଭିମାନସ୍ୱଭାବେନ ତଦଂଶସ୍ୟ ଶ୍ରୀଅଦ୍ୱୈତସ୍ୟ ଈଶ୍ୱରତ୍ୱେଽପି ଦାସାଭିମାନ ଇତ୍ୟର୍ଥଃ । ୭୫ । ବି, ଚ,

ତଦେବ ଵାଦେଦଦୃଢ଼ୟନାହ "ତାଁର" ଇତ୍ୟାଦି "ପୁଅର୍କ" ଇତ୍ୟନ୍ତଂ ।୭୬ । ବି, ଚ,

ଜଲ ଇତି । କାୟେ ତେ ଶିରସି ଅଥବା କାୟେନ ପ୍ରଣାମାଦିନେତ୍ୟର୍ଥଃ । ଅଦ୍ୱୈତସ୍ୟୈବ ଭକ୍ତତ୍ୱକଥନବଶେ ଖାଦେଶ୍ୟତ୍ୱେନ ଜଗତ୍ୟେବାନ ଭକ୍ତିକାର୍ଯ୍ୟଂ ସେବନଂ ଦର୍ଶିତଂ । ୮୧ ।
ବି, ଚ,

---

ଯଦି କେହି ସନ୍ଦେହ କରେ ଯେ ତତ୍ତ୍ୱତଃ ଶ୍ରୀଅଦ୍ୱୈତ ଈଶ୍ୱର ଅର୍ଥାତ୍ ମହାବିଷ୍ଣୁଙ୍କର ପ୍ରକାଶ ଅତଏବ ସେ ଈଶ୍ୱର ଏଣୁ ଈଶ୍ୱରଙ୍କର ଦାସ ଅଭିମାନ କପରି ହୋଇପାରେ । ଏହି ହେତୁରୁ ଗ୍ରନ୍ଥକାର କହୁଅଛନ୍ତି ଯେ ଶ୍ରୀବଳରାମ ଯେ କି ମୂଳ ( ଅଂଶୀ ) ତାହାଙ୍କର ଶ୍ରୀକୃଷ୍ଣଙ୍କଠାରେ ଦାସ ଅଭିମାନହେତୁରୁ ତାହାଙ୍କ ଅଂଶମାନଙ୍କର ଦାସଅଭିମାନ ହେବା ସ୍ୱାଭାବିକ ଧର୍ମ । ଅତଏବ ମହାବିଷ୍ଣୁ ଶ୍ରୀବଳଦେବଙ୍କ ଅଂଶହେତୁ, ତାହାଙ୍କର ଅବତାର ଶ୍ରୀଅଦ୍ୱୈତଙ୍କର ଶ୍ରୀକୃଷ୍ଣଙ୍କଠାରେ ଦାସ ଅଭିମାନ ହେବା ସ୍ୱାଭାବିକ ଧର୍ମ । ୭୫ ।

ବଳରାମଙ୍କର ଅଂଶମାନଙ୍କର ଦାସ ଅଭିମାନ ବିଷୟରେ ବିସ୍ତର ବର୍ଣ୍ଣନା କରୁଅଛନ୍ତି ।

ତାଁର ( ଶ୍ରୀବଳରାମଙ୍କର )

ପରବ୍ୟୋମସ୍ଥ ଶ୍ରୀସଙ୍କର୍ଷଣ ଶ୍ରୀବଳରାମଙ୍କର ଅବତାର । ସେ ସର୍ବଦା ଶ୍ରୀକୃଷ୍ଣଙ୍କର ଦାସ ଅଭିମାନ କରନ୍ତି । ବଳରାମଙ୍କର ଆଉ ଏକ ଅବତାର ଶ୍ରୀଯୁତ ଲକ୍ଷ୍ମଣ ( ସେ ସର୍ବଦା ରାମଙ୍କର ଦାସ୍ୟ-ସେବା କରିଥିଲେ ) ।

କାରଣାବ୍ଧିଶାୟୀ ମହାବିଷ୍ଣୁ ଶ୍ରୀସଙ୍କର୍ଷଣଙ୍କର ଅବତାରହେତୁ ତଦନୁଯାୟୀ ତାହାଙ୍କ ହୃଦୟରେ ସର୍ବଦା ଭକ୍ତଭାବ ରହିଅଛି । ଶ୍ରୀଅଦ୍ୱୈତାଚାର୍ଯ୍ୟ ତାହାଙ୍କ ପ୍ରକାଶବିଶେଷହେତୁ କୃଷ୍ଣଦାସ୍ୟ-ଭାବରେ ସର୍ବଦା ବିବଶ । ତେଣୁ ସେ କାୟମନୋବାକ୍ୟଦ୍ୱାରା ସର୍ବଦା ଭକ୍ତି କାର୍ଯ୍ୟ କରନ୍ତି । ଅର୍ଥାତ୍ ବାକ୍ୟଦ୍ୱାରା କହନ୍ତି ମୁଁ ଚୈତନ୍ୟଙ୍କର ଅନୁଚର ( ଦାସ ) ସର୍ବଦା ଆପଣାକୁ ଚୈତନ୍ୟଙ୍କର ଭକ୍ତ ବୋଲି ମନେ ମନେ ଭାବନ୍ତି ଏବଂ ଶରୀରଦ୍ୱାରା ଜଳତୁଳସୀ ଦେଇ ଶ୍ରୀଚୈତନ୍ୟଙ୍କର ସେବା କରନ୍ତି । ଏହି ପ୍ରକାରରେ ଭକ୍ତିକାର୍ଯ୍ୟ ପ୍ରଚାର କରି ଜଗତକୁ ଉଦ୍ଧାର କଲେ । ୭୬ ।
୭୭ । ୭୮ । ୭୯ । ୮୦ । ୮୧ ।

ପୃଥିବୀ ଧରେନ୍ ଯେଇ ଶେଷ ସଙ୍କର୍ଷଣ ।
କାୟବ୍ୟୂହ କରି କରେନ୍ କୃଷ୍ଣେର ସେବନ ॥ ୮୨ ॥
ଏଇ ସବ ହୟ ଶ୍ରୀକୃଷ୍ଣେର ଅବତାର ।
ନିରନ୍ତର ଦେଖି ସଭାର ଭକ୍ତିର-ଆଚାର ॥ ୮୩
ଏ ସଭାକେ ଶାସ୍ତ୍ରେ କହେ—ଭକ୍ତ-ଅବତାର ।
ଭକ୍ତ-ଅବତାର ପଦ ଉପରି ସଭାର ॥ ୮୪ ॥
ଅତଏବ ଅଂଶୀ—କୃଷ୍ଣ, ଅଂଶ ଅବତାର ।
ଅଂଶୀ-ଅଂଶେ ଦେଖି ଜ୍ୟେଷ୍ଠ-କନିଷ୍ଠ-ଆଚାର ୮୫॥
ଜ୍ୟେଷ୍ଠଭାବେ ଅଂଶୀତେ ହୟ ପ୍ରଭୁ-ଜ୍ଞାନ ।
କନିଷ୍ଠଭାବେ ଆପନାତେ ଭକ୍ତ-ଅଭିମାନ ॥ ୮୬
କୃଷ୍ଣେର ସମତା ହୈତେ ବଡ଼ ଭକ୍ତ-ପଦ ।
ଆତ୍ମା ହୈତେ କୃଷ୍ଣେର ଭକ୍ତ ପ୍ରେମାସ୍ପଦ ॥ ୮୭
ଆତ୍ମା ହୈତେ କୃଷ୍ଣ "ଭକ୍ତ ବଡ଼" କରି ମାନେ ।
ତାହାତେ ବହୁତ ଶାସ୍ତ୍ରବଚନ ପ୍ରମାଣେ ॥ ୮୮ ॥

ପୃଥିବୀ ଇତି । ଶ୍ରୀବଳଦେବାଦିବତ୍ ଶେଷସଙ୍କର୍ଷଣୋ ଭକ୍ତ ଇତ୍ୟର୍ଥଃ । ୮୨ ଚ, ଚ,

ଶ୍ରୀଅଦ୍ୱୈତସ୍ୟ ଭକ୍ତତ୍ୱଂ ପ୍ରତିପାଦ୍ୟ "ଭକ୍ତାବତାରଂ" ଇତ୍ୟସ୍ୟାର୍ଥମାହ "ଏଇସବ" ଇତ୍ୟାଦି । ଏତେ ଶ୍ରୀବଳଦେବାଦୟଃ ସର୍ବେ ଶ୍ରୀକୃଷ୍ଣାବତାରାଃ ଭକ୍ତାବେଶେନ ଭକ୍ତାବତାରାଃ । ଭକ୍ତାଚରଣାତ୍ ଭକ୍ତାବତାର ଇତ୍ୟର୍ଥଃ । ୮୩ ଚ, ଚ;

ଭକ୍ତେ ଯତ ପ୍ରଭୁତ୍ୱହାନ୍ୟା ତେଷାଂ ବଳଦେବାଦିନାଂ ଲଘୁତ୍ୱମାପତିତଂ ଯତସ୍ତେ ଶ୍ରୀକୃଷ୍ଣ-ସମା ଇତ୍ୟେତନ୍ନିବାରୟନ୍ନାହ "ଭକ୍ତ" ଇତି । ସର୍ବୋପରି ଭକ୍ତାବତାରପଦମତଃ ଭକ୍ତାନାମପି ଶ୍ରୀକୃଷ୍ଣସମାନାନାଂ ତେଷାଂ ନ ପ୍ରଭୁତ୍ୱହାନିଃ ନ ଲଘୁତ୍ୱଞ୍ଚ । ୮୪ । ଚ, ଚ,

"ଭକ୍ତ ଅଭିମାନମୂଳ" ଇତ୍ୟତ୍ର ଶ୍ରୀବଳଦେବସ୍ୟ ଯୋ ଭକ୍ତାଭିମାନ ଉକ୍ତଃ ତସ୍ୟ କାରଣଂ ବଦନ୍ ଭକ୍ତାବତାରପଦସ୍ୟ ସର୍ବୋପରିତ୍ୱେ କାରଣଂ ବଦତି "ଏକ" ଇତି ଚତୁର୍ଭିଃ । କନିଷ୍ଠତ୍ୱମେବ ଭକ୍ତାଭିମାନେ କାରଣଂ । ତଥା "କୃଷ୍ଣେର" ଇତି "ଆତ୍ମାହୈତେ" ଇତି "ଆତ୍ମା" ଇତି ଏତତ୍ ତ୍ରିତୟମେବ ତତ୍ସର୍ବୋପରିତ୍ୱେ କାରଣଂ ଏତତ୍ କାରଣତ୍ରୈବିଧ୍ୟାତ୍ ସର୍ବୋପରି ଭକ୍ତାବତାରପଦମିତ୍ୟର୍ଥଃ । ୮୫ । ୮୮ । ଚ, ଚ

ଶ୍ରୀବଳଦେବାଂଶ ସଙ୍କର୍ଷଣାଖ୍ୟ ଯେଉଁ ଶେଷଦେବ ପୃଥିବୀ ଧାରଣ କରନ୍ତି ସେ କାୟବ୍ୟୂହ କରି ( ବହୁଦେହ ଧାରଣ କରି ) ଶ୍ରୀକୃଷ୍ଣଙ୍କର ସେବା କରନ୍ତି । ୮୨ ।

ଶ୍ରୀବଳଦେବ ଓ ତାହାଙ୍କର ଅଂଶ କଳା ସମସ୍ତେ ଶ୍ରୀକୃଷ୍ଣଙ୍କର ଅବତାର, ଅର୍ଥାତ୍ ଶ୍ରୀକୃଷ୍ଣ ମୂଳ ଅବତାରୀ । ଏହି ଅବତାରମାନଙ୍କୁ ଭକ୍ତ ଆଚରଣ କରିବାର ଦେଖାଯାଏ । ଅତଏବ ଏମାନଙ୍କୁ ଶାସ୍ତ୍ରରେ ଭକ୍ତାବତାର ବୋଲି କହନ୍ତି । ଅର୍ଥାତ୍ ଅବତାର ହୋଇ ଭକ୍ତର ଆଚରଣ କରନ୍ତି ବୋଲି ଭକ୍ତାବତାର । ଏତଦ୍ୱାରା ଶ୍ରୀଅଦ୍ୱୈତଆଚାର୍ଯ୍ୟଙ୍କର ଭକ୍ତାବତାରତ୍ୱ ପ୍ରତିପାଦିତ ହେଲା ।

ଅବତାରମାନେ ଶ୍ରୀକୃଷ୍ଣଙ୍କର ସମ ଏବଂ ଭକ୍ତ ହେଲେ ଦାସ୍ୟହେତୁରୁ ଲଘୁତ୍ୱ ହୁଏ, ଏଣୁ ଭକ୍ତାବତାରମାନଙ୍କର ଶ୍ରୀକୃଷ୍ଣଙ୍କର ସମତାର ହାନି ହୁଏ । ଏହିପରି ଆଶଙ୍କା ନିବାରଣକାରଣ ଗ୍ରନ୍ଥ-କାର କହୁଅଛନ୍ତି । ଯେ "ଭକ୍ତାବତାର" ଏହି ପଦ ଶ୍ରୀକୃଷ୍ଣସମ୍ବନ୍ଧେ ଅନ୍ୟାନ୍ୟ ସର୍ବପ୍ରକାର ପଦ ଅପେକ୍ଷା ଶ୍ରେଷ୍ଠ । ୮୩ । ୮୪ ।

"ଭକ୍ତାବତାର" ପଦର ଶ୍ରେଷ୍ଠତ୍ୱ ଦେଖାଉଅଛନ୍ତି । ଶ୍ରୀକୃଷ୍ଣ ଅଂଶୀ (ମୂଳ) ଏବଂ ଶ୍ରୀ ବଳଦେବାଦି ଅବତାରମାନେ ତାହାଙ୍କର ଅଂଶ । ଏହି ଅଂଶୀ ଓ ଅଂଶମଧ୍ୟରେ ଜ୍ୟେଷ୍ଠ ଓ କନିଷ୍ଠ ବ୍ୟବହାର ଦେଖାଯାଏ । ଅର୍ଥାତ୍ ଅଂଶୀ ଶ୍ରୀକୃଷ୍ଣଙ୍କଠାରେ ଜ୍ୟେଷ୍ଠଭାବରେ, ଅଂଶମାନେ ( ଶ୍ରୀବଳଦେବାଦି ) ତାଙ୍କୁ ପ୍ରଭୁ ଜ୍ଞାନ କରନ୍ତି ଏବଂ ଆପଣାକୁ କନିଷ୍ଠ ଭାବି ତାଙ୍କର (ଶ୍ରୀକୃଷ୍ଣଙ୍କର) ଭକ୍ତ ଅଭିମାନ କରନ୍ତି । ଏହିପ୍ରକାର ଭକ୍ତ ଅଭିମାନଦ୍ୱାରା ବଳଦେବାଦି ଅବତାରଙ୍କ-

ତଥାହି [ ଭାଃ ୧୧ । ୧୪ । ୧୫ ]—
ନ ତଥା ମେ ପ୍ରିୟତମ ଆତ୍ମଯୋନିର୍ନ ଶଙ୍କରଃ ।
ନ ଚ ସଙ୍କର୍ଷଣୋ ନ ଶ୍ରୀର୍ନୈବାତ୍ମା ଚ ଯଥା
ଭବାନ୍ ॥ ୧୪ ॥
କୃଷ୍ଣସାମ୍ୟ ନହେ ତାଁର ମାଧୁର୍ଯ୍ୟାସ୍ୱାଦନ ।
ଭକ୍ତଭାବେ କରେ ତାଁର ମାଧୁର୍ଯ୍ୟ-ଚର୍ବଣ ॥ ୮୯ ॥
ଶାସ୍ତ୍ରେର ସିଦ୍ଧାନ୍ତ ଏଇ ବିଜ୍ଞେର ଅନୁଭବ ।
ମୂଢ଼ଲୋକ ନାହି ଜାନେ ଭାବେର ବୈଭବ ॥ ୯୦ ॥
ଭକ୍ତଭାବ ଅଙ୍ଗୀକରି ବଲରାମ ଲକ୍ଷ୍ମଣ ।
ଅଦ୍ୱୈତ ନିତ୍ୟାନନ୍ଦ ଶେଷ ସଙ୍କର୍ଷଣ ॥ ୯୧ ॥
କୃଷ୍ଣେର ମାଧୁର୍ଯ୍ୟ ରସାମୃତ କରେ ପାନ ।
ସେଇ ସୁଖେ ମତ୍ତ, କିଛୁ ନାହି ଜାନେ ଆନ ॥ ୯୨

ମେ ( ମମ ଭକ୍ତଃ ) ଭବାନ୍ ଯଥା ପ୍ରିୟତମଃ ଆତ୍ମଯୋନିଃ ( ବ୍ରହ୍ମା, ପୁତ୍ରଃ ଅପି ) ତଥା ନ ( ପ୍ରିୟତମଃ ) ଶଙ୍କରଃ ( ମତ୍ସ୍ୱରୂପଭୂତଃ ଅପି ତଥା ) ନ ( ପ୍ରିୟତମଃ ) ସଙ୍କର୍ଷଣ ( ଭ୍ରାତା ଅପି ) ନ ଚ ( ତଥା ପ୍ରିୟତମଃ ) ଶ୍ରୀଃ ( ଭାର୍ଯ୍ୟା ଅପି ନ ( ତଥା ପ୍ରିୟତମା ) ଆତ୍ମା (ଶ୍ରୀମୂର୍ତ୍ତିଃ ଅପି ତଥା ) ନ ଏବ ( ପ୍ରିୟତମା ) । ୧୪ଶ ଶ୍ଳୋକଃ ।

" କୃଷ୍ଣେର ସମତାହୈତେ " ଇତ୍ୟତ୍ର ଶ୍ରୀକୃଷ୍ଣସାମ୍ୟାତ୍ ଭକ୍ତଭାବପଦସ୍ୟ ଯଦାଧିକ୍ୟମୁକ୍ତଂ ତତ୍ର ହେତୁ ନାହି "କୃଷ୍ଣସାମ୍ୟେ" ଇତି । ଶ୍ରୀକୃଷ୍ଣ ମାଧୁର୍ଯ୍ୟଚର୍ବଣମେବ ତତ୍ର ହେତୁରିତ୍ୟର୍ଥଃ । ୮୯।୯୦।ବି,ଚ,

ବିଜ୍ଞାନୁଭବଂ ଦର୍ଶୟତି " ଭକ୍ତଭାବ " ଇତି । ଶ୍ରୀବଳଦେବାଦୟଃ ଭକ୍ତଭାବମଙ୍ଗୀକୃତ୍ୟ " କୃଷ୍ଣେର " ଇତ୍ୟାଦି । ଅତ୍ର ତନ୍ମାଧୁର୍ଯ୍ୟ ଚର୍ବଣମପି ତେଷାଂ ଭକ୍ତଭାବେ ଏକଂ କାରଣଂ ଜ୍ଞେୟଂ ୯୧ । ୯୨ । ବି, ଚ,

ମାନଙ୍କର ଲଘୁତ୍ୱ ହୁଏ ନା । କାରଣ ଭକ୍ତପଦ ଶ୍ରୀକୃଷ୍ଣଙ୍କର ସମତାପଦଠାରୁ ଅଧିକ ( ୧ ) । ଭକ୍ତ ଶ୍ରୀକୃଷ୍ଣଙ୍କର ନିଜଆତ୍ମା ଅପେକ୍ଷା ଅଧିକ ପ୍ରେମପାତ୍ର ( ୨ ) ଏବଂ ଶ୍ରୀକୃଷ୍ଣ ନିଜଆତ୍ମା ଅପେକ୍ଷା ଅର୍ଥାତ୍ ଆପଣା ଅପେକ୍ଷା ଭକ୍ତକୁ ବଡ଼ କରି ମାନନ୍ତି ( ୩ ) । ଏହି ତିନି କାରଣରୁ ଅବତାର-ମାନଙ୍କର ଭକ୍ତାଭିମାନ ଦ୍ୱାରା ସମସ୍ତଙ୍କ ଅପେକ୍ଷା ଉଚ୍ଚ ପଦ ଲାଭ ହୁଏ । ଏପରି କି ଶ୍ରୀକୃଷ୍ଣଙ୍କ ଅପେକ୍ଷା ଉଚ୍ଚ ପଦ ଲାଭ ହୁଏ । ଏ ବିଷୟ ବହୁଳ ଶାସ୍ତ୍ରବଚନ ଦ୍ୱାରା ପ୍ରମାଣିତ । ୮୬ । ୮୭ । ୮୮ ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି——ହେ ଉଦ୍ଧବ, ତୁମ୍ଭେ ମୋର ଯେପରି ପ୍ରିୟତମ ମୋର ପୁତ୍ର ବ୍ରହ୍ମା, ମୋର ସ୍ୱରୂପଭୂତ ଶିବ, ଅଗ୍ରଜ ସଙ୍କର୍ଷଣ, ପ୍ରିୟା ଲକ୍ଷ୍ମୀ ଏପରି କି ମୋର ଶ୍ରୀବିଗ୍ରହ ସୁଦ୍ଧା ସେପରି ନୁହନ୍ତି । ୧୪ଶ ଶ୍ଳୋକାର୍ଥ ।

ଶ୍ରୀକୃଷ୍ଣଙ୍କ ସମତା ଅପେକ୍ଷା ଭକ୍ତପଦ କି କାରଣରୁ ବଡ଼ ତାହା ବୁଝାଉଅଛନ୍ତି । ଶ୍ରୀକୃଷ୍ଣଙ୍କର ସମତା ଦ୍ୱାରା ତାହାଙ୍କର ମାଧୁର୍ଯ୍ୟ ଆସ୍ୱାଦନ ବିଶେଷରୂପେ ହୁଏ ନା । କିନ୍ତୁ ଭକ୍ତଭାବରେ ଅର୍ଥାତ୍ ଭକ୍ତି ଦ୍ୱାରା ସେହି ମାଧୁର୍ଯ୍ୟ ଚର୍ବଣ କରାଯାଏ । ଅର୍ଥାତ୍ ବିଶେଷରୂପେ ଆସ୍ୱାଦନ କରାଯାଏ । ଏହି କାରଣରୁ ଶ୍ରୀକୃଷ୍ଣଙ୍କର ସମଭାବ ଅପେକ୍ଷା ଭକ୍ତଭାବ ଶ୍ରେଷ୍ଠ । ଏ ବିଷୟ ଶାସ୍ତ୍ରଦ୍ୱାରା ପ୍ରମାଣିତ ଏବଂ ବିଜ୍ଞମାନେ ଅନୁଭବ ଦ୍ୱାରା ବୁଝିଅଛନ୍ତି । ଏହି ଭାବର ବୈଭବ ମୂର୍ଖ ଲୋକମାନେ ଜାଣନ୍ତି-ନାହିଁ । ୮୯ । ୯୦ ।

ବିଜ୍ଞଅନୁଭବ ବିଷୟ କହୁଅଛନ୍ତି । ଭକ୍ତଭାବଦ୍ୱାରା ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟରସ ଚର୍ବଣ କରାହୁଏ । ଏହିହେତୁ ଶ୍ରୀବଳଦେବ, ଲକ୍ଷ୍ମଣ, ଅଦ୍ୱୈତ, ନିତ୍ୟାନନ୍ଦ, ଶେଷଦେବ ଓ ସଙ୍କର୍ଷଣ ଏମାନେ ଭକ୍ତଭାବ ଗ୍ରହଣ କରି ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟରସାମୃତ ପାନଦ୍ୱାରା ସର୍ବଦା ବିହ୍ୱଳ ଓ ଆତ୍ମବିସ୍ମୃତ ହୁଅନ୍ତି । ୯୧ । ୯୨

ଅନ୍ୟେର ଆନ୍ତୁକ କାର୍ଯ୍ୟ, ଆପନେ ଶ୍ରୀକୃଷ୍ଣ ।
ଆପନ ମାଧୁର୍ଯ୍ୟ-ପାନେ ହଇସ୍ନା ସତୃଷ୍ଣ ॥ ୯୩ ॥
ସ୍ୱମାଧୁର୍ଯ୍ୟ ଆସ୍ୱାଦତେ କରେନ ଯତନ ।
ଭକ୍ତଭାବ ବିନା ନହେ ତାହା ଆସ୍ୱାଦନ ॥ ୯୪ ॥
ଭକ୍ତଭାବ ଅଙ୍ଗୀକରି ହୈଲା ଅବତୀର୍ଣ୍ଣ ।
ଶ୍ରୀକୃଷ୍ଣଚୈତନ୍ୟ-ରୂପେ ସର୍ବଭାବେ ପୂର୍ଣ୍ଣ । ୯୫ ।
ନାନା ଭକ୍ତଭାବେ କରେନ ସ୍ୱମାଧୁର୍ଯ୍ୟ-ପାନ ।
ପୂର୍ବେ କରିୟାଛି ଏଇ ସିଦ୍ଧାନ୍ତ ବ୍ୟାଖ୍ୟାନ ।୯୬।
ଅବତାରଗଣେର ଭକ୍ତଭାବେ ଅଧିକାର ।
ଭକ୍ତଭାବ ହୈତେ ଅଧିକ ସୁଖ ନାହି ଆର ।୯୭।
ମୂଲ ଭକ୍ତ ଅବତାର—ଶ୍ରୀସଙ୍କର୍ଷଣ ।
ଭକ୍ତ-ଅବତାର ତହିଁ ଅଦ୍ୱୈତ ଗଣନ । ୯୮ ॥

---

ଅପିଚ " ଅନ୍ୟେର " ଇତି ଶ୍ରୀକୃଷ୍ଣଃ ସ୍ୱୟମପି ଭକ୍ତଭାବେନୈବ ସ୍ୱମାଧୁର୍ଯ୍ୟମାସ୍ୱାଦିତବାନ୍ ଇତ୍ୟର୍ଥଃ । ପୂର୍ବେ ଚତୁର୍ଥୋକ୍ତ " ଏଇ ମତ ପୂର୍ବେ କୃଷ୍ଣରସେର ସଦନ " ଇତ୍ୟାଦୌ । ୯୩ । ୯୬
ବି, ଚ,

" ଏଇ ସବ ହୟ ଯତ କୃଷ୍ଣେର ଅବତାର " ଇତ୍ୟାଦିନା ଶ୍ରୀବଲଦେବାଦୀନାଂ ଯତ୍ ଭକ୍ତାବତାରତ୍ୱମୁକ୍ତଂ ତଦେବୋପସଂହରତି " ଅବତାର " ଇତି । ଭକ୍ତଭାବମଧିକୃତ୍ୟ ସଙ୍କର୍ଷଣ ଇତି ଭକ୍ତାବତାରଃ । ୯୭ । ବି, ଚ,

ନନୁ ଶ୍ରୀବଲଦେବାଦୀନାଂ ତେଷାଂ ସର୍ବେଷାଂ ଭକ୍ତାବତାରତ୍ୱେ " ଭକ୍ତାବତାରଂ " ଇତ୍ୟନେନ " ପଞ୍ଚତତ୍ତ୍ୱାତ୍ମକଂ " ଇତ୍ୟନେନ ଚ କଥଂ ଏକସ୍ୟୈବ ଶ୍ରୀଅଦ୍ୱୈତସ୍ୟ ଭକ୍ତାବତାରତ୍ୱମୁକ୍ତଂ ତତ୍ରାହ "ମୂଳ" ଇତି ଅସ୍ୟାୟମର୍ଥଃ ଭକ୍ତଭାବମଙ୍ଗୀକୃତ୍ୟ ଭକ୍ତରୂପେଣାବତୀର୍ଣ୍ଣ ଇତି ତେ ଭକ୍ତାବତାରାଃ ଭକ୍ତସ୍ୟ ବଲଦେବାଂଶାଂଶସ୍ୟ ମହାବିଷ୍ଣୋରବତାରତ୍ୱେନ ତସ୍ୟୈବ ଭକ୍ତାବତାରତ୍ୱମୁକ୍ତଂ ଇତି ।
୯୮ । ବି, ଚ,

---

ଏମାନଙ୍କ କଥା ଦୂରେ ଥାଉ ଏପରି କି ସ୍ୱୟଂ ଶ୍ରୀକୃଷ୍ଣ ଅନ୍ୟ କୌଣସିପ୍ରକାରେ ନିଜର ମାଧୁର୍ଯ୍ୟରସାସ୍ୱାଦନ ସମ୍ୟକ୍ କରି ନ ପାରି ଭକ୍ତଭାବ ଗ୍ରହଣପୂର୍ବକ ଶ୍ରୀକୃଷ୍ଣ ଶ୍ରୀଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇ ସର୍ବଭକ୍ତଭାବ ଦ୍ୱାରା ସେହି ମାଧୁର୍ଯ୍ୟ ସମ୍ୟକ୍‌ରୂପେ ଆସ୍ୱାଦନ କରିଥିଲେ । ଏ ସିଦ୍ଧାନ୍ତ ବିଷୟ ଗ୍ରନ୍ଥକାର ପୂର୍ବେ ୪ର୍ଥ ପରିଚ୍ଛେଦ ୧୦୩ ର ପରବର୍ତ୍ତୀ ପୟାରରେ ବ୍ୟକ୍ତ କରିଅଛନ୍ତି ।୯୩ ରୁ ୯୬।

ଶ୍ରୀକୃଷ୍ଣ ପ୍ରେମାନନ୍ଦ ସୁଖଲାଭ ଭକ୍ତଭାବରେ ଯେପରି ହୁଏ ସେପରି ଅନ୍ୟ କୌଣସିଭାବରେ ହୁଏ ନା । ଏଣୁ ଅବତାରମାନେ ଭକ୍ତଭାବ ଅଧିକାର କରନ୍ତି । ଏତଦ୍ୱାରା ଭକ୍ତଭାବର ଗୌରବ ପ୍ରକାଶ ହେଲା । ୯୭ ।

ଶ୍ରୀମନ ଅଦ୍ୱୈତାଚାର୍ଯ୍ୟ ତତ୍ତ୍ୱତଃ କିପରି ଭକ୍ତାବତାର ସେହି ବିଷୟ କହୁଅଛନ୍ତି । ମୂଳ ସଙ୍କର୍ଷଣ ଶ୍ରୀବଲଦେବ , ମୂଳ ଭକ୍ତାବତାର । ତାହାଙ୍କର ଅଂଶାଂଶ ଶ୍ରୀମହାବିଷ୍ଣୁଙ୍କର ଅବତାର ଶ୍ରୀଅଦ୍ୱୈତ, ତେଣୁ ଶ୍ରୀଅଦ୍ୱୈତାଚାର୍ଯ୍ୟ ମଧ୍ୟ ଭକ୍ତାବତାର । ଏହାର ଭାବ ଏହି ଯେ ମହାବିଷ୍ଣୁଙ୍କର ଅବତାର ବିଶେଷ ଶ୍ରୀଅଦ୍ୱୈତ ଭକ୍ତଭାବ ଗ୍ରହଣ କରି ଭକ୍ତରୂପରେ ଅବତୀର୍ଣ୍ଣ ହୋଇଥିବାରୁ ସେ ଭକ୍ତାବତାର । ୯୮ ।

ଅଦ୍ୱୈତ-ଆଚାର୍ଯ୍ୟଗୋସାଞିର ମହିମା ଅପାର ।
ଯାହାର ହୁଙ୍କାରେ ହୈଲ ଚୈତନ୍ୟାବତାର ।୯୯
ସଙ୍କୀର୍ତ୍ତନ ପ୍ରଚାରିୟା ଜଗତ ତାରିଲ ।
ଅଦ୍ୱୈତ-ପ୍ରସାଦେ ଲୋକ ପ୍ରେମଧନ ପାଇଲ । ୧୦୦
ଅଦ୍ୱୈତ-ମହିମାନନ୍ତ-କେ ପାରେ କହିତେ ।
ସେଇ ଲିଖି-ଯେଇ ଶୁନି ମହାଜନ ହୈତେ । ୧୦୧
ଆଚାର୍ଯ୍ୟ-ଚରଣେ ମୋର କୋଟି ନମସ୍କାର ।
ଇଥେ କିଛୁ ଅପରାଧ ନା ଲବେ ଆମାର ।୧୦୨
ତୋମାର ମହିମା କୋଟି-ସମୁଦ୍ର ଅଗାଧ ।
ତାହାର ଇୟତ୍ତା କହି, ଏ ବଡ଼ ଅପରାଧ ।୧୦୩

ଜୟଜୟଜୟ ଶ୍ରୀଅଦ୍ୱୈତ-ଆଚାର୍ଯ୍ୟ ।
ଜୟଜୟ ଶ୍ରୀଚୈତନ୍ୟ-ନିତ୍ୟାନନ୍ଦ-ଆର୍ଯ୍ୟ । ୧୦୪
ଦୁଇଶ୍ଲୋକେ କହିଲ ଅଦ୍ୱୈତ-ତତ୍ତ୍ୱ-ନିରୂପଣ ।
ପଞ୍ଚତତ୍ତ୍ୱେର ବିଚାର କିଛୁ ଶୁନ ଭକ୍ତଗଣ ।୧୦୫।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୧୦୬ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ ଶ୍ରୀମଦଦ୍ୱୈତତତ୍ତ୍ୱନିରୂପଣଂ ନାମ ଷଷ୍ଠପରିଚ୍ଛେଦଃ ।

—※—

" ଈଶଂ " ଇତ୍ୟସ୍ୟାର୍ଥମାହ " ଅଦ୍ୱୈତ ଇତି । ଅପାର ମହିମତ୍ୱଂ ଈଶ୍ୱରତ୍ୱଂ । ମହିମାନ-ମାହ " ଯାହାର " ଇତି । ୯୯ । ୧୦୦ । ବି; ଚ,

ଦୈନ୍ୟ ଦର୍ଶୟନ୍ନାହ " ଅଦ୍ୱୈତ " ଇତ୍ୟାଦି " ଜୟ ଜୟ " ଇତ୍ୟନ୍ତଂ । ୧୦୧-୧୦୫
ବି; ଚ;

ଶ୍ରୀମନ୍ ଅଦ୍ୱୈତ ଆଚାର୍ଯ୍ୟଙ୍କର ଈଶ୍ୱରତ୍ୱ ବର୍ଣ୍ଣନ କରୁଅଛନ୍ତି । ଅଦ୍ୱୈତାଚାର୍ଯ୍ୟଙ୍କର ମହିମାର ସୀମା ନାହିଁ । ଅସୀମ ମହିମା ଈଶ୍ୱରତ୍ୱ ପ୍ରତିପାଦକ ତାହାର କାର୍ଯ୍ୟ ଏହି ଯେ ସେ ହୁଙ୍କାର ଗର୍ଜନ ଦ୍ୱାରା ଆକର୍ଷଣ କରି ଶ୍ରୀକୃଷ୍ଣଙ୍କୁ ଶ୍ରୀଚୈତନ୍ୟରୂପରେ ଅବତୀର୍ଣ୍ଣ କରାଇଥିଲେ । ସେ ନାମ ସଙ୍କୀର୍ତ୍ତନ ପ୍ରଚାର କରି ଜଗତ ଉଦ୍ଧାର କଲେ । ଏଣୁ ଜୀବପ୍ରତି ଶ୍ରୀଅଦ୍ୱୈତଆଚାର୍ଯ୍ୟଙ୍କର ଅନୁଗ୍ରହ ଏବଂ ଏହି ଅନୁଗ୍ରହରୁ ଜୀବ କୃଷ୍ଣପ୍ରେମ ଲାଭ କଲେ । ୯୯ । ୧୦୦ ।

ଗ୍ରନ୍ଥକାର ଉପସଂହାରରେ ଦୈନ୍ୟପୂର୍ବକ ଶ୍ରୀମନ୍ ଅଦ୍ୱୈତ ଆଚାର୍ଯ୍ୟଙ୍କର ସ୍ତୁତି କରୁଅଛନ୍ତି । ଇୟତ୍ତା———ସୀମାବଦ୍ଧରୂପେ । ପରିମାପକରୂପେ । ୧୦୧-ରୁ-୧୦୪ ।

ପ୍ରଥମ ପରିଚ୍ଛେଦୋକ୍ତ ୧୨ ଶ (ମହାବିଷ୍ଣୁ) ଓ ୧୩ ଶ (ଅଦ୍ୱୈତ) ଶ୍ଲୋକର ବ୍ୟାଖ୍ୟା ଦ୍ୱାରା ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କର ତତ୍ତ୍ୱ ବିଚାର କରି ପରବର୍ତ୍ତୀ ପରିଚ୍ଛେଦରେ ପଞ୍ଚତତ୍ତ୍ୱ ବିଷୟ ବିଚାର କରିବାକୁ ପ୍ରବୃତ୍ତ ହୋଇଅଛନ୍ତି । ୧୦୫ ।

ଷଷ୍ଠ ପରିଚ୍ଛେଦ ସମାପ୍ତ ।

—※—

## ସପ୍ତମ ପରିଚ୍ଛେଦଃ ।

ଅଗତ୍ୟେକଗତିଂ ନତ୍ୱା ହୀନାର୍ଥାଧିକସାଧକମ୍ ।
ଶ୍ରୀଚୈତନ୍ୟଂ ଲିଖ୍ୟତେଽସ୍ୟ ପ୍ରେମଭକ୍ତି
ବଦାନ୍ୟତା ॥ ୧ ॥*

ଜୟଜୟ ମହାପ୍ରଭୁ ଶ୍ରୀକୃଷ୍ଣଚୈତନ୍ୟ ।
ତାଁହାର ଚରଣାଶ୍ରିତ—ସେଇ ବଡ଼ ଧନ୍ୟ । ୧ ।
ପୂର୍ବେ ଗୁର୍ବାଦି ଛୟତତ୍ତ୍ୱେର କୈଲ ନମସ୍କାର ।
ଗୁରୁତତ୍ତ୍ୱ କହିୟାଛି, ଶୁନ ପାଞ୍ଚେର ବିଚାର । ୨ ।

ପଞ୍ଚତତ୍ତ୍ୱ ଅବତୀର୍ଣ୍ଣ ଶ୍ରୀଚୈତନ୍ୟସଙ୍ଗେ ।
ପଞ୍ଚତତ୍ତ୍ୱ ମିଲି କରେ ସଙ୍କୀର୍ତ୍ତନ ରଙ୍ଗେ । ୩ ।
ପଞ୍ଚତତ୍ତ୍ୱ ଏକ ବସ୍ତୁ, ନାହି କିଛୁ ଭେଦ ।
ରସ ଆସ୍ୱାଦିତେ ତତ୍ତ୍ୱ ବିବିଧ ବିଭେଦ । ୪ ।

ତଥାହି ଶ୍ରୀସ୍ୱରୂପଗୋସ୍ୱାମି-କଡ଼ଚାୟାମ୍—

ପଞ୍ଚତତ୍ତ୍ୱାତ୍ମକଂ କୃଷ୍ଣଂ ଭକ୍ତରୂପସ୍ୱରୂପକମ୍ ।
ଭକ୍ତାବତାରଂ ଭକ୍ତାଖ୍ୟଂ ନମାମି
ଭକ୍ତଶକ୍ତିକମ୍ ॥ ୨ ॥*

---

ଅଗତ୍ୟେକଗତିଂ ( ଅଗତୀନାମ୍ ଅକିଞ୍ଚନାନାମ୍ ଏକା ଅନନ୍ୟା ଗତିଃ ଶରଣଂ ତଥାଭୂତଂ, ନ ଚ ଗତିମାତ୍ରଂ, କିନ୍ତୁ ) ହୀନାର୍ଥାଧିକସାଧକଂ ( ହୀନାନାଂ ସଙ୍କଳ୍ପକର୍ମରହିତାନାଂ ଯେ ଅର୍ଥାଃ ପ୍ରୟୋଜନାନି ଧର୍ମାଦୟଃ ବା ତେଷାଂ ଅଧିକଂ ଯଥା ସ୍ୟାତ୍ ତଥା ସାଧକଂ ଯଦ୍ୱା ହୀନାୟ ନୀଚାୟ ଜନାୟ ଅର୍ଥାଧିକଂ ପ୍ରେମାଣଂ ସାଧୟତେ ଯେନ ତମ୍ ) ଶ୍ରୀଚୈତନ୍ୟଂ ନତ୍ୱା ( ପ୍ରଣମ୍ୟ ) ଅସ୍ୟ (ଶ୍ରୀଚୈତନ୍ୟସ୍ୟ) ପ୍ରେମଭକ୍ତିବଦାନ୍ୟତା ଲିଖ୍ୟତେ ( ନିରୂପ୍ୟତେ ) । ୧ମ ଶ୍ଲୋକ ।

"ପୂର୍ବେ" ଇତି ପଞ୍ଚାନାମେବାବତାରତ୍ୱାତ୍ ତେଷାମେବ ବିଚାରଃ । ୨ । ବି, ଚ,

ବିଚାରମାହ "ପଞ୍ଚ" ଇତି ଦ୍ୱାଭ୍ୟାଂ । ସଙ୍କୀର୍ତ୍ତନରସମାସ୍ୱାଦୟିତୁଂ ଏକସ୍ୟୈବ-ତତ୍ତ୍ୱବସ୍ତୁନଃ ପଞ୍ଚତତ୍ତ୍ୱରୂପେଣାବତାର ଇତ୍ୟେବ ପ୍ରଧାନାଂ ବିଚାର ଇତ୍ୟର୍ଥଃ । ଅତ ଶ୍ରୀଚୈତନ୍ୟଯୁତଂ ତତ୍ତ୍ୱଂ ପଞ୍ଚତତ୍ତ୍ୱମିତି ଜ୍ଞେୟଂ । ୩ । ୪ । ବି, ଚ,

( ଅନ୍ୱୟ-ପ୍ରଥମ ପରିଚ୍ଛେଦ ୧୪ ଶ୍ଲୋକରେ ଦେଖ । )

---

ଅକିଞ୍ଚନ ଜନମାନଙ୍କର ଏକମାତ୍ର ଗତି ଓ ସଙ୍କଳ୍ପକର୍ମାଦି ବିହୀନ ଅତି ନୀଚଜନମାନଙ୍କର ମଧ୍ୟ ପ୍ରେମଦାତା, ଶ୍ରୀ ଚୈତନ୍ୟଙ୍କୁ ପ୍ରଣାମ କରେଁ, ତାହାଙ୍କର ପ୍ରେମଭକ୍ତି ବଦାନ୍ୟତା ଅର୍ଥାତ୍ ଅଯୋଗ୍ୟ ବ୍ୟକ୍ତିକୁ ସୁଦ୍ଧା ଅଧିକରୂପେ ସେ ଯେ ପ୍ରେମଦାନ କରିଥିଲେ, ବର୍ଣ୍ଣନା କରୁଅଛି । ୧ମ ଶ୍ଲୋକାର୍ଥ ।

ପ୍ରଥମ ପରିଚ୍ଛେଦୋକ୍ତ ପ୍ରଥମଶ୍ଲୋକଦ୍ୱାରା ଗ୍ରନ୍ଥକାର ଗୁରୁ, ଈଶ, ପ୍ରକାଶ ଅବତାର, ଶକ୍ତି ଓ ଭକ୍ତ ଏହି ଛ ତତ୍ତ୍ୱକୁ ନମସ୍କାର କରି ଉକ୍ତ ପରିଚ୍ଛେଦରେ ଗୁରୁତତ୍ତ୍ୱର ବିଷୟ କହି, ବର୍ତ୍ତମାନ ଈଶ ଆଦି ପାଞ୍ଚ ତତ୍ତ୍ୱର ବିଷୟ କହୁଅଛନ୍ତି । ୨ ।

ଶ୍ରୀଚୈତନ୍ୟଙ୍କ ସହିତ ପଞ୍ଚତତ୍ତ୍ୱ ଅବତୀର୍ଣ୍ଣ ହୋଇ ଆନନ୍ଦରେ ଶ୍ରୀ ନାମସଂକୀର୍ତ୍ତନ କରନ୍ତି, ଅର୍ଥାତ୍ ଶ୍ରୀଚୈତନ୍ୟ ସେହି ପଞ୍ଚତତ୍ତ୍ୱ ମଧ୍ୟରୁ ଈଶତତ୍ତ୍ୱ । ଏହି ପଞ୍ଚତତ୍ତ୍ୱ ତତ୍ତ୍ୱତଃ ଏକବସ୍ତୁ ହେଲେହେଁ ଲୀଳାରସ ଆସ୍ୱାଦନ ସକାଶେ ନାନାପ୍ରକାର ପୃଥକ୍ ପୃଥକ୍ ରୂପେ ପ୍ରକାଶ ହୋଇଅଛନ୍ତି । ୩ । ୪ ।

ଯେ ସ୍ୱୟଂ ଭକ୍ତରୂପ, ଭକ୍ତସ୍ୱରୂପ, ଭକ୍ତଅବତାର, ଭକ୍ତ ଏବଂ ଭକ୍ତଶକ୍ତି ଏହିପ୍ରକାର ପଞ୍ଚତତ୍ତ୍ୱରୂପ ହୋଇଅଛନ୍ତି ଏମନ୍ତ ଶ୍ରୀକୃଷ୍ଣଙ୍କୁ ( ଶ୍ରୀକୃଷ୍ଣଚୈତନ୍ୟ ଦେବଙ୍କୁ ) ନମସ୍କାର କରେଁ । ଅର୍ଥାତ୍ ସ୍ୱୟଂ ଶ୍ରୀ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଚୈତନ୍ୟ ହୋଇ ଭକ୍ତରୂପରେ ଅବତୀର୍ଣ୍ଣ, ଶ୍ରୀବଳରାମ ଶ୍ରୀନିତ୍ୟାନନ୍ଦ ହୋଇ ଭକ୍ତସ୍ୱରୂପରେ ଅବତୀର୍ଣ୍ଣ, ସ୍ୱୟଂ ଶ୍ରୀମହାବିଷ୍ଣୁ ଶ୍ରୀଅଦ୍ୱୈତାଚାର୍ଯ୍ୟ ହୋଇ ଭକ୍ତାବତାରରୂପେ ଅବତୀର୍ଣ୍ଣ, ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ପାର୍ଷଦଗଣ ଶ୍ରୀବାସାଦି ଭକ୍ତରୂପରେ ଅବତୀର୍ଣ୍ଣ ଏବଂ ତାହାଙ୍କର ( ଶ୍ରୀବ୍ରଜେନ୍ଦ୍ରନନ୍ଦନଙ୍କର ) ଶକ୍ତିମାନେ ଶ୍ରୀ ଗଦାଧରାଦି ଅନ୍ତରଙ୍ଗ ଭକ୍ତରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଅଥଚ ଏହି ପଞ୍ଚତତ୍ତ୍ୱ ଏକାତ୍ମରୂପରେ ଶ୍ରୀକୃଷ୍ଣଚୈତନ୍ୟ ଦେବ ଅଟନ୍ତି । ତାହାଙ୍କୁ ନମସ୍କାର କରେଁ । ୨ୟ ଶ୍ଲୋକାର୍ଥ ।

ସ୍ୱୟଂଭଗବାନ୍ କୃଷ୍ଣ ଏକଲେ ଈଶ୍ୱର ।
ଅଦ୍ୱିତୀୟ ନନ୍ଦାତ୍ମଜ ରସିକ-ଶେଖର । ୫ ।
ରାସାଦି-ବିଳାସୀ ବ୍ରଜଲଲନା-ନାଗର ।
ଆର ଯତ ଦେଖ ସବ—ତାଁର ପରିକର । ୬ ।
ସେଇ କୃଷ୍ଣ ଅବତୀର୍ଣ୍ଣ—ଶ୍ରୀକୃଷ୍ଣଚୈତନ୍ୟ ।
ସେଇ ପରିକରଗଣ ସଙ୍ଗେ ସବ ଧନ୍ୟ । ୭ ।
ଏକଲେ ଈଶ୍ୱରତତ୍ତ୍ୱ—ଚୈତନ୍ୟ ଈଶ୍ୱର ।
ଭକ୍ତଭାବମୟ ତାଁର ଶୁଦ୍ଧ କଲେବର । ୮ ।
କୃଷ୍ଣମାଧୁର୍ଯ୍ୟେର ଏକ ଅଦ୍ଭୁତ ସ୍ୱଭାବ— ।
ଆପନା ଆସ୍ୱାଦିତେ କୃଷ୍ଣ କରେ ଭକ୍ତଭାବ । ୯ ।
ଇଥେ ଭକ୍ତଭାବ ଧରେ ଚୈତନ୍ୟଗୋସାଞି ।
ଭକ୍ତସ୍ୱରୂପ ତାଁର ନିତ୍ୟାନନ୍ଦ ଭାଇ । ୧୦ ।
ଭକ୍ତ-ଅବତାର ତାଁର ଆଚାର୍ଯ୍ୟଗୋସାଞି ।
ଏଇ ତିନ ତତ୍ତ୍ୱ ସବେ 'ପ୍ରଭୁ' କରି ଗାଇ । ୧୧ ।
ଏକ ମହାପ୍ରଭୁ, ଆର ପ୍ରଭୁ ଦୁଇଜନ ।
ଦୁଇ ପ୍ରଭୁ ସେବେ ମହାପ୍ରଭୁର ଚରଣ । ୧୨ ।

"ପଞ୍ଚତତ୍ତ୍ୱ" ଇତ୍ୟୁକ୍ତପଦ୍ୟଦ୍ୱୟଂ ବିସ୍ତାରୟନ୍ "ପଞ୍ଚତତ୍ତ୍ୱାତ୍ମକଂ କୃଷ୍ଣଂ ଭକ୍ତରୂପଂ" ଇତ୍ୟସ୍ୟାର୍ଥମାହ । "ସ୍ୱୟଂ ଭଗବାନ୍" ଇତ୍ୟାଦି "ଇଥେ" ଇତ୍ୟନ୍ତଂ । ଶୁଦ୍ଧକଲେବର ଇତି ଭାବମୟ-କଲେବରଂ । ୫—୧୦ । ବି, ଚ,

"ସ୍ୱରୂପକଂ" ଇତ୍ୟସ୍ୟାର୍ଥମାହ "ଭକ୍ତ" ଇତି । ୧୧ । ବି, ଚ,

"ଭକ୍ତାବତାରଂ" ଇତ୍ୟସ୍ୟାର୍ଥମାହ "ଭକ୍ତ" ଇତି । ୧୧ । ବି, ଚ,

ଅଦ୍ୱିତୀୟ ଅର୍ଥାତ୍ ଏକମାତ୍ର ଈଶ୍ୱର ( ସର୍ବାଶ୍ରୟ ) କୃଷ୍ଣ ଯେ କି ସ୍ୱୟଂ ଭଗବାନ୍ ସେ ବୃନ୍ଦାବନଧାମର ଶ୍ରୀନନ୍ଦନନ୍ଦନ ରସରାଜ, ରାସାଦିଲୀଳାବିଳାସୀ, ଗୋପୀଜନବଲ୍ଲଭ ଏବଂ ବୃନ୍ଦାବନସ୍ଥ ଆଉ ସମସ୍ତେ ତାଙ୍କର ଲୀଳାପରିକର । ସେହି ସ୍ୱୟଂ ଭଗବାନ୍ ଶ୍ରୀ ନନ୍ଦନନ୍ଦନ କୃଷ୍ଣ ଅଧୁନା ଶ୍ରୀକୃଷ୍ଣଚୈତନ୍ୟରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି, ଏବଂ ତାଙ୍କର ବ୍ରଜଲୀଳାପରିକରମାନେ ଶ୍ରୀଚୈତନ୍ୟ ପରିକରହୋଇ ଅବତୀର୍ଣ୍ଣ ହୋଇଅଛନ୍ତି । ୫—୭ ।

ଶ୍ରୀକୃଷ୍ଣହିଁ ଶ୍ରୀଚୈତନ୍ୟ ହେବାରୁ ଏକମାତ୍ର ଈଶ୍ୱରତତ୍ତ୍ୱ ଶ୍ରୀଚୈତନ୍ୟଙ୍କର ଶୁଦ୍ଧ କଳେବର ( ଈଶ୍ୱରଭାବମୟ କଳେବର ) ଭକ୍ତଭାବମୟ ( ସେବକଭାବମୟ ) କାହିଁକି ହେଲା, ଅର୍ଥାତ୍ ଶ୍ରୀକୃଷ୍ଣ ଶ୍ରୀଚୈତନ୍ୟରୂପରେ ସେବ୍ୟ ଈଶ୍ୱରରୂପ ଛାଡ଼ି ସେବକ ଭକ୍ତରୂପ କାହିଁକି ଗ୍ରହଣକଲେ ଏହାର କାରଣ ଗ୍ରନ୍ଥକାର କହୁଅଛନ୍ତି । ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟର ଏପରି ଅଦ୍ଭୁତ ସ୍ୱଭାବ ଯେ ତାହା ଆସ୍ୱାଦନ କରିବା ସକାଶେ ନିଜେ ଶ୍ରୀକୃଷ୍ଣଙ୍କର ଲୋଭ ଜନ୍ମେ । କିନ୍ତୁ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ କେବଳ ଭକ୍ତମାନେ ସେବାଦ୍ୱାରା ସମ୍ୟକ୍ ଆସ୍ୱାଦନ କରନ୍ତି । ଅତଏବ ସେହିଭାବ ଗ୍ରହଣ ନ କଲେ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟ ସମ୍ୟକ୍‌ରୂପେ ଆସ୍ୱାଦନ ହେବନାହିଁ ବୋଲି ସେ ( ଶ୍ରୀକୃଷ୍ଣ ) ଆପଣାର ମାଧୁର୍ଯ୍ୟ ସମ୍ୟକ୍ ଆସ୍ୱାଦନ କରିବାପାଇଁ ଭକ୍ତଭାବ ଗ୍ରହଣ କରି ଶ୍ରୀକୃଷ୍ଣ ଚୈତନ୍ୟରୂପରେ ଅବତୀର୍ଣ୍ଣ ହେଲେ । ଅତଏବ ଶ୍ଳୋକସ୍ଥ କୃଷ୍ଣଭକ୍ତରୂପହିଁ ଶ୍ରୀକୃଷ୍ଣଚୈତନ୍ୟ ଏବଂ ଭକ୍ତସ୍ୱରୂପହିଁ ଭାଇ ( ଅଭିନ୍ନକଳେବର ) ଶ୍ରୀନିତ୍ୟାନନ୍ଦ । ଭକ୍ତାବତାର ଶ୍ରୀଅଦ୍ୱୈତାଚାର୍ଯ୍ୟ ଗୋସାଇଁ । ଏହି ତିନହେଁ ବା ଏହି ତିନତତ୍ତ୍ୱହିଁ ପ୍ରଭୁତତ୍ତ୍ୱ । ଅର୍ଥାତ୍ ଭକ୍ତଭାବ ଗ୍ରହଣକଲେ ମଧ୍ୟ ଏହି ତିନହେଁ ସର୍ବତ୍ର ପ୍ରଭୁରୂପରେ ପରିଚିତ ଏବଂ ପୂଜିତ । ଏହି ତିନି ପ୍ରଭୁତତ୍ତ୍ୱ ମଧ୍ୟରେ ଏକ ଶ୍ରୀକୃଷ୍ଣଚୈତନ୍ୟହିଁ ମହାପ୍ରଭୁ ଅର୍ଥାତ୍ ପରମାରାଧ୍ୟ ଏବଂ ଅପର ଦୁହେଁ ( ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ) ପ୍ରଭୁ । ଏ ଦୁହେଁ ମହାପ୍ରଭୁଙ୍କର ଚରଣସେବା କରନ୍ତି ।
୮।୯।୧୦।୧୧।୧୨।

ଏଇ ତିନ ତତ୍ତ୍ୱ—ସର୍ବାରାଧ୍ୟ କରି ମାନି ।
ଚତୁର୍ଥ ଯେ ଭକ୍ତତତ୍ତ୍ୱ—ଆରାଧକ ଜାନି । ୧୩ ।
ଶ୍ରୀବାସାଦି ଯତ କୋଟିକୋଟି ଭକ୍ତଗଣ ।
ଶୁଦ୍ଧଭକ୍ତତତ୍ତ୍ୱ-ମଧ୍ୟେ ସଭାର ଗଣନ । ୧୪ ।
ଗଦାଧର-ଆଦି ପ୍ରଭୁର ଶକ୍ତି-ଅବତାର ।
'ଅନ୍ତରଙ୍ଗ ଭକ୍ତ' କରି ଗଣନ ଯାଁହାର । ୧୫ ।
ଯାଁହା-ସଙ୍ଗ ଲୈୟା ପ୍ରଭୁର ନିତ୍ୟ ବିହାର ।
ଯାଁହା-ସଙ୍ଗ ଲୈୟା ପ୍ରଭୁର କୀର୍ତ୍ତନପ୍ରଚାର । ୧୬ ।
ଯାଁହା-ସଙ୍ଗ ଲୈୟା କରେନ ପ୍ରେମ-ଆସ୍ୱାଦନ ।
ଯାଁହା-ସଙ୍ଗ ଲୈୟା ଦାନ କରେନ ପ୍ରେମଧନ ।୧୭
ଏଇ ପଞ୍ଚତତ୍ତ୍ୱ ମିଲି ପୃଥିବୀ ଆସିୟା ।
ପୂର୍ବପ୍ରେମ-ଭଣ୍ଡାରେର ମୁଦ୍ରା ଉଘାଡ଼ିୟା । ୧୮ ।
ପାଞ୍ଚେ ମିଲି ଲୁଟେ ପ୍ରେମ କରେ ଆସ୍ୱାଦନ ।
ଯତଯତ ପିୟେ, ତୃଷ୍ଣା ବାଢ଼େ ଅନୁକ୍ଷଣ । ୧୯
ପୁନଃପୁନଃ ପିୟାପିୟା ହୟ ମହାମତ୍ତ ।
ନାଚେ କାନ୍ଦେ ହାସେ ଗାୟ ଯୈଛେ ମଦମତ୍ତ ।୨୦
ପାତ୍ରାପାତ୍ର-ବିଚାର ନାହି, ନାହି ସ୍ଥାନାସ୍ଥାନ ।
ଯେଇ ଯାହାଁ ପାୟ, ତାହାଁ କରେ ପ୍ରେମଦାନ ।୨୧
ଲୁଟିୟା ଖାଇୟା ଦିୟା ଭଣ୍ଡାର ଉଜାଡ଼େ ।
ଆଶ୍ଚର୍ଯ୍ୟ ଭଣ୍ଡାର – ପ୍ରେମ ଶତଗୁଣ ବାଢ଼େ । ୨୨।
ଉଥଲିଲ ପ୍ରେମବନ୍ୟା—ଚୌଦିଗେ ବେଢ଼ାୟ ।
ସ୍ତ୍ରୀ-ବୃଦ୍ଧ-ବାଲକ-ଯୁବା ସଭାରେ ଡୁବାୟ । ୨୩ ।
ସଜ୍ଜନ ଦୁର୍ଜ୍ଜନ ପଙ୍ଗୁ ଜଡ଼ ଅନ୍ଧଗଣ ।
ପ୍ରେମବନ୍ୟାୟ ଡୁବାଇଲ ଜଗତେର ଜନ । ୨୪।
ଜଗତ ଡୁବିଲ, ଜୀବେର ହୈଲ ବୀଜନାଶ ।
ତାହା ଦେଖି ପାଞ୍ଚଜନେର ପରମ ଉଲ୍ଲାସ । ୨୫।
ଯତଯତ ପ୍ରେମବୃଷ୍ଟି କରେ ପଞ୍ଚଜନେ ।
ତତତତ ବାଢ଼େ ଜଲ—ବ୍ୟାପେ ତ୍ରିଭୁବନେ ।୨୬

ଶ୍ରୀଚୈତନ୍ୟାଦିତତ୍ତ୍ୱତ୍ରୟାଣାଂ ଭକ୍ତତ୍ୱେଽପି ତଦ୍ବିଶେଷମାହ "ଏଇ" ଇତି । ଏକଃ ଶ୍ରୀଚୈତନ୍ୟଃ ମହାପ୍ରଭୁଃ ଶ୍ରୀନିତ୍ୟାନନ୍ଦଃ ଶ୍ରୀଅଦ୍ୱୈତଶ୍ଚ ପ୍ରଭୁଃ । ତଥା "ଶୁଦ୍ଧ" ଇତି । ଇତ୍ୟାଦ୍ୟେକ ଦ୍ୱୟୋଃ । ୧୩ । ୧୪ । ବି, ଚ,

"ଭକ୍ତାଖ୍ୟଂ" ଇତ୍ୟସ୍ୟାର୍ଥମାହ "ଶ୍ରୀନିବାସ" ଇତି । ୧୫ । ବି, ଚ,

କଥଂ ଶକ୍ତ୍ୟାନାମବତାର ଇତି ତେଷାଂ କାର୍ଯ୍ୟମାହ "ଯାହା" ଇତି ଯାବତ୍ ପରିଚ୍ଛେଦ-ସମାପ୍ତିଃ । ପ୍ରେମରସାସ୍ୱାଦନାଦ୍ୟର୍ଥଂ ତେଷାମବତାର ଇତ୍ୟେତତ୍ ପ୍ରକରଣାଭିପ୍ରାୟଃ । ୧୬-୨୬ । ବି, ଚ,

ଯଦ୍ୟପି ଶ୍ରୀକୃଷ୍ଣ ନିଜେ ପଞ୍ଚତତ୍ତ୍ୱ, ତଥାପି ଭକ୍ତରୂପ, ଭକ୍ତସ୍ୱରୂପ, ଓ ଭକ୍ତାବତାର ଅର୍ଥାତ୍ ଶ୍ରୀଚୈତନ୍ୟ, ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ଏହି ତିନି ତତ୍ତ୍ୱ ସମସ୍ତଙ୍କର ଆରାଧ୍ୟ ଏବଂ ଚତୁର୍ଥ ଭକ୍ତତତ୍ତ୍ୱ ସେ ଏମାନଙ୍କର ଅରାଧକ, ଏହି ଭକ୍ତତତ୍ତ୍ୱରେ ଶ୍ରୀବାସାଦି କୋଟୀ କୋଟୀ ଶୁଦ୍ଧଭକ୍ତ ଅଛନ୍ତି ।୧୩।୧୪।

ଗଦାଧରପଣ୍ଡିତ ପ୍ରଭୃତି ମହାପ୍ରଭୁଙ୍କର ଅନ୍ତରଙ୍ଗ ଭକ୍ତମାନେ ( ଅନ୍ତରଙ୍ଗ ସେବକମାନେ ) ଭକ୍ତଶକ୍ତି ଅଟନ୍ତି । ୧୫ ।

ଶ୍ରୀମନ୍ ମହାପ୍ରଭୁ ଏହି ପଞ୍ଚତତ୍ତ୍ୱରୂପରେ କାହିଁକି ଅବତୀର୍ଣ୍ଣହେଲେ ତାହାର କାର୍ଯ୍ୟ କହୁଅଛନ୍ତି ଃ—ମହାପ୍ରଭୁ ଏହିମାନଙ୍କୁ ଅର୍ଥାତ୍ ( ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ପ୍ରଭୁମାନଙ୍କୁ, ଶ୍ରୀଗଦାଧର ପଣ୍ଡିତାଦି ଅନ୍ତରଙ୍ଗ ଭକ୍ତମାନଙ୍କୁ ଏବଂ ଶ୍ରୀବାସାଦି ଶୁଦ୍ଧ ଭକ୍ତମାନଙ୍କୁ ) ନେଇ ସର୍ବଦା ବିହାର କରନ୍ତି; ଶ୍ରୀନାମସଂକୀର୍ତ୍ତନ ପ୍ରଚାରକରନ୍ତି, ପ୍ରେମରସ ଆସ୍ୱାଦନକରନ୍ତି ଓ ଜଗଜ୍ଜୀବମାନଙ୍କୁ ପ୍ରେମ-ଦାନ କରନ୍ତି । ଏହି ପଞ୍ଚତତ୍ତ୍ୱ ପୃଥିବୀରେ ଅବତୀର୍ଣ୍ଣ ହୋଇ ପୂର୍ବପ୍ରେମ ( ବ୍ରଜପ୍ରେମ ) ଭଣ୍ଡାରଦ୍ୱାର ଖୋଲି ପ୍ରେମ ଲୁଟିକରି ପାନକଲେ । ଯେତେ ପାନକଲେ, ତେତେ ତୃଷ୍ଣା ବଢ଼ିଲା, ଅର୍ଥାତ୍ ପାନକ୍ରିୟାର ବିରାମ ହେଲାନାହିଁ, ଏହି ପ୍ରକାର ପାନକରିବା ଦ୍ୱାରା ପ୍ରେମୋନ୍ମତ୍ତ ହୋଇ ହସିଲେ, କାନ୍ଦିଲେ, ନାଚିଲେ, ଗାଇଲେ ଅର୍ଥାତ୍ ମଦୋନ୍ମତ୍ତଲୋକପରି ବ୍ୟବହାର କଲେ । ପୁଣି ଦେଶକାଳପାତ୍ର ବିଚାର ନ କରି ଯେ ଯାହାକୁ ପାଇଲେ ତାକୁ ତାହିଁ ତାହିଁ ପ୍ରେମଦାନକଲେ । ଏହିପରି ଲୁଟପାଟ

ମାୟାବାଦୀ କର୍ମ୍ମନିଷ୍ଠ କୁତାର୍କିକଗଣ ।
ନିନ୍ଦୁକ ପାଷଣ୍ଡୀ ଯତ ପଡ଼ୁୟା ଅଧମ । ୨୭ ।
ସେଇ ସବ ମହାଦକ୍ଷ ଧାଇଁଯା ପଳାଇଲ ।
ସେଇ ବନ୍ୟା ତା-ସଭାରେ ଛୁଇଁତେ ନାରିଲ । ୨୮ ।
ତାହା ଦେଖି ମହାପ୍ରଭୁ କରେନ ଚିନ୍ତନ—
ଜଗତ୍ ଡୁବାଇତେ ଆମି କରିଲୁ ଯତନ । ୨୯ ।
କେହୋ କେହୋ ଏଡ଼ାଇଲ-ପ୍ରତିଜ୍ଞା ହୈଲ ଭଙ୍ଗ ।
ତା-ସଭା ଡୁବାଇତେ ପାତିବ କିଛୁ ରଙ୍ଗ । ୩୦ ।
ଏତ ବଲି ମନେ କିଛୁ କରିୟା ବିଚାର ।
ସନ୍ନ୍ୟାସ ଆଶ୍ରମ ପ୍ରଭୁ କୈଲ ଅଙ୍ଗୀକାର । ୩୧ ।
ଚବିଶ ବତ୍ସର ଛିଲା ଗୃହସ୍ଥ-ଆଶ୍ରମେ ।
ପଞ୍ଚବିଂଶତି ବର୍ଷେ କୈଲ ଯତିଧର୍ମେ । ୩୨ ।
ସନ୍ନ୍ୟାସ କରିୟା ପ୍ରଭୁ କୈଲ ଆକର୍ଷଣ ।
ଯତେକ ପଲାଇଁଯାଛିଲ ତାର୍କିକାଦିଗଣ । ୩୩ ।
ପଡ଼ୁୟା ପାଷଣ୍ଡୀ କର୍ମ୍ମୀ ନିନ୍ଦକାଦି ଯତ ।
ତାରା ଅସି ପ୍ରଭୁ-ପାୟ ହୟ ଅବନତ । ୩୪ ।

କରିବା, ଖାଇବା ଓ ବାଣ୍ଟିବାଦ୍ୱାରା ପ୍ରେମ-ଭଣ୍ଡାରରୁ ଧନ ଶେଷହେବା ଦୂରେଥାଉ ତାହା ଶତ୨ ଗୁଣ ବଢ଼ି ଭଣ୍ଡାର ପୂର ଉଚ୍ଛୁଳି ଚତୁର୍ଦ୍ଦିଗ ବନ୍ୟାଦ୍ୱାରା ସ୍ତ୍ରୀ, ବାଳକ, ବୃଦ୍ଧ, ଯୁବା ଆଦି ସମସ୍ତଙ୍କୁ ବୁଡ଼ାଇଦେଲା । ଆଉ କାହାରିକୁ ବାକୀ ରଖିଲ ନାହିଁ । ଅର୍ଥାତ୍ ସଜ୍ଜନ, ଦୁର୍ଜ୍ଜନ, ପଙ୍ଗୁ, ଜଡ଼, ଅନ୍ଧ ଏପରିକି ଜଗତର ସମସ୍ତଙ୍କୁ ବୁଡ଼ାଇଲା ।

ଏହି ପ୍ରକାର ପ୍ରେମବନ୍ୟାଦ୍ୱାରା ଜଗତ୍ ସଂସାର ବୁଡ଼ିବାରୁ ଜୀବ-ବୀଜ ଲୋପହେଲା । (ଅର୍ଥାତ୍ ଜୀବର ଉପାଧିଗତବୀଜମୂଳ ଅଜ୍ଞାନ ବା ଅବିଦ୍ୟା ନାଶହେଲା) ତାହାଦେଖି ପଞ୍ଚତତ୍ତ୍ୱଙ୍କ ହୃଦୟରେ ଆନନ୍ଦହେଲା ।

ଏହି ପଞ୍ଚତତ୍ତ୍ୱ ଗୋସାଇଁମାନେ ଯେତେ ଯେତେ ପ୍ରେମ ବୃଷ୍ଟି କରିବାକୁ ଲାଗିଲେ ସେ ପ୍ରେମ-ଜଳ ତେତେ ତେତେ ବଢ଼ି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ତ୍ରିଭୁବନ ବ୍ୟାପିବାକୁ ଲାଗିଲା । ୧୭-୨୬।

ପ୍ରେମବନ୍ୟାକୁ ଉପୁକରି ମାୟାବାଦୀ ସନ୍ନ୍ୟାସୀ ଯେଉଁମାନେ କି ଜଗତକୁ କଳ୍ପନା ବୋଲି କହନ୍ତି, କୁତାର୍କିକ (ତର୍କନିଷ୍ଠବ୍ୟକ୍ତି) କର୍ମ୍ମମାର୍ଗୀ (ଯେଉଁମାନେ କି ଫଳ କାମନାକରି କର୍ମ୍ମ କରନ୍ତି) ନିନ୍ଦୁକ, ପାଷଣ୍ଡୀ (ନାସ୍ତିକ) ଏବଂ ବହିର୍ମ୍ମୁଖ ଛାତ୍ରଗଣ ପଳାଇଗଲେ । ଅର୍ଥାତ୍ ସେମାନେ ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ମାର୍ଗକୁ ଗ୍ରହଣ କଲେନାହିଁ ।

ଏହିପରି ମୋହାନ୍ଧ ବ୍ୟକ୍ତିମାନଙ୍କର ଦୁର୍ଦ୍ଦଶା ଦେଖି ଶ୍ରୀମନ୍ ମହାପ୍ରଭୁ ବିଚାରକଲେ ଯେ ନାମ ପ୍ରେମଦ୍ୱାରା ମୁଁ ଜଗତକୁ ବୁଡ଼ାଇବି ବୋଲି ପ୍ରତିଜ୍ଞାକରି ଆସି ଦେଖୁଛି, ସମସ୍ତେତ ଏ ନାମ-ପ୍ରେମରେ ମଗ୍ନ ହେଲେନାହିଁ । ଅତଏବ ମୋର ପ୍ରତିଜ୍ଞା ଭଙ୍ଗହୋଇଅଛି । କରୁଣାର୍ଦ୍ର ଚିତ୍ତରେ ଏହିପ୍ରକାର ଭାବି ଉକ୍ତପ୍ରକାର ବ୍ୟକ୍ତିମାନଙ୍କୁ ନାମପ୍ରେମ-ବନ୍ୟାରେ ବୁଡ଼ାଇବାସକାଶେ ନିଜେ ସନ୍ନ୍ୟାସା-ଶ୍ରମ ଗ୍ରହଣକଲେ । କାରଣ ସନ୍ନ୍ୟାସିଙ୍କଠାରେ ବର୍ଣ୍ଣାଶ୍ରମନିର୍ବିଶେଷରେ ସମସ୍ତେ ନତ ହୁଅନ୍ତି । ଅତଏବ ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସୀ ହେଲାରୁ ଯେଉଁମାନେ ପୂର୍ବେ ତାଙ୍କୁ ଅଗ୍ରାହ୍ୟକରି ତାଙ୍କ ପ୍ରବର୍ତ୍ତିତ ନାମ ପ୍ରେମ ଗ୍ରହଣ ନ କରି ତାଙ୍କଠାରେ ଅପରାଧୀ ହୋଇଅଛନ୍ତି ସେହିମାନେ ସନ୍ନ୍ୟାସୀ ଜ୍ଞାନରେ ଶ୍ରୀମନ୍ ମହାପ୍ରଭୁଙ୍କୁ ପ୍ରଣାମ କଲେ ସେମାନଙ୍କର ଅପରାଧ କ୍ଷୟହେବ ଓ ପ୍ରେମଲାଭହେବ । ଏହିହେତୁ ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ କରିଥିଲେ । ୨୭ରୁ୩୧ ।

କୈଲଯତିଧର୍ମ୍ମେ—ସନ୍ନ୍ୟାସାଶ୍ରମ ଗ୍ରହଣକଲେ । ୩୨ ।
ଅବନତ—ପ୍ରଣତ । ୩୪ ।

ଅପରାଧ କ୍ଷମାଇଲ ଡୁବାଇଲ ପ୍ରେମଜଳେ ।
କେବା ଏଡ଼ାଇବେ ପ୍ରଭୁର ପ୍ରେମ-ମହାଜାଳେ ? ୩୫
ଯଦ୍ୟପି ନସ୍ତାରିଲେ ପ୍ରଭୁ କୃପା-ଅବତାର ।
ସବୁ ନସ୍ତାରିଲେ କରେ ଚାତୁରୀ ଅପାର । ୩୬ ।
ତବେ ନିଜ ଭକ୍ତ କୈଲ ଯତ ମ୍ଲେଚ୍ଛ-ଆଦି ।
ସବେ ଏକ ଏଡ଼ାଇଲ କାଶୀର ମାୟାବାଦୀ । ୩୭ ।
ବୃନ୍ଦାବନ ଯାଇତେ ପ୍ରଭୁ ରହିଲା କାଶୀତେ ।
ମାୟାବାଦିଗଣ ତାଁରେ ଲାଗିଲା ନିନ୍ଦିତେ— । ୩୮ ।
ସନ୍ନ୍ୟାସୀ ହଇୟା କରେନ ଗାୟନ-ନାଚନ ।
ନା କରେ ବେଦାନ୍ତପାଠ—କରେ ସଂକୀର୍ତ୍ତନ । ୩୯
ମୂର୍ଖ ସନ୍ନ୍ୟାସୀ ନିଜ ଧର୍ମ୍ମ ନାହି ଜାନେ ।
ଭାବକ ହଇୟା ଫିରେ ଭାବକେର ସନେ । ୪୦ ।
ଏ ସବ ଶୁନିୟାଁ ପ୍ରଭୁ ହାସେ ମନେ ମନେ ।
ଉପେକ୍ଷା କରିୟା କାରେ ନା କୈଲ ସମ୍ଭାଷଣେ । ୪୧ ।
ଉପେକ୍ଷା କରିୟା କୈଲ ମଥୁରାଗମନ ।
ମଥୁରା ଦେଖିୟା ପୁନଃ କୈଲ ଆଗମନ । ୪୨ ।
କାଶୀତେ ଲେଖକ ଶୂଦ୍ର ଚନ୍ଦ୍ରଶେଖର ।
ତାର ଘରେ ରହିଲା ପ୍ରଭୁ ସ୍ୱତନ୍ତ୍ର ଈଶ୍ୱର । ୪୩ ।

ତପନମିଶ୍ରେର ଘରେ ଭିକ୍ଷା ନିର୍ବାହଣ ।
ସନ୍ନ୍ୟାସିର ସଙ୍ଗେ ନାହି ମାନେ ନିମନ୍ତ୍ରଣ । ୪୪ ।
ସନାତନ ଗୋସାଞି ଆସି ତାହାଁଇ ମିଲିଲା ।
ତାଁର ଶିକ୍ଷା ଲାଗି ପ୍ରଭୁ ଦୁ'ମାସ ରହିଲା । ୪୫ ।
ତାଁରେ ଶିଖାଇଲ ସବ ବୈଷ୍ଣବେର ଧର୍ମ୍ମ ।
ଭାଗବତ-ଆଦି ଶାସ୍ତ୍ରେ ଯତ ଗୂଢ଼ ମର୍ମ୍ମ । ୪୬ ।
ଇତିମଧ୍ୟେ ଚନ୍ଦ୍ରଶେଖର ମିଶ୍ରତପନ ।
ଦୁଃଖୀ ହଞା ପ୍ରଭୁ-ପାୟ କୈଲ ନିବେଦନ— । ୪୭ ।
କତେକ ଶୁନିବ ପ୍ରଭୁ ତୋମାର ନିନ୍ଦନ ।
ନା ପାରି ସହିତେ ଏବେ ଛାଡ଼ିବ ଜୀବନ । ୪୮ ।
ତୋମାରେ ନିନ୍ଦୟେ ଯତ ସନ୍ନ୍ୟାସିର ଗଣ ।
ଶୁନିତେ ନା ପାରି, ଫାଟେ ହୃଦୟ-ଶ୍ରବଣ । ୪୯ ।
ଇହା ଶୁନି ରହେ ପ୍ରଭୁ ଈଷତ ହାସିୟା ।
ସେଇକାଲେ ଏକ ବିପ୍ର ମିଲିଲ ଆସିୟା । ୫୦ ।
ଆସି ନିବେଦନ କରେ ଚରଣେ ଧରିୟା— ।
ଏକ ବସ୍ତୁ ମାଗୋଁ, ଦେହ ପ୍ରସନ୍ନ ହଇୟା । ୫୧ ।
ସକଳ ସନ୍ନ୍ୟାସୀ ମୁଞି କୈଲ ନିମନ୍ତ୍ରଣ ।
ତୁମି ଯଦି ଆଇସ—ପୂର୍ଣ୍ଣ ହୟ ମୋର ମନ । ୫୨ ।

ସନ୍ନ୍ୟାସିନସ୍ତସ୍ୟ ଚନ୍ଦ୍ରଶେଖରଗୃହୈକବାସଃ ତଥା ତପନମିଶ୍ରାନ୍ନୈକଗ୍ରହଣଂ ଈଶ୍ୱରସ୍ୟ ଶାସ୍ତ୍ରାନଧୀନତ୍ୱାତ୍ ଅନ୍ୟଥା ଶାସ୍ତ୍ରେ ତନ୍ନିଷିଦ୍ଧଂ । ୪୪ । ବି, ଚ,

କ୍ଷମାଇଲା—କ୍ଷମାକଲେ । ଡୁବାଇଲା—ବୁଡ଼ାଇଲେ । ୩୫ । ମ୍ଲେଚ୍ଛ—ଅହିନ୍ଦୁ । ୩୭ ।
ଭାବକ—ଭକ୍ତିମାର୍ଗୀ । ୪୦ । ପ୍ରଭୁ—ଶ୍ରୀକୃଷ୍ଣଚୈତନ୍ୟ, ଉପେକ୍ଷା—ଅନାଦର । ୪୧ ।
ଲେଖକ—ମସୀଜୀବୀ । ୪୩ ।

ସ୍ୱତନ୍ତ୍ରଈଶ୍ୱର – ଏହିଶବ୍ଦ ଏଠାରେ ବ୍ୟବହାର ହେବାର କାରଣ ଏହି ଯେ ସନ୍ନ୍ୟାସିଙ୍କ ପକ୍ଷରେ ଏକସ୍ଥାନରେ ବହୁଦିନ ବାସକରିବା ଓ ଏକ ଜଣଙ୍କ ଗୃହରେ ବହୁଦିନ ଆହାର କରିବା ନିଷିଦ୍ଧ ଥିଲେହେଁ ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସୀହୋଇ ଶ୍ରୀ ଚନ୍ଦ୍ରଶେଖରଙ୍କ ଘରେ ଦୁଇମାସ ବାସ କରିଥିଲେ ଏବଂ ଶ୍ରୀ ତପନମିଶ୍ରଙ୍କଘରେ ସେହି ଦୁଇମାସଯାକ ଆହାର କରିଥିଲେ । ଏହା ସନ୍ନ୍ୟାସଧର୍ମ୍ମର ନିଷିଦ୍ଧ; ଏହିହେତୁ ଗ୍ରନ୍ଥକାର କହୁଅଛନ୍ତି ଯେ ମହାପ୍ରଭୁ ଈଶ୍ୱର ହେତୁ ସ୍ୱତନ୍ତ୍ର, ତେଣୁ ସେ ବିଧିନିଷେଧର ପରତନ୍ତ୍ର ନୁହନ୍ତି । ଅତଏବ ତାଙ୍କପକ୍ଷରେ ପୂର୍ବୋକ୍ତ ସନ୍ନ୍ୟାସବିଧିଲଙ୍ଘନ ଦୋଷାବହ ନୁହେ । ଏହାର ଅପର ଭାବ ଏହି ଯେ ଈଶ୍ୱର ସ୍ୱତନ୍ତ୍ର ହେଲେହେଁ ସେ ସର୍ବଦା ଭକ୍ତାଧୀନ, ତେଣୁ ସେ ପ୍ରିୟ-ଭକ୍ତ ଶ୍ରୀ ଚନ୍ଦ୍ରଶେଖର ଓ ଶ୍ରୀ ତପନମିଶ୍ରଙ୍କର ଭକ୍ତିର ଅଧୀନହୋଇ ଏ ପ୍ରକାର କରିଥିଲେ । ଭିକ୍ଷା—ସନ୍ନ୍ୟାସିଙ୍କର ଭୋଜନ । ୪୪ । ସନାତନଗୋସାଇଁ—ପ୍ରଥମପରିଚ୍ଛେଦୋକ୍ତ ୧୮ଶ ପଦ୍ୟାରଲକ୍ଷିତ ଷଡ଼୍‌ଗୋସ୍ୱାମିଙ୍କ ମଧ୍ୟରୁ ଅନ୍ୟତମ । ୪୫ । ଗୂଢ଼ମର୍ମ୍ମ—ନିଗୂଢ଼ତତ୍ତ୍ୱ ଓ ଭାବ । ୪୬ । ମାଗୋଁ—ମାଗୁଅଛୁ । ୫୧ । ମୁଞି—ମୁଁ । ୫୨ ।

ନା ଯାଇ ସନ୍ନ୍ୟାସି-ଗୋଷ୍ଠି, ଇହା ଆମି ଜାନି ।
ମୋରେ ଅନୁଗ୍ରହ କର ନିମନ୍ତ୍ରଣ ମାନି । ୫୩ ।
ପ୍ରଭୁ ହାସି ନିମନ୍ତ୍ରଣ କୈଲ ଅଙ୍ଗୀକାର ।
ସନ୍ନ୍ୟାସିରେ କୃପା-ଲାଗି ଏ ଭଙ୍ଗୀ ତାଁହାର ।୫୪
ସେ ବିପ୍ର ଜାନେନ—ପ୍ରଭୁ ନା ଯାନ କାରେ ଘରେ ।
ତାଁହାର ପ୍ରେରଣାୟ ତାଁରେ ଅତ୍ୟାଗ୍ରହ କରେ ।୫୫
ଆର ଦିନେ ଗେଲା ପ୍ରଭୁ ସେ-ବିପ୍ର-ଭବନେ ।
ଦେଖିଲେନ—ବସି ଆଛେନ ସନ୍ନ୍ୟାସିଗଣେ ।୫୬।
ସଭା ନମସ୍କରି ଗେଲା ପାଦପ୍ରକ୍ଷାଳନେ ।
ପାଦପ୍ରକ୍ଷାଳନ କରି ବସିଲା ସେଇସ୍ଥାନେ । ୫୭ ।

ବସିଞା କରିଲା କିଛୁ ଐଶ୍ୱର୍ଯ୍ୟ ପ୍ରକାଶ— ।
ମହାତେଜୋମୟ ବପୁ—କୋଟିସୂର୍ଯ୍ୟାଭାସ ।୫୮।
ପ୍ରଭାବେ ଆକର୍ଷିଲ ସବ ସନ୍ନ୍ୟାସିର ମନ ।
ଉଠିଲା ସନ୍ନ୍ୟାସିଗଣ ଛାଡ଼ିୟା ଆସନ । ୫୯ ।
ପ୍ରକାଶାନନ୍ଦ ନାମେ ସର୍ବସନ୍ନ୍ୟାସୀ-ପ୍ରଧାନ ।
ପ୍ରଭୁକେ କହିଲ କିଛୁ କରିୟା ସମ୍ମାନ— । ୬୦ ।
ଇହାଁ ଆଇସ ଇହାଁ ଆଇସ ଶୁନହ ଶ୍ରୀପାଦ !
ଅପବିତ୍ର ସ୍ଥାନେ ବୈସ—କିବା ଅବସାଦ ? ।୬୧।
ପ୍ରଭୁ କହେନ—ଆମି ହଇ ହୀନସମ୍ପ୍ରଦାୟ ।
ତୋମା-ସଭାର ସଭାୟ ବସିତେ ନା ଯୁୟାୟ ।୬୨।

ଏ ଭଙ୍ଗୀ ତାହାର—ଏହାର ଭାବ ଏହି ଯେ ଶ୍ରୀମନ୍ ମହାପ୍ରଭୁ ମାୟାବାଦୀ ସନ୍ନ୍ୟାସିମାନଙ୍କ ସହିତ ଏକତ୍ରରେ ଭୋଜନ କରନ୍ତି ନାହିଁ, ଏହା ଜାଣିସୁଦ୍ଧା ଉପରଲକ୍ଷିତ ବ୍ରାହ୍ମଣ ଅସି ତାଙ୍କୁ ମାୟାବାଦୀ ସନ୍ନ୍ୟାସିମାନଙ୍କ ସହିତ ଏକତ୍ର ଭୋଜନକରିବା ସକାଶେ ଅନୁନୟ ବିନୟ ସହିତ ନିମନ୍ତ୍ରଣ କଲେ; ଏହା ଶ୍ରୀମନ୍ ମହାପ୍ରଭୁଙ୍କର ଗୋଟିଏ ଐଶ୍ୱର୍ଯ୍ୟ ପ୍ରକାଶ । ଅର୍ଥାତ୍ ସେ ସନ୍ନ୍ୟାସିମାନଙ୍କୁ ଉଦ୍ଧାର କରିବା କାରଣ ଏହି ବ୍ରାହ୍ମଣହୃଦୟରେ ନିମନ୍ତ୍ରଣର ଭାବ ଉଦ୍ଦୀପନ କରିଥିଲେ ଏବଂ ସେହିହେତୁରୁ ବ୍ରାହ୍ମଣ ଏ ପ୍ରକାର ନିମନ୍ତ୍ରଣ କରିଥିଲେ । ୫୪ ।

ତାହାଁର—ଶ୍ରୀମନ୍ ମହାପ୍ରଭୁଙ୍କର । ପ୍ରେରଣାୟ—ଅନ୍ତର୍ଯାମୀରୂପେ ଭାବ ଉଦ୍ଦୀପନ ଦ୍ୱାରା । ତାଁରେ—ଶ୍ରୀମନ୍ ମହାପ୍ରଭୁଙ୍କୁ । ୫୫ ।

ସନ୍ନ୍ୟାସିମାନେ ନିର୍ବିଶେଷ ବ୍ରହ୍ମବାଦୀ । ବ୍ରହ୍ମନିର୍ଜ୍ୟୋତି ଏହି ସତ୍ତାମାତ୍ର ସ୍ୱୀକାରକରି ତାହା ଧ୍ୟାନ କରନ୍ତି, ସୁତରାଂ ସନ୍ନ୍ୟାସିମାନଙ୍କୁ ଜ୍ୟୋତିର୍ଦ୍ଦର୍ଶନ ନ କରାଇଲେ ସେମାନେ ଆନୁଗତ୍ୟ ସ୍ୱୀକାର କରିବେନାହିଁ, ଏହିହେତୁ ଶ୍ରୀମନ୍ ମହାପ୍ରଭୁ ପାଦପ୍ରକ୍ଷାଳନ ସ୍ଥାନରେ ବସି ଐଶୀଶକ୍ତି ପ୍ରକାଶ ଦ୍ୱାରା ନିଜ ଅଙ୍ଗରେ କୋଟୀ କୋଟୀ ସୂର୍ଯ୍ୟର ଜ୍ୟୋତି ବିକାଶକଲେ । ଅର୍ଥାତ୍ ସେମାନଙ୍କୁ ସବିଶେଷ ବ୍ରହ୍ମରୂପ ଦର୍ଶନ କରାଇଲେ । ଏପ୍ରକାର ବ୍ରହ୍ମଦର୍ଶନ ଲାଭକରି ସନ୍ନ୍ୟାସିମାନେ ସମ୍ଭ୍ରମର ସହିତ ତାଙ୍କ ନିକଟ ଯାଇଁ ଅଭିବାଦନ କଲେ ଏବଂ ସେମାନଙ୍କର ନେତୃସ୍ଥାନୀୟ ପ୍ରକାଶାନନ୍ଦ ସରସ୍ୱତୀ ଶ୍ରୀମନ୍ ମହାପ୍ରଭୁଙ୍କୁ କିଛି ନିବେଦନ କଲେ । ୫୮ । ୫୯ । ୬୦ ।

ଇହାଁ—ଏଠାକୁ । ଶ୍ରୀପାଦ—ସନ୍ନ୍ୟାସିମାନେ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଏହି ଶବ୍ଦ ଦ୍ୱାରା ସମ୍ବୋଧନ କରନ୍ତି । ଅବସାଦ—ଦୁଃଖ । ୬୧ ।

ପ୍ରଭୁ—ଶ୍ରୀକୃଷ୍ଣଚୈତନ୍ୟମହାପ୍ରଭୁ ।

ଶ୍ରୀମନ୍ ଶଙ୍କରାଚାର୍ଯ୍ୟପ୍ରବର୍ତ୍ତିତ ମାର୍ଗର ସନ୍ନ୍ୟାସିମାନେ ଯେଉଁମାନଙ୍କୁ ମାୟାବାଦୀ କୁହାଯାଏ ସେମାନଙ୍କର ଦଶଗୋଟି ଉପାଧିଗତ ସମ୍ପ୍ରଦାୟ ଅଛି । ଯଥା—ତୀର୍ଥ, ଆଶ୍ରମ, ବନ, ଗିରି, ଅରଣ୍ୟ, ପର୍ବତ, କାନନ, ପୁରୀ, ଭାରତୀ ଏବଂ ସରସ୍ୱତୀ । ଏହିମାନଙ୍କୁ ଦଶନାମୀ ସନ୍ନ୍ୟାସୀ କୁହାଯାଏ । ଏମାନେ ଏକଦଣ୍ଡ କମଣ୍ଡଳୁ ଧାରଣକରନ୍ତି । କଥିତଅଛି ଶ୍ରୀଶଙ୍କରାଚାର୍ଯ୍ୟ କୌଣସି କାରଣରୁ ଗିରି, ପୁରୀ

ଅପନେ ପ୍ରକାଶାନନ୍ଦ ହାଥେତେ ଧରିୟା ।
ବସାଇଲ ସଭାମଧ୍ୟେ ସମ୍ମାନ କରିୟା । ୬୩ ।
ପୁଛିଲ—ତୋମାର ନାମ ଶ୍ରୀକୃଷ୍ଣଚୈତନ୍ୟ ? ।
କେଶବ-ଭାରତୀରଶିଷ୍ୟ—ତାତେ ତୁମି ଧନ୍ୟ ।୬୪
ସମ୍ପ୍ରଦାୟୀ ସନ୍ନ୍ୟାସୀ ତୁମି ରହ ଏଇ ଗ୍ରାମେ ।
କି-କାରଣେ ଆମା-ସଭାର ନା କର ଦର୍ଶନେ ।୬୫
ସନ୍ନ୍ୟାସୀ ହଇୟା କର ନର୍ତ୍ତନ ଗାୟନ ।
ଭାବକ ସବ ସଙ୍ଗେ ଲୈୟା କର ସଙ୍କୀର୍ତ୍ତନ । ୬୬
ବେଦାନ୍ତପଠନ ଧ୍ୟାନ ସନ୍ନ୍ୟାସିର ଧର୍ମ୍ମ ।
ତାହା ଛାଡ଼ି କେନେ କର ଭାବକେର କର୍ମ୍ମ ? ।୬୭।
ପ୍ରଭାବେ ଦେଖିୟେ ତୋମା ସାକ୍ଷାତ୍ ନାରାୟଣ ।
ହୀନାଚାର କର କେନେ, କି ଇହାର କାରଣ ।୬୮
ପ୍ରଭୁ କହେ—ଶୁନ ଶ୍ରୀପାଦ ! ଇହାର କାରଣ ।
ଗୁରୁ ମୋରେ ମୂର୍ଖ ଦେଖି କରିଲ ଶାସନ—।୬୯।
ମୂର୍ଖ ତୁମି, ତୋମାର ନାହି ବେଦାନ୍ତାଧିକାର ।
କୃଷ୍ଣମନ୍ତ୍ର ଜପ' ସଦା, ଏଇ ମନ୍ତ୍ର ସାର । ୭୦ ।
କୃଷ୍ଣମନ୍ତ୍ର ହୈତେ ହବେ ସଂସାରମୋଚନ ।
କୃଷ୍ଣନାମ ହୈତେ ପାବେ କୃଷ୍ଣେର ଚରଣ । ୭୧ ।
ନାମ ବିନୁ କଲିକାଲେ ନାହି ଆର ଧର୍ମ୍ମ ।
ସର୍ବମନ୍ତ୍ର ସାର-ନାମ—ଏଇ ଶାସ୍ତ୍ର-ମର୍ମ୍ମ । ୭୨ ।
ଏତ ବଲି ଏକ ଶ୍ଲୋକ ଶିଖାଇଲ ମୋରେ ।
କଣ୍ଠେ କରି ଏଇ ଶ୍ଲୋକ କରିହ ବିଚାରେ । ୭୩

---

ପ୍ରକାଶାନନ୍ଦକୃତପ୍ରଶ୍ନସ୍ୟୋତ୍ତରମାହ "ପ୍ରଭୁ କହେ" ଇତ୍ୟାଦି । ଶ୍ରୀକୃଷ୍ଣ ନାମ-ପ୍ରଭାବେଣୈବ ତତ୍ତ୍ଵଜ୍ଞକଶ୍ରେମୀତ୍ୟେତତ୍ ପ୍ରକରଣାଭିପ୍ରାୟଃ । ୬୯ । ବି, ଚ, ।

---

ଓ ଭାରତୀଙ୍କ ଉପରେ ବିରକ୍ତ ହୋଇ ସେମାନଙ୍କର ଅର୍ଦ୍ଧଦଣ୍ଡ ଭାଙ୍ଗିଦେଇ ତ୍ୟାଗ କରିଥିଲେ । ଏହିହେତୁରୁ ଏହି ତିନି ସମ୍ପ୍ରଦାୟକୁ ଅପର ସାତ ସମ୍ପ୍ରଦାୟ ନୀଚସମ୍ପ୍ରଦାୟ ବୋଲି କହନ୍ତି । ଶ୍ରୀମନ୍ ମହାପ୍ରଭୁ ଶ୍ରୀକେଶବଭାରତୀଙ୍କଦ୍ୱାରା ସନ୍ନ୍ୟାସ ଗ୍ରହଣକରି ଆପଣାକୁ ଭାରତୀସମ୍ପ୍ରଦାୟୀ ମାନି, ପ୍ରକାଶାନନ୍ଦଙ୍କୁ କହିଥିଲେ, ଯେ ତୁମ୍ଭେମାନେ ଉଚ୍ଚସମ୍ପ୍ରଦାୟୀ ଓ ମୁଁ ନୀଚସମ୍ପ୍ରଦାୟୀ, ମୁଁ ତୁମ୍ଭମାନଙ୍କ ସହିତ କପରି ବସିବି । ୬୨ ।

ଶ୍ରୀପ୍ରକାଶାନନ୍ଦ ଜାଣନ୍ତି ଯେ ଗିରି, ପୁରୀ ଓ ଭାରତୀଙ୍କର ସାମ୍ପ୍ରଦାୟିକ ନୀଚତ୍ୱ କେବଳ କଳ୍ପିତ ମାତ୍ର । କିନ୍ତୁ ଜ୍ଞାନାଲୋଚନାରେ ସେମାନେ କଳ୍ପିତ ଉଚ୍ଚ ସମ୍ପ୍ରଦାୟଠାରୁ କୌଣସି ଅଂଶରେ ନ୍ୟୂନ ନୁହନ୍ତି । ବିଶେଷତଃ ଶ୍ରୀକେଶବଭାରତୀ ସନ୍ନ୍ୟାସିମାନଙ୍କ ମଧ୍ୟରେ ଜଣେ ପ୍ରସିଦ୍ଧ ବିଜ୍ଞଲୋକ ଥିଲେ । ଏ ପ୍ରକାର ଶ୍ରୀକେଶବଭାରତୀଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବାରୁ ପ୍ରକାଶାନନ୍ଦ ଶ୍ରୀମନ୍ ମହାପ୍ରଭୁଙ୍କୁ ଧନ୍ୟବାଦ ଦେଲେ । ୬୪ ।

ବେଦାନ୍ତ—ବେଦାନ୍ତଦର୍ଶନ । ଧ୍ୟାନ—ନିର୍ବିଶେଷ ବ୍ରହ୍ମଧ୍ୟାନ ବା ସମାଧି । ୬୬ ।

ସାକ୍ଷାତ୍ ନାରାୟଣ—ସ୍ୱୟଂ ବ୍ରହ୍ମ । ହୀନାଚାର—ସନ୍ନ୍ୟାସିର ଜ୍ଞାନମାର୍ଗର କର୍ମ ଛାଡ଼ି ଭକ୍ତିମାର୍ଗର କର୍ମ । ୬୮ ।

ଶାସନ—ଆଦେଶଦାନ । ୬୯ ।

ସଂସାରମୋଚନ—ମୁକ୍ତି ।

କୃଷ୍ଣେର ଚରଣ—ଶ୍ରୀକୃଷ୍ଣଙ୍କୁ ମୁକ୍ତିପଦ ବୁହାଯାଏ ଅତଏବ ଶ୍ରୀକୃଷ୍ଣଚରଣପ୍ରାପ୍ତି ଏବଂ ଏଠାରେ ସନ୍ନ୍ୟାସିଭାବରେ ଅର୍ଥ ସାଯୁଜ୍ୟମୁକ୍ତି । ୭୧ ।

ତଥାହି ବୃହନ୍ନାରଦୀୟ ବଚନମ୍ (ଶ୍ଳୋ: ୨୬)—

ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍ ।
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ
ଗତିରନ୍ୟଥା ॥ ୬ ॥ *

ଏଇ ଆଜ୍ଞା ପାଇ ନାମ ଲଇ ଅନୁକ୍ଷଣ ।
ନାମ ଲେଇତେ-ଲେଇତେ ମୋର ଭ୍ରାନ୍ତ ହେଲ ମନ ॥
ଧୈର୍ଯ୍ୟ କରିତେ ନାରି—ହେଲାମ ଉନ୍ମତ୍ତ ।
ହାସି କାନ୍ଦି ନାଚି ଗାଇ—ଯେମିତେ ମଦୋନ୍ମତ୍ତ ।୭୫

ତବେ ଧୈର୍ଯ୍ୟ କରି ମନେ କରିଲ ବିଚାର— ।
କୃଷ୍ଣନାମେ ଜ୍ଞାନାଚ୍ଛନ୍ନ ହଇଲ ଆମାର । ୭୬ ।
ପାଗଲ ହଇଲୁଁ ଆମି—ଧୈର୍ଯ୍ୟ ନହେ ମନେ ।
ଏତ ଚିନ୍ତି ନିବେଦିଲୁଁ ଗୁରୁର ଚରଣେ— । ୭୭
କିବା ମନ୍ତ୍ର ଦିଲ ଗୋସାଞି ! କିବା ତାର ବଲ ।
ଜପିତେ-ଜପିତେ ମନ୍ତ୍ର କରିଲ ପାଗଲ । ୭୮ ।
ହାସାୟ ନାଚାୟ ମୋରେ କରାୟ କ୍ରନ୍ଦନ ।
ଏତ ଶୁନି ଗୁରୁ ହାସି ବଲିଲା ବଚନ— । ୭୯

( ସତ୍ୟଯୁଗେ ଯା ଧ୍ୟାନାଦିରୂପା ଗତିଃ ସା ) କଳୌ ଅନ୍ୟଥା ( ଧ୍ୟାନାଦିଲକ୍ଷଣଂ ଗତିଃ ) ନାସ୍ତି ଏବ ( ମଳିନଚିତ୍ତତ୍ୱାତ୍, କସ୍ମାଦପ୍ୟୁପାୟ ଇତ୍ୟାହ ) ହରେର୍ନାମ ଏବ କେବଳଂ ( ଧ୍ୟାନାଦି-ଜନିତପରତତ୍ତ୍ୱସାକ୍ଷାତ୍କାରଜନନେ ନାମସଙ୍କୀର୍ତ୍ତନାଦେବ ଭବତୁମର୍ହତୀତି ) ( ତ୍ରେତାୟାଂ ଯା ଯଜ୍ଞାଦିଜନିତା ଚିତ୍ତଶୁଦ୍ଧିରୂପା ଗତିଃ ସା ) କଳୌ ଅନ୍ୟଥା ( ଯଜ୍ଞାଦିଜନିତ ଲକ୍ଷଣଂ ଗତିଃ ) ନାସ୍ତି ଏବ ( ପରିଶୁଦ୍ଧଦ୍ରବ୍ୟାଭାବେନ ଯଜ୍ଞାଦ୍ୟସିଦ୍ଧେଃ, କିନ୍ତୁ ହି ) ହରେର୍ନାମ ଏବ କେବଳଂ (ସାଙ୍କେତ୍ୟାଦି-ନାପି ନାମୋଚ୍ଚାରଣଂ ତ୍ରାଗେବ ଚିତ୍ତଂ ବିଶୋଧୟିତୁଂ ଶକ୍ନୋତି କିନ୍ତୁ ଶ୍ରଦ୍ଧାପୂର୍ବ୍ବକମିତି ); ( ଦ୍ୱାପରେ ଯା ପ୍ରତିମାପୂଜନାଦିନା ଭଗବଦାବେଶରୂପା ଗତିଃ ସା ) କଳୌ ଅନ୍ୟଥା ( ପ୍ରତିମାପୂଜନାଦି-ଲକ୍ଷଣଂ ଗତିଃ ) ନାସ୍ତି ଏବ ( ଯଥାଶାସ୍ତ୍ରଂ ଅସ୍ମାଭିଦ୍ୟଭାବେନ ଶଙ୍କରଶ୍ରେଣ୍ୟଭାବାତ୍, କିନ୍ତୁ ) ହରେର୍ନାମ ଏବ କେବଳଂ ( ଯଥାକଥଞ୍ଚିତ୍ ନାମ କୀର୍ତ୍ତିତମେବ ଶଶ୍ୱଦନ୍ତଃକରଣଶୁଦ୍ଧିପୂର୍ବ୍ବକଂ ଭଗବଦାବିଷ୍ଟଂ କରୋତି ଇତ୍ୟର୍ଥଃ ) ଗତିଃ ( ସାଧସାଧନରୂପା ) । ଅସ୍ୟ ଶ୍ଳୋକ ।

ସତ୍ୟ, ତ୍ରେତା ଓ ଦ୍ୱାପରଯୁଗରେ ମନୁଷ୍ୟମାନେ ବିଷ୍ଣୁଙ୍କର ଧ୍ୟାନ, ଯଜ୍ଞାଦିଦ୍ୱାରା ବିଷ୍ଣୁ-ଅର୍ଚ୍ଚନା ଓ ପରିଚର୍ଯ୍ୟାଦି ଶ୍ରୀମୂର୍ତ୍ତିସେବାଦ୍ୱାରା ଗତି ଲାଭକରୁଥିଲେ, କିନ୍ତୁ କଳିଜୀବମାନଙ୍କର ପୂର୍ବବର୍ତ୍ତୀଯୁଗୀୟ ଜୀବମାନଙ୍କ ତୁଲ୍ୟ ପରମାୟୁ ଓ ଶକ୍ତି ନ ଥିବାରୁ ସେମାନଙ୍କ ନିମନ୍ତେ ଶ୍ରୀହରିରୂପୀ ନାମଯଜନର ବ୍ୟବସ୍ଥା ହୋଇଅଛି । ଅର୍ଥାତ୍ ହରିନାମ ଯଜନବ୍ୟତୀତ କଳିହତ ଜୀବମାନଙ୍କର ଅପର କୌଣସି କ୍ରିୟାଦ୍ୱାରା ଗତି ଲାଭହେବନାହିଁ । ଏହା ଯେ ଦୃଢ଼ ସତ୍ୟ, ତାହା ପ୍ରକାଶ କରିବାନିମନ୍ତେ ତିନଥର "ନାହିଁ" କୁହା ହୋଇଅଛି । ଅସ୍ୟ ଶ୍ଳୋକାର୍ଥ ।

ଭ୍ରାନ୍ତହେଲ ମନ—ମନ ଭ୍ରମିଗଲା । ୭୪ ।

ମନରେ ଏପରି ଭ୍ରମ ଧରିଲା ଯେ ବହୁଚେଷ୍ଟା କଲେ ମଧ ପ୍ରକୃତସ୍ଥ ହୋଇ ନ ପାରି ପାଗଳ ହେଲି ଏବଂ ମଦମତ୍ତ ବ୍ୟକ୍ତିମାନଙ୍କପରି କେତେବେଳେ ହସିଲି, କେତେବେଳେ କାନ୍ଦିଲି, କେତେବେଳେ ନାଚିଲି ଏବଂ କେତେବେଳେ ଗାଇଲି । ମୋର ଏହି ଅବସ୍ଥା ହେଲା । ୭୫ ।

ଜ୍ଞାନାଚ୍ଛନ୍ନ—ଜ୍ଞାନଲୋପ । ୭୬ । ହଇଲୁଁ—ହେଲି । ୭୭ । ଗୋସାଇଁ—ଏଠାରେ ଶ୍ରୀଗୁରୁଦେବ । ୭୮ ।

କୃଷ୍ଣନାମ-ମହାମନ୍ତ୍ରେର ଏଇ ତ ସ୍ୱଭାବ।
ଯେଇ ଜପେ,—ତାର କୃଷ୍ଣେ ଉପଜୟେ ଭାବ।୮୦।
କୃଷ୍ଣବିଷୟକ ପ୍ରେମା—ପରମ ପୁରୁଷାର୍ଥ।
ଯାର ଆଗେ ତୃଣତୁଲ୍ୟ ଚାରି ପୁରୁଷାର୍ଥ।୮୧।
ପଞ୍ଚମ-ପୁରୁଷାର୍ଥ ପ୍ରେମାନନ୍ଦାମୃତ-ସିନ୍ଧୁ।
ମୋକ୍ଷାଦି ଆନନ୍ଦ ଯାର ନହେ ଏକବିନ୍ଦୁ।୮୨।
'କୃଷ୍ଣନାମେର ଫଳ ପ୍ରେମା'— ସର୍ବ-ଶାସ୍ତ୍ରେ କୟ।
ଭାଗ୍ୟେ ସେଇ ପ୍ରେମା ତୋମାର କରିଲ ଉଦୟ।୮୩।
ପ୍ରେମାର ସ୍ୱଭାବେ କରେ ଚିତ୍ତ-ତନୁ କ୍ଷୋଭ।
କୃଷ୍ଣେର ଚରଣପ୍ରାପ୍ତ୍ୟେ ଉପଜାୟ ଲୋଭ।୮୪।
ପ୍ରେମାର ସ୍ୱଭାବେ ଭକ୍ତ ହାସେ କାନ୍ଦେ ଗାୟ।
ଉନ୍ମତ୍ତ ହଇୟା ନାଚେ – ଇତ-ଉତ ଧାୟ॥
ସ୍ୱେଦ କମ୍ପ ରୋମାଞ୍ଚାଶ୍ରୁ ଗଦ୍‌ଗଦ ବୈବର୍ଣ୍ୟ।
ଉନ୍ମାଦ ବିଷାଦ ଧୈର୍ଯ୍ୟ ଗର୍ବ ହର୍ଷ ଦୈନ୍ୟ॥
ଏତ ଭାବେ ପ୍ରେମା ଭକ୍ତଗଣେରେ ନାଚାୟ।
କୃଷ୍ଣେର ଆନନ୍ଦାମୃତସାଗରେ ଭାସାୟ।୮୬।
ଭାଲ ହୈଲ, ପାଇଲେ ତୁମି ପରମ ପୁରୁଷାର୍ଥ।
ତୋମାର ପ୍ରେମେତେ ଆମି ହୈଲାମ କୃତାର୍ଥ॥

ହରିନାମ ମହାମନ୍ତ୍ରର ସ୍ୱାଭାବିକ ଗୁଣ ଏହି ଯେ ଯେଉଁ ବ୍ୟକ୍ତି ସର୍ବଦା ମହାମନ୍ତ୍ର ଜପ କରନ୍ତି ସେହି ମହାମନ୍ତ୍ରବଳରେ ସେ ବ୍ୟକ୍ତି ଶ୍ରୀକୃଷ୍ଣପ୍ରେମ ଲାଭକରନ୍ତି ।୮୦।

ଶ୍ରୀକୃଷ୍ଣପ୍ରେମଲାଭ ମନୁଷ୍ୟର ସର୍ବଶ୍ରେଷ୍ଠ ପୁରୁଷାର୍ଥ (ସାଧ୍ୟବସ୍ତୁ); ବେଦକଥିତ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରିପୁରୁଷାର୍ଥ ସେହି ଶ୍ରୀକୃଷ୍ଣପ୍ରେମସହିତ ତୁଳନାରେ ତୃଣତୁଲ୍ୟ। ଅର୍ଥାତ୍ ଅତିଅକିଞ୍ଚିତ୍କର, ଏହାର ଭାବ ଏହି ଯେ କୃଷ୍ଣପ୍ରେମର ସହିତ ଚାରିପୁରୁଷାର୍ଥ କୌଣସି ପ୍ରକାରେ ତୁଳନା କରାଯାଇ ପାରେ ନା ।୮୧।

ମନୁଷ୍ୟପକ୍ଷରେ ଚାରି ପୁରୁଷାର୍ଥ ନିରୂପିତ ଥିବାରୁ ତଦତିରିକ୍ତ ଶ୍ରୀକୃଷ୍ଣପ୍ରେମ ଶ୍ରେଷ୍ଠ ପୁରୁଷାର୍ଥହେତୁରୁ ପଞ୍ଚମପୁରୁଷାର୍ଥ ବୋଲି କୁହାଗଲା । ଏହି ପଞ୍ଚମପୁରୁଷାର୍ଥ ଶ୍ରୀକୃଷ୍ଣପ୍ରେମ ଆନନ୍ଦାମୃତର ଅପାର ଅସୀମସାଗରତୁଲ୍ୟ । ମୋକ୍ଷାଦି ଚାରି ପୁରୁଷାର୍ଥରେ ଯେଉଁ ଆନନ୍ଦ ତାହା ଏହି କୃଷ୍ଣପ୍ରେମାନନ୍ଦସମୁଦ୍ରର ଏକ ବିନ୍ଦୁର ସହିତ ତୁଳନା ହୋଇ ପାରେନା ।୮୨।

ଶ୍ରୀମଦ୍‌ଭାଗବତାଦିଶାସ୍ତ୍ରରେ କଥିତହୋଇଅଛି, ଯେ ହରିନାମ ଶ୍ରବଣରେ କୃଷ୍ଣନାମ ଗ୍ରହଣ କରେ ସେଥିର ଫଳସ୍ୱରୂପ କୃଷ୍ଣପ୍ରେମ ଲାଭହୁଏ । ତୁମ୍ଭର (ଶ୍ରୀକୃଷ୍ଣଚୈତନ୍ୟଙ୍କର) ସୌଭାଗ୍ୟହେତୁ ତୁମ୍ଭ ଚିତ୍ତରେ ସେହି ପ୍ରେମ ପ୍ରକାଶ ହୋଇଅଛନ୍ତି ।୮୩।

ସେହି କୃଷ୍ଣପ୍ରେମର ସ୍ୱଭାବଗତ ଗୁଣ ଏହି ଯେ, ସେ ଯାହାଙ୍କର ଚିତ୍ତରେ ଉଦୟ ହୁଅନ୍ତି, ତାହାଙ୍କର ଚିତ୍ତ ଓ ଶରୀରରେ ଚାଞ୍ଚଲ୍ୟ ପ୍ରକାଶକରନ୍ତି ଏବଂ ଶ୍ରୀକୃଷ୍ଣଚରଣପ୍ରାପ୍ତିନିମନ୍ତେ ଲୋଭ ଜାତ କରନ୍ତି । ଅତଏବ ଭକ୍ତ କୃଷ୍ଣପ୍ରେମର ସ୍ୱଭାବବଶତଃ ଉନ୍ମତ୍ତ ହୋଇ ହସନ୍ତି, ନାଚନ୍ତି, ଗାନକରନ୍ତି ଏବଂ ଇତସ୍ତତଃ ଦୌଡ଼ାଦୌଡ଼ି କରନ୍ତି । ତାହାଙ୍କର ଶରୀରରେ ସ୍ୱେଦ, କମ୍ପ, ରୋମାଞ୍ଚ, ବୈବର୍ଣ୍ୟ ଜାତ ହୁଏ, ବଚନ ଗଦଗଦ ହୁଏ, ନୟନରୁ ଅଶ୍ରୁଧାରା ବହେ, ମନରେ ଉନ୍ମାଦ, ବିଷାଦ, ଧୈର୍ଯ୍ୟ, ଗର୍ବ, ହର୍ଷ ଓ ଦୈନ୍ୟ ଏହି ଭାବମାନ ଜାତ ହୁଏ। ଏହି ସମସ୍ତ ସାତ୍ତ୍ୱିକ ଭାବ ଯୁକ୍ତ ହୋଇ ଭକ୍ତ ଶ୍ରୀକୃଷ୍ଣଙ୍କ ପ୍ରେମାନନ୍ଦ ସୁଖସମୁଦ୍ରରେ ଅମୃତହରରୂପେ ଭାସମାନ ହୋଇ ନୃତ୍ୟ କରନ୍ତି।୮୪ ରୁ ୮୬।

ପରମପୁରୁଷାର୍ଥ—କୃଷ୍ଣପ୍ରେମ ।

ଉପରୋକ୍ତ ପ୍ରକାର କହି ଗୁରୁ କହିଲେ, 'ଶ୍ରୀକୃଷ୍ଣଚୈତନ୍ୟ' ଏହା ଅତି ଉତ୍ତମ କଥା ଯେ ତୁମ୍ଭର ଶ୍ରୀକୃଷ୍ଣପ୍ରେମଲାଭ ହୋଇଅଛି ଏବଂ ତୁମ୍ଭର ଏହି ପ୍ରେମଲାଭହେତୁରୁ ମୁଁ ମଧ୍ୟ କୃତାର୍ଥ ହେଲି ।୮୭।

ନାଚେ୍ ଗାଏ ଭକ୍ତସଙ୍ଗେ କରେ ସଙ୍କୀର୍ତ୍ତନ ।
କୃଷ୍ଣନାମ ଉପଦେଶି ତାରେ ସର୍ବଜନ । ୮୯ ।
ଏଇ ଜନ୍ମ ଏକ ଶ୍ଲୋକ ଶିଖାଇଲ ମୋ'ରେ ।
'ଭାଗବତେର ସାର ଏଇ' ବୋଲେ
ବାରେବାରେ । ୯୦ ।
ତଥାହି ( ଭାଃ—୧୧।୨।୪୦ )—
ଏବଂବ୍ରତଃ ସ୍ୱପ୍ରିୟନାମକୀର୍ତ୍ତ୍ୟା,
ଜାତାନୁରାଗୋ ଦ୍ରୁତଚିତ୍ତ ଉଚ୍ଚୈଃ ।

ହସତ୍ୟଥୋ ରୋଦିତି ରୌତି ଗାୟ-
ତ୍ୟୁନ୍ମାଦବନ୍ନୃତ୍ୟତି ଲୋକବାହ୍ୟଃ । ୪ ।%
ଏଇ ତାଁର ବାକ୍ୟେ ଆମି ଦୃଢ଼-ବିଶ୍ୱାସ କରି ।
ନିରନ୍ତର କୃଷ୍ଣନାମ-ସଙ୍କୀର୍ତ୍ତନ କରି । ୯୧ ।
ସେଇ କୃଷ୍ଣନାମ କଭୁ ଗାଓୟାୟ ନାଚାୟ ।
ଗାଇ ନାଚି ନାହି ଆମି ଆପନ ଇଚ୍ଛାୟ । ୯୨ ।
କୃଷ୍ଣନାମେ ଯେ-ଆନନ୍ଦ-ସିନ୍ଧୁ-ଆସ୍ୱାଦନ ;
ବ୍ରହ୍ମାନନ୍ଦ ତାର ଆଗେ ଖାତୋଦକ-ସମ । ୯୩ ।

---

ଏବଂବ୍ରତଃ ( ଏବଂ ଶ୍ରବଣକୀର୍ତ୍ତନାଦିରୂପଂ ବ୍ରତଂ ଯସ୍ୟ ସଃ ) ସ୍ୱପ୍ରିୟନାମକୀର୍ତ୍ତ୍ୟା ( ସ୍ୱପ୍ରିୟସ୍ୟ ଭଗବତଃ ନାମ କୀର୍ତ୍ତନାଦିନା ଯଦ୍ୱା ସ୍ୱପ୍ରିୟାଣି ତନ୍ନାମସୁ ଅସଂଖ୍ୟେଷୁ ମଧ୍ୟେ ଯାନି ସ୍ୱବାସନା ପୋଷକାଣି, ତେଷାଂ କୀର୍ତ୍ତ୍ୟା କୀର୍ତ୍ତନେନ ) ଜାତାନୁରାଗଃ ( ଜାତଃ ଅନୁରାଗଃ ଯସ୍ୟ ସଃ ଆବିର୍ଭୂତମହାପ୍ରେମା ଇତ୍ୟର୍ଥଃ; ଅତଏବ ) ଦ୍ରୁତଚିତ୍ତଃ ( ଶ୍ଲଥ ହୃଦୟଃ ) ଉନ୍ମାଦବତ୍ ( ଗ୍ରହଗ୍ରସ୍ତ-ବତ୍ ) ଲୋକବାହ୍ୟଃ ( ଲୋକାନାଂ ବାହ୍ୟଃ ହାସ୍ୟାଦୌ ଅବଧାନଶୂନ୍ୟଃ ବିବଶଃସନ୍ ) ଉଚ୍ଚୈଃ ହସତି ଅଥ ରୋଦିତି ରୌତି ( ଅତ୍ୟୈଚୈରୁଦ୍ଧୁକ୍ୟାତ୍ ଘୋଷତି ) ଗାୟତି ନୃତ୍ୟତି (ଚ) । ୪ର୍ଥ ଶ୍ଲୋକ ।

"ସନ୍ନ୍ୟାସୀ ହଇୟା କର" ଇତି ସନ୍ନ୍ୟାସିପ୍ରଶ୍ନସ୍ୟୋତ୍ତର ମୁପସଂହରତି "ଏଇ ତାଁର" ଇତ ତ୍ରୟେଣ । ୯୧ । ବି, ଚ,

"ସମ୍ପ୍ରଦାୟୀ ସନ୍ନ୍ୟାସୀ" ଇତ୍ୟାଦ୍ୟୁକ୍ତସ୍ୟ ଧ୍ୟାନାବଶ୍ୟକପ୍ରଶ୍ନସ୍ୟୋତ୍ତର ମାହ "କୃଷ୍ଣନାମେ" ଇତି । ଶ୍ରୀକୃଷ୍ଣନାମାନନ୍ଦାତ୍ ବ୍ରହ୍ମାନନ୍ଦସ୍ୟାତ୍ୟଲ୍ପତ୍ୱାତ୍ ଧ୍ୟାନଂ ବ୍ରହ୍ମଚିନ୍ତାଂ ନ କରୋମୀତ୍ୟର୍ଥଃ । ୯୩ । ବି, ଚ,

---

ବୋଲେ ବାରେ ବାରେ—ଶ୍ରୀଗୁରୁ ପୁନଃପୁନଃ କହିଲେ । ୯୦ ।

ଶ୍ରୀ ଜନକମହାରାଜାଙ୍କୁ ନବ ଯୋଗେନ୍ଦ୍ରଙ୍କ ମଧ୍ୟରୁ ଅନ୍ୟତମ ଶ୍ରୀକବି କହୁଅଛନ୍ତି; ହେ ମହାରାଜ ! ଏହି ପ୍ରକାରରେ ସ୍ୱ-ଈଷ୍ଟଦେବ ଶ୍ରୀକୃଷ୍ଣଙ୍କର ନାମମାନଙ୍କ ମଧ୍ୟରୁ ପ୍ରିୟ ନାମ କୀର୍ତ୍ତନଦ୍ୱାରା ତାଙ୍କ ପ୍ରତି ମହାପ୍ରେମ ଉଦୟ ମାତ୍ର ଚିତ୍ତର ଦ୍ରବୀଭୂତତାଃ ହେତୁ ଲୋକାପେକ୍ଷା ରହିତ ଉନ୍ମାଦବତ୍ କେତେବେଳେ ହାସ୍ୟ, କେତେବେଳେ ରୋଦନ, କେତେ-ବେଳେ ଚିତ୍କାର, କେତେବେଳେ ଗାନ କେତେବେଳେ ନୃତ୍ୟ କରନ୍ତି । ଶ୍ରୀକୃଷ୍ଣପ୍ରେମ-ଲୋକରେ ଭକ୍ତଙ୍କର ଏହି ଦଶା ହୁଏ । ୪ର୍ଥ ଶ୍ଲୋକାର୍ଥ ।

ବ୍ରହ୍ମାନନ୍ଦ—ନିର୍ବିଶେଷ ଜ୍ୟୋତିର୍ମୟ ବ୍ରହ୍ମଧ୍ୟାନଦ୍ୱାରା ସମାଧି ଅବସ୍ଥାରେ ଯାହା ଲାଭ ହୁଏ ।
ଖାତୋଦକ—କ୍ଷୁଦ୍ର ଗର୍ତ୍ତସ୍ଥ ଜଳ । ୯୩ ।

ତଥାହି ହରିଭକ୍ତିସୁଧୋଦୟେ (୧୪।୩୬)—
ତ୍ୱତ୍‌ସାକ୍ଷାତ୍କରଣାହ୍ଲାଦ-ବିଶୁଦ୍ଧାବ୍ଧିସ୍ଥିତସ୍ୟ ମେ ।
ସୁଖାନି ଗୋଷ୍ପଦାୟନ୍ତେ ବ୍ରାହ୍ମାଣ୍ୟପି ଜଗଦ୍‌ଗୁରୋ ।୫ ।

ପ୍ରଭୁର ମିଷ୍ଟବାକ୍ୟ ଶୁଣି ସନ୍ନ୍ୟାସିର ଗଣ ।
ଚିତ୍ତ ଫିରି ଗେଲ, କହେ ମଧୁରବଚନ—।୯୪।
ଯେ କିଛୁ କହିଲେ ତୁମି, ସବ ସତ୍ୟ ହୟ ।
କୃଷ୍ଣପ୍ରେମା ସେ-ଇ ପାୟ, ଯାର ଭାଗ୍ୟୋଦୟ ।୯୫।
କୃଷ୍ଣଭକ୍ତି କର, ଇହାୟ ସଭାର ସନ୍ତୋଷ ।
ବେଦାନ୍ତ ନା ଶୁନ କେନେ, ତାର କିବା ଦୋଷ ।
ଏତ ଶୁନି ହାସି ପ୍ରଭୁ ବଲିଲ ବଚନ— ।
ଦୁଃଖ ନା ମାନହ ଯଦି, କରି ନିବେଦନ ।୯୬ ।।
ଇହା ଶୁନି ବୋଲେ ସର୍ବସନ୍ନ୍ୟାସିର ଗଣ— ।
ତୋମାରେ ଦେଖିୟେ ଯୈଛେ ସାକ୍ଷାତ୍
ନାରାୟଣ । ୯୮ ।
ତୋମାର ବଚନ ଶୁନି ଜୁଡ଼ାୟ ଶ୍ରବଣ ।
ତୋମାର ମାଧୁରୀ ଦେଖି ଜୁଡ଼ାୟ ନୟନ । ୯୯ ।
ତୋମାର ପ୍ରଭାବେ ସଭାର ଆନନ୍ଦିତ ମନ ।
କଭୁ ଅସଙ୍ଗତ ନହେ ତୋମାର ବଚନ । ୧୦୦ ।
ପ୍ରଭୁ କହେ—ବେଦାନ୍ତସୂତ୍ର ଈଶ୍ୱରବଚନ ।
ବ୍ୟାସରୂପେ କହିଲ ଯାହା ଶ୍ରୀନାରାୟଣ । ୧୦୧ ।
ଭ୍ରମ ପ୍ରମାଦ ବିପ୍ରଲିପ୍ସା କରଣାପାଟବ ।
ଈଶ୍ୱରେର ବାକ୍ୟେ ନାହି ଦୋଷ ଏଇ ସବ ।୧୦୨।

( ହେ ) ଜଗଦ୍‌ଗୁରୋ ! ତ୍ୱତ୍‌ସାକ୍ଷାତ୍କରଣାହ୍ଲାଦବିଶୁଦ୍ଧାବ୍ଧିସ୍ଥିତସ୍ୟ ( ତବ ସାକ୍ଷାତ୍କରଣଜନିତ ଆହ୍ଲାଦ ଏବଂ ବିଶୁଦ୍ଧଃ ଅବ୍ଧିଃ ସମୁଦ୍ରଃ ତସ୍ମିନ୍ ସ୍ଥିତସ୍ୟ ) ମେ ( ମମ ) ବ୍ରାହ୍ମ୍ୟାଣି ( ସମାଧୌ ବ୍ରହ୍ମାନୁଭବଜନିତାନି ) ସୁଖାନି ଅପି ଗୋଷ୍ପଦାୟନ୍ତେ ( ଗୋଷ୍ପଦଜଳବତ୍ ପ୍ରତୀୟନ୍ତେ ଜମ୍ଭୂତ ପାରମେଷ୍ଠ୍ୟାଦୀନି ) । ୫ମ ଶ୍ଳୋକ ।

ବ୍ୟାସଃ ଶ୍ରୀନାରାୟଣାବତାରଃ ତଥା ଚୋକ୍ତଂ ପ୍ରଥମେ "ଜାତଃ ପରାଶରାଦ୍‌ଯୋଗୀ ବାସବ୍ୟାଂ କଳୟା ହରେଃ । ଇତି । ୧୦୧ । ବି, ଚ,

ଶ୍ରୀ ପ୍ରହ୍ଲାଦ ଶ୍ରୀନୃସିଂହଦେବଙ୍କୁ ସ୍ତୁତି କରି କହୁଅଛନ୍ତି— ହେ ଜଗଦ୍‌ଗୁରୁ ଭଗବନ୍ ! ଆପଣଙ୍କର ଦର୍ଶନଲାଭ କରି ମୁଁ ଯେଉଁ ବିଶୁଦ୍ଧ ଆନନ୍ଦସମୁଦ୍ରରେ ନିମଗ୍ନହୋଇଅଛି, ତାହାର ତୁଳନା ସମାଧିଜ ବ୍ରହ୍ମାନୁଭବଜନିତ ଆନନ୍ଦ ଗୋଷ୍ପଦର ବାରିତୁଲ୍ୟ, ଅର୍ଥାତ୍ ଅକିଞ୍ଚିତ୍କର ।

ଶ୍ରୀମନ୍ ମହାପ୍ରଭୁ ଉପରୋକ୍ତ ବାକ୍ୟମାନଙ୍କ ଦ୍ୱାରା ମାୟାବାଦୀ ସନ୍ନ୍ୟାସିମାନଙ୍କର ଲକ୍ଷୀକୃତ ବ୍ରହ୍ମାନୁଭବକୁ ନିରାଶ କରି ଭକ୍ତିଯୋଗାନୁଶୀଳନକାରୀ ଭକ୍ତମାନଙ୍କର ଲକ୍ଷୀକୃତ ଶ୍ରୀକୃଷ୍ଣପ୍ରେମର ବୈଶିଷ୍ଟ୍ୟ ସ୍ଥାପନ କଲେ । ୫ମ ଶ୍ଳୋକାର୍ଥ ।

ଶ୍ରୀମନ ମହାପ୍ରଭୁଙ୍କର ବାକ୍ୟ ଶୁଣି ସନ୍ନ୍ୟାସିମାନେ କହୁଅଛନ୍ତି । ୯୫ ।

ପ୍ରଭୁ— ଶ୍ରୀମନ୍ ମହାପ୍ରଭୁ । ୧୦୧ ।

ଉପରୋକ୍ତ ୯୬ ପୟାରରେ ଶ୍ରୀ ପ୍ରକାଶାନନ୍ଦ ସରସ୍ୱତୀ ଶ୍ରୀମନ୍ ମହାପ୍ରଭୁଙ୍କୁ ପ୍ରଶ୍ନ କଲେ ଯେ ଆପଣ କି ସକାଶେ ବେଦାନ୍ତ ଶ୍ରବଣକରନ୍ତୁନାହିଁ । ବେଦାନ୍ତ ଶ୍ରବଣରେ ଆପତ୍ତି କଅଣ । ଏ ପ୍ରଶ୍ନର ଉତ୍ତରସ୍ୱରୂପ ଶ୍ରୀମନ୍ ମହାପ୍ରଭୁ କହୁଅଛନ୍ତି । ବେଦାନ୍ତଦର୍ଶନୋକ୍ତ ସୂତ୍ରସମୂହ ଶ୍ରୀଭଗବଦ୍‌ବଚନ, ଅର୍ଥାତ୍ ଶ୍ରୀଭଗବାନ୍ ନାରାୟଣ ଶ୍ରୀକୃଷ୍ଣଦ୍ୱୈପାୟନ ବ୍ୟାସରୂପରେ ପ୍ରକାଶ କରିଅଛନ୍ତି । ଏହିହେତୁ ଭ୍ରମ, ପ୍ରମାଦ, ବିପ୍ରଲିପ୍ସା ଓ କରଣାପାଟବ ଏହି ଦୋଷଚତୁଷ୍ଟୟ ଈଶ୍ୱରବାକ୍ୟହେତୁ ବେଦାନ୍ତସୂତ୍ରରେ ନାହିଁ । ୧୦୨ ।

| | |
|---|---|
| ଉପନିଷତ୍-ସହିତ ସୂତ୍ର କହେ ଯେଇ ତତ୍ତ୍ୱ । | ବ୍ରହ୍ମ-ଶବ୍ଦେ ମୁଖ୍ୟ-ଅର୍ଥେ କହେ—ଭଗବାନ୍ । |
| ମୁଖ୍ୟବୃତ୍ତି ସେଇ ଅର୍ଥ—ପରମ-ମହତ୍ତ୍ୱ । ୧୦୩ । | ଷଡ଼ୈଶ୍ୱର୍ଯ୍ୟ ପରିପୂର୍ଣ୍ଣ—ଅନୂର୍ଦ୍ଧ୍ୱ-ସମାନ । ୧୦୬ । |
| ଗୌଣବୃତ୍ତ୍ୟେ ଯେବା ଭାଷ୍ୟ କରିଲ ଆଚାର୍ଯ୍ୟ । | ତାଁହାର ବିଭୂତି-ଦେହ—ସବ ଚିଦାକାର । |
| ତାହାର ଶ୍ରବଣେ ନାଶ ହୟ ସର୍ବକାର୍ଯ୍ୟ । ୧୦୪ । | ଚିଦ୍ବିଭୂତି ଆଚ୍ଛାଦି ତାଁରେ କହେ 'ନିରାକାର' । ୧୦୭ |
| ତାଁହାର ନାହିକ ଦୋଷ, ଈଶ୍ୱର-ଆଜ୍ଞା ପାଞା । | ଚିଦାନନ୍ଦ ତେଁହୋ - ତାଁର ସ୍ଥାନ ପରିବାର । |
| ଗୌଣାର୍ଥ କରିଲ ମୁଖ୍ୟ-ଅର୍ଥ ଆଚ୍ଛାଦିୟା । ୧୦୫ | ତାଁରେ କହେ—ପ୍ରାକୃତ ସତ୍ତ୍ୱେର ବିକାର ? । ୧୦୮ । |

ସର୍ବନାଶକସ୍ୟ ଶାଙ୍କରଭାଷ୍ୟସ୍ୟ ଶ୍ରବଣାତ୍ ଯଥା ତତ୍ତ୍ୱମୂଲଂ ନ ଶୃଣୁତେ ଇତି " ବେଦାନ୍ତ ନାମ୍ନୋ " ଏତତ୍ପ୍ରଶ୍ନସ୍ୟୋତ୍ତରଂ । ୧୦୩ । ୧୦୪ । ବି, ଚ,

"ଗୌଣଅର୍ଥ କୈଲ" ଇତି ଯଦୁକ୍ତଂ ତଦେବ ଦଶୟନ୍ ତତ୍ସୂତ୍ରସ୍ୟ ମୁଖ୍ୟାର୍ଥକଥନେନ ଶାଙ୍କରଗୌଣାର୍ଥଂ ଖଣ୍ଡୟତି "ବ୍ରହ୍ମ" ଇତ୍ୟାଦି "ଏଇମତ ପ୍ରତିସୂତ୍ରେ" ଇତ୍ୟନ୍ତଂ । ୧୦୬ । ୧୨୮ ।

ବି, ଚ,

( ଭ୍ରମ ପ୍ରମାଦ— ଆଦିଲୀଳା ୨ୟ ପରିଚ୍ଛେଦ ୭୨ ପୟାରରେ ଦେଖ ).

ସେହି ବେଦାନ୍ତସୂତ୍ର ( ବ୍ରହ୍ମସୂତ୍ର ) ଉପନିଷଦପ୍ରତିପାଦିତ । ( ତଥାଦି ଦଶଖଣ୍ଡି ଉପନିଷଦ ) ପ୍ରମାଣଦର୍ଶନପୂର୍ବକ ଯେଉଁ ତତ୍ତ୍ୱବସ୍ତୁ ନିରୂପଣକରନ୍ତି ତାହା ବେଦାନ୍ତସୂତ୍ରର ମୁଖ୍ୟବୃତ୍ତି । ( ଶବ୍ଦାର୍ଥଦ୍ୱାରା ଯାହା ବୁଝାଯାଏ ) କ୍ଳିଷ୍ଟକଳ୍ପନାଦ୍ୱାରା ଯେ ଅର୍ଥ କରାଯାଏ ତାହାକୁ ଗୌଣବୃତ୍ତି ବା ଲକ୍ଷଣା ବୋଲଯାଏ ଏବଂ ତାତ୍ପର୍ଯ୍ୟଦ୍ୱାରା ଯେଉଁ ଅର୍ଥ ବ୍ୟକ୍ତ କରାଯାଏ ତାହାକୁ ବ୍ୟଞ୍ଜନା କୁହାଯାଏ । ଯେଉଁ ବାକ୍ୟ ଦୋଷଯୁକ୍ତ ତାହାର ଅର୍ଥ ଯଦି ମୁଖ୍ୟବୃତ୍ତିଦ୍ୱାରା ପ୍ରତିପାଦିତ ନ ହୁଏ, ତେବେ ତାହା ଗୌଣବୃତ୍ତି ବା ବ୍ୟଞ୍ଜନାଦ୍ୱାରା ନିରୂପଣ କରିବାକୁ ହୁଏ । ବେଦାନ୍ତସୂତ୍ର ନିର୍ଦ୍ଦୋଷ ହେତୁରୁ ତାହା ଗୌଣବୃତ୍ତିଦ୍ୱାରା ବୁଝିବା ନିଷ୍ପ୍ରୟୋଜନ, ଅତଏବ ଆଚାର୍ଯ୍ୟ ( ଶ୍ରୀ ଶଙ୍କରାଚାର୍ଯ୍ୟ ) ଗୌଣବୃତ୍ତିଦ୍ୱାରା ବେଦାନ୍ତସୂତ୍ରର ଯେଉଁ ଭାଷ୍ୟ କରିଛନ୍ତି, ତାହା ଶ୍ରବଣକଲେ ଜୀବର ସବୁ କାର୍ଯ୍ୟ ( ପରମାର୍ଥାଦି ) ନଷ୍ଟହେବ । ଏତଦ୍ଦ୍ୱାରା ଶ୍ରୀମନ୍ ମହାପ୍ରଭୁ କହିଲେ "ମୁଖ୍ୟବୃତ୍ତି ଅବଲମ୍ବନରେ ଯେଉଁ ଭାଷ୍ୟ ହୋଇଅଛି ତାହାର ସହିତ ବେଦାନ୍ତସୂତ୍ର ଶ୍ରବଣକରିବା ବିଧେୟ କିନ୍ତୁ ଆପଣମାନଙ୍କ ପଠିତ ଶାଙ୍କରଭାଷ୍ୟ ଶ୍ରବଣକରିବା ମହା ଦୋଷଜନକ" । ଏହି ଉପରୋକ୍ତ କାରଣରୁ ସେ ( ମହାପ୍ରଭୁ ) ସନ୍ନ୍ୟାସିମାନଙ୍କର ସହିତ ଶାଙ୍କରଭାଷ୍ୟସମନ୍ୱିତ ବେଦାନ୍ତ ଶ୍ରବଣ କରନ୍ତିନାହିଁ । ୧୦୩ । ୧୦୪ ।

ଏଠାରେ ଏହିପରି ପ୍ରଶ୍ନ ହୋଇପାରେ ଯେ ଶ୍ରୀ ନାରାୟଣଙ୍କର ପରମଭକ୍ତ ଶିବ ଶଙ୍କରାଚାର୍ଯ୍ୟ ରୂପରେ ଅବତୀର୍ଣ୍ଣହୋଇ ଶ୍ରୀନାରାୟଣଙ୍କ କଥିତ ବେଦାନ୍ତସୂତ୍ରର କି ପ୍ରକାଶ ଅସଦର୍ଥ କଲେ, ଏହାକୁ ଲକ୍ଷ୍ୟକରି ମହାପ୍ରଭୁ କହୁଅଛନ୍ତି ଯେ, ଶ୍ରୀ ଶଙ୍କରାଚାର୍ଯ୍ୟ ତାଙ୍କକୃତ-ଭାଷ୍ୟରୂପ ଅସଦର୍ଥ କରିବାଦ୍ୱାରା ଯେ ଈଶ୍ୱରଙ୍କ ନିକଟ ଅପରାଧୀ ହୋଇଅଛନ୍ତି ତାହାନୁହେ । କାରଣ ସେ ଈଶ୍ୱରଙ୍କର ଆଜ୍ଞାପାଇ ସତ୍ ଅର୍ଥ ଆଚ୍ଛାଦନକରି ଅସଦର୍ଥ ପ୍ରଚାର କରିଅଛନ୍ତି ।

ଏ ପ୍ରକାର ଆଜ୍ଞାର କାରଣ ଇତ୍ୟାଦି ମଧ୍ୟଲୀଳା ୬ଷ୍ଠ ପରିଚ୍ଛେଦରେ ବିସ୍ତୃତଭାବରେ ବର୍ଣ୍ଣିତ ଅଛି । ୧୦୫ ।

ଶ୍ରୀମନ୍ ମହାପ୍ରଭୁ ଶ୍ରୁତିପ୍ରମାଣଦ୍ୱାରା ବେଦାନ୍ତସୂତ୍ରର ମୁଖ୍ୟଅର୍ଥ କହି ଶାଙ୍କର ଗୌଣ ଅର୍ଥ ଖଣ୍ଡନକରୁଅଛନ୍ତି । ବ୍ରହ୍ମଶବ୍ଦର ମୁଖ୍ୟାର୍ଥ ଭଗବାନ୍, ଯେ କି ଷଡ଼୍ବିଧ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ

ଶିବେ ପୋଷ ନା ଦେଖେ ଆଚ୍ଛାଦାଇ ଗାଇ । ଭଗବାନ୍ ଶକ୍ତି, ଶକ୍ତିମାନ ଶକ୍ତିମାନ ।
ଏଇ ପଇ ଶୁଣି, ପାପ ତୁଇ ସର୍ବନାଶ ।୧୦୯। ଗୀତା-ବିଷ୍ଣୁପୁରାଣାଦ ଯେଥେ ପରମାଣ । ୧୧୬ ।
ବହୁବିଧା ଆର ଜାନ୍ଦି ଜ୍ୱଦାର ଉପର । ତଥାହି ଶ୍ରୀଭଗବଦ୍‌ଗୀତାୟାମ୍ (୭।୫)—
ପ୍ରାକୃତ କରିୟା ମାନେ ବିଷ୍ଣୁକଲେବର । ୧୧୦ । ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାମ୍ ।
ଈଶ୍ୱରେର ତତ୍ତ୍ୱ—ଯେନ ଜ୍ୱଲିତ ଜ୍ୱଲନ । ଜୀବଭୂତାଂ ମହାବାହୋ ଯୟେଦଂ ଧାର୍ଯ୍ୟତେ
ଜୀବେର ସ୍ୱରୂପ—ଯୈଛେ ସ୍ଫୁଲିଙ୍ଗେର କଣ ।୧୧୧। ଜଗତ୍ । ୭ । *

ଇୟମ୍ ଅପରା ( ଜଡ଼ତ୍ୱାତ୍, ଭୋଗ୍ୟତ୍ୱାତ୍ ନିକୃଷ୍ଟା ) ଇତଃ ( ଜଡ଼ାୟାଃ ପ୍ରକୃତେଃ ) ଅନ୍ୟାଂ ପରାଂ ( ଚେତନତ୍ୱାତ୍ ଭୋକ୍ତୃତ୍ୱାତ୍ ଚ ଉତ୍କୃଷ୍ଟାଂ ) ଜୀବଭୂତାଂ ( ଜୀବସ୍ୱରୂପାଂ ) ମେ (ମମ) ପ୍ରକୃତିଂ ବିଦ୍ଧି ( ଜାନୀହି ); ( ହେ ) ମହାବାହୋ ! ( ପାର୍ଥ ) ୟୟା ( ଚେତନୟା ) ଇଦଂ ଜଗତ୍ ଧାର୍ଯ୍ୟତେ ( ସ୍ୱକର୍ମଦ୍ୱାରା ଶୟ୍ୟାସନାଦିବତ୍ ସ୍ୱଭୋଗାର୍ଥ ଗୃହ୍ୟତେ ) । ୭ ମ ଶ୍ଳୋକ ।

ଏବଂ ଯାହାଙ୍କଠାରୁ ଅଧିକ ବା ଯାହାଙ୍କର ସମାନ କେହି ନାହାନ୍ତି । ଅତଏବ ସେ ସବିଶେଷ ବା ସାକାର; ତାହାଙ୍କର ଅପ୍ରାକୃତମୟ ସର୍ବ ଅବୟବ ଚିଦାକାର ( ଜ୍ଞାନାକାର ) ଏ ପ୍ରକାର ଜ୍ଞାନ ବା ଚିନ୍ମୟ ସ୍ୱରୂପକୁ ଅସ୍ୱୀକାର କରି ଶ୍ରୀ ଶଙ୍କରାଚାର୍ଯ୍ୟ ତାଙ୍କୁ ନିରାକାର କହିଅଛନ୍ତି । ସେ ଚିଦାନନ୍ଦମୟ ହେତୁ ତାଙ୍କର ସ୍ଥାନ ଓ ପରିବାର ( ପାର୍ଷଦ ଅନୁଚରାଦି ) ସମସ୍ତେ ଚିଦାନନ୍ଦ । ଅର୍ଥାତ୍ ଯାହାଙ୍କର ସ୍ଥାନ ଓ ପରିବାରବର୍ଗ ଚିଦାନନ୍ଦମୟ ଏ ପ୍ରକାର ଭଗବାନଙ୍କର ଚିଦାନନ୍ଦସ୍ୱରୂପକୁ ଶ୍ରୀ ଶଙ୍କରାଚାର୍ଯ୍ୟ ପ୍ରାକୃତ ସତ୍ତ୍ୱର ବିକାର ଅର୍ଥାତ୍ ମିଶ୍ରସତ୍ତ୍ୱଗୁଣ ନିର୍ମିତ ବୋଲି କହିଅଛନ୍ତି । ୧୦୭ । ୧୦୮ ।

ଏ ପ୍ରକାର କହିବାଦ୍ୱାରା ଭଗବାନଙ୍କର ନିନ୍ଦା କରିହୁଏ ଏବଂ ଯେ ଏ ପ୍ରକାରରେ ନିନ୍ଦା କରେ ସେ ଶ୍ରୀ ଭଗବାନଙ୍କ ନିକଟ ଅପରାଧୀ ହୁଏ । ଅତଏବ ଶ୍ରୀ ଶଙ୍କରାଚାର୍ଯ୍ୟ ଯେ କି ଶ୍ରୀମହାଦେବଙ୍କର ଅବତାର ସେ ଏ ପ୍ରକାର କହି ଶ୍ରୀଭଗବାନଙ୍କ ନିକଟ ଅପରାଧୀ ହୋଇଅଛନ୍ତି । ଏହି ସଂଶୟ ଛେଦନ କରିବା କାରଣେ ଶ୍ରୀମନ୍ ମହାପ୍ରଭୁ କହୁଅଛନ୍ତି ଯେ ଶଙ୍କରାଚାର୍ଯ୍ୟ ଏ ପ୍ରକାର ଶ୍ରୀ ଭଗବତ୍-ନିନ୍ଦା କରିବାହେତୁ ଅପରାଧୀ ନୁହନ୍ତି । କାରଣ ସେ ଶ୍ରୀଭଗବାନଙ୍କର ଦାସ ଏବଂ ଆଜ୍ଞା ପାଳନ-କରିବାକୁ ବାଧ୍ୟ, ତେଣୁ ସେ ଶ୍ରୀ ଭଗବାନଙ୍କର ଆଜ୍ଞା ପ୍ରତିପାଳନକରିବାହେତୁ ଏ ପ୍ରକାରରେ ଶ୍ରୀଭଗ-ବତ୍ ନିନ୍ଦା କରିଅଛନ୍ତି । ତେଣୁ ସେଥିରେ ତାଙ୍କର କିଛି ଅପରାଧ ହୋଇନାହିଁ । କିନ୍ତୁ ଅପର କେହି ଯଦି ସେକଥା ଶୁଣେ ଅର୍ଥାତ୍ ସେହିଭାବ ଗ୍ରହଣକରେ ତାହାହେଲେ ତାର ସର୍ବନାଶ ହୁଏ । ଅର୍ଥାତ୍ ସେ ବ୍ୟକ୍ତି ଭଗବଦ୍ଭକ୍ତିବହିର୍ମୁଖ ହୋଇ ମାୟାର କବଳରେ ଚିରକାଳ ଆବଦ୍ଧ ରହେ । କାରଣ ଯେ ବ୍ୟକ୍ତି ଚିଦାନନ୍ଦହୀନ ଶ୍ରୀ ଭଗବାନଙ୍କର ଅପ୍ରାକୃତ ବପୁକୁ ପ୍ରାକୃତ ଅର୍ଥାତ୍ ପ୍ରପଞ୍ଚମୟ ବୋଲି ମାନେ, ତଦ୍ୱାରା ସେ ବିଷ୍ଣୁନିନ୍ଦା କରେ । ଏହାଠାରୁ ବଳି ଆଉ ଅଧିକ ବିଷ୍ଣୁନିନ୍ଦା ହୋଇ ପାରେନା ।

ଏତଦ୍ଦ୍ୱାରା ଶ୍ରୀମନ୍ ମହାପ୍ରଭୁ ବ୍ରହ୍ମଙ୍କର ସବିଶେଷ ତତ୍ତ୍ୱ ବା ସାକାରତ୍ୱ ଓ ପରତତ୍ତ୍ୱତ୍ୱ ସ୍ଥାପନ କଲେ ଏବଂ ନିର୍ବିଶେଷ ବା ନିରାକାର ବାଦ ଦୂଷଣୀୟ ପ୍ରତିପନ୍ନ କଲେ । ୧୦୯ । ୧୧୦ ।

ତତ୍ତ୍ୱତଃ ଈଶ୍ୱର କିପରି ତାହା ପ୍ରାକୃତ ଅଗ୍ନିର ସହିତ ତୁଳନାରେ ବୁଝାଉଅଛନ୍ତି । ଅର୍ଥାତ୍ ଈଶ୍ୱରତତ୍ତ୍ୱ ପ୍ରଜ୍ୱଳିତ ଅଗ୍ନିପରି ଏବଂ ଜୀବତତ୍ତ୍ୱ ସେ ଅଗ୍ନିର କଣା ଅର୍ଥାତ୍ ସ୍ଫୁଲିଙ୍ଗପରି । ସ୍ଥୂଳତଃ ଈଶ୍ୱରତତ୍ତ୍ୱ ( କୃଷ୍ଣତତ୍ତ୍ୱ ) ଶକ୍ତିମାନ ଏବଂ ଜୀବତତ୍ତ୍ୱ ତାହାଙ୍କର ଶକ୍ତି । ଏହା ଶ୍ରୀମଦ୍‌ଭଗବଦ୍‌ଗୀତା ଏବଂ ବିଷ୍ଣୁପୁରାଣାଦି ଗ୍ରନ୍ଥମାନଙ୍କରେ ପ୍ରମାଣିତ ହୋଇଅଛି । ୧୧୧ । ୧୧୨ ।

ଶ୍ରୀକୃଷ୍ଣ କହୁଅଛନ୍ତି, ହେ ମହାବାହୁ ଅର୍ଜ୍ଜୁନ, ପୂର୍ବେ ଯେଉଁ ଅଷ୍ଟବିଧା ପ୍ରକୃତିର ବିଷୟ କହିଲି, ସେମାନେ ଅପରା ଅର୍ଥାତ୍ ଜଡ଼ତ୍ୱ ହେତୁ ନିକୃଷ୍ଟା । ବର୍ତ୍ତମାନ ସେମାନଙ୍କ ଅପେକ୍ଷା ପରା

ତଥାହି ବିଷ୍ଣୁପୁରାଣେ (୬।୭।୬୧)—
ବିଷ୍ଣୁଶକ୍ତିଃ ପରା ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ତଥାପରା ।
ଅବିଦ୍ୟାକର୍ମସଂଜ୍ଞାନ୍ୟା ତୃତୀୟା ଶକ୍ତିରିଷ୍ୟତେ ।୭।୫

ହେନ ଜୀବତତ୍ତ୍ୱ ଲଞା ଲିଖି ପରତତ୍ତ୍ୱ ।
ଆଚ୍ଛନ୍ନ କରିଲ ଶ୍ରେଷ୍ଠ ଈଶ୍ୱର-ମହତ୍ତ୍ୱ । ୧୧୩ ।

ବିଷ୍ଣୁଶକ୍ତିଃ ( ବିଷ୍ଣୋଃ ସ୍ୱରୂପଭୂତା ଶକ୍ତିଃ ) ପରା ( ଚିତ୍ସ୍ୱରୂପା ) ପ୍ରୋକ୍ତା କ୍ଷେତ୍ରଜ୍ଞାଖ୍ୟା ( ଶକ୍ତିଃ ) ଅପରା ( ପ୍ରୋକ୍ତା ) ଅନ୍ୟା ଅବିଦ୍ୟା କର୍ମସଂଜ୍ଞା ( ଅବିଦ୍ୟା କର୍ମ କାର୍ଯ୍ୟଂ ଯସ୍ୟାଃ ସା ତତ୍-ସଂଜ୍ଞା ମାୟା ) ତୃତୀୟା ଶକ୍ତିଃ ଇଷ୍ୟତେ । ୭ମ ଶ୍ଳୋକ ।

( ଉକ୍ତୟା ) ଅପର ପ୍ରକୃତିର ବିଷୟ ଅବଗତ ହୁଅ । ସେ ପ୍ରକୃତି ଜୀବସ୍ୱରୂପା ଅର୍ଥାତ୍ କ୍ଷେତ୍ରଜ୍ଞା ହେତୁରୁ ଏହି ଜଗତକୁ ସ୍ୱକର୍ମଦ୍ୱାରା ଧାରଣକରି ରହିଅଛି । ୬ଷ୍ଠ ଶ୍ଳୋକାର୍ଥ ।

ବିଷ୍ଣୁଙ୍କର ତିନିଗୋଟି ଶକ୍ତି ଉପଲବ୍ଧି ହୁଏ । ସେହି ମଧ୍ୟରୁ ପରା ( ସର୍ବଶ୍ରେଷ୍ଠା ) ଚିତ୍ସ୍ୱରୂପା (ଅନ୍ତରଙ୍ଗା ଶକ୍ତି ) ପ୍ରଥମ, ଅପରା ( ଅନ୍ତରଙ୍ଗାଶକ୍ତିଠାରୁ ପୃଥକ୍ ) କ୍ଷେତ୍ରଜ୍ଞା ନାମ୍ନୀ ଶକ୍ତି ( ଜୀବଶକ୍ତି ) ଦ୍ୱିତୀୟ ଏବଂ ଅନ୍ୟା ( ଅନ୍ତରଙ୍ଗା ଓ କ୍ଷେତ୍ରଜ୍ଞା ବ୍ୟତୀତ ଅନ୍ୟା ) କର୍ମସଂଜ୍ଞାନାମୀ ଅବିଦ୍ୟା ( ମାୟା ବା ବହିରଙ୍ଗା ଶକ୍ତି ) ତୃତୀୟ । ୭ମ ଶ୍ଳୋକାର୍ଥ ।

ପୂର୍ବୋକ୍ତ ଶ୍ଳୋକମାନଙ୍କ ଦ୍ୱାରା ଏହା ନିରୂପିତହେଲା ଯେ ଭଗବତ୍ତତ୍ତ୍ୱ ଶକ୍ତିମାନ୍, ଅତଏବ ପରତତ୍ତ୍ୱ ଏବଂ ଜୀବତତ୍ତ୍ୱ, ଭଗବାନଙ୍କ ଶକ୍ତିବିଶେଷ ବା ମଧ୍ୟମ ଶକ୍ତି । ଏ ପ୍ରକାର ଜୀବତତ୍ତ୍ୱକୁ ପରତତ୍ତ୍ୱରୂପରେ ଅର୍ଥାତ୍ ଭଗବତ୍ତତ୍ତ୍ୱ ବୋଲି ବୁଝାଇ ଶଙ୍କରାଚାର୍ଯ୍ୟ ପରତତ୍ତ୍ୱରୂପୀ ଭଗବାନଙ୍କର ଭଗବତ୍ତାକୁ ଆଚ୍ଛନ୍ନ କରିଅଛନ୍ତି । ଅର୍ଥାତ୍ ତତ୍ତ୍ୱମସିକୁ କାଳ୍ପନିକ ଅର୍ଥରେ ବୁଝାଇବା ଦ୍ୱାରା ଜୀବ ଓ ବ୍ରହ୍ମଙ୍କର ଐକ୍ୟ ସ୍ଥାପନ କରିଅଛନ୍ତି ।

ଏହାଦ୍ୱାରା ଶ୍ରୀମନ୍ ମହାପ୍ରଭୁ ଶାଙ୍କରମତୋକ୍ତ ଜୀବ ଓ ବ୍ରହ୍ମଙ୍କର ଅଭେଦତ୍ୱ ଖଣ୍ଡନ କରି "ଭେଦାଭେଦତ୍ୱ" ସ୍ଥାପନ କଲେ । ୧୧୩ ।

ବ୍ୟାସସୂତ୍ରରେ ପରିଣାମବାଦ ଅର୍ଥାତ୍ ବ୍ରହ୍ମ ଜଗତ୍ରୂପରେ ପରିଣତହୋଇଅଛନ୍ତି, ଏହାହିଁ ବ୍ରହ୍ମସୂତ୍ରର ମୁଖ୍ୟ ଅର୍ଥ । ଏହି ଅର୍ଥ ଗ୍ରହଣ କରାଗଲେ ଶଙ୍କରାଚାର୍ଯ୍ୟଙ୍କ ମତରେ ବ୍ୟାସଙ୍କୁ ଭ୍ରାନ୍ତ ବୋଲି ସ୍ୱୀକାର କରିବାକୁ ହେବ । ସେହିହେତୁ ଶଙ୍କରାଚାର୍ଯ୍ୟ ଭିନ୍ନ ଅର୍ଥ ( ଲକ୍ଷଣାର୍ଥ ) ପ୍ରକାଶ କଲେ, କାରଣ ତାଙ୍କ ମତରେ ପରିଣାମବାଦ ମାନିଲେ ଈଶ୍ୱରଙ୍କୁ ବିକାରୀ ବୋଲି ବୋଲିବାକୁ ହେବ । ଏଣୁ ଶଙ୍କରାଚାର୍ଯ୍ୟ କାଳ୍ପନିକଅର୍ଥଦ୍ୱାରା ବିବର୍ତ୍ତବାଦ, ଅର୍ଥାତ୍ ଜଗତ୍ ସତ୍ୟବସ୍ତୁ ନୁହେ ତାହା ବ୍ରହ୍ମରେ କଳ୍ପିତ ଏହିମତ ସ୍ଥାପନ କଲେ ।

ଏହାର ଭାବାର୍ଥ ଏହି ଯେ ବେଦାନ୍ତସୂତ୍ରର ଅର୍ଥ ଦ୍ୱାରା ଜଣାଯାଏ ଯେ ଭଗବାନ୍ ଜଡ଼ାତ୍ମିକାଜଗତ୍ ରୂପରେ ପରିଣତ ହୋଇଅଛନ୍ତି ଅର୍ଥାତ୍ ଭଗବାନ୍ ଯେପରି ସତ୍ୟବସ୍ତୁ ତାହାଙ୍କର ଚିତ୍କଣ ଜୀବପ୍ରକୃତି ଓ ବହିରଙ୍ଗ ଜଡପ୍ରକୃତି ଏ ଉଭୟ ସତ୍ୟବସ୍ତୁ । କିନ୍ତୁ ଶଙ୍କରାଚାର୍ଯ୍ୟଙ୍କ ମତରେ ଏହା ସ୍ୱୀକାର କରିବାକୁ ହେଲେ ଭଗବାନଙ୍କୁ ବିକାରୀ ବୋଲି ସ୍ୱୀକାରକରିବାକୁ ହେବ, ଅର୍ଥାତ୍ ଭଗବାନଙ୍କୁ ପରିଚ୍ଛିନ୍ନ ବୋଲି କହିବାକୁ ହେବ । କିନ୍ତୁ ଭଗବାନ୍ ଯେତେବେଳେ ସ୍ୱତଃ ନିର୍ବିକାରୀ ସେତେବେଳେ ତାହାଙ୍କର ପରିଣାମବାଦହିଁ ଭ୍ରମମୂଳକ, ତେଣୁ ଏହି ପରିଣାମବାଦ-ବ୍ୟଞ୍ଜକ ସୂତ୍ର ମଧ୍ୟ ଭ୍ରମମୂଳକ । ତାହାହେଲେ ସୂତ୍ରକର୍ତ୍ତା ମଧ୍ୟ ଭ୍ରାନ୍ତ । ଅର୍ଥାତ୍ ବ୍ୟାସସୂତ୍ରର ପରିଣାମବାଦବ୍ୟଞ୍ଜକ ଅର୍ଥ ଗ୍ରହଣ କଲେ ବ୍ୟାସଙ୍କୁ ଭ୍ରାନ୍ତ ବୋଲି କହିବାକୁ ହେବ । କିନ୍ତୁ

ବ୍ୟାସେର ସୂତ୍ରେତେ କହେ ପରିଣାମବାଦ ।
'ବ୍ୟାସ ଭ୍ରାନ୍ତ' ବଲି ତାହା ଉଠାଇଲ ବିବାଦ ।୧୧୪
'ପରିଣାମବାଦେ ଈଶ୍ୱର ହୟେନ ବିକାରୀ' ।
ଏତ କହି ବିବର୍ତ୍ତବାଦ ସ୍ଥାପନ ଯେ କରି ।୧୧୫।
ବସ୍ତୁତ ପରିଣାମବାଦ—ସେଇତ ପ୍ରମାଣ ।
'ଦେହେ ଆତ୍ମବୁଦ୍ଧି' ଏଇ ବିବର୍ତ୍ତେର ସ୍ଥାନ ।୧୧୬
ଅବିଚିନ୍ତ୍ୟଶକ୍ତିଯୁକ୍ତ ଶ୍ରୀଭଗବାନ୍ ।
ଇଚ୍ଛାୟ ଜଗତ-ରୂପେ ପାୟ ପରିଣାମ ।୧୧୭।
ତଥାପି ଅଚିନ୍ତ୍ୟଶକ୍ତ୍ୟେ ହୟ ଅବିକାରୀ ॥
ପ୍ରାକୃତ ଚିନ୍ତାମଣି ତାହେ ଦୃଷ୍ଟାନ୍ତ ଯେ ଧରି ।୧୧୮

ଶଙ୍କରାଚାର୍ଯ୍ୟ ବ୍ୟାସଙ୍କୁ ଭଗବାନ୍ ସୂତ୍ରକାର ବୋଲି ପ୍ରଥମେ ସ୍ୱୀକାର କରିଥିବାରୁ ଭଗବାନ୍ ଏବଂ ସୂତ୍ରକାର ଭ୍ରମ ପ୍ରମାଦ ଆଦି ଦୋଷଶୂନ୍ୟହେତୁ ଭଗବାନ୍ ସୂତ୍ରକାର ବ୍ୟାସଦେବ କଦାପି ଭ୍ରାନ୍ତ ହୋଇପାରନ୍ତିନାହିଁ । ଏଣୁ ବ୍ୟାସଙ୍କୁ ଅଭ୍ରାନ୍ତ କରିବା ସକାଶେ ଅର୍ଥାତ୍ ଏହି ଛଳ ଦେଖାଇ ଶଙ୍କରାଚାର୍ଯ୍ୟ ବିବର୍ତ୍ତବାଦ ଅର୍ଥାତ୍ ଜଗତ୍ କେବଳ ବ୍ରହ୍ମରେ କଳ୍ପନାମାତ୍ର ଏହା ପ୍ରକୃତ ସତ୍ୟବସ୍ତୁ ନୁହେ ଏହିମତ ସ୍ଥାପନକରିଅଛନ୍ତି ।

ପରିଣାମ—ଦୁଗ୍ଧ ଦଧିରୂପେ ପରିଣତହେଲେ ଦଧିକୁ ଦୁଗ୍ଧର ପରିଣାମ କୁହାଯାଏ । ଦଧି ହେବାଦ୍ୱାରା ଦୁଗ୍ଧ ବିକୃତ ହୁଏ । ପୁନର୍ବାର ତାହା ଦୁଗ୍ଧ ହୋଇପାରେ ନା । ଏହିପ୍ରକାରେ ଈଶ୍ୱର ଜୀବରୂପରେ ଓ ଜଗତ୍ରୂପରେ ପରିଣତହେଲେ, ଶଙ୍କରାଚାର୍ଯ୍ୟଙ୍କ ମତରେ ଈଶ୍ୱର ଏହି ବିକୃତ ଅବସ୍ଥାରୁ ସ୍ୱସ୍ୱରୂପକୁ ପ୍ରାପ୍ତ ହୋଇପାରନ୍ତିନାହିଁ । କିନ୍ତୁ ଈଶ୍ୱରଙ୍କର ଅଚିନ୍ତ୍ୟ ଶକ୍ତି ସ୍ୱୀକାର କଲେ, କାହାରିମନରେ ଈଶ୍ୱରଙ୍କପ୍ରତି ଏପରି ଭାବ ଉଦୟ ହୋଇ ନ ପାରେ ।

ବିବର୍ତ୍ତ—ଭ୍ରମ । ଅର୍ଥାତ୍ ଖଣ୍ଡେ ରଜ୍ଜୁ ଦେଖି ସର୍ପବୋଲି ମନେକଲେ ପଛେ ରଜ୍ଜୁଜ୍ଞାନ ହେଲେ ସେଥିରୁ ସର୍ପଜ୍ଞାନ ଦୂରହୁଏ । ଅତଏବ ରଜ୍ଜୁରେ ସର୍ପଜ୍ଞାନ କଳ୍ପନା ଅଟେ । ବସ୍ତୁତଃ ରଜ୍ଜୁ ସର୍ପ ନୁହେ । ସେହିପରି ଜଗତରେ ଈଶ୍ୱରଜ୍ଞାନ କଳ୍ପନା । ଅର୍ଥାତ୍ ଜଗତ୍ ବ୍ରହ୍ମରେ କଳ୍ପିତ ହୋଇ-ଅଛି, ବାସ୍ତବିକ ଜଗତ୍ କିଛିନୁହେ । ତାହା ରଜ୍ଜୁରେ ସର୍ପଜ୍ଞାନବତ୍ କଳ୍ପିତ ଏହାହିଁ ଶଙ୍କରାଚାର୍ଯ୍ୟଙ୍କର ମତ । ୧୧୪।୧୧୫ ।

ଶ୍ରୀମନ୍ ମହାପ୍ରଭୁ କହିଲେ, ଯେ ପରିଣାମବାଦହିଁ ଅର୍ଥାତ୍ ଈଶ୍ୱର ଜଗତ୍ରୂପରେ ପରିଣତ ହୋଇଅଛନ୍ତି ଏହି ଅର୍ଥହିଁ ବେଦଦ୍ୱାରା ପ୍ରମାଣିତ ହୋଇଅଛି । ଅତଏବ ତାହା ଭ୍ରମାର୍ଥ ନୁହେ । ତେବେ ଜୀବର ନିଜଦେହରେ ଯେ ଆତ୍ମବୁଦ୍ଧି, ଅର୍ଥାତ୍ ଏହି ଦେହ ମୁଁ ଏହି ଜ୍ଞାନ ବିବର୍ତ୍ତ (ଭ୍ରମ) । ଏହାର ଭାବାର୍ଥ ଏହି ଯେ ପ୍ରାକୃତ ବସ୍ତୁର ବିଚାର ବା ପ୍ରମାଣଦ୍ୱାରା ଭଗବାନଙ୍କର ମହିମା ବିଚାର ବା ପ୍ରମାଣ କରିବା ଅନୁଚିତ । କାରଣ ଭଗବାନ୍ ଜୀବତୁଲ୍ୟ ପରିମିତ ଶକ୍ତିସମ୍ପନ୍ନ ନୁହନ୍ତି । ଏହାର ବିଶେଷ ଅର୍ଥ ପରବର୍ତ୍ତୀ ପୟାରମାନଙ୍କରେ ଦେଖାଉଅଛନ୍ତି । ୧୧୬ ।

ଶ୍ରୀ ଭଗବାନଙ୍କର ଯେ କେତେଶକ୍ତି ତାହା ଜୀବ ବିଶେଷରୂପେ ଚିନ୍ତାକରି ଧାରଣା କରି-ପାରେନା; ଏଣୁ ଶ୍ରୀଭଗବାନ୍ ଅବିଚିନ୍ତ୍ୟ ଶକ୍ତିମାନ୍ । ଏତାଦୃଶ ଶକ୍ତିଦ୍ୱାରା ସେ ଜଗଦ୍ରୂପରେ ପରିଣତ ହୁଅନ୍ତି । ତଥାପି ସେହି ଶକ୍ତିବଳରେ ସେ ନିର୍ବିକାରୀ ହୋଇ ସ୍ୱସ୍ୱରୂପରେ ଥାଆନ୍ତି, ଏହାହିଁ ଈଶ୍ୱର-ଙ୍କର ଐଶ୍ୱର୍ଯ୍ୟ । ଏ ସମ୍ବନ୍ଧରେ ପ୍ରାକୃତ ( ଭୌତିକ ) ଚିନ୍ତାମଣିକୁ ଦୃଷ୍ଟାନ୍ତ ଦେଉଅଛନ୍ତି । ଅର୍ଥାତ୍ ଚିନ୍ତାମଣିବୋଲି ଯେଉଁ ମଣି ଅଛି ସେଥିରୁ ନାନାଦି ରତ୍ନ ରାଶି ୨ ଜାତହୁଏ । ଅର୍ଥାତ୍ ଚିନ୍ତାମଣି ରାଶି ୨ ମଣିରୂପରେ ପରିଣତହୁଏ । କିନ୍ତୁ ଚିନ୍ତାମଣି ଅବିକୃତ ଥାଏ । ଏପରି ଅଚିନ୍ତ୍ୟ ଶକ୍ତି ଯଦି ପ୍ରାକୃତ ବସ୍ତୁରେ ହୋଇପାରେ, ତେବେ ଅବିଚିନ୍ତ୍ୟ ଶକ୍ତିସମ୍ପନ୍ନ ଈଶ୍ୱରଙ୍କର କୋଟୀ ୨ ବ୍ରହ୍ମାଣ୍ଡରୂପରେ ପରିଣତ ହୋଇ ସ୍ୱୟଂ ଅବିକୃତ ରହିବାରେ ବିସ୍ମିତ ହେବାର କୌଣସି କାରଣ ଦେଖାଯାଏନାହିଁ ।

ଏତଦ୍ଦ୍ୱାରା ମହାପ୍ରଭୁ ଶଙ୍କରାଚାର୍ଯ୍ୟଙ୍କ ମତରେ ଜଗତ୍ ଯେ ମିଥ୍ୟା ଏହି ମତ ଖଣ୍ଡନ କରି

ନାନା ରତ୍ନରାଶି ହୟ ଚିନ୍ତାମଣି ହୈତେ ।
ତଥାପିହ ମଣି ରହେ ସ୍ୱରୂପ ଅବିକୃତେ । ୧୧୯ ।
ପ୍ରାକୃତ-ବସ୍ତୁତେ ଯଦି ଅଚିନ୍ତ୍ୟଶକ୍ତି ହୟ ।
ଈଶ୍ୱରେର ଅଚିନ୍ତ୍ୟଶକ୍ତି ଇଥେ କି ବିସ୍ମୟ ? ।୧୨୦।
ପ୍ରଣବ ସେ ମହାବାକ୍ୟ—ବେଦେର ନିଦାନ ।
ଈଶ୍ୱରସ୍ୱରୂପ ପ୍ରଣବ ସର୍ବ୍ୱବିଶ୍ୱଧାମ । ୧୨୧ ।
ସର୍ବ୍ବାଶ୍ରୟ-ଈଶ୍ୱରେର ପ୍ରଣବ ଉଦ୍ଦେଶ ।
'ତତ୍ତ୍ୱମସି' ବାକ୍ୟ ହୟ ବେଦେର ଏକଦେଶ ।୧୨୨
ପ୍ରଣବ ମହାବାକ୍ୟ—ତାହା କରି ଆଚ୍ଛାଦନ ।
ମହାବାକ୍ୟେ କରି ତତ୍ତ୍ୱମସିର ସ୍ଥାପନ । ୧୨୩ ।

ଜଗତ୍ ଯେ ସତ୍ୟବସ୍ତୁ ଏହିମତ ସ୍ଥାପନ କଲେ । ୧୧୭-ରୁ୧୨୦ ।

ପ୍ରଣବ—ଓଁ ।

ମହାବାକ୍ୟ—ଅନେକ ବାକ୍ୟର ଭାବ ଯାହାଦ୍ୱାରା ବ୍ୟକ୍ତ ହୁଏ ତାହାକୁ ମହାବାକ୍ୟ କୁହାଯାଏ । ଯେପରି କି ରାମାୟଣ ମହାବାକ୍ୟ । ଅର୍ଥାତ୍ ରାମାୟଣ କହିଲେ ଶ୍ରୀରାମଚନ୍ଦ୍ରଙ୍କ ଲୀଳା ଯେଉଁସବୁ ବାକ୍ୟଦ୍ୱାରା ବର୍ଣ୍ଣିତ ହୋଇଅଛି ସେ ସମସ୍ତ ରାମାୟଣର ଅନ୍ତର୍ଗତ ବା ରାମାୟଣ ଏହି-ବାକ୍ୟଦ୍ୱାରା ସେହି ସମସ୍ତ ଭାବ ମନରେ ଉଦିତ ହୁଏ । ଅତଏବ ରାମାୟଣ ଏ ସ୍ଥଳରେ ମହାବାକ୍ୟ । ପ୍ରଣବ ( ଓଁ ) ସ୍ୱତଃସିଦ୍ଧ ମହାବାକ୍ୟ ଯେହେତୁ ତାହା ବେଦମାନଙ୍କର ମୂଳ । ଅର୍ଥାତ୍ ବେଦମାନେ ବାକ୍ୟମାନଙ୍କଦ୍ୱାରା ଯେଉଁ ବିଶ୍ୱସ୍ରଷ୍ଟା ଏବଂ ବିଶ୍ୱର ବିଷୟ ବ୍ୟକ୍ତ କରୁଅଛନ୍ତି ତାହା ପ୍ରଣବଜ୍ଞାନଦ୍ୱାରା ଜଣାଯାଏ । ଅର୍ଥାତ୍ ବେଦମାନେ ପ୍ରଣବର ବାଖ୍ୟା । ବେଦମାନେ ଈଶ୍ୱରବାକ୍ୟ । ତେଣୁ ସ୍ୱପ୍ରକାଶ । ଏହି ହେତୁ ପ୍ରଣବ କାପରି ବେଦମାନଙ୍କର ନିଦାନ ହେଲେ ଏହି ସଂଶୟ ଛେଦନସକାଶେ କହୁଅଛନ୍ତି; ଯେ ପ୍ରଣବ ଈଶ୍ୱରଙ୍କର ସ୍ୱରୂପ ଅର୍ଥାତ୍ ଅଭୟ ବ୍ରହ୍ମ । ଈଶ୍ୱର ସମସ୍ତ ବିଶ୍ୱମାନଙ୍କର ଧାମ, ଆଶ୍ରୟ ବା ଜନକହେତୁରୁ ଈଶ୍ୱରସ୍ୱରୂପ ପ୍ରଣବ ମଧ୍ୟ ସର୍ବ୍ୱବିଶ୍ୱଧାମ, ଈଶ୍ୱର ଯେ ସର୍ବାଶ୍ରୟ ତାହା ପ୍ରଣବର ଅର୍ଥଜ୍ଞାନ ଦ୍ୱାରା ଜଣାଯାଏ । ଅର୍ଥାତ୍ ପ୍ରଣବଜ୍ଞାନଦ୍ୱାରା ଈଶ୍ୱରଜ୍ଞାନ ହୁଏ, ତେଣୁ ପ୍ରଣବଦ୍ୱାରା ଈଶ୍ୱର ଏବଂ ତତ୍‌କାର୍ଯ୍ୟାଦି ବୁଝାଯାଏ । କିନ୍ତୁ ତତ୍ତ୍ୱମସି ବାକ୍ୟଟିର ଅର୍ଥଦ୍ୱାରା ସେପରି କିଛି ବୁଝାଯାଏ ନାହିଁ । କାରଣ ତତ୍ତ୍ୱମସି ବେଦପ୍ରତିପାଦିତ ତତ୍ତ୍ୱର ଏକଅଂଶମାତ୍ର ବୁଝାଏ । ତେଣୁ ତତ୍ତ୍ୱମସି ବେଦର ସର୍ବାଂଶ ପ୍ରତିପାଦକ ବା ବେଦର ମୂଳ ପ୍ରଣବର ଅନ୍ତର୍ଗତ ହେତୁରୁ ମହାବାକ୍ୟ ହୋଇ ପାରେ ନାହିଁ । କିନ୍ତୁ ଶ୍ରୀମନ୍ ଶଙ୍କରାଚାର୍ଯ୍ୟ ତତ୍ତ୍ୱମସିକୁ ମହାବାକ୍ୟତତ୍ତ୍ୱରେ ସ୍ଥାପନ କରି ତଦ୍ଦ୍ୱାରା ମହାବାକ୍ୟ ପ୍ରଣବକୁ ଘୋଡ଼ାଇ ଅଛନ୍ତି ।

ପ୍ରଣବ—ଓଁ । ଏହାର ଅର୍ଥ ଅ+ଉ+ମ+ଁ ଏହାର ଅର୍ଥ ଅ – ସ୍ଥୂଳ, ଉ—ସୂକ୍ଷ୍ମ, ମ—କାରଣ ବା ପ୍ରାଜ୍ଞ । ଏହି ଅବସ୍ଥା ତ୍ରୟର ସମଷ୍ଟି ଜଗତ୍ । ଁ ଏତତ୍ ଅତୀତ ତୁରୀୟ ସଚ୍ଚିଦାନନ୍ଦମୟ ଶ୍ରୀ ଭଗବାନ୍ ବା ଶ୍ରୀକୃଷ୍ଣ । ବିନ୍ଦୁହିଁ ଶ୍ରୀକୃଷ୍ଣଙ୍କର ସ୍ୱରୂପଶକ୍ତି ଅର୍ଥାତ୍ ଁ ଶକ୍ତି ଓ ଶକ୍ତିମାନର ଏକତ୍ରରେ ଅଭେଦତ୍ୱ ପ୍ରତିପାଦନ କରୁଅଛି । ଅତଏବ ପ୍ରଣବଦ୍ୱାରା ତତ୍ତ୍ୱତଃ ସର୍ବଶକ୍ତିମାନ୍ ଭଗବାନ୍ ଏବଂ ତାଙ୍କଠାରୁ ସ୍ଥୂଳ ସୂକ୍ଷ୍ମ କାରଣରୂପୀ ବିଶ୍ୱ ଏହି ଉଭୟ ଜ୍ଞାନ ଲାଭ ହେଉଅଛି । "ତତ୍ତ୍ୱମସି" ଅର୍ଥ "ସେ ତୁମ୍ଭେ ହୁଅ" । ଏଥିର "ସେ" ଶବ୍ଦ ଲକ୍ଷଣାରେ ଈଶ୍ୱରଙ୍କୁ ଦେଖାଉଅଛି । ତୁମ୍ଭେ ଶବ୍ଦ ଜୀବକୁ ଦେଖାଉଅଛି ଏବଂ ହୁଅ ଶବ୍ଦ ଏ ଉଭୟରେ ଏକତ୍ୱ ଜଣାଉଅଛି । କିନ୍ତୁ ବସ୍ତୁତଃ ଶବ୍ଦର ମୁଖ୍ୟାର୍ଥ-ଦ୍ୱାରା ସେପରି କିଛି ବ୍ୟକ୍ତ ହେଉନାହିଁ । ପ୍ରଣବଦ୍ୱାରା ଈଶ୍ୱର ଏବଂ ବିଶ୍ୱ ସମ୍ବନ୍ଧରେ ଯେଉଁ ସାର ଜ୍ଞାନ ଲାଭ ହେଉଅଛି, ତତ୍ତ୍ୱମସି ଦ୍ୱାରା ତାହା ହେଉନାହିଁ । ୧୨୧ । ୧୨୨ । ୧୨୩ ।

ସର୍ବବେଦସୂତ୍ରେ କରେ କୃଷ୍ଣେର ଅଭିଧାନ ।
ମୁଖ୍ୟବୃତ୍ତି ଛାଡ଼ି କୈଲ ଲକ୍ଷଣା ବ୍ୟାଖ୍ୟାନ । ୧୨୪ ।
ସ୍ୱତଃପ୍ରମାଣ ବେଦ—ପ୍ରମାଣଶିରୋମଣି ।
ଲକ୍ଷଣା କରିଲେ ସ୍ୱତଃପ୍ରମାଣତା-ହାନି । ୧୨୫ ।
ଏଇମତ ପ୍ରତି ସୂତ୍ରେ ସହଜାର୍ଥ ଛାଡ଼ିଯା ।
ଗୌଣାର୍ଥ ବ୍ୟାଖ୍ୟା କରେ କଳ୍ପନା କରିଯା । ୧୨୬
ଏଇମତ ପ୍ରତିସୂତ୍ରେ କରେନ ଦୂଷଣ ।
ଶୁନି ଚମତ୍କାର ହୈଲ ସନ୍ନ୍ୟାସିର ଗଣ । ୧୨୭ ।
ସକଲ ସନ୍ନ୍ୟାସୀ କହେ—ଶୁନହ ଶ୍ରୀପାଦ ।
ତୁମି ଯେ ଖଣ୍ଡିଲେ ଅର୍ଥ, ଏ ନହେ ବିବାଦ । ୧୨୮
ଆଚାର୍ଯ୍ୟକଳ୍ପିତ ଅର୍ଥ—ଇହା ସବେ ଜାନି ।
ସମ୍ପ୍ରଦାୟ-ଅନୁରୋଧେ ତବୁ ତାହା ମାନି । ୧୨୯ ।
ମୁଖ୍ୟ ଅର୍ଥ ବ୍ୟାଖ୍ୟା କର, ଦେଖି ତୋମାର ବଳ ।
ମୁଖ୍ୟାର୍ଥ ଲାଗାଇଲ ପ୍ରଭୁ ସୂତ୍ରସକଲ— । ୧୩୦ ।

ସମସ୍ତ ବେଦ ଓ ବେଦାନ୍ତ ସୂତ୍ରମାନଙ୍କର ମୁଖ୍ୟଅର୍ଥ ଦ୍ୱାରା କୃଷ୍ଣଙ୍କର ବ୍ୟାଖ୍ୟା ହୁଏ । ଅର୍ଥାତ୍ ସମସ୍ତ ବେଦ ଓ ବେଦାନ୍ତ ସୂତ୍ର ମୁଖ୍ୟବୃତ୍ତି ଅର୍ଥଦ୍ୱାରା କେବଳମାତ୍ର ଶ୍ରୀକୃଷ୍ଣଙ୍କୁ ପ୍ରତିପାଦନ କରନ୍ତି, କିନ୍ତୁ ଶଙ୍କରାଚାର୍ଯ୍ୟ ମୁଖ୍ୟବୃତ୍ତି ତ୍ୟାଗକରି ଲକ୍ଷଣାବୃତ୍ତିରେ ଅର୍ଥ ପ୍ରକାଶପୂର୍ବକ ବେଦର ଶ୍ରୀକୃଷ୍ଣ ପ୍ରତିପାଦକତ୍ୱ ଅର୍ଥ ଆଚ୍ଛାଦନ କରିଅଛନ୍ତି । ବେଦସ୍ୱ ପ୍ରକାଶ ହେତୁ ସ୍ୱତଃ ପ୍ରମାଣ । ତେଣୁ ସର୍ବଶ୍ରେଷ୍ଠ ପ୍ରମାଣ । ଅର୍ଥାତ୍ ବେଦର ପ୍ରମାଣଦ୍ୱାରା ବେଦ ଏବଂ ତଦ୍‌ବ୍ୟତୀତ ଅନ୍ୟବିଷୟ ପ୍ରମାଣିତହୁଏ । କିନ୍ତୁ ବେଦ ଅନ୍ୟ କୌଣସି ବିଷୟର ପ୍ରମାଣଦ୍ୱାରା ପ୍ରମାଣିତ ହୁଏ ନା । ଲକ୍ଷଣାବୃତ୍ତିର ଭିତ୍ତି ବେଦ ବ୍ୟତୀତ ଅନ୍ୟ ଶାସ୍ତ୍ର ଉପରେ ସ୍ଥାପିତ । ଅର୍ଥାତ୍ ସ୍ୱତଃ ପ୍ରମାଣ ବେଦ ଓ ଉପନିଷଦର ବଚନ ତ୍ୟାଗ ପୂର୍ବକ ଦର୍ଶନଶାସ୍ତ୍ର ଇତ୍ୟାଦିର ପ୍ରମାଣଦ୍ୱାରା ଶଙ୍କରାଚାର୍ଯ୍ୟ ବେଦାନ୍ତସୂତ୍ର ଅର୍ଥ କରିଅଛନ୍ତି । ଏତଦ୍ଦ୍ୱାରା ବେଦର ସ୍ୱତଃ ପ୍ରମାଣତା ନଷ୍ଟ ହେଉଅଛି । ଏହାର ଭାବ ଏହି ଯେ ବେଦର ପ୍ରମାଣ ବେଦ, ଅର୍ଥାତ୍ ବେଦ ବୁଝିବାକୁ ହେଲେ ବେଦର ସାହାଯ୍ୟରେ ବୁଝିବାକୁ ହେବ । ତେଣୁ ବେଦାନ୍ତସୂତ୍ର ବୁଝିବାକୁ ହେଲେ ବେଦର ସାହାଯ୍ୟରେ ବୁଝିବାକୁ ହେବ । ଅପର କୌଣସି ଶାସ୍ତ୍ରର ସାହାଯ୍ୟରେ ବୁଝିବାକୁ ହେବନାହିଁ । ଶଙ୍କରାଚାର୍ଯ୍ୟ ତାହା ନକରି ବେଦର ମର୍ଯ୍ୟାଦା ନଷ୍ଟ କରିଅଛନ୍ତି । ଅର୍ଥାତ୍ ସେ ଏପରି ସୂତ୍ରମାନଙ୍କର ସହଜ ବୋଧଗମ୍ୟ ଅର୍ଥଗୁଡ଼ି ନ କରି କଳ୍ପନା-ଦ୍ୱାରା ଲକ୍ଷଣା ଅର୍ଥ ପ୍ରକାଶ କରିଅଛନ୍ତି । ୧୨୪ । ୧୨୫ । ୧୨୬ ।

ସନ୍ନ୍ୟାସିମାନେ ଶ୍ରୀମନ୍ ମହାପ୍ରଭୁଙ୍କୁ କହିଲେ, ଆପଣ ଯେ ଶ୍ରୀମନ୍ ଶଙ୍କରାଚାର୍ଯ୍ୟଙ୍କର ଭାଷ୍ୟକୃତ ଅର୍ଥ ଖଣ୍ଡନ କଲେ ଏହା ଯେ ଆପଣ ପ୍ରତିବାଦପର ଅର୍ଥାତ୍ ତର୍କଦ୍ୱାରା ଖଣ୍ଡନ କଲେ ଏପରି ଆମ୍ଭେମାନେ ମନେ କରୁନାହୁଁ । କାରଣ ଆମ୍ଭେମାନେ ଜାଣୁ ଯେ ଶଙ୍କରାଚାର୍ଯ୍ୟ ନିଜର କଳ୍ପିତ ଅର୍ଥ ଦ୍ୱାରା ବେଦାନ୍ତସୂତ୍ରର ଭାଷ୍ୟ କରିଅଛନ୍ତି ।ଏହା ଜାଣି ସୁଦ୍ଧା ଆମ୍ଭେମାନେ ତାଙ୍କର ସମ୍ପ୍ରଦାୟୀ ହେତୁରୁ ଅର୍ଥାତ୍ ଏହି ସମ୍ପ୍ରଦାୟ ଅନୁରୋଧରେ ତାଙ୍କର ଭାଷ୍ୟକୁ ଗ୍ରହଣକରି ଅଛୁଁ । ଅର୍ଥାତ୍ ଆମ୍ଭେମାନେ ଯଦି ତାଙ୍କର ଭାଷ୍ୟକୁ ଅସ୍ୱୀକାର କରୁଁ ତାହାହେଲେ ଆମ୍ଭେମାନେ ଏହି ସନ୍ନ୍ୟାସ ସମ୍ପ୍ରଦାୟ ଭୁକ୍ତ ବୋଲି ପରିଗଣିତ ହେବୁନାହିଁ । ୧୨୮।୧୨୯ ।

ଶ୍ରୀମନ୍ ମହାପ୍ରଭୁ ସ୍ଥୂଳତଃ ଯୁକ୍ତି ଦ୍ୱାରା ବେଦାନ୍ତସୂତ୍ରର ମୁଖ୍ୟାର୍ଥ ପ୍ରକାଶକରି ଶଙ୍କର କଳ୍ପିତାର୍ଥ ଖଣ୍ଡନ କରିବାରୁ ସନ୍ନ୍ୟାସିମାନେ ଶ୍ରୀମନ୍ ମହାପ୍ରଭୁଙ୍କୁ କହିଲେ, ଆପଣ ତ ସ୍ଥୂଳଭାବରେ ବୁଝାଇଲେ, ବର୍ତ୍ତମାନ ଆପଣ ପ୍ରତ୍ୟେକ ସୂତ୍ର ଅବଲମ୍ବନ କରି ସେଥିର ସୂତ୍ର ପ୍ରତିପାଦିତ ଅର୍ଥ ଲଗାଇ ବ୍ୟାଖ୍ୟା କରନ୍ତୁ । ଏହା ଶୁଣି ଶ୍ରୀମନ୍ ମହାପ୍ରଭୁ ପ୍ରତ୍ୟେକସୂତ୍ରର ଅର୍ଥ କରିବାକୁ ଲାଗିଲେ । ୧୩୦

ବୃହଦ୍ବସ୍ତୁ ବ୍ରହ୍ମ କହି—ଶ୍ରୀଭଗବାନ୍ ।
ଷଡ଼୍ବିଧ-ଐଶ୍ୱର୍ଯ୍ୟ-ପୂର୍ଣ୍ଣ ପରତତ୍ତ୍ୱଧାମ । ୧୩୧ ।
ସ୍ୱରୂପ ଐଶ୍ୱର୍ଯ୍ୟ ତାଁର—ନାହି ମାୟାଗନ୍ଧ ।
ସକଲ ବେଦେର ହୟ ଭଗବାନ୍ ସେ 'ସମ୍ବନ୍ଧ' ।୧୩୨
ତାଁରେ ନିର୍ବିଶେଷ କହି ଚିଚ୍ଛକ୍ତି ନା ମାନି ।
ଅର୍ଦ୍ଧ ସ୍ୱରୂପ ନା ମାନିଲେ ପୂର୍ଣ୍ଣତା ହୟ ହାନି ।୧୩୩
ଭଗବାନ୍-ପ୍ରାପ୍ତିହେତୁ ଯେ କରି ଉପାୟ ।
ଶ୍ରବଣାଦି ଭକ୍ତି—କୃଷ୍ଣପ୍ରାପ୍ତିର ସହାୟ । ୧୩୪॥
ସେଇ ସର୍ବବେଦେର 'ଅଭିଧେୟ'-ନାମ ।
ସାଧନଭକ୍ତି ହୈତେ ହୟ ପ୍ରେମେର ଉଦ୍ଗମ ।୧୩୫।

ବୃହଦିତି । ତଥାଚୋକ୍ତଂ ବୈଷ୍ଣବେ "ବୃହତ୍ତ୍ୱାତ୍ ବୃଂହଣତ୍ୱାଚ୍ଚ ତଦ୍ବ୍ରହ୍ମ ପରମଂ ବିଦୁଃ । ଅମ୍ବାଚ ମାତୃଭାଦାମାତ୍ର ପରମୋହବଃ" । ଇତି । ବୃହତ୍ତ୍ୱାତ୍ ଅତିଶୟବସ୍ତୁତ୍ୱାତ୍ ବୃଂହଣତ୍ୱାତ୍ ସର୍ବାଶ୍ରୟତ୍ୱାତ୍ ସ୍ୱରୂପବିସ୍ତାରକତ୍ୱାତ୍ ମାତୃତ୍ୱାତ୍ ଜଗଦ୍ଯୋନିରୂପତ୍ୱାତ୍ । ୧୩୧ । ଚ, ଚ,

"ସ୍ୱରୂପ" ଇତି । ତଥାହି ଷଷ୍ଠେପଞ୍ଚଗବତାମୃତେ "ଯୋଽସୌ ନିର୍ଗୁଣ ଇତ୍ୟୁକ୍ତଃ ଶାସ୍ତ୍ରେଷୁ ଜଗଦୀଶ୍ୱରଃ । ପ୍ରାକୃତୈର୍ହେୟସଂଯୁକ୍ତୈର୍ଗୁଣୈର୍ହୀନତ୍ୱମୁଚ୍ୟତେ ଇତି । ଅତଃ କୃଷ୍ଣେଽପ୍ରାକୃତାନାଂ ଗୁଣାନାଂ ଜାୟନ୍ତାଯୁକ୍ତୈଃ । ଶକ୍ତିର୍ଧ୍ୟାନଂ ମହାଶକ୍ତିଃ ପୂର୍ଣ୍ଣାନନ୍ଦଘନାକୃତିଃ । ବ୍ରହ୍ମ ସାବର୍ଣ୍ଣିକଂ ବସ୍ତୁ ନିର୍ବିଶେଷ ମମୂର୍ତ୍ତିକଂ । ଇତି ପୂର୍ବୋପନ୍ୟସ୍ତସ୍ୟ କଥନେ ତତ୍ର ପ୍ରବୋଧନଂ । ୧୩୨ । ଚ, ଚ,

ଶ୍ରୀମନ୍ ମହାପ୍ରଭୁ ବେଦାନ୍ତସୂତ୍ରର ପ୍ରଥମ ସୂତ୍ର "ଅଥାତୋ ବ୍ରହ୍ମ ଜିଜ୍ଞାସା" ଏହି ସୂତ୍ରଠାରୁ ପ୍ରତ୍ୟେକ ସୂତ୍ରର ଶୁଦ୍ଧସିଦ୍ଧାନ୍ତଦ୍ୱାରା ଯେପରି ବ୍ୟାଖ୍ୟା କରିଥିଲେ ତାହା ଗ୍ରନ୍ଥକାର ମହାଶୟ ଏହି ପୟାରଠାରୁ ୧୩୫ ପୟାର ଦ୍ୱାରା ବ୍ୟକ୍ତ କରିଅଛନ୍ତି । ବ୍ରହ୍ମଶବ୍ଦ ଅଭିଧାନିକ ଅର୍ଥ ବୃହଦ୍ବସ୍ତୁ ଅର୍ଥାତ୍ ଅତିଶୟ ବସ୍ତୁ । ଏହି ବ୍ରହ୍ମହିଁ ଶ୍ରୀଭଗବାନ୍ । ସେ ଷଡ଼୍ବିଧ ଐଶ୍ୱର୍ଯ୍ୟପୂର୍ଣ୍ଣ ପରତତ୍ତ୍ୱ ( ଆଶ୍ରୟ-ତତ୍ତ୍ୱ ) ଅର୍ଥାତ୍ ଶ୍ରୀ ନାରାୟଣ, ତାଙ୍କର ଧାମ ( ମୂଳ ), ଅତଏବ ଶ୍ରୀକୃଷ୍ଣ, ଅର୍ଥାତ୍ ସବିଶେଷ । ୧୩୧

ଶ୍ରୀଭଗବାନଙ୍କର ଯେ ଐଶ୍ୱର୍ଯ୍ୟ ତାହା ତାହାଙ୍କର ସ୍ୱରୂପଗତ, ମାୟିକ ଜୀବତୁଲ୍ୟ ତ୍ରିଗୁଣ-ଗତ ବା ବିଷୟଗତ ନୁହେଁ । ଯେହେତୁ, ସେ ମାୟାତୀତ; ଅର୍ଥାତ୍ ଗୁଣରେ ଅତୀତ । ଏଣୁ ତାଙ୍କଠାରେ ମାୟାର ଗନ୍ଧ ସମ୍ବନ୍ଧ ନାହିଁ । ଏ ପ୍ରକାର ଯେ ଶ୍ରୀଭଗବାନ୍ ଅର୍ଥାତ୍ ବୃହତ୍ ଓ ସର୍ବଶକ୍ତିପୂର୍ଣ୍ଣ ସାକାର ବ୍ରହ୍ମ ଏହା ସମସ୍ତ ବେଦର ପ୍ରତିପାଦିତ ସମ୍ବନ୍ଧତତ୍ତ୍ୱ ବା ଆଶ୍ରୟତତ୍ତ୍ୱ । ଏ ପ୍ରକାର ସବିଶେଷ ବା ଚିତ୍ଶକ୍ତିମୟ ଭଗବାନଙ୍କର ଚିତ୍ଶକ୍ତି ଅସ୍ୱୀକାର କରି ତାଙ୍କୁ ନିର୍ବିଶେଷ କହିବାଦ୍ୱାରା କେବଳ ତାହାଙ୍କର ଅର୍ଦ୍ଧସ୍ୱରୂପ ସ୍ୱୀକାର କରାହୁଏ ଅର୍ଥାତ୍ ତାହାଙ୍କର କେବଳ ବ୍ରହ୍ମତ୍ୱସ୍ୱୀକାର କରାହୁଏ ଏବଂ ତାହାଙ୍କର ଚିତ୍ଶକ୍ତି ବା ଶକ୍ତିମାନତ୍ୱ ଅସ୍ୱୀକାର କରାହୁଏ । ଏତଦ୍ଦ୍ୱାରା ତାଙ୍କର ପୂର୍ଣ୍ଣତା ଅସ୍ୱୀକାର କରାହୁଏ ତାହାହେଲେ ତାହାଙ୍କର ଆଶ୍ରୟତତ୍ତ୍ୱ ନଷ୍ଟ ହୁଏ ।

ସମ୍ବନ୍ଧତତ୍ତ୍ୱ—ଶ୍ରୀକୃଷ୍ଣ ବେଦର ବାଚ୍ୟ, ଓ ବେଦ ଶ୍ରୀକୃଷ୍ଣଙ୍କର ବାଚକ ଅର୍ଥାତ୍ ବେଦ ଶ୍ରୀକୃଷ୍ଣଙ୍କୁ ପ୍ରତିପାଦନ କରେ । ଏହି ବାଚ୍ୟ ବାଚକହିଁ ସମ୍ବନ୍ଧ । ୧୩୨।୧୩୩ ।

ଅଭିଧେୟତତ୍ତ୍ୱ—ସମ୍ବନ୍ଧବସ୍ତୁ ପ୍ରାପ୍ତିହେତୁ ଅନୁରାଗାତ୍ମିକା କର୍ମ । ଶ୍ରୀଭଗବାନଙ୍କୁ ଅର୍ଥାତ୍ ଆଶ୍ରୟତତ୍ତ୍ୱଙ୍କୁ (ଶ୍ରୀକୃଷ୍ଣଙ୍କୁ ) ପ୍ରାପ୍ତ ହେବା କାରଣ ଶ୍ରବଣକୀର୍ତ୍ତନାଦି ସାଧନଭକ୍ତିକୁ ବେଦରେ ଅଭିଧେୟ ବୋଲି କହନ୍ତି । ଏହି ସାଧନଭକ୍ତିଦ୍ୱାରା ଶ୍ରୀକୃଷ୍ଣପ୍ରେମ ଅଙ୍କୁରିତ ହୁଏ, ଅର୍ଥାତ୍ ଶ୍ରୀକୃଷ୍ଣଙ୍କଠାରେ ରତି ଜନ୍ମେ । ୧୩୪ । ୧୩୫ ।

କୃଷ୍ଣେର ଚରଣେ ଯଦି ହୟ ଅନୁରାଗ ।
କୃଷ୍ଣବିନୁ ଅନ୍ୟତ୍ର ତାର ନାହି ରହେ ରାଗ । ୧୩୬
ପଞ୍ଚମପୁରୁଷାର୍ଥ ସେଇ ପ୍ରେମ ମହାଧନ ।
କୃଷ୍ଣେର ମାଧୁର୍ଯ୍ୟରସ କରାୟ ଆସ୍ୱାଦନ । ୧୩୭ ।
ପ୍ରେମା ହୈତେ କୃଷ୍ଣ ହୟ ନିଜଭକ୍ତବଶ ।
ପ୍ରେମା ହୈତେ ପାଇ କୃଷ୍ଣସେବାସୁଖରସ । ୧୩୮ ।
ସମ୍ବନ୍ଧ, ଅଭିଧେୟ, ପ୍ରୟୋଜନ ନାମ ।
ଏଇ ତିନ ଅର୍ଥ ସର୍ବସୂତ୍ରେ ପର୍ଯ୍ୟବସାନ । ୧୩୯ ।
ଏଇମତ ସବ ସୂତ୍ରେର ବ୍ୟାଖ୍ୟାନ ଶୁନିୟା ।
ସକଲ ସନ୍ନ୍ୟାସୀ କହେ ବିନୟ କରିୟା—୧୪୦

ବେଦମୟ-ମୂର୍ତ୍ତି ତୁମି ସାକ୍ଷାତ୍ ନାରାୟଣ ।
କ୍ଷମ ଅପରାଧ ପୂର୍ବେ ଯେ କୈନୁ ନିନ୍ଦନ । ୧୪୧ ।
ସେଇ ହୈତେ ସନ୍ନ୍ୟାସିର ଫିରିଗେଲ ମନ ।
କୃଷ୍ଣକୃଷ୍ଣନାମ ସଦା କରଯେ ଗ୍ରହଣ । ୧୪୨ ।
ଏଇମତ ତା-ସଭାର କ୍ଷମି ଅପରାଧ ।
ସଭାକାରେ କୃଷ୍ଣନାମ କରିଲ ପ୍ରସାଦ । ୧୪୩ ।
ତବେ ସବ ସନ୍ନ୍ୟାସୀ ମହାପ୍ରଭୁକେ ଲୈୟା ।
ଭିକ୍ଷା କରିଲେନ ସଭେ ମଧ୍ୟେ ବସାଇୟା । ୧୪୪ ।
ଭିକ୍ଷା କରି ମହାପ୍ରଭୁ ଆଇଲା ବାସାଘର ।
ହେନ ଚିତ୍ର ଲୀଳା କରେ ଗୌରାଙ୍ଗସୁନ୍ଦର । ୧୪୫

ଏହି ପ୍ରକାର ସାଧନଭକ୍ତି କରୁଁ କରୁଁ ଶ୍ରୀକୃଷ୍ଣଙ୍କର ଚରଣରେ ଯେତେବେଳେ ଅନୁରାଗ ଜାତହୁଏ ଅର୍ଥାତ୍ ଯେତେବେଳେ ଶ୍ରୀକୃଷ୍ଣ ବ୍ୟତୀତ ଅନ୍ୟ କୌଣସି ବିଷୟରେ ଆସକ୍ତି ରହେ ନା ସେତେବେଳେ କୃଷ୍ଣପ୍ରେମ ଲାଭହୁଏ । ସେହି କୃଷ୍ଣପ୍ରେମହିଁ ସର୍ବଶ୍ରେଷ୍ଠ ଧନ, ଅର୍ଥାତ୍ ସର୍ବଶ୍ରେଷ୍ଠ ପ୍ରାପ୍ତିର ବିଷୟ । ଏହା ବେଦକଥିତ ଧର୍ମ୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରି ପୁରୁଷାର୍ଥଠାରୁ ଶ୍ରେଷ୍ଠ । ତେଣୁ ଏହା ପଞ୍ଚମପୁରୁଷାର୍ଥ । ଯେହେତୁ ଏହା ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟରସ ଆସ୍ୱାଦନ କରାଏ, ଏହାର ଫଳ ଏହି ଯେ ଏତଦ୍ୱାରା ଶ୍ରୀକୃଷ୍ଣ ଏ ପ୍ରକାର ଭକ୍ତର ବଶୀଭୂତ ହୁଅନ୍ତି ଅର୍ଥାତ୍ ଭକ୍ତଙ୍କୁ ଛାଡ଼ି ରହିପାରନ୍ତିନାହିଁ ଏବଂ ଭକ୍ତ ମଧ୍ୟ ଶ୍ରୀକୃଷ୍ଣଙ୍କର ସେବାନନ୍ଦରସରେ ସର୍ବଦା ବୁଡ଼ି ରହନ୍ତି । ଏହା ଅର୍ଥାତ୍ ଶ୍ରୀକୃଷ୍ଣ ପ୍ରେମଲାଭ ବେଦକଥିତ ପ୍ରୟୋଜନତତ୍ତ୍ୱ । ୧୩୬ । ୧୩୭ । ୧୩୮ ।

ଶ୍ରୀମନ୍ ମହାପ୍ରଭୁ ସନ୍ନ୍ୟାସିମାନଙ୍କୁ କହିଲେ ଯେ ବେଦକଥିତ ଏହି ପ୍ରକାର ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନତତ୍ତ୍ୱ ବେଦାନ୍ତର ସମସ୍ତ ସୂତ୍ରମାନଙ୍କର ଅର୍ଥଦ୍ୱାରା ବ୍ୟକ୍ତ ହୋଇଅଛି । ଅର୍ଥାତ୍ ବେଦାନ୍ତସୂତ୍ରମାନଙ୍କଦ୍ୱାରା ଶ୍ରୀକୃଷ୍ଣ ଏକମାତ୍ର ସେବ୍ୟ, ଜୀବ ତାଙ୍କର ସେବକ ଏବଂ ଶ୍ରୀକୃଷ୍ଣ-ପ୍ରେମଲାଭ ସେବାକାର୍ଯ୍ୟର ଫଳ ଏହାହିଁ ପ୍ରତିପାଦିତ ହୋଇଅଛି । ୧୩୯ ।

ସର୍ବସୂତ୍ରେର—ଏକପଦର ଅନ୍ୟ ଏକପଦ, ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସମସ୍ତ ସୂତ୍ର-ମାନଙ୍କର । ୧୪୦ ।

ତୁମ୍ଭେ ସ୍ୱୟଂ ନାରାୟଣ, ତେଣୁ ବେଦମୟ ମୂର୍ତ୍ତି । ଅର୍ଥାତ୍ ବେଦ ନାରାୟଣଙ୍କର ଶ୍ରୀମୁଖ-ବଚନ ହେତୁ ତାହାଙ୍କ ସହିତ ଅଭେଦ ମୂର୍ତ୍ତି । ତୁମ୍ଭେ ସେହି ନାରାୟଣ ହେତୁ ମୂର୍ତ୍ତିମାନ୍ ବେଦ, ଏବଂ ସ୍ୱୟଂ ବେଦମୟମୂର୍ତ୍ତି ହେତୁ ବେଦ ଏବଂ ବେଦାନ୍ତସୂତ୍ରର ଯେଉଁ ଅର୍ଥ କଲେ ତାହାହିଁ ମୁଖ୍ୟାର୍ଥ । ଅତଏବ ଆପଣଙ୍କୁ ନାରାୟଣ ବୋଲି ଜାଣିବା ପୂର୍ବରୁ ଆପଣଙ୍କୁ ନିନ୍ଦା କରିବାଦ୍ୱାରା ଆମ୍ଭେମାନେ ଆପଣଙ୍କ ନିକଟ ଅପରାଧୀ ହୋଇଅଛୁଁ । ଆପଣ ଆମ୍ଭମାନଙ୍କର ସେହି ଅପରାଧ କ୍ଷମା କରନ୍ତୁ । ୧୪୧ ।

ସନ୍ନ୍ୟାସୀ କ୍ଷମାଭିକ୍ଷା କରିବାରୁ ପରମକୃପାଳୁ ଶ୍ରୀମନ୍ ମହାପ୍ରଭୁ ଯେ କେବଳ ସେମାନଙ୍କର ଅପରାଧ କ୍ଷମା କରିଥିଲେ ତାହା ନୁହେଁ । ସେମାନଙ୍କୁ ଶ୍ରୀକୃଷ୍ଣଙ୍କର ନାମ ଦାନଦ୍ୱାରା ସେମାନଙ୍କୁ ପୁରସ୍କୃତ କରିଥିଲେ । ଏହାହିଁ ଶ୍ରୀମନ୍ ମହାପ୍ରଭୁଙ୍କର ମହାପ୍ରଭୁତ୍ୱ ।

ଚିତ୍ର—ଅଲୌକିକ । ୧୪୫ ।

ଚନ୍ଦ୍ରଶେଖର ତପନମିଶ୍ର ସନାତନ ।
ଶୁନି ଦେଖି ଆନନ୍ଦିତ ସଭାକାର ମନ । ୧୪୬ ।
ପ୍ରଭୁକେ ଦେଖିତେ ଆଇସେ ସକଲ ସନ୍ନ୍ୟାସୀ ।
ପ୍ରଭୁର ପ୍ରଶଂସା କରେ ସବ ବାରାଣସୀ । ୧୪୭ ।
ବାରାଣସୀପୁରୀ ଆଇଲା ଶ୍ରୀକୃଷ୍ଣଚୈତନ୍ୟ ।
ପୁରୀସହ ସର୍ବଲୋକ ହୈଲ ମହାଧନ୍ୟ । ୧୪୮ ।
ଲକ୍ଷଲକ୍ଷ ଲୋକ ଆଇସେ ପ୍ରଭୁକେ ଦେଖିତେ ।
ମହାଭିଡ଼ ହୈଲ, ଦ୍ୱାରେ ନାରେ ପ୍ରବେଶିତେ ।୧୪୯
ପ୍ରଭୁ ଯବେ ଯାନ ବିଶ୍ୱେଶ୍ୱର-ଦରଶନେ ।
ଲକ୍ଷଲକ୍ଷ ଲୋକ ଆସି ମିଲେ ସେଇସ୍ଥାନେ । ୧୫୦ ।
ସ୍ନାନ କରିତେ ଯବେ ଯାନ ଗଙ୍ଗାତୀରେ ।
ତାହାଞି ସକଲ ଲୋକ ହୟ ମହାଭିଡ଼େ । ୧୫୧ ।
ବାହୁ ତୁଲି ବୋଲେ ପ୍ରଭୁ—ବୋଲ ହରିହରି ।
ହରିଧ୍ୱନି କରେ ଲୋକ ସ୍ୱର୍ଗ ମର୍ତ୍ତ୍ୟ ଭରି । ୧୫୨ ।
ଲୋକ ନିସ୍ତାରିୟା ପ୍ରଭୁର ଚଲିତେ ହୈଲ ମନ ।
ବୃନ୍ଦାବନେ ପାଠାଇଲେନ ଶ୍ରୀସନାତନ । ୧୫୩ ।
ରାତ୍ରି-ଦିବସେ ଲୋକେର ଦେଖି କୋଲାହଲ ।
ବାରାଣସୀ ଛାଡ଼ି ପ୍ରଭୁ ଆଇଲା ନୀଲାଚଲ । ୧୫୪ ।
ଏଇ ଲୀଲା କହିବ ଆଗେ ବିସ୍ତାର କରିୟା ।
ସଂକ୍ଷେପେ କହିଲ ଇହାଁ ପ୍ରସଙ୍ଗ ପାଇୟା । ୧୫୫ ।
ଏଇ ପଞ୍ଚତତ୍ତ୍ୱରୂପେ ଶ୍ରୀକୃଷ୍ଣଚୈତନ୍ୟ ।
କୃଷ୍ଣନାମ-ପ୍ରେମ ଦିୟା ବିଶ୍ୱ କୈଲ ଧନ୍ୟ । ୧୫୬ ।
ମଥୁରାତେ ପାଠାଇଲ ରୂପ ସନାତନ ।
ଦୁଇ ସେନାପତି କୈଲ ଭକ୍ତି-ପ୍ରଚାରଣ । ୧୫୭ ।
ନିତ୍ୟାନନ୍ଦ ଗୋସାଞିେ ପାଠାଇଲ ଗୌଡ଼ଦେଶେ ।
ତେଁହୋ ଭକ୍ତି ପ୍ରଚାରିଲ ଅଶେଷ-ବିଶେଷେ ।
୧୫୮ ।
ଆପନେ ଦକ୍ଷିଣଦେଶ କରିଲା ଗମନ ।
ଗ୍ରାମେଗ୍ରାମେ କୈଲ କୃଷ୍ଣନାମ-ପ୍ରଚାରଣ । ୧୫୯ ।
ସେତୁବନ୍ଧପର୍ଯ୍ୟନ୍ତ କୈଲ ଭକ୍ତିର ପ୍ରଚାର ।
କୃଷ୍ଣପ୍ରେମ ଦିୟା କୈଲ ସଭାର ନିସ୍ତାର । ୧୬୦ ।
ଏଇ ତ କହିଲ ପଞ୍ଚତତ୍ତ୍ୱେର ବ୍ୟାଖ୍ୟାନ ।
ଇହାର ଶ୍ରବଣେ ହୟ ଚୈତନ୍ୟତତ୍ତ୍ୱଜ୍ଞାନ । ୧୬୧
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ ଅଦ୍ୱୈତ ତିନଜନ ।
ଶ୍ରୀବାସ ଗଦାଧର ଆଦି ଯତ ଭକ୍ତଗଣ । ୧୬୨ ।
ସଭାକାର ପାଦପଦ୍ମେ କୋଟି ନମସ୍କାର ।
ଯୈଛେତୈଛେ କହି କିଛୁ ଚୈତନ୍ୟବିହାର ।
୧୬୩ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୧୬୪ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ ପଞ୍ଚତତ୍ତ୍ୱାଖ୍ୟାନନିରୂପଣଂ ନାମ ସପ୍ତମପରିଚ୍ଛେଦଃ ।୭।

---

"ପଞ୍ଚତତ୍ତ୍ୱାତ୍ମକଂ କୃଷ୍ଣଂ" ଏତଦୁପସଂହାରତ "ଏଇ" ଇତ୍ୟାଦି । ୧୫୬ । ବି, ଚ,

ସବବାରାଣସୀ— ବାରାଣସୀର ସମସ୍ତ ଲୋକ । ୧୪୭ ।

ପୂର୍ବକଥିତ ପଞ୍ଚତତ୍ତ୍ୱ ( ଭକ୍ତରୂପ, ଭକ୍ତସ୍ୱରୂପ, ଭକ୍ତାବତାର, ଭକ୍ତ ଓ ଭକ୍ତଶକ୍ତି ) ଏହି ପାଞ୍ଚରୂପରେ ଶ୍ରୀମନ୍ ମହାପ୍ରଭୁ ଶ୍ରୀକୃଷ୍ଣପ୍ରେମଦାନ କରି ଜଗତକୁ କୃତାର୍ଥ କଲେ । ୧୫୬ ।

ଗ୍ରନ୍ଥକାର ଏଠାରେ ପଞ୍ଚତତ୍ତ୍ୱାତ୍ମକ ଶ୍ଳୋକାର୍ଥର ଉପସଂହାର କରି କହୁଅଛନ୍ତି, ଭକ୍ତରୂପ ଶ୍ରୀଚୈତନ୍ୟ, ଭକ୍ତସ୍ୱରୂପ ଶ୍ରୀନିତ୍ୟାନନ୍ଦ, ଭକ୍ତଅବତାର ଶ୍ରୀଅଦ୍ୱୈତ ଏହି ତିନପ୍ରଭୁ; ଭକ୍ତପ୍ରଧାନ ଶ୍ରୀବାସ ଓ ଭକ୍ତଶକ୍ତିପ୍ରଧାନ ଶ୍ରୀଗଦାଧରାଦି ଭକ୍ତଗଣ ସେଉଁମାନେ କି ଶ୍ରୀକୃଷ୍ଣଙ୍କର ନାମ ପ୍ରେମଦାନଦ୍ୱାରା ଜଗତକୁ କୃତାର୍ଥ କରୁଅଛନ୍ତି, ସେମାନଙ୍କର ପାଦପଦ୍ମରେ ଗ୍ରନ୍ଥକାର କୋଟିକୋଟି ନମସ୍କାର କରି ଏହି ପରିଚ୍ଛେଦର ଉପସଂହାର କଲେ ।

୭ମ ପରିଚ୍ଛେଦ ସମାପ୍ତ ।

—•○※○•—

## ଅଷ୍ଟମ ପରିଚ୍ଛେଦଃ ।

ବନ୍ଦେ ଚୈତନ୍ୟଦେବଂ ତଂ ଭଗବନ୍ତଂ ଯଦିଚ୍ଛୟା ।
ପ୍ରସଭଂ ନୃତ୍ୟତେ ଚିତ୍ରଂ ଲେଖରଙ୍ଗେ ଜଡ଼ୋ-
ଽପ୍ୟୟମ୍ । ୧ । *

ଜୟଜୟ ଶ୍ରୀକୃଷ୍ଣଚୈତନ୍ୟ ଗୌରଚନ୍ଦ୍ର !
ଜୟଜୟ ପରମାନନ୍ଦ ଜୟ ନିତ୍ୟାନନ୍ଦ । ୧ ।
ଜୟଜୟ ଅଦ୍ୱୈତ ଆଚାର୍ଯ୍ୟ କୃପାମୟ ।
ଜୟଜୟ ଗଦାଧରପଣ୍ଡିତ ମହାଶୟ । ୨ ।
ଜୟଜୟ ଶ୍ରୀବାସାଦି ଯେତେ ଭକ୍ତଗଣ ।
ପ୍ରଣତ ହୋଇଣ ବନ୍ଦୋ ସଭାର ଚରଣ । ୩ ।
ମୂକ କବିତ୍ୱ କରେ ଯା-ସଭାର ସ୍ମରଣେ ।
ପଙ୍ଗୁ ଗିରି ଲଙ୍ଘେ, ଅନ୍ଧ ଦେଖେ ତାରାଗଣେ । ୪ ।
ଏ ସବ ନା ମାନେ ଯେଉ ପଣ୍ଡିତସକଳ ।
ତା-ସଭାର ବିଦ୍ୟାପାଠ ଭେକକୋଲାହଳ । ୫ ।
ଏ ସବ ନା ମାନେ ଯେବା—କରେ କୃଷ୍ଣଭକ୍ତି ।
କୃଷ୍ଣକୃପା ନାହି ତାରେ—ନାହି ତାର ଗତି । ୬ ।
ପୂର୍ବେ ଯୈଛେ ଜରାସନ୍ଧ ଆଦି ରାଜଗଣ ।
ବେଦଧର୍ମ କରି କରେ ବିଷ୍ଣୁର ପୂଜନ । ୭ ।
କୃଷ୍ଣ ନାହି ମାନେ, ତୋତେ 'ଦୈତ୍ୟ' କରି ମାନି ।
ଚୈତନ୍ୟ ନା ମାନିଲେ ତୈଛେ "ଦୈତ୍ୟ" ତାରେ-
ଜାନି । ୮ ।
ମୋରେ ନା ମାନିଲେ ସବ ଲୋକ ହବେ ନାଶ ।
ଏଇ ଲାଗି କୃପାର୍ଦ୍ର ପ୍ରଭୁ କରିଲା ସନ୍ନ୍ୟାସ । ୯ ।

## ଅଷ୍ଟମ ପରିଚ୍ଛେଦଃ ।

ତଂ ଭଗବନ୍ତଂ ସର୍ବୈଶ୍ୱର୍ଯ୍ୟ-ମାଧୁର୍ଯ୍ୟପୂର୍ଣ୍ଣ-ଚୈତନ୍ୟଦେବଂ ବନ୍ଦେ ଭୂମି-ସମ୍ପାତନଃ ନମସ୍କାରଂ କୁର୍ବେଽହମିତ୍ୟର୍ଥଃ । ଯଦ୍ୟସ୍ୟ ଚୈତନ୍ୟଦେବସ୍ୟ ଇଚ୍ଛୟା ସ୍ୱଚ୍ଛନ୍ଦକୃପୟା ଅୟଂ ଜଡ଼ୋଽପି ଲେଖ-ରଙ୍ଗେ ଚିତ୍ରଂ ଯଥାସ୍ୟାତ୍ ତଥା ପ୍ରସଭଂ ହଠାତ୍କାରଂ ନୃତ୍ୟତେ ନୃତ୍ୟଂ କରୋତୀତ୍ୟର୍ଥଃ ।
୧ମ ଶ୍ଳୋକଃ ।

କୋଲାହଳେନ ଭେକସ୍ୟ ସର୍ପାହ୍ୱାନବତ୍ ବୃଥାବିଦ୍ୟାପାଠେନ ମୃତ୍ୟୁମାହ୍ୱୟନ୍ତୀତ୍ୟର୍ଥଃ ।୫।ଦୈତ୍ୟ; "ଦୈତ୍ୟ ତାରେ ଜାନି" ଏତଦେବ ସହେତୁକମାହ "ମୋରେ" ଇତି ଦ୍ୱୟେନ । କୃପୟା ସନ୍ନ୍ୟାସୀ ଭୂତ୍ୱା ଯୋ ଜୀବଂ ନସ୍ତାରିତବାନ୍ ତାଦୃଶପରମୋପକାରକସ୍ୟ ଶ୍ରୀଚୈତନ୍ୟସ୍ୟାଭଜନାଦସୁରଃ ଯତଃ ସୋ ହି ପରମୋପକାରିଣଂ ବନ୍ଧୁଂ ନ ଭଜତି । ୯ । ବି, ଚ,

ମୁଁ ( ଗ୍ରନ୍ଥକାର ) ସର୍ବୈଶ୍ୱର୍ଯ୍ୟ ମାଧୁର୍ଯ୍ୟପୂର୍ଣ୍ଣ ଶ୍ରୀଚୈତନ୍ୟଦେବଙ୍କୁ ସାଷ୍ଟାଙ୍ଗରେ ପ୍ରଣାମ କରୁଅଛି । ଯାହାଙ୍କର ଇଚ୍ଛାରୂ କୃପାରୁ ମୁଁ ଅଜ୍ଞ ହୋଇ ସୁଦ୍ଧା ଲେଖକ ରୂପରେ ରଙ୍ଗସ୍ଥଳରେ ସହସା ନାନାପ୍ରକାର ନୃତ୍ୟ କରୁଅଛି । ଅର୍ଥାତ୍ ଯାହାଙ୍କର ସ୍ୱଚ୍ଛନ୍ଦ କୃପାରୁ ତାହାଙ୍କର ବିଚିତ୍ର ଲୀଳା ବର୍ଣ୍ଣନ କରିବାକୁ ମାଦୃଶ ଅଜ୍ଞବ୍ୟକ୍ତି ସୁଦ୍ଧା ସକ୍ଷମ ହୋଇଅଛି । ୧ମ ଶ୍ଳୋକାର୍ଥ ।

ଯେଉଁ ପଣ୍ଡିତାଭିମାନୀ ବ୍ୟକ୍ତିମାନେ ପଞ୍ଚତତ୍ତ୍ୱଙ୍କୁ ମାନନ୍ତିନାହିଁ ସେମାନଙ୍କ ଶାସ୍ତ୍ରଅଧ୍ୟୟନ କେବଳ ଭେକକୋଲାହଳ ସଦୃଶ ଅର୍ଥାତ୍ ଯେପରି ଭେକଗଣ କୋଳାହଳଦ୍ୱାରା ସର୍ପକୁ ଆହ୍ୱାନକରି ମୃତ୍ୟୁମୁଖରେ ପତିତ ହୁଅନ୍ତି ସେହିପରି ବୃଥା ବିଦ୍ୟାପାଠଦ୍ୱାରା କେବଳ ମୃତ୍ୟୁକୁ ଆହ୍ୱାନ କରନ୍ତି ଏ-ମାନେ । ଅର୍ଥାତ୍ ଜନ୍ମମରଣଶୀଳ ସଂସାରରୁ ସେମାନେ ଉଦ୍ଧାର ହୁଅନ୍ତିନାହିଁ । ୫ ।

ଏହି ପଞ୍ଚତତ୍ତ୍ୱଙ୍କୁ ନ ମାନି ଯେଉଁବ୍ୟକ୍ତି ଶ୍ରୀକୃଷ୍ଣଆରାଧନା କରନ୍ତି ସେ ଶ୍ରୀକୃଷ୍ଣଙ୍କର କୃପା-ଲାଭ କରନ୍ତିନାହିଁ । ତେଣୁ ସେ ସଂସାରରୁ ଉଦ୍ଧାର ହୁଅନ୍ତିନାହିଁ । ପୂର୍ବରେ ଜରାସନ୍ଧ ପ୍ରଭୃତି ରାଜା-ମାନେ ବେଦବିଧି ଅନୁସାରେ ବିଷ୍ଣୁପୂଜା କରୁଥିଲେ; କିନ୍ତୁ ଶ୍ରୀକୃଷ୍ଣଙ୍କୁ ନ ମାନିବାରୁ ଶାସ୍ତ୍ରକାରମାନେ ସେମାନଙ୍କୁ ଦୈତ୍ୟବୋଲି ଲେଖି ଅଛନ୍ତି । ସେହିପରି ଯେଉଁମାନେ ବିଷ୍ଣୁପୂଜା କରି ସୁଦ୍ଧା ଶ୍ରୀକୃଷ୍ଣ ଚୈତନ୍ୟଦେବଙ୍କୁ ନ ମାନନ୍ତି ସେମାନଙ୍କୁ ଦୈତ୍ୟ ଜ୍ଞାନ କରିବାକୁ ହେବ ।

ମନୁଷ୍ୟମାନେ ଶ୍ରୀମନ୍ ମହାପ୍ରଭୁଙ୍କୁ ନ ମାନିଲେ ସେମାନଙ୍କର ବିନାଶ ହେବ ଏହି ହେତୁ

ସନ୍ନ୍ୟାସି-ବୁଦ୍ଧ୍ୟେ ମୋରେ କରିବେ ନମସ୍କାର ।
ତଥାପି ଖଣ୍ଡିବେ ଦୁଃଖ, ପାଇବେ ନିସ୍ତାର । ୧୦ ।
ହେନ କୃପାମୟ ଚୈତନ୍ୟ ନା ଭଜେ ଯେଇ ଜନ ।
ସର୍ବୋତ୍ତମ ହେଲେ ତାରେ ଅସୁରେ ଗଣନ । ୧୧ ।
ଅତଏବ ପୁନ କହୋଁ ଊର୍ଦ୍ଧ୍ୱବାହୁ ହୈଞା ।
ଚୈତନ୍ୟ ନିତ୍ୟାନନ୍ଦ ଭଜ କୁତର୍କ ଛାଡ଼ିଞା । ୧୨ ।
ଯଦି ବା ତାର୍କିକ କହେ—ତର୍କ ସେ ପ୍ରମାଣ ।
ତର୍କଶାସ୍ତ୍ରେ ସିଦ୍ଧ ଯେଇ, ସେଇ ସେବ୍ୟମାନ । ୧୩ ।
ଶ୍ରୀକୃଷ୍ଣଚୈତନ୍ୟଦୟା କରହ ବିଚାର ।
ବିଚାର କରିଲେ ଚିତ୍ତେ ପାବେ ଚମତ୍କାର । ୧୪ ।
ବହୁଜନ୍ମ କରେ ଯଦି ଶ୍ରବଣ କୀର୍ତ୍ତନ ।
ତବୁ ନାହି ପାୟ କୃଷ୍ଣପଦେ ପ୍ରେମଧନ । ୧୫ ।

---

ଅତଏବ ତଦ୍ଭଜନେ ମୁହୁରଗ୍ରାହେବ । କୁତର୍କଃ ତଦ୍ବିରୋଧୀ ତର୍କଃ ଶ୍ରୀଚୈତନ୍ୟନିତ୍ୟାନନ୍ଦ-ଚରଣାଶ୍ରିତଃ ସନ୍ ଶ୍ରୀକୃଷ୍ଣଂ ଭଜ, ତେନୈବ ତଦ୍ଭଜନଂ ସ୍ୟାଦିତ୍ୟର୍ଥଃ । ୧୨ । ବି, ଚ,

ତର୍କେଣୈବ ଶ୍ରୀଚୈତନ୍ୟଭଜନଂ ପ୍ରତିପାଦୟନ୍ନାହ "ଯଦି ବା" ଇତି । ଶ୍ରୀଚୈତନ୍ୟ-ଦୟା-ବିଚାରେଣୈବ ତଦ୍ଭଜନଂ ସିଧ୍ୟେଦିତ୍ୟର୍ଥଃ । ୧୩-୧୪ । ବି, ଚ,

ଦୟାୟାଃ ସ୍ୱରୂପଂ ବକ୍ତୁମଶକ୍ୟତ୍ୱେନ ତତ୍କାର୍ଯ୍ୟଂ ବିଚାରୟତି "ବହୁ" ଇତ୍ୟାଦି "ଚୈତନ୍ୟ-ନିତ୍ୟାନନ୍ଦେ" ଇତ୍ୟନ୍ତଂ । ବହୁଜନ୍ମ ଇତି ପ୍ରେମ୍ନଃ ଦୁର୍ଲ୍ଲଭତ୍ୱମୁକ୍ତଂ । ୧୫ । ବି, ଚ,

---

ପରମକୃପାମୟ ଶ୍ରୀମନ୍ ମହାପ୍ରଭୁ ଲୋକ ନିସ୍ତାରପାଇଁ ସନ୍ନ୍ୟାସ ଆଶ୍ରମ ଗ୍ରହଣ କରିଥିଲେ । କାରଣ ସନ୍ନ୍ୟାସିମାନଙ୍କଠାରେ ସମସ୍ତ ବର୍ଣ୍ଣାଶ୍ରମିମାନେ ପ୍ରଣତ ହୁଅନ୍ତି । ଅତଏବ ଶ୍ରୀମନ୍ ମହାପ୍ରଭୁଙ୍କୁ ସନ୍ନ୍ୟାସୀ ଜ୍ଞାନକରି ମଧ୍ୟ ଯଦି ଲୋକେ ପ୍ରଣାମ କରନ୍ତି ତାହାହେଲେ ବି ସେମାନେ ସଂସାର-ସ୍ରୋତରୁ ଉଦ୍ଧାର ପାଇବେ । ଏ ପ୍ରକାର ପରମକାରୁଣିକ ଶ୍ରୀଚୈତନ୍ୟଦେବଙ୍କୁ ଯେ ନ ଭଜେ ସେ ବର୍ଣ୍ଣାଶ୍ରମରେ ସର୍ବୋତ୍ତମ ହେଲେ ହେଁ ବା ଅସୁରମଧ୍ୟରେ ଗଣନୀୟ । ୧୦ରୁ ୧୧ ।

ଅତଏବ ଗ୍ରନ୍ଥକାର ପୁନର୍ବାର ଊର୍ଦ୍ଧ୍ୱବାହୁହୋଇ ସମସ୍ତଙ୍କୁ ପ୍ରାର୍ଥନା କରୁଅଛନ୍ତି ଯେ, କୁତର୍କ ଅର୍ଥାତ୍ ଶ୍ରୀଚୈତନ୍ୟବିରୋଧୀମତ ତ୍ୟାଗପୂର୍ବକ ଶ୍ରୀଚୈତନ୍ୟନିତ୍ୟାନନ୍ଦଙ୍କର ଭଜନ କର; ଶ୍ରୀମନ୍ ବିଶ୍ୱନାଥଚକ୍ରବର୍ତ୍ତିଙ୍କର ମତ ଏହି ଯେ ଶ୍ରୀଚୈତନ୍ୟନିତ୍ୟାନନ୍ଦଙ୍କର ଚରଣାଶ୍ରିତ ହୋଇ ଶ୍ରୀକୃଷ୍ଣଙ୍କୁ ଭଜ । ଯେହେତୁ ଶ୍ରୀକୃଷ୍ଣନାମସଂକୀର୍ତ୍ତନ ଦ୍ୱାରା ଶ୍ରୀଚୈତନ୍ୟନିତ୍ୟାନନ୍ଦଙ୍କର ଭଜନ ହୁଏ ଏବଂ ଶ୍ରୀକୃଷ୍ଣଭଜନ କରିବାକୁ ସେମାନେ ବାରମ୍ବାର ଶିକ୍ଷା ଦେଇଅଛନ୍ତି । ଅତଏବ ଶ୍ରୀକୃଷ୍ଣଭଜନରେ ସେମାନଙ୍କର ଆଜ୍ଞା ପ୍ରତିପାଳିତହୁଏ । ୧୨ ।

ଗ୍ରନ୍ଥକାର ତର୍କବିଚାରଦ୍ୱାରା ଶ୍ରୀକୃଷ୍ଣଚୈତନ୍ୟଭଜନ ଯେ ଅବଶ୍ୟ କର୍ତ୍ତବ୍ୟ ତାହା ପ୍ରତିପାଦନନିମିତ୍ତ କହୁଅଛନ୍ତି ।

ତାର୍କିକମାନଙ୍କ ମତରେ ନ୍ୟାୟଶାସ୍ତ୍ରର ବିଚାରଦ୍ୱାରା ଯାହା ସିଦ୍ଧହୁଏ ତାହା ପ୍ରମାଣ । ଏଣୁ ନ୍ୟାୟଦ୍ୱାରା ଯେ ସେବ୍ୟବୋଲି ପ୍ରମାଣିତ ହେବେ ତାହାଙ୍କୁ ସେବା କରିବାକୁ ହେବ । ୧୩ ।

ଶ୍ରୀକୃଷ୍ଣଚୈତନ୍ୟଙ୍କର ଦୟାର ବିଷୟ ବିଚାରକଲେ ସେ ଯେ ସେବ୍ୟ ତାହା ପ୍ରମାଣିତ ହେବ । ତାହାଙ୍କ ଦୟାର ବିଷୟ ବିଚାରକଲେ ଚମତ୍କୃତ ହେବାକୁ ହୁଏ । ୧୪ ।

ସେହି ଦୟାର ବିଚାର ଉପଲକ୍ଷରେ କହୁଅଛନ୍ତି, ବହୁଜନ୍ମ ଶ୍ରୀକୃଷ୍ଣନାମ ଶ୍ରବଣ କୀର୍ତ୍ତନାଦି ସାଧନ ଭକ୍ତି କଲେ ମଧ୍ୟ ଜୀବ ଶ୍ରୀକୃଷ୍ଣଙ୍କ ଶ୍ରୀଚରଣରେ ପ୍ରେମଭକ୍ତି ଲାଭ କରି ପାରେ ନା, କାରଣ ପ୍ରେମ ସାଧନର ପରତନ୍ତ୍ର ନୁହେ । ତାହା ଶ୍ରୀକୃଷ୍ଣଙ୍କର କୃପାପରତନ୍ତ୍ର । ଏତଦ୍ଦ୍ୱାରା ପ୍ରେମଭକ୍ତି ଦୁର୍ଲ୍ଲଭତ୍ୱ ପ୍ରମାଣିତ ହେଲା । ଯଥା—ନିମ୍ନଶ୍ଳୋକ । ୧୫ ।

ଭକ୍ତିରସାମୃତସିନ୍ଧୌ, ପୂର୍ବ୍ବବିଭାଗେ,
୧ମ ଲହର୍ଯ୍ୟାମ୍ ( ୧।୨୩ )—
ଜ୍ଞାନତଃ ସୁଲଭା ମୁକ୍ତିର୍ଭୁକ୍ତିର୍ଯଜ୍ଞାଦିପୁଣ୍ୟତଃ ।
ସେୟଂ ସାଧନସାହସ୍ରୈର୍ହରିଭକ୍ତିଃ ସୁଦୁର୍ଲ୍ଲଭା ।୨।*

କୃଷ୍ଣ ଯଦି ଛୁଟେ ଭକ୍ତେ ଭୁକ୍ତି ମୁକ୍ତି ଦିୟା ।
କଭୁ ପ୍ରେମଭକ୍ତି ନା ଦେୟ, ରାଖେ ଲୁକାଇୟା ।୧୭।

ଜ୍ଞାନତ ଇତି ତନ୍ମତଂ ତାବଦ୍ବିଗୃହ୍ୟତେ, ଅତ୍ର ଜ୍ଞାନଯଜ୍ଞାଦିପୁଣ୍ୟସାସଙ୍ଗେ ଏବ ବାଚ୍ୟେ ତତ୍ପ୍ରାପ୍ତ୍ୟନ୍ତରତ୍ୱଂ ବିନା ମୁକ୍ତିଭୁକ୍ତ୍ୟୋଃ କିଞ୍ଚିଦପି ନ ସ୍ୟାତ୍ । ଅସ୍ତୁ ତାବତ୍ ସୁଲଭତ୍ୱବାର୍ତ୍ତା । ଅତଃ ସାଧନସହସ୍ରାଣାମପି ସାସଙ୍ଗତ୍ୱମେବ ଲଭ୍ୟତେ ବାକ୍ୟାର୍ଥକ୍ରମଭଙ୍ଗସ୍ୟାବଶ୍ୟପରିହାର୍ଯ୍ୟତ୍ୱାତ୍ ସହସ୍ର-ବାହୁଲ୍ୟସିଦ୍ଧେଶ୍ଚ । ତତ୍ର ଯଦି ଜ୍ଞାନଯଜ୍ଞାଦିପୁଣ୍ୟୟୋଃ ସାସଙ୍ଗତ୍ୱଂ ତଦେକନିଷ୍ଠତ୍ୱମାତ୍ରଂ ବାଚ୍ୟଂ ତଦା ତାଦୃଶାଭ୍ୟାମପି ତାଭ୍ୟାଂ ତୟୋଃ ସୁଲଭତ୍ୱଂ ନୋପପଦ୍ୟତେ । "କ୍ଲେଶୋଽଧିକତରସ୍ତେଷାମ-ବ୍ୟକ୍ତାସକ୍ତଚେତସାମିତ୍ୟାଦେଃ । କ୍ଷୁଦ୍ରାସାଭୂରିକର୍ମ୍ମାଣୋ ବାଲିଶା ବୃଦ୍ଧମାନିନ" ଇତ୍ୟାଦେଶ୍ଚ । ତସ୍ମା-ତ୍ତୟୋଃ ସାସଙ୍ଗତ୍ୱଂ ନୈପୁଣ୍ୟେନ ବିହିତତ୍ୱମିତ୍ୟବଧାର୍ୟଂ ନୈପୁଣ୍ୟଞ୍ଚ ଭକ୍ତିଯୋଗ-ସଂଯୁକ୍ତତ୍ୱ-ମିତି । ପୁରେହ ଭୂମନ୍ ବହବୋଽପି ଯୋଗିନ ଇତ୍ୟାଦେଃ ସ୍ୱର୍ଗାପବର୍ଗୟୋଃ ପୁଂସାମିତ୍ୟାଦେଶ୍ଚ ।

ତଥା ହରିଭକ୍ତିଶବ୍ଦେନ ସାଧ୍ୟରୂପୋ ରତିପର୍ଯ୍ୟାୟଃ ସ୍ୱଭାବ ଏବୋଚ୍ୟତେ "ଭକ୍ତ୍ୟାସଞ୍ଜାତୟା-ଭକ୍ତ୍ୟା" ଇତିବତ୍ । ତତଶ୍ଚ ସାଧନଶବ୍ଦେନ ହରିସମ୍ବନ୍ଧିସାଧନମେବୋଚ୍ୟତେ, ତତ୍ ସମ୍ବନ୍ଧିତ୍ୱଂ ବିନା ତଦ୍ଭାବଜନ୍ମାଯୋଗାତ୍ ତଥାଚ ସାଧନଶବ୍ଦେନ ସାକ୍ଷାତ୍ ଭଜନେ ବାଚ୍ୟେ ତତ୍ର ପୂର୍ବକ୍ରମତଃ ସାସଙ୍ଗତ୍ୱେ ଲବ୍ଧେ ସହସ୍ରବହୁତ୍ୱନିର୍ଦ୍ଦେଶେନାପର୍ଯ୍ୟବସାନାତ୍ ସ୍ୱଲ୍ପାଚ ଶ୍ରୀତସ୍ୟ କସ୍ୟାପି ତତ୍ର ଭ୍ରବ-ଭକ୍ତୌ ପ୍ରବୃତ୍ତିର୍ନ ସ୍ୟାତ୍ । ତେନ ତସ୍ୟାଃ ସୁଲଭତ୍ୱନ୍ତୁ "ଶୃଣ୍ୱତଃ ଶ୍ରଦ୍ଧୟା ନିତ୍ୟଂ ଗୃଣତଶ୍ଚ ସ୍ୱଚେଷ୍ଟିତଂ । ନାତିଦୀର୍ଘେଣ କାଲେନ ଭଗବାନ୍ ବିଶତେ ହୃଦି" । ତତ୍ରାନ୍ୱହଂ କୃଷ୍ଣକଥାଃ ପ୍ରଗାୟତାମନୁଗ୍ରହେଣା-ଶୃଣ୍ୱଂ ମନୋହରାଃ । ତାଃ ଶ୍ରଦ୍ଧୟା ମେଽନୁପଦଂ ବିଶୃଣ୍ୱତଃ ପ୍ରିୟଶ୍ରବସ୍ୟଙ୍ଗ ମମାଭବଦ୍ରତି ଇତ୍ୟାଦୌ ପ୍ରସିଦ୍ଧଂ ତସ୍ମାତ୍ ସାଧନଶବ୍ଦେନ "ନ ସାଧୟତି ମାଂ ଯୋଗ" ଇତ୍ୟାଦିବଦ୍ଦୁର୍ଦ୍ଦେବନୟୁକ୍ତକର୍ମାଦି-କମେବୋଚ୍ୟତେ । ଅତଏବ ସାଧନଶବ୍ଦ ଏବ ବିନ୍ୟସ୍ତୋ ନ ତୁ ଭଜନଶବ୍ଦଃ ।

ତସ୍ୟ ସାସଙ୍ଗତ୍ୱଂ ନାମ ଚ ତଦର୍ଥବିନିୟୋଗାତ୍ ପୂର୍ବବନ୍ନୈପୁଣ୍ୟେନ ବିହିତତ୍ୱମିତ୍ୟେବ ତତ୍ ସାହସ୍ରୈରପି ସୁଦୁର୍ଲ୍ଲଭେତ୍ୟୁକ୍ତିସ୍ତୁ ସାକ୍ଷାଦ୍ଭଜନମେବ କର୍ତ୍ତବ୍ୟତ୍ୱେନ ପ୍ରବର୍ତ୍ତୟତି । ତଥାପି କାରକାଣ୍ୟମନାସଙ୍ଗୈରିତି ଯଦୁକ୍ତଂ ତତ୍ର ଆସଙ୍ଗେନ ସାଧନନୈପୁଣ୍ୟମେବ ବୋଧିତେ ତନ୍ନୈପୁଣ୍ୟାଞ୍ଚ ସାକ୍ଷାଦ୍ଭଜନେ ପ୍ରବୃତ୍ତିଃ । ତତଶ୍ଚ ତସ୍ୟ ତାଦୃଶସାମର୍ଥ୍ୟାଽପ୍ୟନ୍ୟତ୍ର ସ୍ୱର୍ଗାଦୌ ପ୍ରବୃତ୍ତ୍ୟା ନ ବିଦ୍ୟତେ, ଆସଙ୍ଗୋ ନୈପୁଣ୍ୟଂ ଯେଷୁ ତାଦୃଶୈ ର୍ନାନାସାଧନୈରିତ୍ୟର୍ଥଃ, ତାଦୃଶନାନାସାଧନନ୍ତୁ ନେଷ୍ଟଂ "ତସ୍ମାଦେକେନ ମନସା ଭଗବାନ୍ ସାତ୍ୱତାଂପତିଃ । ଶ୍ରୋତବ୍ୟଃ କୀର୍ତ୍ତିତବ୍ୟଶ୍ଚ ଧ୍ୟେୟଃ ପୂଜ୍ୟଶ୍ଚ ନିତ୍ୟଦା" ଇତ୍ୟାଦୌ । ତସ୍ମାଦିତରମିଶ୍ରିତାପି ନ ଯୁକ୍ତେତି ସାଧ୍ୱେବ ଲକ୍ଷିତଂ ଜ୍ଞାନକର୍ମ୍ମା-ଦ୍ୟନାବୃତମିତି । ୨ୟ ଶ୍ଲୋକ ।

କୃଷ୍ଣ ଯଦି ଇତି ବାକ୍ୟେନ ପୂର୍ବସ୍ମାତ୍ ଅପି ପ୍ରେମ୍ଣ ଅତିଦୁର୍ଲଭତ୍ୱ ମୁକ୍ତଂ । ୧୭। ଚ, ଚ,

---

ଜ୍ଞାନସାଧନଦ୍ୱାରା ମୁକ୍ତି ସହଜରେ ଲଭହୁଏ । ଯଜ୍ଞାଦି ପୁଣ୍ୟକର୍ମ୍ମ ସାଧନଦ୍ୱାରା ସ୍ୱର୍ଗାଦି ଭୋଗ୍ୟବସ୍ତୁ ସହଜରେ ଲଭହୁଏ । କିନ୍ତୁ ଶ୍ରୀହରିଭକ୍ତି ( ଶ୍ରୀକୃଷ୍ଣଚରଣରେ ପ୍ରେମଭକ୍ତି ) ସହସ୍ର ପ୍ରକାର ସାଧନ କଲେ ସୁଦ୍ଧା ଲଭ ହୁଏ ନା । ୨ୟ ଶ୍ଲୋକାର୍ଥ ।

ଶ୍ରୀକୃଷ୍ଣ ଭୁକ୍ତିମୁକ୍ତିକାମୀ ଭକ୍ତମାନଙ୍କୁ ଭୁକ୍ତି ମୁକ୍ତି ଦାନକରି ନିଷ୍କୃତି ହୁଅନ୍ତି । କଦାପି ସେମାନଙ୍କୁ ପ୍ରେମଭକ୍ତି ଦାନ କରନ୍ତି ନାହିଁ । ଏହାର ଭାବ ଏହି ଯେ ଅଧିକାଂଶ ଭକ୍ତମାନେ ସକାମ,

ତଥାହି ( ଭାଃ—୫।୬।୧୮ )—

ରାଜନ୍ ପତିର୍ଗୁରୁରଲଂ ଭବତାଂ ଯଦୂନାଂ,
ଦୈବଂ ପ୍ରିୟଃ କୁଳପତିଃ କ୍ୱ ଚ କିଙ୍କରୋ ବଃ ।
ଅସ୍ତ୍ୱେବମଙ୍ଗ ଭଗବାନ୍ ଭଜତାଂ ମୁକୁନ୍ଦୋ,
ମୁକ୍ତିଂ ଦଦାତି କର୍ହିଚିତ୍ସ୍ମ ନ ଭକ୍ତିଯୋଗମ୍ ।୩।*

ହେନ ପ୍ରେମ ଶ୍ରୀଚୈତନ୍ୟ ଦିଲ ଯଥା ତଥା ।
ଜଗାଇମାଧାଇ-ପର୍ଯ୍ୟନ୍ତ, ଅନ୍ୟେର କା କଥା ।୧୭

( ହେ ) ରାଜନ୍ ! ଭଗବାନ୍‌ମୁକୁନ୍ଦଃ ( ଶ୍ରୀକୃଷ୍ଣଃ ) ଭବତାଂ ( ପାଣ୍ଡବାନାଂ ) ଯଦୂନାଂ ( ଚ ) ପତିଃ ( ପାଳକଃ ) ଗୁରୁଃ ( ଉପଦେଷ୍ଟା ) ଦୈବମ୍ ( ଉପାସ୍ୟଃ ) ପ୍ରିୟଃ ( ସୁହୃତ୍ ) କୁଳପତିଃ ( କୁଳସ୍ୟ ପତିଃ ନିୟନ୍ତା କିଂ ବହୁନା ) କ୍ୱଚ ( କଦାଚିତ୍ ଦୌତ୍ୟାଦିଷୁ ଚ ) ବଃ ( ପାଣ୍ଡବାନାଂ ) କିଙ୍କରଃ ( ଆଜ୍ଞାନୁବର୍ତ୍ତୀ ) । ଅଙ୍ଗ ( ହେ ) ଏବଂ ଅସ୍ତୁ ( ଅନ୍ୟେଷାଂ ତୁ ଭକ୍ତାନାଂ ) ଭଜତାଂ ମୁକ୍ତିଂ ଦଦାତି କର୍ହିଚିତ୍ ଭକ୍ତିଯୋଗଂ ( ପ୍ରେମାଣଂ ) ସ୍ମ ନ ( ଦଦାତି ) । ଅସ୍ୟ ଶ୍ଳୋକଃ । ହେନ ପ୍ରେମ, "ସୁଦୁର୍ଲ୍ଲଭଂ" ପ୍ରେମ । ପ୍ରେମପ୍ରାପ୍ତ୍ୟୁପାୟ ମୁପଦିଷ୍ଟ ମିତ୍ୟର୍ଥଃ । ୧୭ । ନ, ଚ,

ଅର୍ଥାତ୍ ସେମାନେ ଭୋଗୈଶ୍ୱର୍ଯ୍ୟ ବା ମୁକ୍ତିଲାଭ କରିବା ସକାଶେ ଶ୍ରୀକୃଷ୍ଣ ଭଜନ କରନ୍ତି । ସେହି-ହେତୁ ସେମାନେ ଶ୍ରୀକୃଷ୍ଣଙ୍କଠାରୁ ପ୍ରାର୍ଥିତବସ୍ତୁ ଲାଭ କରନ୍ତି । ପ୍ରେମଭକ୍ତି ନାମକ ଶ୍ରୀକୃଷ୍ଣଙ୍କର ଯେ ଅତି ଗୁପ୍ତଧନ ତାହା ସେମାନେ ପ୍ରାପ୍ତି ଇଚ୍ଛାର ସହିତ ଶ୍ରୀକୃଷ୍ଣ ଭଜନ ନ କରିବାରୁ ଶ୍ରୀକୃଷ୍ଣ ସେମାନଙ୍କୁ ପ୍ରେମଭକ୍ତି ଦାନ କରନ୍ତି ନାହିଁ । ୧୭ ।

ଶ୍ରୀ ଶୁକଦେବ ଶ୍ରୀ ପରୀକ୍ଷିତ ମହାରାଜାଙ୍କୁ କହୁଅଛନ୍ତି, ହେ ମହାରାଜ ! ଭଗବାନ୍ ଶ୍ରୀକୃଷ୍ଣ ତୁମ୍ଭ ପାଣ୍ଡବମାନଙ୍କର ଓ ଯାଦବମାନଙ୍କର ପାଳକ, ଉପଦେଷ୍ଟା, ଉପାସ୍ୟ, ସୁହୃତ୍ ଓ କୁଳପତି । ଏପରି କି ଦୌତ୍ୟ ଏବଂ ସାରଥ୍ୟାଦି କାର୍ଯ୍ୟଦ୍ୱାରା ତୁମ୍ଭ ପାଣ୍ଡବମାନଙ୍କର ଆଜ୍ଞାନୁବର୍ତ୍ତୀ ହୋଇଥିଲେ । ଆଉ ଅଧିକ କଅଣ କହିବି । ସେ ତୁମ୍ଭମାନଙ୍କର ପ୍ରେମଭକ୍ତିରେ ଏପ୍ରକାର ଅବଦ୍ଧ ଥିଲେ ମୁଦ୍ଧା ଅପରାପର ଭକ୍ତମାନଙ୍କୁ ମୁକ୍ତି ପର୍ଯ୍ୟନ୍ତ ଦାନ କରନ୍ତି । କେତେବେଳେ ତାହାଙ୍କୁ ପ୍ରେମଭକ୍ତି ଦିଅନ୍ତି ନାହିଁ ।

ଏହାର ଭାବ ଏହି ଯେ ଶ୍ରୀକୃଷ୍ଣ ସ୍ୱକୀୟ ନିତ୍ୟ ବୈକୁଣ୍ଠପରିକର ପାଣ୍ଡବ ଓ ଯାଦବମାନଙ୍କୁ ପ୍ରକଟଲୀଳା ଉପଲକ୍ଷେ ଏହି ଧରାଧାମରେ ଅବତୀର୍ଣ୍ଣ କରାଇ ସେମାନଙ୍କର ସ୍ୱାଭାବିକ ପ୍ରେମଭକ୍ତିଦ୍ୱାରା ସେମାନଙ୍କର ବଶ ହୋଇଥିଲେ । ଏ ପ୍ରକାର ହେଲେହେଁ ଶ୍ରୀକୃଷ୍ଣ ଜଗତର ଅପରାପର ଭକ୍ତମାନଙ୍କୁ, ସେମାନଙ୍କର ଅଭୀଷ୍ଟ ଫଳ ଚରମସ୍ଥାନୀୟ ମୁକ୍ତି ଦାନକରନ୍ତି । କିନ୍ତୁ ତାହାଙ୍କର ଅତି ନିଗୂଢ଼ ପ୍ରେମଭକ୍ତି ତାହାଙ୍କୁ ଦାନ କରନ୍ତି ନାହିଁ । ଅର୍ଥାତ୍ ଯଦି କେହି ମୁକ୍ତିଲାଭରେ ଅନିଚ୍ଛୁକ ବିଶୁଦ୍ଧ ଅନୁରାଗୀ ଭକ୍ତ ହୁଅନ୍ତି କେବଳ ସେମାନଙ୍କୁ ସେ ପ୍ରେମଭକ୍ତି ଦାନ କରନ୍ତି । ଏ ପ୍ରକାର ଭକ୍ତ-ସଂଖ୍ୟା ଅତି ବିରଳ ।

ଏତଦ୍ଦ୍ୱାରା ପ୍ରକାଶ ହେଲା ଯେ ଶ୍ରୀକୃଷ୍ଣ ପ୍ରେମଫଳ କାମନାଜନ୍ୟସାଧନ ଭକ୍ତିର ପକ୍ଷରେ ଯେ କେବଳ ଦୁର୍ଲ୍ଲଭ ଏମନ୍ତ ନୁହେ, ଶ୍ରୀକୃଷ୍ଣଙ୍କର ଅତିଗୁପ୍ତଧନ ହେତୁ ମଧ୍ୟ ଅତିଦୁର୍ଲ୍ଲଭ । ଅସ୍ୟ ଶ୍ଳୋକାର୍ଥ ।

ପୂର୍ବୋକ୍ତ ପ୍ରକାର ବର୍ଣ୍ଣିତ ଅତି ଦୁର୍ଲ୍ଲଭ ଯେ ଶ୍ରୀକୃଷ୍ଣପ୍ରେମ ତାହା ଶ୍ରୀମନ୍ ମହାପ୍ରଭୁ ପାତ୍ରାପାତ୍ର ବିଚାର ନ କରି ଇଚ୍ଛାନୁସାରେ ଦାନ କରିବାକୁ ଲାଗିଲେ । ଏପରି କି ମହାପାପୀ ଗୋ-ବ୍ରାହ୍ମଣ-ହିଂସକ ମଦ୍ୟପାୟୀ ଦସ୍ୟୁ ଜଗାଇ ମାଧାଇ, ଯେମାନେ କି ଜଗତରେ ଏପରି ପାପନାହିଁ ଯାହା ସେମାନେ କରି ନାହାନ୍ତି, ସେମାନଙ୍କୁ ମଧ୍ୟ ଶ୍ରୀମନ୍ ମହାପ୍ରଭୁ ସେହି ଶ୍ରୀକୃଷ୍ଣପ୍ରେମ ଦାନ କରିଅଛନ୍ତି । ଅପରର କଥା କଅଣ, ଶ୍ରୀମନ୍ ମହାପ୍ରଭୁଙ୍କ ତୁଲ୍ୟ ଏପରି ଦାତାଶିରୋମଣି ଆଉ କିଏ ? । ୧୭ ।

ସ୍ୱତନ୍ତ୍ର ଈଶ୍ୱର—ପ୍ରେମ-ନିଗୂଢ଼-ଭଣ୍ଡାର ।
ବିଲାଇଲ ଯାରେ ତାରେ, ନା କୈଲ ବିଚାର ।୧୮।
ଅଦ୍ୟାପିହ ଦେଖ—ଚୈତନ୍ୟନାମ ଯେଇ ଲୟ ।
କୃଷ୍ଣପ୍ରେମେ ପୁଲକାଶ୍ରୁ ବିହ୍ୱଳ ସେ ହୟ ।୧୯।
'ନିତ୍ୟାନନ୍ଦ' ବଲିତେ ହୟ କୃଷ୍ଣପ୍ରେମୋଦୟ ।
ଆଉଲାୟ ସକଲ-ଅଙ୍ଗ, ଅଶ୍ରୁ-ଗଙ୍ଗା ବୟ ।୨୦।

କୃଷ୍ଣନାମ କରେ ଅପରାଧେର ବିଚାର ।
'କୃଷ୍ଣ' ବଲିଲେ ଅପରାଧୀର ନା ହୟ ବିକାର ।୨୧।
ତଥାହି (ଭାଃ—୨।୩।୨୪)—
ତଦଶ୍ମସାରଂ ହୃଦୟଂ ବତେଦଂ,
ଯଦ୍‌ଗୃହ୍ୟମାଣୈର୍ହରିନାମଧେୟୈଃ ।
ନ ବିକ୍ରିୟେତାଥ ଯଦା ବିକାରୋ,
ନେତ୍ରେ ଜଲଂ ଗାତ୍ରରୁହେଷୁ ହର୍ଷଃ ।୪। *

ତତ୍ ହୃଦୟମ୍ (ଏବ) ଅଶ୍ମସାରଂ (ଅଶ୍ମବତ୍ ପାଷାଣବତ୍ ସାରେଣବଲେନ କାଠିନ୍ୟ ଯସ୍ୟ ତତ୍, ଅଥବା ଅଶ୍ମସାରଂ ଲୌହମୟମେବ ଯତ୍ ତତ୍) ବତ ଯତ୍ (ଯସ୍ମାତ୍) ଗୃହ୍ୟମାଣୈଃ (କୀର୍ତ୍ତ୍ୟମାନୈରପି) ହରିନାମଧେୟୈଃ ଇଦଂ (ହୃଦୟଂ) ନ ବିକ୍ରିୟେତ, ଅଥ (କାଶ୍ଚିଦ୍ୟ ଯଦା) ବିକାରଃ (ଭବତ, ତଦା) ନେତ୍ରେ ଜଲମ୍ (ଅଶ୍ରୂଃ) ଗାତ୍ରରୁହେଷୁ ହର୍ଷଃ (ପ୍ରେମାଙ୍କୁର ସମ୍ଭବତୀତ, ଅତ ଗମ୍ଭୀରଣାଂ, ମହାନୁଭାବାନାଂ ହରିନାମଭିଃ ଚିତ୍ତଦ୍ରବେଽପି ବହିରଶ୍ରୁପୁଲକାଦି-ନାମଦର୍ଶନାତ୍ ଅଭ୍ୟାସ-ପରାଣାଂ ପିଚ୍ଛିଳଚିତ୍ତାନାଂ ସତ୍ତ୍ୱାଭାସାଦ୍ୟଦ୍ରବେଽପି ଦର୍ଶନାଚ୍ଚ । ଅତଏବ ବହୁ ନାମ ଗ୍ରହଣେଽପି ଚିତ୍ତଦ୍ରବାଭାବ ଏବ ନାମାପରାଧଲିଙ୍ଗଂ ନ ତାବତ୍ ଅଶ୍ରୁପୁଲକାଦ୍ୟଭାବ ଇତି ତାତ୍ପର୍ଯ୍ୟଂ ସାକଲ୍ୟେନ ଚିତ୍ତଦ୍ରବେ ଅଶ୍ରୁପୁଲକାଦିକଂ ସମ୍ଭବତ)। ୪ର୍ଥ ଶ୍ଳୋକଃ ।

ଏଠାରେ ଏପରି ସଂଶୟ ହୋଇପାରେ ଯେ ଯେଉଁ ପ୍ରେମଧନକୁ ଶ୍ରୀକୃଷ୍ଣ ରୂପରେ ଅଧିକାରୀ ଭକ୍ତମାନଙ୍କୁ ଦାନ ନ କରି ଗୋପନ କରିଥିଲେ ଏ ପ୍ରକାର ସୁଦୁର୍ଲ୍ଲଭ ପ୍ରେମଧନକୁ ଶ୍ରୀଚୈତନ୍ୟରୂପରେ ଜଗାଇ ମାଧାଇ ପରି ଅତି ଅଯୋଗ୍ୟ ଲୋକମାନଙ୍କୁ କି ସକାଶେ ଦାନ କଲେ । ଏହି ସଂଶୟ ଛେଦନପାଇଁ ଗ୍ରନ୍ଥକାର କହୁଅଛନ୍ତି ଯେ ଶ୍ରୀମନ୍ ମହାପ୍ରଭୁ ଈଶ୍ୱର ହେତୁ ସ୍ୱତନ୍ତ୍ର ଅତଏବ ସେ ଅତିଦୁର୍ଲ୍ଲଭ ନିଗୂଢ଼ ପ୍ରେମଭଣ୍ଡାରର ଦ୍ୱାର ଉଦ୍‌ଘାଟନକରି ପାତ୍ରାପାତ୍ର ବିଚାର ନ କରି ଯାକୁ ତାକୁ ବଣ୍ଟନ କଲେ ।

ଏହାହିଁ ଶ୍ରୀମନ୍ ମହାପ୍ରଭୁଙ୍କର ପରମ ସ୍ୱତନ୍ତ୍ରତା ଓ ପରମଦୟାଳୁତାର ପରାକାଷ୍ଠା ଏବଂ ଏହାହିଁ ପ୍ରେମର ଅସାଧନ ଚିନ୍ତାମଣିତ୍ୱର ପରିଚୟ ।୧୮।

ଅଦ୍ୟାପିହ—ଏବେ ମଧ୍ୟ । ଅର୍ଥାତ୍ ଏହି ଗ୍ରନ୍ଥ ରଚନା ସମୟରେ ।୧୯।

ଆଉଲାୟ—ବିବଶ ହୁଏ ।୨୦।

ଯେଉଁ ବ୍ୟକ୍ତି କୃଷ୍ଣନାମାପରାଧ କରେ ସେ କୃଷ୍ଣନାମ ଗ୍ରହଣ କଲେ ସୁଦ୍ଧା ତାହାର ଚିତ୍ତରେ ସାତ୍ତ୍ୱିକ ବିକାରମାନ ଉଦୟ ହୁଅନ୍ତି ନାହିଁ, ଯେହେତୁ କୃଷ୍ଣନାମ ନାମାପରାଧର ଅପରାଧ ବିଚାର କରନ୍ତି ।୨୧।

ବହୁ ହରିନାମ ଗ୍ରହଣ କରି ସୁଦ୍ଧା ଯେଉଁ ବ୍ୟକ୍ତିର ଚିତ୍ତଦ୍ରବ ନ ହୁଏ, ସେ ବ୍ୟକ୍ତିର ଚିତ୍ତ ଲୌହସାର ବା ବଜ୍ରଦ୍ୱାରା ନିର୍ମ୍ମିତ । ଚିତ୍ତଦ୍ରବ ହେଲେ, ତାହାର ବାହ୍ୟକ ଲକ୍ଷଣ ଅଶ୍ରୁ, ହର୍ଷଆଦ ଅଷ୍ଟସାତ୍ତ୍ୱିକ ବିକାର ଜାତହୁଏ ।

କୌଣସି ଗମ୍ଭୀର ପ୍ରକୃତି ଭକ୍ତଙ୍କର ନାମକୀର୍ତ୍ତନ ହେତୁ ଚିତ୍ତଦ୍ରବ ହେଲେ ସୁଦ୍ଧା ସମୟ ସମୟ ବାହ୍ୟକ ବିକାର ଦେଖାଯାଏ ନାହିଁ । କୌଣସି କୌଣସି ବ୍ୟକ୍ତିର କୌଣସି କୌଣସି ବାହ୍ୟିକ ବିକାର ଦେଖାଗଲେ ସୁଦ୍ଧା ତାହାର ଚିତ୍ତ ପ୍ରକୃତରେ ଦ୍ରବୀଭୂତ ହୋଇ ନ ଥାଏ । ୪ର୍ଥ ଶ୍ଳୋକାର୍ଥ ।

ଏକ କୃଷ୍ଣନାମେ କରେ ସର୍ବପାପନାଶ ।
ପ୍ରେମେର କାରଣ ଭକ୍ତି କରେନ ପ୍ରକାଶ । ୨୨ ।
ପ୍ରେମେର ଉଦୟେ ହୟ ପ୍ରେମେର ବିକାର ।
ସ୍ୱେଦ-କମ୍ପ-ପୁଲକାଦି ଗଦ୍‌ଗଦାଶ୍ରୁଧାର । ୨୩ ।
ଅନାୟାସେ ଭବକ୍ଷୟ, କୃଷ୍ଣେର ସେବନ ।
ଏକ କୃଷ୍ଣନାମେର ଫଳେ ପାଇ ଏତ ଧନ । ୨୪
ହେନ କୃଷ୍ଣନାମ ଯଦି ଲୟ ବହୁବାର ।
ତବେ ଯଦି ପ୍ରେମ ନହେ, ନହେ ଅଶ୍ରୁଧାର । ୨୫ ।
ତବେ ଜାନି ଅପରାଧ ତାହାତେ ପ୍ରଚୁର ।
କୃଷ୍ଣନାମବୀଜ ତାହେ ନା ହୟ ଅଙ୍କୁର । ୨୬ ।
ଚୈତନ୍ୟ-ନିତ୍ୟାନନ୍ଦେ ନାହି ଏ-ସବ-ବିଚାର ।
ନାମ ଲୈତେ ପ୍ରେମ ଦେନ, ବହେ ଅଶ୍ରୁଧାର । ୨୭ ।
ସ୍ୱତନ୍ତ୍ର ଈଶ୍ୱର ପ୍ରଭୁ ଅତ୍ୟନ୍ତ ଉଦାର ।
ତାଁରେ ନା ଭଜିଲେ କଭୁ ନା ହୟ ନିସ୍ତାର । ୨୮ ।

ପ୍ରେମେର କାରଣ ଭକ୍ତି—ଯେଉଁ ଭକ୍ତି ହେତୁ ପ୍ରେମ ଲଭନ୍ତି । ୨୨ ।
ଚିତ୍ତରେ ପ୍ରେମ ଉଦୟ ହେଲେ ତାହାର ବାହ୍ୟିକ ବିକାର ଅଶ୍ରୁ,କମ୍ପାଦି ଜାତହୁଏ । ୨୩ ।
ଅନାୟାସେ—ବିନାପରିଶ୍ରମରେ । ପ୍ରାର୍ଥନା ନ କଲେ ମଧ୍ୟ । ୨୪ ।
ତାହାତେ—ସେହି ମନୁଷ୍ୟଚିତ୍ତରେ । ୨୬ ।

କୃଷ୍ଣନାମରେ ଅପରାଧ ବିଚାର ସମ୍ବନ୍ଧରେ କହି, ଗ୍ରନ୍ଥକାର ଶ୍ରୀଚୈତନ୍ୟ ନିତ୍ୟାନନ୍ଦଙ୍କ ନାମ ମାହାତ୍ମ୍ୟ କହୁଅଛନ୍ତି ।

ଶ୍ରୀଚୈତନ୍ୟ ନିତ୍ୟାନନ୍ଦଙ୍କର ନାମ, ନାମ ଗ୍ରହଣର ବିଚାର କରନ୍ତି ନାହିଁ । ଅର୍ଥାତ୍ ଶ୍ରୀଚୈତନ୍ୟ ନିତ୍ୟାନନ୍ଦଙ୍କର ନାମ ଗ୍ରହଣମାତ୍ରେ ନାମାପରାଧର ପ୍ରେମ ନା ହୁଏ ଏବଂ ତାହାଙ୍କର ବାହ୍ୟିକ ବିକାର ଅଶ୍ରୁକମ୍ପାଦି ଜାତହୁଏ । ୨୭ ।

ଏହି ପରିଚ୍ଛେଦର ଉପସଂହାରପ୍ରସଙ୍ଗରେ ଗ୍ରନ୍ଥକାର ପାଠକଙ୍କ ମନକୁ ଦୃଢ଼ କରି କହିଅଛନ୍ତି, ଯେ ଭକ୍ତିଦ୍ୱାରା ଯେ ସେବ୍ୟମାନ ବୋଲି ସିଦ୍ଧାନ୍ତ ତାହାଙ୍କୁ ସେବା କରିବାକୁ ହେବ ଏବଂ ଗ୍ରନ୍ଥକାର ଚନ୍ଦ୍ରଶେଖରପ୍ରସଙ୍ଗରେ ତାର୍କିକସହିତ ଶ୍ରୀଚୈତନ୍ୟଙ୍କର ଦୟାଳୁତାର ବର୍ଣ୍ଣନ ଆରମ୍ଭକରି ପରବର୍ତ୍ତୀ ପୟାରମାନଙ୍କରେ ୨୬ ପୟାର ପର୍ଯ୍ୟନ୍ତ ଉପମା ଦ୍ୱାରା ଶ୍ରୀଚୈତନ୍ୟ ଯେ ପରମଦୟାଳୁ ତାହା ଦେଖାଇଅଛନ୍ତି । ଅର୍ଥାତ୍ ଶ୍ରୀଚୈତନ୍ୟ ପାତ୍ରାପାତ୍ର ବିଚାର-ଶେଷରେ ପରମ ପାଷଣ୍ଡ ଶ୍ରୀଜଗାଇ ମାଧାଇ ପର୍ଯ୍ୟନ୍ତ ପ୍ରେମଦାନ କରିଅଛନ୍ତି ଏବଂ ତାହାଙ୍କର ନାମ ଯେ ଗ୍ରହଣକରେ ସେ ପ୍ରେମ ପାଏ । ୨୭ ପୟାରରେ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କୁ ଭଜନ କରିବାର ଉପଦେଶ ଦିଆଯାଇଅଛି । ନାମ ନାମୀ ଅଭିନ୍ନତ୍ୱ ହେତୁ ନାମ ନାମୀ ଉଭୟଙ୍କର ଗୁଣଦ୍ୱାରା ଦୟାଳୁତାର ପରାକାଷ୍ଠା ଦେଖାଯାଉଅଛି । ଏ ପ୍ରକାର ଦୟାଳୁ ଯେ ଶ୍ରୀମନ୍ ମହାପ୍ରଭୁ ଯେ କି ସ୍ୱତନ୍ତ୍ର ଈଶ୍ୱର ଏବଂ ଅତ୍ୟନ୍ତ ଉଦାର ଅର୍ଥାତ୍ ଅଦୋଷଦର୍ଶୀ ଓ ଦୟାସାଗର ତାଙ୍କୁ ଭଜନ ନ କଲେ କେହି ଉଦ୍ଧାରପାଇବେନାହିଁ । ୨୮ ।

ଶ୍ରୀମନ୍ ମହାପ୍ରଭୁଙ୍କୁ ଭଜନ କରିବାକୁହେଲେ ତାଙ୍କର ଲୀଳା ଜାଣିବାକୁ ହେବ । କାରଣ ଲୀଳା ନ ଜାଣିଲେ ଭଜନରେ ଶ୍ରଦ୍ଧା ହୁଏ ନାହିଁ । ତେଣୁ ଗ୍ରନ୍ଥକାର କହୁଅଛନ୍ତି ଯେ ଚୈତନ୍ୟମଙ୍ଗଳ ଗ୍ରନ୍ଥ ଯାହାକି ଚୈତନ୍ୟଲୀଳାର ବ୍ୟାସ ଶ୍ରୀଲବୃନ୍ଦାବନ ଦାସ ରଚନା କରିଅଛନ୍ତି ତାହା ପାଠ କର । ଏହି ଗ୍ରନ୍ଥ ପାଠ କଲେ ଶ୍ରୀଚୈତନ୍ୟଙ୍କର ମହିମା ଜାଣି ପାରିବ ଏବଂ ହୃଦ୍ଗତ ସବୁ ଅମଙ୍ଗଳ ନାଶ ହେବ । ଏହି ଗ୍ରନ୍ଥରୁ ଶ୍ରୀଚୈତନ୍ୟ ଓ ଶ୍ରୀନିତ୍ୟାନନ୍ଦଙ୍କର ମହିମା ଏବଂ ଶ୍ରୀକୃଷ୍ଣଭକ୍ତି ସିଦ୍ଧାନ୍ତର ପରାକାଷ୍ଠା ଜାଣି ପାରିବ । ଶ୍ରୀମଦ୍ଭାଗବତରେ ଯେ ସମସ୍ତ ଭକ୍ତି ସିଦ୍ଧାନ୍ତ ଉଲ୍ଲେଖ ଅଛି, ସେମାନଙ୍କର ନିର୍ଯ୍ୟାସ ବିଚାର ସକଳ ଏହି ଗ୍ରନ୍ଥରେ ଉଲ୍ଲେଖ କରାହୋଇ-

ଅରେ ମୂଢ଼ଲୋକ ! ଶୁନ ଚୈତନ୍ୟମଙ୍ଗଲ ।
ଚୈତନ୍ୟ-ମହିମା ଯାତେ ଜାନିବେ ସକଲ । ୨୯ ।
କୃଷ୍ଣଲୀଳା ଭାଗବତେ କହେ ବେଦବ୍ୟାସ ।
ଚୈତନ୍ୟଲୀଲାର ବ୍ୟାସ—ବୃନ୍ଦାବନଦାସ । ୩୦ ।
ବୃନ୍ଦାବନଦାସ କୈଲ ଚୈତନ୍ୟମଙ୍ଗଲ ।
ଯାହାର ଶ୍ରବଣେ ନାଶେ ସର୍ବ ଅମଙ୍ଗଲ । ୩୧ ।
ଚୈତନ୍ୟ-ନିତାଇର ଯାତେ ଜାନିୟେ ମହିମା ।
ଯାତେ ଜାନି କୃଷ୍ଣଭକ୍ତିସିଦ୍ଧାନ୍ତେର ସୀମା । ୩୨ ।
ଭାଗବତେ ଯତ ଭକ୍ତି ସିଦ୍ଧାନ୍ତେର ସାର ।
ଲେଖିଅଛେନ ଇହାଁ ଜାନି କରିୟା ଉଦ୍ଧାର । ୩୩ ।
ଚୈତନ୍ୟମଙ୍ଗଲ ଶୁନେ ଯଦି ପାଷଣ୍ଡୀ-ଯବନ ।
ସେହ ମହାବୈଷ୍ଣବ ହୟ ତତକ୍ଷଣ । ୩୪ ।
ମନୁଷ୍ୟେ ରଚିତେ ନାରେ ଐଛେ ଗ୍ରନ୍ଥ ଧନ୍ୟ ।
ବୃନ୍ଦାବନଦାସ-ମୁଖେ ବକ୍ତା ଶ୍ରୀଚୈତନ୍ୟ । ୩୫ ।
ବୃନ୍ଦାବନଦାସପଦେ କୋଟି ନମସ୍କାର ।
ଐଛେ ଗ୍ରନ୍ଥ କରି ତେଁହୋ ତାରିଲ ସଂସାର । ୩୬ ।
ନାରାୟଣୀ—ଚୈତନ୍ୟେର ଉଚ୍ଛିଷ୍ଟ-ଭାଜନ ।
ତାଁର ଗର୍ଭେ ଜନ୍ମିଲ ଶ୍ରୀଦାସବୃନ୍ଦାବନ । ୩୭ ।
ତାଁର ଅଦ୍ଭୁତ ଚୈତନ୍ୟଚରିତ-ବର୍ଣ୍ଣନ ।
ଯାହାର ଶ୍ରବଣେ ଶୁଦ୍ଧ କୈଲ ତ୍ରିଭୁବନ । ୩୮ ।
ଅତଏବ ଭଜ ଲୋକ ଚୈତନ୍ୟ-ନିତ୍ୟାନନ୍ଦ ।
ଖଣ୍ଡିବେ ସଂସାରଦୁଃଖ, ପାବେ ପ୍ରେମାନନ୍ଦ । ୩୯ ।

ଅଛି । ଏହି ଗ୍ରନ୍ଥ ଯଦି ନାସ୍ତିକ ଓ ଯବନମାନେ ସୁଦ୍ଧା ଶୁଣନ୍ତି ତାହେଲେ ସେମାନେ ପରମ ବୈଷ୍ଣବ ହୁଅନ୍ତି । ଏହାର କାରଣ ଏହି ଯେ, ଏହି ଗ୍ରନ୍ଥ ଶ୍ରୀମନ୍ ବୃନ୍ଦାବନଦାସ ନିଜଶକ୍ତିରେ ରଚନା କରିନାହାନ୍ତି । ଶ୍ରୀଚୈତନ୍ୟ ତାଙ୍କୁ ଅବଲମ୍ବନକରି ତାଙ୍କମୁଖରେ ବକ୍ତା ହୋଇ ଏହି ଗ୍ରନ୍ଥ ରଚନାକରାଇଅଛନ୍ତି ।

ଚୈତନ୍ୟମଙ୍ଗଲ—ଆଧୁନିକ ଶ୍ରୀ ଚୈତନ୍ୟ ଭାଗବତ ।

ଶ୍ରୀ ଲୋଚନଦାସ ଠାକୁରଙ୍କ ବିରଚିତ ଶ୍ରୀଚୈତନ୍ୟମଙ୍ଗଳଗ୍ରନ୍ଥ ପ୍ରକାଶହେବାପୂର୍ବରୁ ଶ୍ରୀ ବୃନ୍ଦାବନ ଦାସଙ୍କ ରଚିତ ଗ୍ରନ୍ଥର ନାମ ଶ୍ରୀଚୈତନ୍ୟମଙ୍ଗଳ ଥିଲା । ଶ୍ରୀବୃନ୍ଦାବନଦାସ ଶ୍ରୀଚୈତନ୍ୟ ଲୀଳାର ଆଦିବ୍ୟାସ ହେତୁରୁ ପରେ ବୃନ୍ଦାବନବାସୀ ଶ୍ରୀବୈଷ୍ଣବଗଣ ସେ ଗ୍ରନ୍ଥର ନାମ ଶ୍ରୀଚୈତନ୍ୟ-ଭାଗବତ ରଖିଲେ ଏବଂ ସେହି ନାମରେ ଉକ୍ତ ଗ୍ରନ୍ଥ ଅଦ୍ୟାପି ପ୍ରଚଳିତ । ଏହି ଗ୍ରନ୍ଥ (ଶ୍ରୀଚୈତନ୍ୟ ଚରିତାମୃତ) ରଚନା ସମୟରେ ଉକ୍ତ ଗ୍ରନ୍ଥର ମୂଳନାମ ପରିବର୍ତ୍ତିତ ହୋଇ ନ ଥିବାରୁ ଗ୍ରନ୍ଥକାର ଶ୍ରୀଲ କବିରାଜଗୋସ୍ୱାମୀ ଚୈତନ୍ୟମଙ୍ଗଲ ନାମ ଏହି ଗ୍ରନ୍ଥରେ ଉଲ୍ଲେଖ କରି ଅଛନ୍ତି । ୨୯ରୁ୩୫ ।

ଏବଂବିଧ ଶ୍ରୀଚୈତନ୍ୟପ୍ରିୟ ଶ୍ରୀଚୈତନ୍ୟଲୀଳାର ଆଦିବ୍ୟାସ ଶ୍ରୀଳ ବୃନ୍ଦାବନଦାସଙ୍କୁ କବିରାଜଗୋସ୍ୱାମୀ ପ୍ରଣାମପୂର୍ବକ ତାହାଙ୍କର କିଞ୍ଚିତ୍ ପରିଚୟ ଦେଉଅଛନ୍ତି । ଅର୍ଥାତ୍ ସେ ଶ୍ରୀନାରାୟଣୀ ଦେବୀଙ୍କର ପୁତ୍ର, ଯେଉଁ ନାରାୟଣୀଦେବୀ କି ଶ୍ରୀଚୈତନ୍ୟଙ୍କର ପରମ କୃପାପାତ୍ରୀ ହେତୁ ତାହାଙ୍କର ଉଚ୍ଛିଷ୍ଟ ଭୋଜନ କରିବାର ଅଧିକାରିଣୀ ହୋଇଥିଲେ ।

ଏ ବିଷୟ ଆଦିଲୀଳା ସପ୍ତଦଶ ପରିଚ୍ଛେଦରେ ବିବୃତହେବ ।

ଏବଂବିଧ ଯେ ଶ୍ରୀଲବୃନ୍ଦାବନଦାସ, ଯାହାଙ୍କ ମୁଖରେ ଶ୍ରୀଚୈତନ୍ୟ ବକ୍ତାରୂପରେ ଶ୍ରୀଚୈତନ୍ୟଭାଗବତ ରଚନା କରାଇଅଛନ୍ତି, ସେହି ଗ୍ରନ୍ଥ ଶ୍ରବଣକରି ସମସ୍ତେ ଧନ୍ୟ ହେବେ । ଅତଏବ ଏ ଗ୍ରନ୍ଥବର୍ଣ୍ଣିତ ଶ୍ରୀଚୈତନ୍ୟ ନିତ୍ୟାନନ୍ଦଲୀଳା ଶ୍ରବଣକରି ଶ୍ରୀଚୈତନ୍ୟ ନିତ୍ୟାନନ୍ଦଙ୍କୁ ଭଜନା କଲେ, ମୁଖ୍ୟ ଫଳରୂପରେ ପ୍ରେମାନନ୍ଦ ଲାଭ କରିବ ଏବଂ ଆନୁଷଙ୍ଗିକରେ ସଂସାରଦୁଃଖରୁ ଉଦ୍ଧାର ପାଇବ । ୩୬ରୁ୩୯ ।

ବୃନ୍ଦାବନଦାସ କୈଲ ଚୈତନ୍ୟମଙ୍ଗଳ ।
ତାହାତେ ଚୈତନ୍ୟଲୀଳା ବର୍ଣ୍ଣିଲ ସକଳ । ୪୦ ।
ସୂତ୍ର କରି ସବ ଲୀଳା କରିଲ ଗ୍ରନ୍ଥନ ।
ପାଛେ ବିସ୍ତାରିୟା ତାହାର କୈଲ ବିବରଣ । ୪୧ ।
ଚୈତନ୍ୟଚନ୍ଦ୍ରେର ଲୀଳା ଅନନ୍ତ ଅପାର ।
ବର୍ଣ୍ଣିତେ ବର୍ଣ୍ଣିତେ ଗ୍ରନ୍ଥ ହଇଲ ବିସ୍ତାର । ୪୨ ।
ବିସ୍ତାର ଦେଖିୟା କିଛୁ ସଙ୍କୋଚ ହୈଲ ମନ ।
ସୂତ୍ରଧୃତ କୋନ ଲୀଲା ନା କୈଲ ବର୍ଣ୍ଣନ । ୪୩
ନିତ୍ୟାନନ୍ଦଲୀଳାବର୍ଣ୍ଣନେ ହଇଲ ଆବେଶ ।
ଚୈତନ୍ୟେର ଶେଷ ଲୀଲା ରହିଲ ଅବଶେଷ । ୪୪
ସେଇ ସବ ଲୀଲାର ଶୁନିତେ ବିବରଣ ।
ବୃନ୍ଦାବନବାସୀ ଭକ୍ତେର ଉତ୍କଣ୍ଠିତ ମନ । ୪୫ ।
ବୃନ୍ଦାବନେ କଳ୍ପଦ୍ରୁମେ ସୁବର୍ଣ୍ଣ-ସଦନ ।
ମହାଯୋଗପୀଠ ତାହାଁ ରତ୍ନସିଂହାସନ । ୪୬ ।
ତାତେ ବସିଆଛେ ସଦା ବ୍ରଜେନ୍ଦ୍ରନନ୍ଦନ ।
ଶ୍ରୀଗୋବିନ୍ଦଦେବ-ନାମ ସାକ୍ଷାତ୍ ମଦନ । ୪୭ ।
ରାଜସେବା ହୟ ତାହାଁ ବିଚିତ୍ରପ୍ରକାର ।
ଦିବ୍ୟସାମଗ୍ରୀ ଦିବ୍ୟ-ବସ୍ତ୍ର ଅଲଙ୍କାର । ୪୮ ।
ସହସ୍ର ସେବକ ସେବା କରେ ଅନୁକ୍ଷଣ ।
ସହସ୍ରବଦନେ ସେବା ନା ଯାୟ ବର୍ଣ୍ଣନ । ୪୯ ।
ସେବାର ଅଧ୍ୟକ୍ଷ—ଶ୍ରୀପଣ୍ଡିତ ହରିଦାସ ।
ତାଁର ଯଶ-ଗୁଣ ସର୍ବଜଗତେ ପ୍ରକାଶ । ୫୦ ।
ସୁଶୀଲ ସହିଷ୍ଣୁ ଶାନ୍ତ ବଦାନ୍ୟ ଗମ୍ଭୀର ।
ମଧୁର ବଚନ ମଧୁର ଚେଷ୍ଟା ଅତି ଧୀର । ୫୧ ।
ସଭାର ସମ୍ମାନକର୍ତ୍ତା, କରେନ ସଭାର ହିତ ।
କୌଟିଲ୍ୟ ମାତ୍ସର୍ଯ୍ୟ ହିଂସା ନା ଜାନେ ତାଁର
ଚିତ୍ତ । ୫୨ ।
କୃଷ୍ଣେର ଯେ ସାଧାରଣ ସଦ୍‌ଗୁଣ ପଞ୍ଚାଶ ।
ସେଇ ସବ ଗୁଣ ତାଁର ଶରୀରେ ନିବାସ । ୫୩ ।

---

ଯଦ୍ୟପି ଶ୍ରୀଚୈତନ୍ୟ-ମଙ୍ଗଳେ ନାଥଂ ଏତଦ୍‌ଗ୍ରନ୍ଥପ୍ରଣୟନମିତ୍ୟାହ "ବୃନ୍ଦାବନ" ଇତ୍ୟାଦି । ତଦ୍‌ବର୍ଣ୍ଣିତ ଶ୍ରୀଚୈତନ୍ୟଲୀଳାବିଶେଷପୂରଣାର୍ଥ ଏଷଃ ପ୍ରଣୀତ ଇତ୍ୟେତତ୍ ପ୍ରକରଣାଭିପ୍ରାୟଃ । ୪୦ । ଚ୍ଚ, ଚ,

---

ଶ୍ରୀଚୈତନ୍ୟଭାଗବତ ଗ୍ରନ୍ଥରେ କି ଶ୍ରୀଚୈତନ୍ୟ ନିତ୍ୟାନନ୍ଦଙ୍କର ଲୀଳା ସୁନ୍ଦରରୂପେ ବର୍ଣ୍ଣିତ ହୋଇଅଛି, ତାହା ଥାଇଁ କି ସକାଶେ କବିରାଜଗୋସ୍ୱାମୀ ଏହି ଶ୍ରୀଚୈତନ୍ୟଚରିତାମୃତ ଗ୍ରନ୍ଥ ରଚନା କଲେ । ତାହାର କାରଣ ନିମ୍ନଲିଖିତ ପୟାରମାନଙ୍କରେ ଗ୍ରନ୍ଥକାର ବିବୃତ କରିଅଛନ୍ତି । ଅର୍ଥାତ୍ ଶ୍ରୀଲବୃନ୍ଦାବନ ଦାସ ଅପାର ଶ୍ରୀଚୈତନ୍ୟଲୀଳାମଧ୍ୟରୁ ଯାହା ସୂତ୍ରରୂପରେ ଉଲ୍ଲେଖ କରିଥିଲେ, ସେ ସମସ୍ତ ବର୍ଣ୍ଣନା କରୁଁ ଶ୍ରୀନିତ୍ୟାନନ୍ଦଲୀଳାବର୍ଣ୍ଣନରେ ଆବିଷ୍ଟ ହୋଇ ଗ୍ରନ୍ଥ ସମାପ୍ତ କଲେ, ତେଣୁ ତାହାଙ୍କର ସୂତ୍ରଲିଖିତ କେତେକ ଲୀଳା ବର୍ଣ୍ଣିତ ନ ହୋଇ ଅବଶେଷ ରହିଗଲା । ସେହି ସମସ୍ତ ବର୍ଣ୍ଣନ କରିବା କାରଣ ଶ୍ରୀବୃନ୍ଦାବନବାସୀ ବୈଷ୍ଣବମାନଙ୍କର ଅନୁରୋଧକ୍ରମେ ଶ୍ରୀଲ କବିରାଜଗୋସ୍ୱାମୀ ଏ ଗ୍ରନ୍ଥ ରଚନା କଲେ । ଅର୍ଥାତ୍ ଏହି ଶ୍ରୀଚୈତନ୍ୟଚରିତାମୃତ ଗ୍ରନ୍ଥ ଶ୍ରୀଚୈତନ୍ୟ ଭାଗବତର ଉପସଂହାର । ଏହି ଦୁଇ ଗ୍ରନ୍ଥ ଏକତ୍ରରେ ଏକଗ୍ରନ୍ଥ । ୪୦ ।

ତାଁହା—ଶ୍ରୀବୃନ୍ଦାବନସ୍ଥ ଯୋଗପୀଠରେ ଶ୍ରୀରାଧାଗୋବିନ୍ଦଦେବଙ୍କର । ୪୮ ।
ସଦ୍‌ଗୁଣପଞ୍ଚାଶ—ମଧ୍ୟଲୀଳା ସନାତନଶିକ୍ଷା ପରିଚ୍ଛେଦରେ ବର୍ଣ୍ଣିତ ହେବ ।
ତାଁର—ଶ୍ରୀପଣ୍ଡିତ ହରିଦାସଙ୍କର । ୫୩ ।

ତଥାହି ( ଭାଃ—୫।୧୮।୧୨ )—
ଯସ୍ୟାସ୍ତି ଭକ୍ତିର୍ଭଗବତ୍ୟକିଞ୍ଚନା,
ସର୍ବୈର୍ଗୁଣୈସ୍ତତ୍ର ସମାସତେ ସୁରାଃ ।
ହରାବଭକ୍ତସ୍ୟ କୁତୋ ମହଦ୍‌ଗୁଣା,
ମନୋରଥେନାସତି ଧାବତୋ ବହିଃ । ୫ । *
ପଣ୍ଡିତଗୋସାଞିର ଶିଷ୍ୟ ଅନନ୍ତ-ଆଚାର୍ଯ୍ୟ ।
କୃଷ୍ଣପ୍ରେମମୟ-ତନୁ ଉଦାର ମହା ଆର୍ଯ୍ୟ । ୫୪ ।
ତାହାର ଅନନ୍ତ ଗୁଣ କେ କରୁ ପ୍ରକାଶ ? ।
ତାଙ୍କ ପ୍ରିୟ ଶିଷ୍ୟ ହିଟେ ପଣ୍ଡିତ ହରିଦାସ । ୫୫ ।
ଚୈତନ୍ୟ-ନିତ୍ୟାନନ୍ଦେ ତାଙ୍କ ପରମ ବିଶ୍ୱାସ ।
ଚୈତନ୍ୟଚରିତେ ତାଁର ପରମ ଉଲ୍ଲାସ । ୫୬ ।
ବୈଷ୍ଣବେର ଗୁଣଗ୍ରାହୀ ନା ଦେଖୟେ ଦୋଷ ।
କାୟମନୋବାକ୍ୟେ କରେ ବୈଷ୍ଣବ-ସନ୍ତୋଷ । ୫୭ ।
ନିରନ୍ତର ଶୁନେ ତେହେଁ ଚୈତନ୍ୟ ମଙ୍ଗଳ ।
ତାହାର ପ୍ରସାଦେ ଶୁନେନ ବୈଷ୍ଣବ ସକଳ । ୫୮ ।
କଥାୟ ସଭା ଉଜ୍ଜ୍ୱଳ କରେନ ଯେନ ପୂର୍ଣ୍ଣଚନ୍ଦ୍ର ।
ନିଜଗୁଣାମୃତେ ବାଢ଼ାୟ ବୈଷ୍ଣବ-ଆନନ୍ଦ । ୫୯ ।
ତେହେଁ ବଡ଼ କୃପା କରି ଆଜ୍ଞା କୈଲ ମୋରେ ।
ଗୌରାଙ୍ଗେର ଶେଷଲୀଲା ବର୍ଣ୍ଣିବାର ତରେ । ୬୦ ।
କାଶୀଶ୍ୱରଗୋସାଞିର ଶିଷ୍ୟ ଗୋବିନ୍ଦଗୋସାଞି ।
ଗୋବିନ୍ଦେର ପ୍ରିୟସେବକ ତାଁର ସମ ନାହି । ୬୧ ।
ଯାଦବାଚାର୍ଯ୍ୟ-ଗୋସାଞି ଶ୍ରୀରୂପେର ସଙ୍ଗୀ ।
ଚୈତନ୍ୟଚରିତେ ତେହେଁ ଅତି ବଡ଼ ରଙ୍ଗୀ । ୬୨ ।
ପଣ୍ଡିତଗୋସାଞିର ଶିଷ୍ୟ ଭୂଗର୍ଭଗୋସାଞି ।
ଗୌରକଥା ବିନା ଆର ମୁଖେ ଅନ୍ୟ ନାହି । ୬୩ ।
ତାଁର ଶିଷ୍ୟ ଗୋବିନ୍ଦପୂଜକ ଚୈତନ୍ୟଦାସ ।
ମୁକୁନ୍ଦାନନ୍ଦ ଚକ୍ରବର୍ତ୍ତୀ ପ୍ରେମୀ କୃଷ୍ଣଦାସ । ୬୪ ।
ଆଚାର୍ଯ୍ୟଗୋସାଞିର ଶିଷ୍ୟ ଚକ୍ରବର୍ତ୍ତୀ ଶିବାନନ୍ଦ ।
ନିରବଧି ତାଁର ଚିତ୍ତେ ଶ୍ରୀଚୈତନ୍ୟ-
ନିତ୍ୟାନନ୍ଦ । ୬୫ ।
ଆର ଯତ ବୃନ୍ଦାବନବାସୀ ଭକ୍ତଗଣ ।
ଶେଷଲୀଲା ଶୁନିତେ ସଭାର ହୈଲ ମନ । ୬୬ ।
ମୋତେ ଆଜ୍ଞା କରିଲା ସବେ କରୁଣା କରିୟା ।
ତାଁ-ସଭାର ବୋଲେ ଲିଖି ନିର୍ଲଜ୍ଜ ହଇୟା । ୬୭ ।

ଭଗବତି ଯସ୍ୟ ( ଜନସ୍ୟ ) ଅକିଞ୍ଚନା ( ନିଷ୍କାମା ) ଭକ୍ତିଃ ଅସ୍ତି ( ବିଦ୍ୟତେ ) ତତ୍ର ( ତତ୍ପ୍ରସାଦେନ ତତ୍ର ) ତତ୍ର ( ତସ୍ମିନ୍ ଜନେ ) ସୁରାଃ ( ଭଗବଦାଦୟୋ ଦେବାଃ ମୁନୟଶ୍ଚ ) ସର୍ବୈଃ ଗୁଣୈଃ ( ଧର୍ମଜ୍ଞାନବୈରାଗ୍ୟାଦିଭିଃ ସହ ଯଦୃଚ୍ଛୟା ଏବ ) ସମାସତେ ( ସମ୍ୟକ୍ ବଶୀଭୂୟ ଆସତେ ତିଷ୍ଠନ୍ତି ) । ମନୋରଥେନ ବହିଃ ଅସତି ( ସ୍ୱର୍ଗାଦିବିଷୟସୁଖେ ) ଧାବତଃ ହରାବଭକ୍ତସ୍ୟ ( ହରୌ ଭକ୍ତିହୀନଜନସ୍ୟ ) କୁତଃ ମହଦ୍‌ଗୁଣାଃ ( ମହତାଂ ଗୁଣାଃ ଧର୍ମଜ୍ଞାନବୈରାଗ୍ୟାଦୟଃ ସମ୍ଭବନ୍ତି, ଗୃହାଦ୍ୟାସକ୍ତସ୍ୟ ହରିଭକ୍ତ୍ୟସମ୍ଭବାତ୍ ) । ୫ମ ଶ୍ଲୋକଃ ।

ଶ୍ରୀଉଗ୍ରଶ୍ରବା ଶ୍ରୀଭଗବାନଙ୍କୁ ଲକ୍ଷ୍ୟକରି କହୁଅଛନ୍ତି, ଯେଉଁ ବ୍ୟକ୍ତିଙ୍କର ଶ୍ରୀଭଗବାନଙ୍କଠାରେ ନିଷ୍କାମଭକ୍ତି ଜନ୍ମେ ସେହି ଭକ୍ତି-ପ୍ରସାଦରୁ ସେହି ବ୍ୟକ୍ତିଙ୍କ ଶରୀରରେ ଶ୍ରୀଭଗବାନ୍ ଅନୁଚରଦେବତା ଓ ମୁନିମାନଙ୍କସହ ଧର୍ମଜ୍ଞାନବୈରାଗ୍ୟାଦିଗୁଣମାନଙ୍କସହ ସମ୍ୟକ୍‌ରୂପେ ବଶୀଭୂତ ହୋଇ ବାସ କରନ୍ତି । ଅର୍ଥାତ୍ ସେହି ଭାଗ୍ୟବାନ୍ ବ୍ୟକ୍ତିଙ୍କ ଶରୀରରେ ଶ୍ରୀଭଗବାନ୍, ଦେବତା ଓ ମୁନିମାନଙ୍କର ତାବତୀୟ ସଦ୍‌ଗୁଣମାନ ପ୍ରକାଶ ପାଆନ୍ତି । ଶ୍ରୀଭଗବାନଙ୍କର ଅଭକ୍ତ ଅର୍ଥାତ୍ ବହିର୍ମୁଖ ବ୍ୟକ୍ତିର ମନ ସର୍ବଦା ଅକିଞ୍ଚିତ୍କର ବିଷୟସୁଖଲାଳସାରେ ଭ୍ରମଣ କରୁଥିବାହେତୁ ସେ ଶ୍ରୀହରିଭକ୍ତର ମହଦ୍‌ଗୁଣମାନ ପାଆନ୍ତି ନାହିଁ । ୫ମ ଶ୍ଲୋକାର୍ଥ ।

ପଣ୍ଡିତ ଗୋସାଇଁ—ଶ୍ରୀଗଦାଧର ପଣ୍ଡିତ ଗୋସାଇଁ । ୫୪ ।
ଆଚାର୍ଯ୍ୟ ଗୋସାଇଁ—ଶ୍ରୀମଦ୍ ଅଦ୍ୱୈତାଚାର୍ଯ୍ୟ । ୬୫ ।
ନିର୍ଲଜ୍ଜ—ଗ୍ରନ୍ଥକାରଙ୍କର ଦୈନ୍ୟଉକ୍ତି । ୬୭ ।
ମଦନ ଗୋପାଳ— ଶ୍ରୀବୃନ୍ଦାବନସ୍ଥ ଶ୍ରୀମଦନମୋହନ ଦେବ ।

ବୈଷ୍ଣବେର ଆଜ୍ଞା ପାଞା ଚଲ୍ତ ଅନ୍ତରେ ।
ମଦନଗୋପାଲେ ଗେଲଙ୍ ଆଜ୍ଞା ମାଗିବାରେ ।୬୮
ଦର୍ଶନ କରିଞା କୈଲୁଁ ଚରଣବନ୍ଦନ ।
ଗୋସାଞ୍ଚିଦାସ ପୂଜାରୀ କରେନ ଚରଣ-
ସେବନ ।୬୯ ।
ପ୍ରଭୁର ଚରଣେ ଯଦି ଆଜ୍ଞା ମାଗିଲ ।
ପ୍ରଭୁକଣ୍ଠ ହୈତେ ମାଲା ଖସିଞା ପଡ଼ିଲ । ୭୦ ।
ସବବୈଷ୍ଣବଗଣ ହରିଧ୍ୱନି ଦିଲ ।
ଗୋସାଞ୍ଚିଦାସ ଆନି ମାଲା ମୋର ଗଲେ ଦିଲ ।୭୧
ଆଜ୍ଞାମାଲା ପାଞା ମୋର ହଇଲ ଆନନ୍ଦ ।
ତାହାଁଇ କରିଲ ଏଇ ଗ୍ରନ୍ଥେର ଆରମ୍ଭ । ୭୨ ।
ଏଇ ଗ୍ରନ୍ଥ ଲେଖାଞ୍ଚ ମୋରେ ମଦନମୋହନ ।
ଆମାର ଲିଖନ ଯେନ ଶୁକେର ପଠନ । ୭୩ ।
ସେଇ ଲିଖି, ମଦନଗୋପାଲ ଯେ ଲିଖାଞ୍ଚ ।
କାଷ୍ଠେର ପୁତ୍ତଲୀ ଯେନ କୁହକେ ନାଚାଞ୍ଚ । ୭୪ ।
କୁଲାଧିଦେବତା ମୋର ମଦନମୋହନ ।
ଯାଁର ସେବକ—ରଘୁନାଥ ରୂପ ସନାତନ । ୭୫ ।
ବୃନ୍ଦାବନଦାସେର ପାଦପଦ୍ମ କରି ଧ୍ୟାନ ।
ତାଁର ଆଜ୍ଞା ଲଞା ଲିଖି, ଯାହାତେ କଲ୍ୟାଣ । ୭୬ ।
ଚୈତନ୍ୟଲୀଲାତେ ବ୍ୟାସ—ବୃନ୍ଦାବନଦାସ ।
ତାଁର କୃପା ବିନା ଅନ୍ୟେ ନା ହୟ ପ୍ରକାଶ । ୭୭ ।
ମୂର୍ଖ ନୀଚ କ୍ଷୁଦ୍ର ମୁଞି ବିଷୟଲାଲସ ।
ବୈଷ୍ଣବାଜ୍ଞା-ବଲେ କରି ଏତେକ ସାହସ । ୭୮ ।
ଶ୍ରୀରୂପ-ରଘୁନାଥ-ଚରଣେର ଏଇ ବଲ ।
ଯାଁର ସ୍ମୃତେ ସିଦ୍ଧ ହୟ ବାଞ୍ଛିତ ସକଲ । ୭୯ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୮୦ ।
ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ ଗ୍ରନ୍ଥକରଣେ ବୈଷ୍ଣବାଜ୍ଞା ରୂପକଥନଂ ନାମ ଅଷ୍ଟମ ପରିଚ୍ଛେଦଃ ।

—:○:—

## ନବମ ପରିଚ୍ଛେଦଃ ।

ତଂ ଶ୍ରୀମତ୍କୃଷ୍ଣଚୈତନ୍ୟଦେବଂ ବନ୍ଦେ ଜଗଦ୍-
ଗୁରୁମ୍ ।
ଯସ୍ୟାନୁକମ୍ପୟା ଶ୍ୱାପି ମହାବ୍ଧିଂ ସନ୍ତରେତ୍
ସୁଖମ୍ ।୧

ଗେଲାମ—ପାଶକୁ ଗଲି । ୬୮ ।
କୈଲୁଁ—କଲି । ୬୯ ।
ତାହାଇଁ—ଶ୍ରୀମଦନମୋହନଙ୍କ ମନ୍ଦିରରେ । ୭୨ ।
ଅଷ୍ଟମ ପରିଚ୍ଛେଦ ସମାପ୍ତ ।
—○:※:○❀○:※:○—

## ଆଦିଲୀଳା—ନବମ ପରିଚ୍ଛେଦ ।

ଜଗଦ୍‌ଗୁରୁମ୍ (ସାକ୍ଷାତ୍ ତସ୍ୟ ଉପଦେଷ୍ଟୃତ୍ୱା-ସମ୍ଭବେଽପି ତତ୍ତ୍ୱଧର୍ମୋଦ୍ଭାବନୟା ସର୍ବେଷାମପି ଜୀବାନାଂ ପରମଗୁରୁତ୍ୱଂ ଆତ୍ମନୋଽପି ସ ଏବ ଗୁରୁଃ ଇତି ଅଭିପ୍ରେତ୍ୟ ଲିଖତି ଜଗଦ୍‌ଗୁରୁମ୍ ଇତି, ଯଦ୍ୱା ସର୍ବତ୍ରୈବ ଭଗବନ୍ନାମସଂକୀର୍ତ୍ତନପ୍ରଧାନଭକ୍ତିପ୍ରବର୍ତ୍ତନାତ୍ ଜଗତାଂ-ଗୁରୁଂ ଉପଦେଷ୍ଟାରଂ ) ତଂ ( ପ୍ରସିଦ୍ଧଂ ) ଶ୍ରୀମତ୍ କୃଷ୍ଣଚୈତନ୍ୟଦେବଂ ( ଶ୍ରୀମାନ୍ ରାଧାଭାବଦ୍ୟୁତମାଂସ୍ତାସୌ କୃଷ୍ଣଚୈତନ୍ୟଦେବଶ୍ଚେତି ତଂ) ବନ୍ଦେ । ଯସ୍ୟ (ଶ୍ରୀଚୈତନ୍ୟସ୍ୟ) ଅନୁକମ୍ପୟା (କୃପୟା) ଶ୍ୱା (କୁକ୍କୁରଃ) ଅପି ମହାବ୍ଧିଂ (ସମୁଦ୍ରଂ) ସୁଖଂ (ଯଥାସ୍ୟାତ୍ ତଥା) ସନ୍ତରେତ୍ ( ସନ୍ତରଣେନ ତତ୍ପାରଂ ଗଚ୍ଛେତ୍) । ୧ମ ଶ୍ଲୋକଃ ।

ଯାହାଙ୍କର କୃପାଲାଭହେଲେ କୁକ୍କୁର ସୁଦ୍ଧା ଅନାୟାସରେ ମହାସମୁଦ୍ର ପାରି ହୁଏ, ସେହି ଜଗଦ୍‌ଗୁରୁ ଶ୍ରୀମତ୍ କୃଷ୍ଣଚୈତନ୍ୟଦେବଙ୍କୁ ପ୍ରଣାମ କରେଁ । ୧ମ ଶ୍ଲୋକାର୍ଥ ।

ଜୟଜୟ ଶ୍ରୀକୃଷ୍ଣଚୈତନ୍ୟ ଗୌରଚନ୍ଦ୍ର ।
ଜୟାଦ୍ୱୈତଚନ୍ଦ୍ର ଜୟ ଜୟ ନିତ୍ୟାନନ୍ଦ । ୧ ।
ଜୟ ଜୟ ଶ୍ରୀବାସାଦି ଗୌରଭକ୍ତଗଣ ।
ସର୍ବାଭୀଷ୍ଟ-ପୂର୍ତ୍ତିହେତୁ ଯାହାର ସ୍ମରଣ । ୨ ।
ଶ୍ରୀରୂପ, ସନାତନ, ଭଟ୍ଟ ରଘୁନାଥ ।
ଶ୍ରୀଜୀବ, ଗୋପାଳ ଭଟ୍ଟ, ଦାସ ରଘୁନାଥ । ୩ ।
ଏ-ସବ-ପ୍ରସାଦେ ଲିଖି ଚୈତନ୍ୟଲୀଳାଗୁଣ ।
ଜାନି ବା ନା ଜାନି—କରି ଆପନ ଶୋଧନ । ୪ ।
ମାଲାକାରଃ ସ୍ୱୟଂ କୃଷ୍ଣ ପ୍ରେମାମରତରୁଃ ସ୍ୱୟମ୍ ।
ଦାତା ଭୋକ୍ତା ତତ୍ଫଳାନାଂ ଯସ୍ତଂ ଚୈତନ୍ୟ-
ମାଶ୍ରୟେ । ୨ ।

ପ୍ରଭୁ କହେ - ଆମି 'ବିଶ୍ୱମ୍ଭର'-ନାମ ଧରି ।
ନାମ ସାର୍ଥକ ହୟ, ଯଦି ପ୍ରେମେ ବିଶ୍ୱ ଭରି । ୫ ।
ଏତ ଚିନ୍ତି ଲୈଲ ପ୍ରଭୁ ମାଲାକାର-ଧର୍ମ୍ମ ।
ନବଦ୍ୱୀପେ ଆରମ୍ଭିଲ ଫଳୋଦ୍ୟାନ-କର୍ମ୍ମ । ୬ ।
ଶ୍ରୀଚୈତନ୍ୟ ମାଲାକାର ପୃଥିବୀତେ ଆନି ।
ଭକ୍ତି-କଳ୍ପତରୁ ରୁପିଲା ସିଞ୍ଚି ଇଚ୍ଛା-ପାନି । ୭ ।
ଜୟ ଶ୍ରୀମାଧବପୁରୀ କୃଷ୍ଣପ୍ରେମପୂର ।
ଭକ୍ତିକଳ୍ପତରୁର ତେଁହୋ ପ୍ରଥମ ଅଙ୍କୁର । ୮ ।
ଶ୍ରୀଈଶ୍ୱରପୁରୀରୂପେ ଅଙ୍କୁର ପୁଷ୍ଟ ହୈଲ ।
ଆପନେ ଚୈତନ୍ୟମାଲୀ ସ୍କନ୍ଧ ଉପଜିଲ । ୯ ।

ଯଃ (ଶ୍ରୀଚୈତନ୍ୟଃ) ସ୍ୱୟଂ ( ଏବ ) ମାଲାକାରଃ (ଉଦ୍ୟାନରଚୟିତା) ସ୍ୱୟଂ (ଏବ) କୃଷ୍ଣପ୍ରେମକଳ୍ପତରୁଃ ( ଶ୍ରୀକୃଷ୍ଣପ୍ରେମୈବ କଳ୍ପବୃକ୍ଷଃ) ତତ୍ଫଳାନାଂ ( କଳ୍ପବୃକ୍ଷସ୍ୟ ପ୍ରେମରୂପାଣାଂ ଫଳାନାଂ) ଦାତା ଭୋକ୍ତା ( ଚ, ସ୍ୱୟମେବ ) ତଂ ଚୈତନ୍ୟମ୍ ଆଶ୍ରୟେ (ଶରଣଂ ବ୍ରଜାମି) ଇତି ଶ୍ଲୋକଃ ।

ଯେଉଁ ଶ୍ରୀଚୈତନ୍ୟ ଶ୍ରୀକୃଷ୍ଣପ୍ରେମକଳ୍ପବୃକ୍ଷର ରୋପଣକାରୀ ମାଳୀ, ସ୍ୱୟଂ ସେହି କଳ୍ପବୃକ୍ଷ, ତାହାର ଫଳଦାତା ଓ ଭୋକ୍ତା, ତାହାଙ୍କର ମୁଁ ଶରଣାପନ୍ନ ହେଲି । ଇତି ଶ୍ଲୋକାର୍ଥ ।

ବିଶ୍ୱମ୍ଭର—ଯେ ବିଶ୍ୱକୁ ଧାରଣ ଓ ପୋଷଣ କରନ୍ତି । ଏହି ଶବ୍ଦର ବିଶଦ୍ ବ୍ୟାଖ୍ୟା ଶ୍ରୀଳ ଗ୍ରନ୍ଥକାର ଏହି ଆଦିଲୀଳା ଚତୁର୍ଦ୍ଦଶ ପରିଚ୍ଛେଦରେ ପ୍ରକାଶ କରିଅଛନ୍ତି ।

ଶ୍ରୀମନ୍ ମହାପ୍ରଭୁ ମନେମନେ ବିଚାର କଲେ ଯେ ମୁଁ ଯଦି କୃଷ୍ଣପ୍ରେମଦ୍ୱାରା ଏହି ବିଶ୍ୱକୁ ପୂର୍ଣ୍ଣକରେଁ ତେବେ ମୋର "ବିଶ୍ୱମ୍ଭର" ନାମ ସାର୍ଥକହେବ । ୫ ।

ଏହିପରି ଚିନ୍ତାକରି ଶ୍ରୀମନ୍ ମହାପ୍ରଭୁ ସ୍ୱୟଂ ମାଳୀ ହୋଇ ଶ୍ରୀନବଦ୍ୱୀପଧାମରେ ପ୍ରେମଫଳ-ବୃକ୍ଷର ଉଦ୍ୟାନ ରଚନାକଲେ । ୬ ।

ଶ୍ରୀମନ୍ ମହାପ୍ରଭୁ ଭକ୍ତିକଳ୍ପବୃକ୍ଷ ଆଣି ପୃଥିବୀରେ ରୋପଣକରି ତାହା ତାହାଙ୍କର ଇଚ୍ଛାରୂପ ଜଳଦ୍ୱାରା ବର୍ଦ୍ଧନ କଲେ । ୭ ।

ଶ୍ରୀମନ୍ ମାଧବେନ୍ଦ୍ରପୁରୀ ଯେ କି ଶ୍ରୀକୃଷ୍ଣପ୍ରେମରେ ପୂର୍ଣ୍ଣ, ସେ ଏହି ଭକ୍ତିକଳ୍ପବୃକ୍ଷର ପ୍ରଥମ ଅଙ୍କୁର । ଏହି ଶ୍ରୀମାଧବେନ୍ଦ୍ରପୁରୀ ଗୋସ୍ୱାମୀ ପରମପ୍ରେମିକଭକ୍ତ । ଏହାଙ୍କର ଶିଷ୍ୟବର୍ଗ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ, ଶ୍ରୀମନ୍ ରଙ୍ଗପୁରୀ ଓ ଶ୍ରୀମନ୍ ଈଶ୍ୱରପୁରୀ ଆଦି ସମସ୍ତେ ଶ୍ରୀଗୁରୁଦେବଙ୍କ ନ୍ୟାୟ ପରମ ପ୍ରେମିକ ଭକ୍ତ । ଶ୍ରୀମନ୍ ମହାପ୍ରଭୁ ଏହି ଶ୍ରୀମନ୍ ଈଶ୍ୱରପୁରୀଙ୍କର ଶିଷ୍ୟ । ଏହି ଶ୍ରୀମନ୍ ମାଧବେନ୍ଦ୍ରପୁରୀ ଯେ କି ମହାପ୍ରଭୁଙ୍କର ପରମଗୁରୁ ତାହାଙ୍କର କେତେକ ଲୀଳାଚରିତ ଏହି ଗ୍ରନ୍ଥର ମଧ୍ୟଲୀଳା ଚତୁର୍ଥ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି । ୮ ।

ଶ୍ରୀଳ ମାଧବେନ୍ଦ୍ରପୁରୀ ରୂପୀ ଭକ୍ତିବୃକ୍ଷର ପ୍ରଥମ ଅଙ୍କୁର ଶ୍ରୀଳ ଈଶ୍ୱରପୁରୀ ରୂପରେ ପୁଷ୍ଟ ହେଲେ ଓ ତାହା ଶ୍ରୀଳ ମହାପ୍ରଭୁରୂପରେ ମୂଳସ୍କନ୍ଧ (କାଣ୍ଡ ବା ଗଣ୍ଡି) ହେଲେ ।

ଶ୍ରୀଈଶ୍ୱରପୁରୀଙ୍କ ଲୀଳାଚରିତ ଏହି ଗ୍ରନ୍ଥର ଆଦିଲୀଳା ୧୭ ପରିଚ୍ଛେଦରେ ବ୍ୟକ୍ତ ହୋଇଅଛି, ଏବଂ ଶ୍ରୀଚୈତନ୍ୟଭାଗବତରେ ମଧ୍ୟ ବର୍ଣ୍ଣିତ ଅଛି । ୯ ।

ନିଜାଚିନ୍ତ୍ୟଶକ୍ତ୍ୟେ ମାଳୀ ହୈଞା ସ୍କନ୍ଧ ହୟ ।
ସକଲ ଶାଖାର ସେଇ ସ୍କନ୍ଧ ମୂଲାଶ୍ରୟ । ୧୦ ।
ପରମାନନ୍ଦପୁରୀ, ଆର କେଶବ ଭାରତୀ ।
ବ୍ରହ୍ମାନନ୍ଦପୁରୀ ଆର ବ୍ରହ୍ମାନନ୍ଦଭାରତୀ । ୧୧ ।
ବିଷ୍ଣୁପୁରୀ, କେଶବପୁରୀ, ପୁରୀ କୃଷ୍ଣାନନ୍ଦ ।
ଶ୍ରୀନୃସିଂହତୀର୍ଥ, ଆର ପୁରୀ ସୁଖାନନ୍ଦ । ୧୨ ।
ଏଇ ନବ ମୂଲ ନିକସିଲ ବୃକ୍ଷମୂଲେ ।
ଏଇ ନବମୂଲେ ବୃକ୍ଷ କରିଲ ନିଶ୍ଚଲେ । ୧୩ ।
ମଧ୍ୟମୂଲ ପରମାନନ୍ଦପୁରୀ ମହା ଧୀର ।
ଅଷ୍ଟଦିକେ ଅଷ୍ଟମୂଲ ବୃକ୍ଷ କୈଲ ସ୍ଥିର । ୧୪ ।
ସ୍କନ୍ଧେର ଉପରେ ବହୁ ଶାଖା ଉପଜିଲ ।
ଉପରି-ଉପରି ଶାଖା ଅସଂଖ୍ୟ ହଇଲ । ୧୫ ।
ବିଶ-ବିଶ ଶାଖା କରି ଏକ-ଏକ ମଣ୍ଡଲ ।
ମହା-ମହା ଶାଖା ଛାଇଲ ବ୍ରହ୍ମାଣ୍ଡ ସକଲ । ୧୬ ।
ଏକୈକ ଶାଖାତେ ଉପଶାଖା ଶତଶତ ।
ଯତ ଉପଜିଲ ଶାଖା, କେ ଗଣିବେ କତ ? । ୧୭
ମୁଖ୍ୟ ମୁଖ୍ୟ ଶାଖାଗଣେର ନାମ ଅଗଣନ ।
ଆଗେ ତ କରିବ, ଶୁନ ବୃକ୍ଷେର ବର୍ଣ୍ଣନ । ୧୮ ।
ବୃକ୍ଷେର ଉପରେ ଶାଖା ହୈଲ ଦୁଇସ୍କନ୍ଧ ।
ଏକ ଅଦ୍ୱୈତ ନାମ, ଆର ନିତ୍ୟାନନ୍ଦ । ୧୯ ।
ସେଇ ଦୁଇ ସ୍କନ୍ଧେ ବହୁଶାଖା ଉପଜିଲ ।
ତାର ଉପଶାଖାଗଣେ ଜଗତ୍ ଛାଇଲ । ୨୦ ।
ବଡ଼ଶାଖା, ଉପଶାଖା ତାର ଉପଶାଖା ।
ଯତ ଉପଜିଲ, ତାର କେ କରିବେ ଲେଖା ? । ୨୧ ।
ଶିଷ୍ୟ,ପ୍ରଶିଷ୍ୟ, ଆର ଉପଶିଷ୍ୟଗଣ ।
ଜଗତ୍ ବ୍ୟାପିଲ—ତାର ନାହିକ ଗଣନ । ୨୨ ।
ଉଡ଼ୁମ୍ବରବୃକ୍ଷ ଯେନ୍ତେ ଫଲେ ସର୍ବ-ଅଙ୍ଗେ ।
ଏଇମତ ଭକ୍ତିବୃକ୍ଷେ ସର୍ବତ୍ର ଫଲ ଲାଗେ । ୨୩ ।
ମୂଲସ୍କନ୍ଧେ ଶାଖା ଆର ଉପଶାଖାଗଣେ ।
ଲାଗିଲ ଯେ ପ୍ରେମଫଲ ଅମୃତକେ ଜିନେ । ୨୪ ।
ପାକିଲ ଯେ ପ୍ରେମଫଲ ଅମୃତ-ମଧୁର ।
ବିଲାୟ ଚୈତନ୍ୟମାଲୀ—ନାହି ଲୟ ମୂଲ । ୨୫ ।
ତ୍ରିଜଗତେ ଯତ ଆଛେ ଧନ ରତ୍ନ-ମଣି ।
ଏକଫଲେର ମୂଲ୍ୟ କରି ତାହା ନାହି ଗଣି । ୨୬ ।
ମାଗେ ବା ନା ମାଗେ କେହୋ—ପାତ୍ର ବା
ଅପାତ୍ର ।
ଇହାର ବିଚାର ନାହି, ଜାନେ 'ଦିବ' ମାତ୍ର । ୨୭ ।
ଅଞ୍ଜଲି ଅଞ୍ଜଲି ଭରି ଫେଲେ ଚତୁର୍ଦ୍ଦିଶେ ।
ଦରିଦ୍ର କୁଡ଼ାଏ ଖାୟ, ମାଲାକାର ହାସେ । ୨୮ ।

ଶ୍ରୀମନ୍ ମହାପ୍ରଭୁ ନିଜେ ମାଳୀହୋଇସୁଦ୍ଧା ନିଜର ଅଚିନ୍ତ୍ୟଶକ୍ତିଦ୍ୱାରା ନିଜେ ମୂଳସ୍କନ୍ଧ ହୋଇ ଭକ୍ତିକଳ୍ପବୃକ୍ଷର ସମସ୍ତ ଶାଖାଆଦିଙ୍କର ମୂଳାଶ୍ରୟ ବା ସର୍ବାଶ୍ରୟ ହେଲେ । ୧୦ ।

ନବମୂଳ—ନଅଗୋଟି ଚେର ।

ନିକସିଲ—ବାହାରିଲ । ୧୩ । ମଧ୍ୟମୂଳ—ନାହାକାଚେର । ୧୪ ।

ସ୍କନ୍ଧଉପରେ—ଗଣ୍ଡିଉପରେ । ଉପର ଉପରି—ଏକଶାଖାର ପରେ ଅନ୍ୟ ଶାଖା । ୧୫ ।

ପୂର୍ବେ କୁହାହୋଇଅଛି ଜା ଉପରେ ଏକ ଶାଖାଅଛି ଯେ ଶ୍ରୀମନ୍ ମହାପ୍ରଭୁ ଭକ୍ତିକଳ୍ପ-ବୃକ୍ଷର ମୂଳସ୍କନ୍ଧ ବା ଗଣ୍ଡି । ସେହି ଗଣ୍ଡିଉପରେ ଦୁଇ ପ୍ରଧାନ ସ୍କନ୍ଧ ବା ଡାଳଗୁଡ଼ିକ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ ଓ ପ୍ରଭୁ ଶ୍ରୀମନ୍ନିତ୍ୟାନନ୍ଦ । ୧୯ ।

ଉଡ଼ୁମ୍ବର—ଡିମ୍ବିରି । ୨୩ ।

ମାଳୀରୂପୀ ଶ୍ରୀଚୈତନ୍ୟଚନ୍ଦ୍ର ପ୍ରେମାମୃତଫଳ କି ପ୍ରକାର ବିତରଣ କରନ୍ତି, ତାହା ବର୍ଣ୍ଣନା କରୁଅଛନ୍ତି । ଅର୍ଥାତ୍ ପ୍ରେମାମୃତଫଳ କେହି ମାଗୁ ବା ନ ମାଗୁ, କେହି ପାଇବାର ଉପଯୁକ୍ତ କି ଅନୁପଯୁକ୍ତ ଏ ପ୍ରକାର ହେତୁଜନକ ବିଚାର ନ କରି ଶ୍ରୀମନ୍ ମହାପ୍ରଭୁ ଜଗତଜୀବ-ମାନଙ୍କୁ ଦାନ କରିଅଛନ୍ତି । ଅର୍ଥାତ୍ କେବଳ ଦାନକରିବ୍ୟତୀତ ଶ୍ରୀମନ୍ ମହାପ୍ରଭୁଙ୍କର ଅନ୍ୟ କର୍ତ୍ତବ୍ୟ ନ ଥିଲା । ଅର୍ଥାତ୍ ସେ ଦାତା ଏପରି ଦାନ ଯେ ସେ ଦାନରେ ଦାତା ଓ ଗ୍ରହୀତାର ଦାନ

ମାଳାକାର କହେ—ଶୁନ ବୃକ୍ଷ ପରିବାର ! ।
ମୂଳଶାଖା ଉପଶାଖା ଯେତେକ ପ୍ରକାର । ୨୯
ଅଲୌକିକ ବୃକ୍ଷ କରେ ସର୍ବେନ୍ଦ୍ରିୟକର୍ମ ।
ସ୍ଥାବର ହଇୟା ଧରେ ଜଙ୍ଗମେର ଧର୍ମ । ୩୦ ।
ଏ ବୃକ୍ଷେର ଅଙ୍ଗ ହୟ ସବ ସଚେତନ ।
ବାଡ଼ିୟା ବ୍ୟାପିଲ ସବେ ସକଲ ଭୁବନ ।୩୧ ।
ଏକଲା ମାଲାକାର ଆମି କାହାଁ କାହାଁ ଯାବ ।
ଏକଲେ ବା କତ ଫଲ ପାଡ଼ିୟା ବାଣ୍ଟିବ । ୩୨ ।
ଏକଲା ଉଠାଞା ଦିତେ ହୟ ପରିଶ୍ରମ ।
କେହୋ ପାୟ, କେହୋ ନା ପାୟ, ରହେ ମନେ ଭ୍ରମ ।
ଅତଏବ ଆମି ଆଜ୍ଞା ଦିଲ ସଭାକାରେ—
ଯାହାଁ ଯାହାଁ ପ୍ରେମଫଲ ଦେହ ଯାରେ ତାରେ ।୩୪
ଏକଲା ମାଲାକାର ଆମି କତ ଫଲ ଖାବ ? ।
ନା ଦିୟା ବା ଏଇ ଫଲ ଆର କି କରିବ ? ।୩୫।
ଆତ୍ମ-ଇଚ୍ଛାମୃତେ ବୃକ୍ଷ ସିଞ୍ଚି ନିରନ୍ତର ।
ତାହାତେ ଅସଂଖ୍ୟ ଫଲ ବୃକ୍ଷେର ଉପର ।୩୬।
ଅତଏବ ସବେ ଫଳ ଦେହ ଯାରେତାରେ ।
ଖାଇୟା ହଉକ ଲୋକ ଅଜର-ଅମରେ ।୩୭।
ଜଗତ୍ ଭରିୟା ମୋର ହବେ ପୁଣ୍ୟ-ଖ୍ୟାତି ।
ସୁଖୀ ହୟା ଲୋକ ମୋର ଗାଇବେକ କୀର୍ତ୍ତି ।୩୮।

ପ୍ରଭୁ ସମସ୍ତ ନ ରଖି ଚତୁର୍ଦ୍ଦିଗରେ ପ୍ରେମାମୃତଫଳକୁ ଏପରି ବାଣ୍ଟିଦେଇଥିଲେ ଯେ ଜୀବ-ନିର୍ବିଶେଷରେ ତାହା ପାଇ ତୃପ୍ତ ହୋଇଥିଲେ ଏବଂ ଏହା ଦର୍ଶନକରି ମାଳାକାର ଶ୍ରୀମନ୍ ମହାପ୍ରଭୁ ଆନନ୍ଦ ଉପଭୋଗ କରୁଥିଲେ । ୨୭ । ୨୮ ।

ମାଳାକାର—ଶ୍ରୀମନ୍ ମହାପ୍ରଭୁ ।

ବୃକ୍ଷ ପରିବାର—ଭକ୍ତିକଳ୍ପବୃକ୍ଷର ମୂଳ, ଶାଖା, ଉପଶାଖା ଆଦି କ୍ରମେ ସମସ୍ତେ ।

ମୂଳଶାଖା—ଶ୍ରୀମନ୍ ନିତ୍ୟାନନ୍ଦ ଓ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ । ଉପଶାଖା ଯେତେକପ୍ରକାର—ଶ୍ରୀମନ୍ନିତ୍ୟାନନ୍ଦ ଓ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଶିଷ୍ୟ ଉପଶିଷ୍ୟ ଆଦି । ୨୯ ।

ଅଲୌକିକ—ଅପ୍ରାକୃତ ।

ସର୍ବେନ୍ଦ୍ରିୟ କର୍ମ—ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ।

ସ୍ଥାବର—ଜ୍ଞାନକର୍ମେନ୍ଦ୍ରିୟବିହୀନ ।

ଏଠାରେ ଭକ୍ତିକଳ୍ପବୃକ୍ଷ "ବୃକ୍ଷ" ଏହି ନାମ ସଞ୍ଜ୍ଞାଦ୍ୱାରା ସ୍ଥାବରତ୍ୱର ପରିଚାୟକ ହୋଇଲେହେଁ ସ୍ୱାଭାବିକ ଅପ୍ରାକୃତ ହେତୁ ଜଙ୍ଗମର ଧର୍ମ ଅର୍ଥାତ୍ ଇନ୍ଦ୍ରିୟବିଶିଷ୍ଟ ଇଚ୍ଛାଶକ୍ତିସମ୍ପନ୍ନ ଜୀବର କ୍ରିୟା କରନ୍ତି । ୩୦ ।

ଅଙ୍ଗ—ସର୍ବାବୟବ ।

ସବସଚେତନ – ଚୈତନ୍ୟମୟ ।

ମତେ—ଶାଖା ଉପଶାଖା ଆଦି । ୩୧ ।

ବାଣ୍ଟିବ—ବଣ୍ଟନ କରିବ । ୩୨ ।

୩୨, ୩୩ ପୟାରଲକ୍ଷିତ ଶ୍ରୀମନ୍ ମହାପ୍ରଭୁଙ୍କ ବଚନ ୩୪ ପୟାରଲକ୍ଷିତ ଆଜ୍ଞାଦାନର ହେତୁବାଦ ମାତ୍ର ବା କଳିହତ ଦୁର୍ଭାଗ୍ୟ ମଳିନ ଜୀବମାନଙ୍କର ଦୁର୍ଦ୍ଦଶାଦର୍ଶନ ହେତୁ ଶ୍ରୀମନ୍ ମହାପ୍ରଭୁଙ୍କର ଆତ୍ୟନ୍ତିକ କୃପାଳୁତାର ପରିଚୟ । ୩୩ । ୩୪ ।

ଆତ୍ମ ଇଚ୍ଛାମତେ—ଆପଣାର ଇଚ୍ଛାରୂପ ଅମୃତଦ୍ୱାରା ଅର୍ଥାତ୍ ସଂକଳ୍ପ ମାତ୍ର ।

ଅକ୍ଷୟ—କ୍ଷୟରହିତ, ପରିପୂର୍ଣ୍ଣ । ଅର୍ଥାତ୍ ପ୍ରେମଫଳମାନଙ୍କ ପ୍ରେମରେ ପରିପୂର୍ଣ୍ଣ । ଏହି ପ୍ରେମର ଯେଉଁବ୍ୟକ୍ତି ଅଂଶମାତ୍ର ପ୍ରାପ୍ତହୁଏ ତାହାର ହୃଦୟ ପ୍ରେମରେ ପରିପୂର୍ଣ୍ଣ ହୁଏ । ଏହିପରି ବ୍ୟାଖ୍ୟା । ୩୬ ।

ଏ ପୟାରଟି ଶ୍ରୀମନ୍ ମହାପ୍ରଭୁଙ୍କର ଜୀବଭାବରେ ଦୈନ୍ୟୋକ୍ତି । ୩୮ ।

ଭାରତଭୂମିତେ ହୋଇଲ ମନୁଷ୍ୟଜନ୍ମ ଯାର ।
ଜନ୍ମ ସାର୍ଥକ କରି କର ପର-ଉପକାର । ୩୯ ।

ତଥାହି ( ଭାଃ—୧୦।୨୨।୩୫ )—

ଏତାବଜ୍ଜନ୍ମସାଫଲ୍ୟଂ ଦେହିନାମିହ ଦେହିଷୁ ।
ପ୍ରାଣୈରର୍ଥୈର୍ଧିୟା ବାଚା ଶ୍ରେୟଆଚରଣଂ ସଦା ।୩ । *

ବିଷ୍ଣୁପୁରାଣେ ( ୩।୧୨।୪୫ )—

ପ୍ରାଣିନାମୁପକାରାୟ ଯଦେବେହ ପରତ୍ର ଚ ।
କର୍ମ୍ମଣା ମନସା ବାଚା ତଦେବ ମତିମାନ୍ ଭଜେତ୍ । ୪ । *

ମାଲୀ ମନୁଷ୍ୟ—ଆମାର ନାହି ରାଜ୍ୟ-ଧନ ।
ଫଳ-ଫୁଲ ଦିୟା କରି ପୁଣ୍ୟ ଉପାର୍ଜ୍ଜନ । ୪୦ ।
ମାଲୀ ହୋଇଯା ବୃକ୍ଷ ହଇଲାଙ୍ ଏଇ ତ ଇଚ୍ଛାତେ— ।
'ସର୍ବ୍ବପ୍ରାଣିର ଉପକାର ହୟ ବୃକ୍ଷ ହୈତେ ।' ୪୧ ।

ତଥାହି ( ଭାଃ—୧୦।୨୨।୩୩ )—

ଅହୋ ଏଷାଂ ବରଂ ଜନ୍ମ ସର୍ବ୍ବପ୍ରାଣ୍ୟୁପଜୀବିନାଂ ।
ସୁଜନସ୍ୟେବ ଯେଷାଂ ବୈ ବିମୁଖା ଯାନ୍ତି ନାର୍ଥିନଃ । ୫ । *

ଏଇ ଆଜ୍ଞା କୈଲ ଯବେ ଚୈତନ୍ୟ ମାଲାକାର ।
ପରମ ଆନନ୍ଦ ପାଇଲ ବୃକ୍ଷପରିବାର । ୪୨ ।

(ଯତ୍ର) ସଦା ପ୍ରାଣୈଃ (ପ୍ରାଣୋନାଦରେଣ କର୍ମ୍ମଭିଃ) ଅର୍ଥୈଃ (ଧନ ବ୍ୟୟେନ) ଧିୟା (ସଦୁପାୟ ଚିନ୍ତନାଦିନା) ବାଚା ( ଉପଦେଶାଦିରୂପୟା, ଚ ) ଦେହିଷୁ (ଜୀବେଷୁ) ଶ୍ରେୟମ୍ ଆଚରଣମ୍ ଏତାବତ୍ (ଏବ) ଇହ (ସଂସାରେ) ଦେହିନାଂ ଜନ୍ମସାଫଲ୍ୟମ୍ । ୩ୟ ଶ୍ଳୋକଃ ।

ଯତ୍ . ଏବ (କର୍ମ୍ମ) ଇହ (ଇହଲୋକେ) ପରତ୍ର (ପରଲୋକେ ଚ) ପ୍ରାଣିନାଂ ଉପକାରାୟ (ଭବତି) । ମତିମାନ୍ (ଜନଃ) ତତ୍ ଏବ କର୍ମ୍ମଣା ( କାୟକ୍ଲେଶକ୍ରମେଣ ) ମନସା (ବୁଦ୍ଧୀନ୍ଦ୍ରିୟେଣ) ବାଚା (ଯୁକ୍ତିବଚନେନ) ଭଜେତ୍ । ୪ର୍ଥଶ୍ଳୋକଃ ।

ଅହୋ (ହର୍ଷେ ବିସ୍ମୟେ ବା) ଏଷାଂ (ବୃକ୍ଷାଣାଂ) ସର୍ବପ୍ରାଣ୍ୟୁପଜୀବନମ୍ (ସର୍ବ୍ବେଷାଂ ପ୍ରାଣିନାଂ ଉପଜୀବନଂ ଜୀବିକାହେତୁଃ ) ଜନ୍ମ ବରଂ (ସର୍ବତଃ ଶ୍ରେଷ୍ଠମ୍) । ସୁଜନସ୍ୟ ଇବ ଯେଷାଂ (ଯେଭ୍ୟଃ) ଅର୍ଥିନଃ ବିମୁଖାଃ ନ ଯାନ୍ତି ବୈ । ୫ମ ଶ୍ଳୋକଃ ।

ନାନାପ୍ରକାର ଜୀବଜନ୍ମମଧ୍ୟରେ ମନୁଷ୍ୟଜନ୍ମ ଦୁର୍ଲ୍ଲଭ । ପୁଣି ଭାରତଭୂମିରେ ମନୁଷ୍ୟୋଚିତ ଜ୍ଞାନ କର୍ମ୍ମ ଓ ଭକ୍ତିର ଶ୍ରେଷ୍ଠ ଆଦର୍ଶ ଓ ସାଧନୋପକରଣ ଥିବାରୁ ଭାରତଭୂମିରେ ମନୁଷ୍ୟଜନ୍ମ ଲାଭ ଅତି ଦୁର୍ଲ୍ଲଭ । ସର୍ବଜୀବମାନଙ୍କ ମଧ୍ୟରେ କେବଳ ମନୁଷ୍ୟରହିଁ ପରୋପକାର କରିବାର ଜ୍ଞାନ ଓ କ୍ଷମତା ଅଛି । ଏହିହେତୁ ପରୋପକାର କରିବାଦ୍ୱାରା ମନୁଷ୍ୟଜନ୍ମର ସାର୍ଥକତା ସିଦ୍ଧ ହୁଏ । ୩୯ ।

ଶ୍ରୀକୃଷ୍ଣ ସଖାମାନଙ୍କୁ କହୁଅଛନ୍ତି, ଯେଉଁ ଜୀବମାନେ ନିଜର ପ୍ରାଣ, ଅର୍ଥ, ବୁଦ୍ଧି କିମ୍ବା ବାକ୍ୟଦ୍ୱାରା ଅନ୍ୟ ଜୀବମାନଙ୍କର ସର୍ବଦା ମଙ୍ଗଳ ଆଚରଣ କରନ୍ତି ଏତଦ୍ଦ୍ୱାରା ସେମାନଙ୍କର ଜନ୍ମ ସଫଳ ହୁଏ । ୩ୟ ଶ୍ଳୋକାର୍ଥ ।

ଯାହାଦ୍ୱାରା ଇହଲୋକ ଓ ପରଲୋକରେ ପ୍ରାଣିମାନଙ୍କର ମଙ୍ଗଳ ହୁଏ ତାହା ବୁଦ୍ଧିମାନ୍ ବ୍ୟକ୍ତି କାର୍ଯ୍ୟଦ୍ୱାରା, ମନଦ୍ୱାରା କିମ୍ବା ବାକ୍ୟଦ୍ୱାରା ଅବଶ୍ୟ କରିବେ । ୪ର୍ଥ ଶ୍ଳୋକାର୍ଥ ।

ଯେହେତୁ ବୃକ୍ଷଦ୍ୱାରା ସର୍ବ ପ୍ରାଣିଙ୍କର ଉପକାର ହୁଏ ତେଣୁ ମୁଁ ମାଳୀହୋଇ ମୁଁ ସ୍ୱଇଚ୍ଛାରେ ବୃକ୍ଷ ହେଲି । ୪୧ ।

ଅହୋ ! ଏହି ବୃକ୍ଷମାନଙ୍କର ଜନ୍ମ ସାର୍ଥକ, ଯେହେତୁ ଏମାନେ ସର୍ବବିଧ ପ୍ରାଣିମାନଙ୍କର ଜୀବନସ୍ୱରୂପ । ଯେପରି ସୁଜନମାନଙ୍କ ନିକଟରୁ କୌଣସି ଅର୍ଥାକାଂକ୍ଷୀ ବ୍ୟକ୍ତି ବିମୁଖ ହୁଅନ୍ତିନାହିଁ ସେହିପରି ଏହି ବୃକ୍ଷମାନଙ୍କ ନିକଟରୁ କୌଣସି ଜୀବ ବିମୁଖ ହୁଅନ୍ତି ନାହିଁ । ୫ମ ଶ୍ଳୋକାର୍ଥ ।

ସେହି ଯାହାଁତାହାଁ ଦାନ କରେ ପ୍ରେମଫଳ ।
ଫଳାସ୍ୱାଦେ ମତ୍ତ ଲୋକ ହଇଲ ସକଳ । ୪୩ ।
ମହାମାଦକ ପ୍ରେମଫଳ ପେଟ ଭରି ଖାୟ ।
ମାତିଲ ସକଳ ଲୋକ—ହାସେ ନାଚେ
ଗାୟ । ୪୪ ।
କେହୋ ଗଡ଼ାଗଡ଼ି ଯାୟ, କେହୋ ତ ହୁଙ୍କାର ।
ଦେଖି ଆନନ୍ଦିତ ହୈଞା ହାସେ ମାଲାକାର । ୪୫ ।
ଏଇ ମାଲାକାର ଖାୟ ଏଇ ପ୍ରେମଫଳ ।
ନିରବଧି ମତ୍ତ ରହେ ବିବଶ ବିହ୍ୱଳ । ୪୬ ।
ସର୍ବଲୋକ ମତ୍ତ କୈଲ ଆପନ-ସମାନ ।
ପ୍ରେମେ ମତ୍ତ ଲୋକ ବିନା ନାହି ଦେଖି ଆନ ।୪୭।
ଯେ ଯେ ପୂର୍ବେ ନିନ୍ଦା କୈଲ ବଲି 'ମାତୋୟାଲ' ।
ସେହୋ ଫଲ ଖାୟ, ନାଚେ—ବୋଲେ 'ଭାଲ-
ଭାଲ' । ୪୮ ।
ଏଇ ତ କହିଲ ପ୍ରେମଫଲ-ବିବରଣ ।
ଏବେ ଶୁନ ଫଲଦାତା ଯେ-ଯେ ଶାଖାଗଣ । ୪୯ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟ ଚରିତାମୃତ କହେ କୃଷ୍ଣଦାସ ॥ ୫୦ ॥
ଇତି ଶ୍ରୀ ଚୈତନ୍ୟଚରିତାମୃତେ ଆଦିଖଣ୍ଡେ
ଭକ୍ତିକଳ୍ପବର୍ଣ୍ଣନଂ ନାମ ନବମ ପରିଚ୍ଛେଦଃ ॥

— —○— —

## ଦଶମପରିଚ୍ଛେଦ ।

ଶ୍ରୀଚୈତନ୍ୟପଦାମ୍ଭୋଜମଧୁପେଭ୍ୟୋନମୋନମଃ ।
କଥଞ୍ଚିଦାଶ୍ରୟାଦ୍ୟେଷାଂ ଶ୍ୱାପି ତଦ୍ଗନ୍ଧଭାଗ୍‌ଭବେତ ॥ ୧

## ଆଦିଲୀଳା ଦଶମପରିଚ୍ଛେଦ ।

ଶ୍ରୀଚୈତନ୍ୟସ୍ୟ ଚରଣାମ୍ଭୋଜମ୍ଭୋର୍ମଧୁଭକ୍ତିରସଂ ପିବନ୍ତୀତି ତଥା ତେଭ୍ୟଃ ଶ୍ରୀଭଗବଦ୍ଭକ୍ତେଭ୍ୟ ଇତ୍ୟର୍ଥଃ । ନମୋନମ ଇତି ବୀପ୍ସା ଭକ୍ତିବିଶେଷେଣ । ଅପୀତ୍ୟସ୍ୟ ପୂର୍ବତ୍ରାପି ସମ୍ବନ୍ଧଃ ଯେଷାଂ ଶ୍ରୀଚୈତନ୍ୟଚରଣାମ୍ଭୋଜମଧୁପାନାଂ କେନଚିଦପି ପ୍ରକାରେଣ ଯ ଆଶ୍ରୟଃ ଶରଣାଗତଃ ତସ୍ମାଦପି ଶ୍ୱ ତତ୍ତୁଲ୍ୟଃ ପରମନୀଚଜନୋଽପୀତ୍ୟର୍ଥଃ ତସ୍ୟ ଶ୍ରୀଚୈତନ୍ୟ-ଚରଣାମ୍ଭୋଜମଧୁନଃ ତେଷାମ୍ବା ଶ୍ରୀଚୈତନ୍ୟଚରଣାମ୍ଭୋଜମଧୁପାନାଂ ଗନ୍ଧଂ ଭଜନ୍ତି ପ୍ରାପ୍ନୋତୀତି ତାଦୃଶୋ ଭବେତ୍ । ଅପୀତ୍ୟନେନ ଚ ଯଥା କମଲମଧୁପାନମତ୍ତସ୍ୟ ଭ୍ରମତୋ ଭ୍ରମରସ୍ୟ କଥଞ୍ଚିତ୍ ସମ୍ବନ୍ଧାତ୍ ତନ୍ମୁଖନିର୍ଗଲନ୍ମଧୁଗନ୍ଧେନ କୁକ୍କୁରୋଽପ୍ୟାମୋଦିତୋ ଭବେଦିତ୍ୟତ୍ର ଦୃଷ୍ଟାନ୍ତ ଊହ୍ୟଃ । ଅତସ୍ତେଷାଂ ନାମ ଲିଖନମଯୋଗ୍ୟାଦପି ମତ୍ତଃ ସୁଖଂ ସମ୍ୟକ୍ ଘଟତ ଇତି ଭାବଃ । ୧ମ ଶ୍ଳୋକଃ ।

ଯାହାଁ ତାହାଁ—ଯଥାତଥା । ୪୩ ।

ପୂର୍ବେ ଶ୍ରୀମନ୍ ମହାପ୍ରଭୁଙ୍କର ଶ୍ରୀମନ୍ ନବଦ୍ୱୀପଲୀଳାସମୟରେ ଯେତେବେଳେ ଶ୍ରୀମନ ମହାପ୍ରଭୁ ଅନ୍ତରଙ୍ଗ ଭକ୍ତମାନଙ୍କ ସହିତ ଶ୍ରୀ ଶ୍ରୀବାସ ପଣ୍ଡିତଙ୍କ ଆଲୟରେ ଗୋପନରେ ଶ୍ରୀହରିନାମ ସଂକୀର୍ତ୍ତନ କରୁଥିଲେ ସେତେବେଳେ ଏହି ସଂକୀର୍ତ୍ତନକାରୀମାନଙ୍କୁ କେତେକ ବ୍ୟକ୍ତି ମଦ୍ୟପ ବୋଲି ବିଦ୍ରୂପ କରିଥିଲେ, ସେହିମାନେ ଶ୍ରୀମନ୍ମହାପ୍ରଭୁଙ୍କର ଦତ୍ତ ପ୍ରେମ-ଫଳ ଆସ୍ୱାଦନ କରି ଉନ୍ମତ୍ତ ହୋଇଥିଲେ । ୪୮ ।

ନବମ ପରିଚ୍ଛେଦ ସମାପ୍ତ ।



## ଦଶମପରିଚ୍ଛେଦ

ଶ୍ରୀଚୈତନ୍ୟଚରଣରୂପ କମଳର ମଧୁପରୂପୀ ଭକ୍ତମାନଙ୍କୁ ମୁଁ ବାରମ୍ବାର ପ୍ରଣାମକରେଁ । କୌଣସି ପ୍ରକାରରେ ସେହି ଭକ୍ତମାନଙ୍କର ଚରଣାଶ୍ରୟ ଗ୍ରହଣ କଲେ କୁକ୍କୁର ଅର୍ଥାତ୍ ତତ୍ତୁଲ୍ୟ ଅତିନୀଚବ୍ୟକ୍ତି ସୁଦ୍ଧା, ସେମାନଙ୍କଠାରୁ ଶ୍ରୀଚୈତନ୍ୟ-ଚରଣକମଳ-ମଧୁଗନ୍ଧରୂପ ପ୍ରେମକଣା ଲାଭକରନ୍ତି । ୧ମ ଶ୍ଳୋକାର୍ଥ ।

ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ନିତ୍ୟାନନ୍ଦ ।
ଜୟାଦ୍ୱୈତଚନ୍ଦ୍ର, ଜୟ ଗୌରଭକ୍ତବୃନ୍ଦ ॥
ଏଇ ମାଳୀର ଏଇ ବୃକ୍ଷେର ଅକଥ୍ୟ କଥନ ।
ଏବେ ଶୁନ ମୁଖ୍ୟ ଶାଖାର ନାମ ବିବରଣ ॥ ୨ ॥
ଚୈତନ୍ୟଗୋସାଞିର ଯତ ପାରିଷଦଚୟ ।
ଗୁରୁ-ଲଘୁ-ଭାବ ତାର ନା ହୟ ନିଶ୍ଚୟ ॥ ୩ ॥
ଯତ ଯତ ମହାନ୍ତ-କୈଲ ତାଁ-ସବାର ଗଣନ ।
କେହୋ ନା କରିତେପାରେ ଜ୍ୟେଷ୍ଠ-ଲଘୁ-କ୍ରମ ॥୪॥
ଅତଏବ ତାଁ-ସବାରେ କରି ନମସ୍କାର ।
ନାମ ମାତ୍ର କରି, ଦୋଷ ନା ଲବେ ଆମାର ॥୫॥
ତଥାହି—
ବନ୍ଦେ ଶ୍ରୀକୃଷ୍ଣ ଚୈତନ୍ୟ-ପ୍ରେମାମରତରୋଃ ପ୍ରିୟାନ୍ ।
ଶାଖାରୂପାନ୍ ଭକ୍ତଗଣାନ୍ କୃଷ୍ଣପ୍ରେମଫଳପ୍ରଦାନ୍ ॥୧॥
ଶ୍ରୀବାସ-ପଣ୍ଡିତ ଆର ଶ୍ରୀରାମ-ପଣ୍ଡିତ ।
ଦୁଇ ଭାଇ ଦୁଇ-ଶାଖା ଜଗତେ ବିଦିତ ॥ ୬ ॥
ଶ୍ରୀପତି ଶ୍ରୀନିଧି ତାଁର ଦୁଇ ସହୋଦର ।
ଚାରି ଭାଇର ଦାସ ଦାସୀ ଗୃହ ପରିକର ॥ ୭ ॥
ଦୁଇ ଶାଖାର ଉପଶାଖାୟ ତାଁ-ସବାର ଗଣନ ।
ଯାଁର ଗୃହେ ମହାପ୍ରଭୁର ସଦା ସଙ୍କୀର୍ତ୍ତନ ॥ ୮ ॥
ଚାରିଭାଇ ସବଂଶେ କରେ ଚୈତନ୍ୟେର ସେବା ।
ଗୌରଚନ୍ଦ୍ର ବିନା ନାହି ଜାନେ ଦେବୀ-ଦେବା ॥୯॥
ଆଚାର୍ଯ୍ୟରତ୍ନ ନାମ ଧରେ ଏକ ବଡ଼ ଶାଖା ।
ତାଁର ପରିକର-ଶିଷ୍ୟ ତାଁର ଉପଶାଖା ॥ ୧୦ ॥
ଆଚାର୍ଯ୍ୟରତ୍ନେର ନାମ ଶ୍ରୀଚନ୍ଦ୍ରଶେଖର ।
ଯାଁର ଘରେ ଦେବୀ ଭାବେ ନାଚିଲା ଈଶ୍ୱର ॥୧୧॥
ପୁଣ୍ଡରୀକ ବିଦ୍ୟାନିଧି ବଡ଼ଶାଖା ଜାନି ।
ଯାଁର ନାମ ଲୈୟା ପ୍ରଭୁ କାନ୍ଦିଲା ଆପନି ॥ ୧୨ ॥
ବଡ଼ଶାଖା ଗଦାଧର ପଣ୍ଡିତ ଗୋସାଞି ।
ତେହୋଁ ଲକ୍ଷ୍ମୀରୂପା-ତାଁର ସମ କେହୋ ନାହି ॥୧୩
ତାଁର-ଶିଷ୍ୟ ଉପଶିଷ୍ୟ—ତାଁର ଉପଶାଖା ।
ଏଇ ମତ ସବ ଶାଖାର ଉପଶାଖାର ଲେଖା ॥୧୪॥
ବକ୍ରେଶ୍ୱର-ପଣ୍ଡିତ ପ୍ରଭୁର ବଡ଼ ପ୍ରିୟ ଭୃତ୍ୟ ।
ଏକ ଭାବେ ଚବିଶ ପ୍ରହର ଯାଁର ନୃତ୍ୟ ॥ ୧୫ ॥
ଆପନେ ମହାପ୍ରଭୁ ଗାୟ ଯାଁର ନୃତ୍ୟକାଲେ ।
ପ୍ରଭୁର ଚରଣ ଧରି ବକ୍ରେଶ୍ୱର ବୋଲେ ॥ ୧୬ ॥
ଦଶସହସ୍ର ଗନ୍ଧର୍ବ ମୋରେ ଦେହ ଚନ୍ଦ୍ରମୁଖ ।
ତାରା ଗାୟ, ମୁଞି ନାଚୋଁ ତବେ ମୋର ସୁଖ ॥୧୭
ପ୍ରଭୁ ବୋଲେ—ତୁମି ମୋର ପକ୍ଷ ଏକ ଶାଖା ।
ଆକାଶେ ଉଡ଼ିତାମ ଯଦି ପାଙ୍ ଆର ପାଖା ॥୧୮॥
ପଣ୍ଡିତ ଜଗଦାନନ୍ଦ ପ୍ରଭୁର ପ୍ରାଣରୂପ ।
ଲୋକେ ଖ୍ୟାତ ଯେହୋଁ—ସତ୍ୟଭାମାର ସ୍ୱରୂପ ॥

ଶ୍ରୀକୃଷ୍ଣଚୈତନ୍ୟପ୍ରେମାମରତରୋଃ ଶାଖାରୂପାନ୍ କୃଷ୍ଣପ୍ରେମଫଳପ୍ରଦାନ୍ ପ୍ରିୟାନ୍ ଭକ୍ତଗଣାନ୍ (ଅହମ୍) ବନ୍ଦେ । ୧ମ ଶ୍ଳୋକଃ ।

ଏଇ ମାଳୀର—ଶ୍ରୀଚୈତନ୍ୟରୂପୀ ମାଳୀ ।

ଏଇ ବୃକ୍ଷ—ଭକ୍ତିକଳ୍ପବୃକ୍ଷ ।

ମୁଖ୍ୟଶାଖାର—ଶ୍ରୀମନ୍ ମହାପ୍ରଭୁ ମୂଳସ୍କନ୍ଧ ଅର୍ଥାତ୍ ଗଣ୍ଡିହେତୁ ସେହି ମୂଳସ୍କନ୍ଧର ଅର୍ଥାତ୍ ସେହି ଶ୍ରୀମନ୍ମହାପ୍ରଭୁଙ୍କର ନିଜଶାଖାମାନଙ୍କ ବିଷୟ ଏ ପରିଚ୍ଛେଦରେ ବର୍ଣ୍ଣିତ ହେଉଅଛି । ୨ ।

ଶ୍ରୀମନ୍ ମହାପ୍ରଭୁଙ୍କର ପାରିଷଦମାନେ ତାଙ୍କ ଶାଖା, ସେମାନଙ୍କର ପ୍ରେମର ଭାବ ଅଗମ୍ୟ ହେତୁ; ସେମାନଙ୍କ ମଧ୍ୟରେ କିଏ ଶ୍ରେଷ୍ଠ କିଏ ବା କନିଷ୍ଠ ତାହା ନିରୂପଣ କରାଯାଇପାରେ ନା ! ଅତଏବ ଗ୍ରନ୍ଥକାର ସେହି ମହାନ୍ତମାନଙ୍କର ନାମ ଉଲ୍ଲେଖ କଲେ । କିନ୍ତୁ ଶ୍ରେଷ୍ଠ ଓ କନିଷ୍ଠ ଏପରି କ୍ରମଭାବରେ ନୁହେ । ତେଣୁ ଗ୍ରନ୍ଥକାର ମହାଶୟ ସମସ୍ତ ମହାନ୍ତମାନଙ୍କୁ ନମସ୍କାର ପୂର୍ବକ ଆପଣାର ଦୋଷ କ୍ଷମାପ୍ରାର୍ଥନା କରୁଅଛନ୍ତି । ୩।୪।୫ ।

ଶ୍ରୀକୃଷ୍ଣଚୈତନ୍ୟରୂପୀ ପ୍ରେମକଳ୍ପବୃକ୍ଷର କୃଷ୍ଣପ୍ରେମଫଳପ୍ରଦ ଶାଖାରୂପୀ ପ୍ରିୟ ଭକ୍ତମାନଙ୍କୁ ମୁଁ ବନ୍ଦନା କରେଁ । ୧ମ ଶ୍ଳୋକାର୍ଥ ।

ଈଶ୍ୱର—ଶ୍ରୀମନ୍ ମହାପ୍ରଭୁ । ୧୧ ।

ପ୍ରୀତେ କରନ୍ତେ ଗୃହେ ପ୍ରଭୁର ଲାଳନ-ପାଳନ ।
ବୈରାଗ୍ୟ-ଲୋକଭୟେ ପ୍ରଭୁ ନା ମାନେ କଥନ ।୨୦
ଦୁଇଜନେ ଖଟ୍ମଟି ଲାଗାୟ କୋନ୍ଦଲ ।
ତାଁର ପ୍ରୀତେର କଥା ଆଗେ କହିବ ସକଲ ।୨୧।
ରାଘବ ପଣ୍ଡିତ ପ୍ରଭୁର ଆଦ୍ୟ ଅନୁଚର ।
ତାଁର ଏକଶାଖା ମୁଖ୍ୟ ମକରଧ୍ୱଜ କର ।୨୨।
ତାଁର ଭଗ୍ନୀ ଦମୟନ୍ତୀ ପ୍ରଭୁର ପ୍ରିୟଦାସୀ ।
ପ୍ରଭୁର ଭୋଗସାମଗ୍ରୀ ଯେ କରେ ବାରମାସି ।୨୩
ସେ ସବ ସାମଗ୍ରୀ ଯତ ଝାଲିତେ ଭରିୟା ।
ରାଘବ ଲଇୟା ଯାୟ ଗୁପତ କରିୟା ।୨୪।
ବାରମାସ ପ୍ରଭୁ ତାହା କରେନ ଅଙ୍ଗୀକାର ।
'ରାଘବେର ଝାଲି' ବଲି ପ୍ରସିଦ୍ଧି ଯାହାର ।୨୫।
ସେ ସବ ସାମଗ୍ରୀ ଆଗେ କରିବ ବିସ୍ତାର ।
ଯାହାର ଶ୍ରବଣେ ଭକ୍ତେର ବହେ ଅଶ୍ରୁଧାର ।୨୬।
ପ୍ରଭୁର ଅତ୍ୟନ୍ତ ପ୍ରିୟ ପଣ୍ଡିତ ଗଙ୍ଗାଦାସ ।
ଯାହାର ସ୍ମରଣେ ହୟ ଭବବନ୍ଧ ନାଶ ।୨୭।
ଚୈତନ୍ୟପାର୍ଷଦ ଶ୍ରୀ ଆଚାର୍ଯ୍ୟ ପୁରନ୍ଦର ।
'ପିତା' କରି ଯାଁରେ ବୋଲେ ଗୌରାଙ୍ଗ ଈଶ୍ୱର ।।
ଦାମୋଦର ପଣ୍ଡିତ ଶାଖା ପ୍ରେମେତେ ପ୍ରଚଣ୍ଡ ।
ପ୍ରଭୁର ଉପରେ ଯେଁହୋ କୈଲ ବାକ୍ୟଦଣ୍ଡ ।୨୯।
ଦଣ୍ଡକଥା କହିବ ଆଗେ ବିସ୍ତାର କରିୟା ।
ଦଣ୍ଡେ ତୁଷ୍ଟ ତାଁରେ ପ୍ରଭୁ ପାଠାଲ୍ୟା ନଦୀୟା ।୩୦।
ତାଁହାର ଅନୁଜ ଶାଖା ଶଙ୍କର ପଣ୍ଡିତ ।
ପ୍ରଭୁର 'ପାଦୋପାଧାନ' ଯାଁର ନାମ ବିଦିତ ।୩୧।
ସଦାଶିବପଣ୍ଡିତ ଯାଁର ପ୍ରଭୁପଦେ ଆଶ ।
ପ୍ରଥମେଇ ନିତ୍ୟାନନ୍ଦେର ଯାଁର ଘରେ ବାସ ।୩୨।
ଶ୍ରୀ ନୃସିଂହ-ଉପାସକ ପ୍ରଦ୍ୟୁମ୍ନ ବ୍ରହ୍ମଚାରୀ ।
ପ୍ରଭୁ ତାଁର ନାମ କୈଲ 'ନୃସିଂହାନନ୍ଦ' କରି ।୩୩।
ନାରାୟଣ ପଣ୍ଡିତ ଏକ ବଡ଼ଇ ଉଦାର ।
ଚୈତନ୍ୟ-ଚରଣ ବିନୁ ନାହି ଜାନେ ଆର ।୩୪।
ଶ୍ରୀମାନ୍-ପଣ୍ଡିତ ଶାଖା ପ୍ରଭୁର ନିଜଭୃତ୍ୟ ।
ଦେଉଟୀ ଧରେନ ଯବେ ପ୍ରଭୁ କରେନ ନୃତ୍ୟ ।।
ଶୁକ୍ଲାମ୍ବର ବ୍ରହ୍ମଚାରୀ ବଡ଼ ଭାଗ୍ୟବାନ୍ ।
ଯାଁର ଅନ୍ନ ମାଗି କାଡ଼ି ଖାଇଲ ଭଗବାନ୍ ।୩୬।
ନନ୍ଦନ-ଆଚାର୍ଯ୍ୟ ଶାଖା ଜଗତେ ବିଦିତ ।
ଲୁକାଇୟା ଦୁଇ ପ୍ରଭୁର ଯାଁର ଘରେ ସ୍ଥିତ ।୩୭।
ଶ୍ରୀମୁକୁନ୍ଦଦତ୍ତ ଶାଖା ପ୍ରଭୁର ସମାଧ୍ୟାୟୀ ।
ଯାଁହାର କୀର୍ତ୍ତନେ ନାଚେନ୍ ଚୈତନ୍ୟ ଗୋସାଞି ।।
ବାସୁଦେବଦତ୍ତ ପ୍ରଭୁର ଭୃତ୍ୟ ମହାଶୟ ।
ସହସ୍ର ମୁଖେ ଯାଁର ଗୁଣ କହିଲେ ନା ହୟ ।୩୯।
ଜଗତେ ଯତେକ ଜୀବ—ତାର ପାପ ଲଞା ।
ନରକ ଭୁଞ୍ଜିତେ ଚାହେ ଜୀବ ଛାଡ଼ାଇୟା ।୪୦।
ହରିଦାସ ଠାକୁର-ଶାଖାର ଅଦ୍ଭୁତ ଚରିତ ।
ତିନଲକ୍ଷ ନାମ ତେଁହୋ ଲୟେନ ଅପତିତ ।୪୧।
ତାଁହାର ଅନନ୍ତ ଗୁଣ—କହି ଦିଙ୍ମାତ୍ର ।
ଆଚାର୍ଯ୍ୟ ଗୋସାଞି ଯାଁରେ ଭୁଞ୍ଜାୟ ଶ୍ରାଦ୍ଧପାତ୍ର ।୪୨।
ପ୍ରହ୍ଲାଦ ସମାନ ତାଁର ଗୁଣେର ତରଙ୍ଗ ।
ଯବନ-ତାଡ଼ନେ ଯାର ନହିଲ ଭ୍ରୂଭଙ୍ଗ ।୪୩।
ତେଁହୋ ସିଦ୍ଧି ପାଇଲେ ତାଁର ଦେହ ଲୈୟା କୋଲେ
ନାଚିଲ ଚୈତନ୍ୟ ପ୍ରଭୁ ମହା କୁତୂହଲେ ।୪୪।
ତାଁର ଲୀଲା ବର୍ଣ୍ଣିୟାଛେନ ବୃନ୍ଦାବନ ଦାସ ।
ଯେବା ଅବଶିଷ୍ଟ ଆଗେ କରିବ ପ୍ରକାଶ ।୪୫।

---

ଖଟ୍ମଟି—କଥା କଟାକଟି । କୋନ୍ଦଲ—କଳହ (ଏଠାରେ ପ୍ରେମ କଳହ) । ୨୧ ।
ଛାଡ଼ାଇୟା—ମୁକ୍ତକରାଇ, ଉଦ୍ଧାରକରି । ୪୦ ।
ଅପତିତ—ଅଭଙ୍ଗ, ଅର୍ଥାତ୍ ତିନିଲକ୍ଷ ହରିନାମ କେବେ ସଂଖ୍ୟାଭଙ୍ଗ ହୋଇନାହିଁ । ୪୧ ।
ଦିଙ୍ମାତ୍ର—କିଞ୍ଚିନ୍ମାତ୍ର । ଆଚାର୍ଯ୍ୟଗୋସାଇଁ—ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟ । ୪୨ ।
ତାଡ଼ନେ—ପ୍ରହାରରେ । ୪୩ ।
ସିଦ୍ଧିପାଇଲେ—ଦେହ ତ୍ୟାଗ କାଳରେ । ୪୪ ।

ତାଁର ଉପଶାଖା ଯତ କୁଲୀନଗ୍ରାମୀ ଜନ ।
ସତ୍ୟରାଜ-ଆଦି ତାଁର କୃପାର ଭାଜନ ।୪୬।
ଶ୍ରୀ ମୁରାରି ଗୁପ୍ତ ଶାଖା ପ୍ରେମେର ଭାଣ୍ଡାର ।
ପ୍ରଭୁର ହୃଦୟ ଦ୍ରବେ ଶୁନି ଦୈନ୍ୟ ଯାଁର ।୪୭।
ପ୍ରତିଗ୍ରହ ନା କରେ, ନା ଲୟ କାରୋ ଧନ ।
ଆତ୍ମବୃତ୍ତି କରି କରେ କୁଟୁମ୍ବ ଭରଣ ।୪୮।
ଚିକିତ୍ସା କରେନ ଯାରେ ହଇୟା ସଦୟ ।
ଦେହରୋଗ ଭବରୋଗ ଦୁଇ ତାର କ୍ଷୟ ।୪୯।
ଶ୍ରୀମାନ୍ ସେନ ପ୍ରଭୁର ସେବକ-ପ୍ରଧାନ ।
ଚୈତନ୍ୟ ଚରଣ ବିନା ନାହି ଜାନେ ଆନ ।୫୦॥
ଶ୍ରୀ ଗଦାଧରଦାସ ଶାଖା ସର୍ବୋପରି ।
କାଜୀଗଣେର ମୁଖେ ଯେହ୍ନ ବୋଲାଇଲ 'ହରି' ॥
ଶିବାନନ୍ଦ ସେନ ପ୍ରଭୁର ଭୃତ୍ୟ ଅନ୍ତରଙ୍ଗ ॥
ପ୍ରଭୁ-ସ୍ଥାନେ ଯାଇତେ ସବେ ଲୟେନ ଯାର ସଙ୍ଗ ॥
ପ୍ରତି ବର୍ଷ ପ୍ରଭୁର ଗଣ ସଙ୍ଗେତେ ଲଇୟା ।
ନୀଲାଚଲେ ଚଲେନ୍ ପଥେ ପାଳନ କରିୟା ।୫୩।
ଭକ୍ତେ କୃପା କରେନ୍ ପ୍ରଭୁ ଏ ତିନ ସ୍ୱରୂପେ—
ସାକ୍ଷାତ୍, ଆବେଶ, ଆର ଆବିର୍ଭାବ-ରୂପେ ।୫୪।
ସାକ୍ଷାତେ ସକଲ ଭକ୍ତ ଦେଖେ ନିର୍ବିଶେଷ ।
ନକୁଲ ବ୍ରହ୍ମଚାରି-ଦେହେ ପ୍ରଭୁର ଆବେଶ ।୫୫।
'ପ୍ରଦ୍ୟୁମ୍ନ ବ୍ରହ୍ମଚାରୀ' ତାଁର ଆଗେ ନାମ ଛିଲ ।
'ନୃସିଂହାନନ୍ଦ' ନାମ ପ୍ରଭୁ ପାଛେତେ ରାଖିଲ ।୫୬
ତାଁହାତେ ହଇଲ ଚୈତନ୍ୟେର ଆବିର୍ଭାବ ।
ଅଲୌକିକ ଐଛେ ପ୍ରଭୁର ଅନେକ ସ୍ୱଭାବ ।୫୭।
ଆସ୍ୱାଦିଲ ଏଇ ସବ ରସ ଶିବାନନ୍ଦ ।
ବିସ୍ତାରି କହିବ ଆଗେ ଏ ସବ ଆନନ୍ଦ ।୫୮।
ଶିବାନନ୍ଦେର ଉପଶାଖା—ତାଁର ପରିକର ।
ପୁତ୍ର-ଭୃତ୍ୟ-ଆଦି ଚୈତନ୍ୟେର ଅନୁଚର ।୫୯।
ଚୈତନ୍ୟଦାସ, ରାମଦାସ, ଆର କର୍ଣ୍ଣପୂର ।
ତିନ ପୁତ୍ର ଶିବାନନ୍ଦେର—ପ୍ରଭୁର ଭକ୍ତଶୂର ।୬୦
ଶ୍ରୀ ବଲ୍ଲଭସେନ ଆର ସେନ ଶ୍ରୀକାନ୍ତ ।
ଶିବାନନ୍ଦ-ସମ୍ବନ୍ଧେ ପ୍ରଭୁର ଭକ୍ତ ଏକାନ୍ତ ।୬୧।
ପ୍ରଭୁର ପ୍ରିୟ ଗୋବିନ୍ଦାନନ୍ଦ ମହା ଭାଗବତ ।
ପ୍ରଭୁର କୀର୍ତ୍ତନୀୟା ଆଦି ଶ୍ରୀ ଗୋବିନ୍ଦଦତ୍ତ ।୬୨।

---

ପ୍ରତିଗ୍ରହ—ଦାନଗ୍ରହଣ । ଆତ୍ମବୃତ୍ତି—ଏଠାରେ ବୈଦ୍ୟବ୍ୟବସାୟ । ୪୮ ।
ଭବରୋଗ—ପୁନର୍ଜନ୍ମ । ୪୯ ।
"କାଜୀଗଣେର ମୁଖେ ଯେଇ ବୋଲାଇଲ ହରି" ଏ ବିଷୟ ଶ୍ରୀଚୈତନ୍ୟଭାଗବତ ଅନ୍ତ୍ୟ ୫ମ ପରିଚ୍ଛେଦରେ ବିଶେଷରୂପେ ବର୍ଣ୍ଣିତ ହୋଇ- ଅଛି । ୫୧ ।

ତିନସ୍ୱରୂପେ—ସାକ୍ଷାତ୍ରୂପ, ଆବେଶରୂପ ଏବଂ ଆବିର୍ଭାବରୂପ । ୫୪ ।
ଶ୍ରୀଲୀଳାବିଗ୍ରହଧାରୀରୂପକୁ ଭକ୍ତମାନେ ଦର୍ଶନ କରନ୍ତି, ଏଥିରେ କେହି ଦର୍ଶନ କରେ କେହି କରେ ନା ଏପରି ନୁହେଁ ।
ଯେଉଁ ଦେବତା ଯେଉଁ ବ୍ୟକ୍ତିଠାରେ ଆବିଷ୍ଟ ହୁଅନ୍ତି ସେହିବ୍ୟକ୍ତି ସେହି ଦେବତାର ଗୁଣ କ୍ରିୟା ପ୍ରକାଶ କରନ୍ତି । ଶ୍ରୀମନ୍ମହାପ୍ରଭୁ ଶ୍ରୀନକୁଳବ୍ରହ୍ମଚାରୀଙ୍କଠାରେ ଆବିଷ୍ଟ ହୋଇଥିବାର ଶ୍ରୀଶିବାନନ୍ଦ ସେନ ପରୀକ୍ଷା କରି ଅନୁଭବ କରିଥିଲେ । ୫୫ ।

ଯେଉଁ ଦେବତା ଯେଉଁ ବ୍ୟକ୍ତିଙ୍କ ନିକଟ ଆବିର୍ଭୂତ ହୁଅନ୍ତି, ଦେବତାଙ୍କ ଅନୁଗ୍ରହରୁ ସେହି ବ୍ୟକ୍ତି ମାତ୍ର ତାହାଙ୍କର ଦର୍ଶନ ଲାଭ କରନ୍ତି । ଉପସ୍ଥିତ ଅନ୍ୟ କୌଣସି ବ୍ୟକ୍ତି ସେ ଦେବତାଙ୍କର ଦର୍ଶନ ଲାଭ କରନ୍ତି ନାହିଁ । ଶ୍ରୀମନ୍ ମହାପ୍ରଭୁ ଶ୍ରୀଶିବାନନ୍ଦ ସେନଙ୍କ ଆଳୟରେ ଶ୍ରୀ ନୃସିଂହାନନ୍ଦଙ୍କ ନିକଟ ଆବିର୍ଭୂତ ହୋଇଥିଲେ ।୫୭।

ଶ୍ରୀ ବିଜୟ ଦାସ ନାମ ପ୍ରଭୁର ଆଖରିଆ ।
ପ୍ରଭୁରେ ଅନେକ ପୁଁଥି ଦିୟାଛେନ୍ ଲିଖିୟା ।୬୩।
'ରତ୍ନବାହୁ' ବଲି ପ୍ରଭୁ ଥୁଇଲ ତାଁର ନାମ ।
ଅକିଞ୍ଚନ ପ୍ରଭୁର ପ୍ରିୟ କୃଷ୍ଣଦାସ ନାମ ।୬୪।
ଖୋଲାବେଚା ଶ୍ରୀଧର ପ୍ରଭୁର ପ୍ରିୟ ଦାସ ।
ଯାହା-ସନେ ପ୍ରଭୁ କରେ ନିତ୍ୟ ପରିହାସ ।୬୫।
ପ୍ରଭୁ ଯାର ନିତ୍ୟ ଲୟ ଥୋଡ଼ ମୋଚା ଫଲ ।
ଯାର ଫୁଟା ଲୌହପାତ୍ରେ ପ୍ରଭୁ ପିଲା ଜଲ ।୬୬।
ପ୍ରଭୁର ଅତି ପ୍ରିୟଦାସ ଭଗବାନ୍-ପଣ୍ଡିତ ।
ଯାର ଦେହେ କୃଷ୍ଣ ପୂର୍ବେ ହୈଲା ଅଧିଷ୍ଠିତ ।୬୭।
ଜଗଦୀଶପଣ୍ଡିତ ଆର ହିରଣ୍ୟ ମହାଶୟ ।
ଯାଁରେ କୃପା କୈଲ ବାଲ୍ୟେ ପ୍ରଭୁ ଦୟାମୟ ।୬୮।
ଏଇ-ଦୁଇ-ଘରେ ପ୍ରଭୁ ଏକାଦଶୀ ଦିନେ ।
ବିଷ୍ଣୁର ନୈବେଦ୍ୟ ମାଗି ଖାଇଲା ଆପନେ ।୬୯।
ପ୍ରଭୁର ପଡୁୟା ଦୁଇ-ପୁରୁଷୋତ୍ତମ,-ସଞ୍ଜୟ ।
ବ୍ୟାକରଣେ ମୁଖ୍ୟ ଶିଷ୍ୟ ଦୁଇ ମହାଶୟ ।୭୦।
ବନମାଲୀପଣ୍ଡିତ ଶାଖା ବିଖ୍ୟାତ ଜଗତେ ।
ସୋଣାର ମୂଷଲ ହଲ ଦେଖିଲ ପ୍ରଭୁର ହାତେ ।୭୧।
ଶ୍ରୀ ଚୈତନ୍ୟେର ଅତିପ୍ରିୟ ବୁଦ୍ଧିମନ୍ତଖାନ ।
ଆଜନ୍ମ ଆଜ୍ଞାକାରୀ ତେଁହୋ ସେବକପ୍ରଧାନ ।୭୨।
ଗରୁଡ଼ପଣ୍ଡିତ ଲୟେ ଶ୍ରୀନାମମଙ୍ଗଲ ।
ନାମବଲେ ବିଷ ଯାଁରେ ନା କରିଲ ବଲ ।୭୩।
ଗୋପୀନାଥସିଂହ ଏକ ଚୈତନ୍ୟେର ଦାସ ।
'ଅକ୍ରୂର' ବଲି ପ୍ରଭୁ ଯାଁରେ କରେ ପରିହାସ ।୭୪।
ଭାଗବତୀ ଦେବାନନ୍ଦ ବକ୍ରେଶ୍ୱର-କୃପାତେ ।
ଭାଗବତେର ଭକ୍ତି-ଅର୍ଥ ପାଇଲ ପ୍ରଭୁହୈତେ ।୭୫।

ଖଣ୍ଡବାସୀ ମୁକୁନ୍ଦଦାସ ଶ୍ରୀ ରଘୁନନ୍ଦନ ।
ନରହରିଦାସ, ଚିରଞ୍ଜୀବ, ସୁଲୋଚନ ।୭୬।
ଏଇ ସବ ମହାଶାଖା ଚୈତନ୍ୟକୃପାଧାମ ।
ପ୍ରେମଫଲ-ଫୁଲ କରେ ଯାହାଁ ତାହାଁ ଦାନ ।୭୭।
କୁଲୀନଗ୍ରାମବାସୀ - ସତ୍ୟରାଜ, ରାମାନନ୍ଦ ।
ଯଦୁନାଥ, ପୁରୁଷୋତ୍ତମ, ଶଙ୍କର,ବିଦ୍ୟାନନ୍ଦ ।୭୮
ବାଣୀନାଥବସୁ ଆଦି ଯତ ଗ୍ରାମୀ ଜନ ।
ସବେଇ ଚୈତନ୍ୟ ଭୃତ୍ୟ ଚୈତନ୍ୟପ୍ରାଣଧନ ।୭୯।
ପ୍ରଭୁ କହେ-କୁଲୀନଗ୍ରାମେର ଯେ ହୟ କୁକ୍କୁର ।
ସେହୋ ମୋର ପ୍ରିୟ—ଅନ୍ୟଜନ ବହୁ ଦୂର ॥
କୁଲୀନଗ୍ରାମୀର ଭାଗ୍ୟ କହନେ ନା ଯାୟ ।
ଶୂକର ଚରାୟ ଡୋମ—ସେହୋ କୃଷ୍ଣ ଗାୟ ॥
ଅନୁପମ-ମଲ୍ଲିକ, ଶ୍ରୀରୂପ, ସନାତନ ।
ଏଇ ତିନ ଶାଖା ବୃକ୍ଷେର ପଶ୍ଚିମେ ସର୍ବୋତ୍ତମ ।୮୨
ତାର ମଧ୍ୟେ ରୂପ-ସନାତନ ବଡ଼ ଶାଖା ।
ଅନୁପମ-ଜୀବ-ରାଜେନ୍ଦ୍ରାଦି ଉପଶାଖା ।୮୩।
ମାଲୀର ଇଚ୍ଛାୟ ଦୁ ଶାଖା ବହୁତ ବାଢ଼ିଲ ।
ବାଢିୟା ପଶ୍ଚିମଦେଶ ସବ ଆଚ୍ଛାଦିଲ । ୮୪ ।
ଆ-ସିନ୍ଧୁ-ନଦୀ-ତୀର ଆର ହିମାଲୟ ।
ବୃନ୍ଦାବନ-ମଥୁରାଦି ଯତ ତୀର୍ଥ ହୟ ।୮୫ ।
ଦୁଇ ଶାଖାର ପ୍ରେମ ଫଲେ ସକଲ ଭାସିଲ ।
ପ୍ରେମଫଲାସ୍ୱାଦେ ଲୋକ ଉନ୍ମତ୍ତ ହଇଲ ।୮୬ ।
ପଶ୍ଚିମେର ଲୋକ ସବ ମୂଢ଼ ଅନାଚାର ।
ତାହାଁ ପ୍ରଚାରିଲ ଦୋହେଁ ଭକ୍ତି ସଦାଚାର ।୮୭।
ଶାସ୍ତ୍ରଦୃଷ୍ଟେ କୈଲ ଲୁପ୍ତ ତୀର୍ଥେର ଉଦ୍ଧାର ।
ବୃନ୍ଦାବନେ କୈଲ ଶ୍ରୀମୂର୍ତ୍ତିସେବାର ପ୍ରଚାର ।୮୮।

ଆଖରିୟା—ପୁସ୍ତକଲେଖକ ।୬୩।
ଖୋଲା—କଦଳୀପଟୁଆ । ବେଚ୍—ବିକ୍ରିକରିବା ।୬୫।
ଥୋଡ୍—ଥୋଡମଞ୍ଜା । ମୋଚ୍—କଦଳୀଭଣ୍ଡା ।୬୬।
ପଡୁଆ— ଛାତ୍ର । ୭୦ ।
ଡୋମ — ଘୁଷୁରିଆ ।୮୧ ।
ଦୁଇଶାଖା— ରୂପ ଓ ସନାତନ ।୮୪ ।
ମୂଢ଼ — ଭକ୍ତିହୀନ; ଅନାଚାର — ସଦାଚାରବିହୀନ । ମୂଢ଼ ଅନାଚାରିମାନଙ୍କୁ ଭକ୍ତି ଓ ସଦାଚାର ଶିକ୍ଷାଦେଲେ । ୮୬ ।

ମହାପ୍ରଭୁର ପ୍ରିୟଭୃତ୍ୟ ରଘୁନାଥଦାସ ।
ସର୍ବତ୍ୟାଗି କୈଲ ପ୍ରଭୁର ପଦତଳେ ବାସ ।୮୯।
ପ୍ରଭୁ ସମର୍ପିଲ ତାଁରେ ସ୍ୱରୂପେର ହାଥେ ।
ପ୍ରଭୁର ଗୁପ୍ତସେବା କୈଲ ସ୍ୱରୂପେର ସାଥେ ।୯୦।
ଷୋଡ଼ଶ-ବତ୍ସର କୈଲ ଅନ୍ତରଙ୍ଗ-ସେବନ ।
ସ୍ୱରୂପେର ଅନ୍ତର୍ଦ୍ଧାନେ ଆଇଲା ବୃନ୍ଦାବନ ।୯୧।
ବୃନ୍ଦାବନେ ଦୁଇ ଭାଇର ଚରଣ ଦେଖିୟା ।
ଗୋବର୍ଦ୍ଧନେ ତ୍ୟଜବ ଦେହ ଭୃଗୁପାତ କରିୟା ॥
ଏଇତ ନିଶ୍ଚୟ କରି ଆଇଲା ବୃନ୍ଦାବନେ ।
ଆସି ରୂପ-ସନାତନରେ ବନ୍ଦିଲା ଚରଣେ ।୯୩।
ତବେ ଦୁଇ ଭାଇ ତାଁରେ ମରିତେ ନା ଦିଲ ।
ନିଜ ତୃତୀୟ ଭାଇ କରି ନିକଟେ ରାଖିଲ ।୯୪।
ମହାପ୍ରଭୁର ଲୀଳା ଯତ—ବାହିର-ଅନ୍ତର ।
ଦୁଇ ଭାଇ ତାଁର ମୁଖେ ଶୁନେ ନିରନ୍ତର ।୯୫।
ଅନ୍ନଜଲ ତ୍ୟାଗ କୈଲ ଅନ୍ୟ କଥନ ।
ପଲ-ଦୁଇ-ତିନ ମାଠା କରେନ ଭକ୍ଷଣ ।୯୬।
ସହସ୍ର ଦଣ୍ଡବତ କରେନ, ଲୟେ ଲକ୍ଷନାମ ।
ଦୁଇ ସହସ୍ର ବୈଷ୍ଣବେରେ ନିତ୍ୟ ପରଣାମ ।୯୭।
ରାତ୍ରିଦିନେ ରାଧାକୃଷ୍ଣେର ମାନସ-ସେବନ ।
ପ୍ରହରେକ ମହାପ୍ରଭୁର ଚରିତ୍ର-କଥନ ।୯୮।
ତିନ-ସନ୍ଧ୍ୟା ରାଧାକୁଣ୍ଡେ ଅପତିତ-ସ୍ନାନ ।
ବ୍ରଜବାସୀ ବୈଷ୍ଣବେ କରେ ଆଲିଙ୍ଗନ-ମାନ ।୯୯।
ସାର୍ଦ୍ଧ ସପ୍ତପ୍ରହର କରେ ଭକ୍ତିର ସାଧନେ ।
ଚାରିଦଣ୍ଡ ନିଦ୍ରା—ସେହୋ ନହେ କୋନଦିନେ ॥

ତାଁହାର ସାଧନରୀତି ଶୁନିତେ ଚମତ୍କାର ।
ସେଇ ରଘୁନାଥଦାସ ପ୍ରଭୁ ଯେ ଆମାର ।୧୦୧।
ଇହା ସଭାର ଯୈଛେ ହୈଲ ପ୍ରଭୁର ମିଳନ ।
ଆଗେ ବିସ୍ତାରିୟା ତାହା କରିବ ବର୍ଣ୍ଣନ ।୧୦୨।
ଶ୍ରୀ ଗୋପାଳଭଟ୍ଟ ଏକ ଶାଖା ସର୍ବୋତ୍ତମ ।
ରୂପସନାତନ-ସଙ୍ଗେ ଯାଁର ପ୍ରେମ-ଆଲାପନ ।୧୦୩।
ଶଙ୍କରାରଣ୍ୟ-ଆଚାର୍ଯ୍ୟ ବୃକ୍ଷେର ଏକ ଶାଖା ।
ମୁକୁନ୍ଦ କାଶୀନାଥ ରୁଦ୍ର—ଉପଶାଖାୟ ଲେଖା ॥
ଶ୍ରୀନାଥପଣ୍ଡିତ ପ୍ରଭୁର କୃପାର ଭାଜନ ।
ଯାଁର କୃଷ୍ଣସେବା ଦେଖି ବଶ ତ୍ରିଭୁବନ ।୧୦୫।
ଜଗନ୍ନାଥ-ଆଚାର୍ଯ୍ୟ ପ୍ରଭୁର ପ୍ରିୟଦାସ ।
ପ୍ରଭୁର ଆଜ୍ଞାତେ ତେଁହୋ କୈଲ ଗଙ୍ଗାବାସ।୧୦୬
କୃଷ୍ଣଦାସ ବୈଦ୍ୟ ଆର ପଣ୍ଡିତ ଶେଖର ।
କବିଚନ୍ଦ୍ର ଆର କୀର୍ତ୍ତନୀୟା ଷଷ୍ଠୀବର ।୧୦୭।
ଶ୍ରୀନାଥ ମିଶ୍ର ଶୁଭାନନ୍ଦ ଶ୍ରୀରାମ ଈଶାନ ।
ଶ୍ରୀନିଧି ଶ୍ରୀଗୋପୀକାନ୍ତ ମିଶ୍ର ଭଗବାନ ।୧୦୮।
ସୁବୁଦ୍ଧିମିଶ୍ର ହୃଦୟାନନ୍ଦ କମଲନୟନ ।
ମହେଶପଣ୍ଡିତ ଶ୍ରୀକର ଶ୍ରୀମଧୁସୂଦନ ।୧୦୯।
ପୁରୁଷୋତ୍ତମ ଶ୍ରୀଗାଲିମ ଜଗନ୍ନାଥ ଦାସ ।
ଶ୍ରୀଚନ୍ଦ୍ରଶେଖର-ବୈଦ୍ୟ ଦ୍ୱିଜ ହରିଦାସ ।୧୧୦।
ରାମଦାସ କବିଚନ୍ଦ୍ର ଶ୍ରୀଗୋପାଳଦାସ ।
ଭାଗବତାଚାର୍ଯ୍ୟ ଠାକୁର ଶାରଙ୍ଗଦାସ ।୧୧୧।
ଜଗନ୍ନାଥ ତୀର୍ଥ ବିପ୍ର ଶ୍ରୀଜାନକୀନାଥ ।
ଗୋପାଲ-ଆଚାର୍ଯ୍ୟ ଆର ବିପ୍ର ବାଣୀନାଥ ।୧୧୨।

---

ଦୁଇଭାଇ-ରୂପ, ସନାତନ । ଭୃଗୁପାତ—ପର୍ବତଉପରୁ ଡେଇଁପଡ଼ି ଦେହତ୍ୟାଗ । ୯୨ ।
ବାହିର ଅନ୍ତର—ବାହାରର ଲୀଳା କୀର୍ତ୍ତନାଦି ଓ ଅନ୍ତର ଲୀଳା ପ୍ରଳାପାଦି । ୯୫ ।
ମାଠା—ଘୋଲଦହି, ପଲ—ଆଠରତିଓଜନ । ୯୬ ।
ଅପତିତ ସ୍ନାନ—କ୍ରମଭଙ୍ଗ ବ୍ୟତୀତ । ୯୯ ।

ଶ୍ରୀ ଗାଲିମ—ଏହାର ଅର୍ଥ କେହି ଟୀକାକାର "ବହୁବକ୍ତା" ବୋଲି ଲେଖି ଅଛନ୍ତି କେହି ବା ବ୍ୟକ୍ତିବିଶେଷର ନାମ ବୋଲି ଉଲ୍ଲେଖ କରିଅଛନ୍ତି । ୧୧୦ ।
ଘୋଲି ସାଙ୍ଗେର—ଖୋଲ୍ଟିଏ ଗୁରୁ ବସ୍ତୁକୁ ଦଉଡ଼ିରେ ବାନ୍ଧି ତାହା ମଝିରେ ବାଉଁଶ-ଗଲେଇ ଦୁଇପାଖରୁ ଦୁଇଜଣ କାନ୍ଧେଇ ବହନେଲେ ତାକୁ ଏକସାଙ୍ଗ କୁହାଯାଏ ।

ଗୋବିନ୍ଦ ମାଧବ ବାସୁଦେବ ତିନ ଭାଇ ।
ଯାଁ-ସଭାର କୀର୍ତ୍ତନେ ନାଚେ ଚୈତନ୍ୟ-ନିତାଇ ॥
ରାମଦାସ-ଅଭିରାମ—ସଖ୍ୟ-ପ୍ରେମରାଶି ।
ଷୋଳ-ସାଙ୍ଗେର କାଷ୍ଠ ହାଥେ ନୈଲା କୈଲ ବାଂଶୀ ॥
ପ୍ରଭୁର ଆଜ୍ଞାୟ ନିତ୍ୟାନନ୍ଦ ଗୌଡ଼େ ଚଲିଲ ।
ତାଁର ସଙ୍ଗେ ତିନଜନ ପ୍ରଭୁ-ଆଜ୍ଞାୟ ଆଇଲ— ॥
ରାମଦାସ, ମାଧବ, ଆର ବାସୁଦେବଘୋଷ ।
ପ୍ରଭୁ-ସଙ୍ଗେ ରହେ ଗୋବିନ୍ଦ ପାଇୟା ସନ୍ତୋଷ ॥
ଭାଗବତାଚାର୍ଯ୍ୟ ଚିରଞ୍ଜୀବ ଶ୍ରୀରଘୁନନ୍ଦନ ।
ମାଧବାଚାର୍ଯ୍ୟ କମଲାକାନ୍ତ ଶ୍ରୀଯଦୁନନ୍ଦନ ।୧୧୭।
ମହାକୃପାପାତ୍ର ପ୍ରଭୁ ଜଗାଇ-ମାଧାଇ ।
ପତିତପାବନ-ଗୁଣେର ସାକ୍ଷୀ ଦୁଇ ଭାଇ ।୧୧୮।
ଗୌଡ଼ଦେଶେର ଭକ୍ତେର କୈଲ ସଂକ୍ଷେପ କଥନ
ଅନନ୍ତ ଚୈତନ୍ୟଭକ୍ତ—ନା ଯାୟ କଥନ ।୧୧୯।
ନୀଳାଚଲେ ଏଇ ସବ ଭକ୍ତ ପ୍ରଭୁସଙ୍ଗେ ।
ଦୁଇସ୍ଥାନେ ପ୍ରଭୁସେବା କୈଲ ନାନାରଙ୍ଗେ ।୧୨୦
କେବଳ ନୀଳାଚଲେ ପ୍ରଭୁର ଯେ-ଯେ ଭକ୍ତଗଣ ।
ସଂକ୍ଷେପେ ତା-ସଭାର କିଛୁ କରିୟେ କଥନ ।୧୨୧।
ନୀଳାଚଲେ ପ୍ରଭୁସଙ୍ଗେ ଯତ ଭକ୍ତଗଣ ।
ସଭାର ଅଧ୍ୟକ୍ଷ ପ୍ରଭୁର ମର୍ମ୍ମ ଦୁଇ ଜନ—।୧୨୨।
ପରମାନନ୍ଦପୁରୀ, ଆର ସ୍ୱରୂପ ଦାମୋଦର ।
ଗଦାଧର ଜଗଦାନନ୍ଦ ଶଙ୍କର ବକ୍ରେଶ୍ୱର ।୧୨୩।
ଦାମୋଦର ପଣ୍ଡିତ ଠାକୁର ହରିଦାସ ।
ରଘୁନାଥବୈଦ୍ୟ ଆର ରଘୁନାଥଦାସ ।୧୨୪।
ଇତ୍ୟାଦିକ ପୂର୍ବସଙ୍ଗୀ ବଡ଼ଭକ୍ତଗଣ ।
ନୀଳାଚଲେ ରହି କରେ ପ୍ରଭୁର ସେବନ ।୧୨୫।

ଆର ଯତ ଭକ୍ତଗଣ ଗୌଡ଼ଦେଶବାସୀ ।
ପ୍ରତ୍ୟବ୍ଦ ପ୍ରଭୁରେ ଦେଖେ ନୀଳାଚଲେ ଆସି ।୧୨୬
ନୀଳାଚଲେ ପ୍ରଭୁର ଯାର ପ୍ରଥମ ମିଲନ ।
ସେଇ ଭକ୍ତଗଣ ଏବେ କରିୟେ ଗଣନ—।୧୨୭।
ବଡ଼ଶାଖା ଏକ ସାର୍ବଭୌମ ଭଟ୍ଟାଚାର୍ଯ୍ୟ ।
ତାଁର ଭଗ୍ନୀପତି ଶ୍ରୀଗୋପୀନାଥାଚାର୍ଯ୍ୟ ।୧୨୮।
କାଶୀମିଶ୍ର ପ୍ରଦ୍ୟୁମ୍ନମିଶ୍ର ରାୟ ଭବାନନ୍ଦ ।
ଯାଁହାର ମିଲନେ ପ୍ରଭୁ ପାଇଲ ଆନନ୍ଦ ।୧୨୯।
ଆଲିଙ୍ଗନ କରି ତାଁରେ ବଲିଲ ବଚନ—।
ତୁମି ପାଣ୍ଡୁ, ପଞ୍ଚପାଣ୍ଡବ ତୋମାର ନନ୍ଦନ ।୧୩୦।
ରାମାନନ୍ଦ ରାୟ ପଟ୍ଟନାୟକ ଗୋପୀନାଥ ।
କଲାନିଧି ସୁଧାନିଧି ନାୟକ ବାଣୀନାଥ ।୧୩୧।
ଏଇ ପଞ୍ଚପୁତ୍ର ତୋମାର—ମୋର ପ୍ରିୟପାତ୍ର ।
ରାମାନନ୍ଦ ସହ ମୋର ଦେହ ଭେଦମାତ୍ର ।୧୩୨।
ପ୍ରତାପରୁଦ୍ର ରାଜା ଆର ଓଢ୍ର କୃଷ୍ଣାନନ୍ଦ ।
ପରମାନନ୍ଦ ମହାପାତ୍ର ଓଢ୍ର ଶିବାନନ୍ଦ ।୧୩୩।
ଭଗବାନ୍-ଆଚାର୍ଯ୍ୟ ବ୍ରହ୍ମାନନ୍ଦାଖ୍ୟ ଭାରତୀ ।
ଶ୍ରୀଶିଖିମାହାତି ଆର ମୁରାରିମାହାତି ।୧୩୪।
ମାଧବୀଦେବୀ—ଶିଖିମାହାତିର ଭଗିନୀ ।
ଶ୍ରୀରାଧାର ଦାସୀମଧ୍ୟେ ଯାର ନାମ ଗଣି ।୧୩୫।
ଈଶ୍ୱର ପୁରୀର ଶିଷ୍ୟବ୍ରହ୍ମଚାରୀ କାଶୀଶ୍ୱର ।
ଶ୍ରୀଗୋବିନ୍ଦ ନାମ ତାଁର ପ୍ରିୟ ଅନୁଚର ।୧୩୬।
ତାଁର ସିଦ୍ଧିକାଲେ ଦୋଁହେ ତାଁର ଆଜ୍ଞା ପାଞା ।
ନୀଳାଚଲେ ପ୍ରଭୁସ୍ଥାନେ ମିଲିଲ ଆସିୟା । ୧୩୭।
ଗୁରୁର ସମ୍ବନ୍ଧେ ମାନ୍ୟ କୈଲ ଦୋଁହାକାରେ ।
ତାଁର ଆଜ୍ଞା ମାନି ସେବା ଦିଲେନ ଦୋଁହାରେ ॥

ଏହାପରେ କୌଣସି ବିଶେଷ ଗୁରୁ ବସ୍ତୁକୁ ଜଣେ ବହନ କରିବାକୁ ଦେଲେ ତାକୁ ଷୋଳ-ସାଙ୍ଗ କୁହାଯାଏ । ଏହାପରେ ଗୋଟିଏ ବୃହତ୍ କାଷ୍ଠକୁ ଶ୍ରୀ ଅଭିରାମଦାସଠାକୁର ନିଜ ଙ୍ଗିରେ ଠିଆହୋଇ ବଂଶୀପରି ଧାରଣ କରିଥିଲେ । ୧୧୪ ।
ମର୍ମ୍ମ—ଅନ୍ତରଙ୍ଗ । ୧୨୨ ।
ତାଁର—ଶ୍ରୀ ଈଶ୍ୱରପୁରୀଙ୍କର । ୧୩୬ ।

ଅଙ୍ଗସେବା ଗୋବିନ୍ଦେରେ ଦିଲେନ ଈଶ୍ବର ।
ଜଗନ୍ନାଥ ଦେଖିତେ ଆଗେ ଚଲେନ କାଶୀଶ୍ୱର ॥
ଅପରଶ ଯାୟ ଗୋସାଞି ମନୁଷ୍ୟ ଗହନେ ।
ମନୁଷ୍ୟ ଠେଲିପଥ କରେ କାଶୀ ବଲବାନେ ॥
ସ୍ନାନ କରାଇ ଦୌଡ଼େ ପ୍ରଭୁର କିଙ୍କର ।
ଗୋବିନ୍ଦେର ସଙ୍ଗ ସେବା କରେ ନିରନ୍ତର ॥
କାଉଁଶ-ଘଡ଼ା ଜଲ ଦିନେ ଭରେନ ସ୍ନାନାଇ ।
ଗୋବିନ୍ଦ-ଆଜ୍ଞାୟ ସେବା କରେନ କନ୍ଦାଇ ।୧୪୨।
କୃଷ୍ଣଦାସ-ନାମ ଶୁଦ୍ଧ କୁଲୀନ ବ୍ରାହ୍ମଣ ।
ଯାଁରେ ସଙ୍ଗେ ଲୈୟା କୈଲ ଦକ୍ଷିଣଗମନ ।୧୪୩।
ବଲଭଦ୍ର ଭଟ୍ଟାଚାର୍ଯ୍ୟ ପ୍ରେମଅଧିକାରୀ ।
ମଥୁରାଗମନେ ପ୍ରଭୁର ହୈଲା ବ୍ରହ୍ମଚାରୀ ।୧୪୪।
ବଡ଼ ହରିଦାସ ଆର ଛୋଟ ହରିଦାସ ।
ଦୁଇ କୀର୍ତ୍ତନୀୟା ରହେ ମହାପ୍ରଭୁର ପାଶ ।୧୪୫।
ରାମଭଦ୍ରାଚାର୍ଯ୍ୟ ଆର ଓଢ୍ର ସିଂହେଶ୍ୱର ।
ତପନ-ଆଚାର୍ଯ୍ୟ ଆର ରଘୁ ନୀଲାମ୍ବର ।୧୪୬।
ସିଙ୍ଗା ଭଟ୍ଟ କାମାଭଟ୍ଟ ଦନ୍ତୁର ଶିବାନନ୍ଦ ।
ଗୌଡ଼େ ପୂର୍ବଭୃତ୍ୟ ପ୍ରଭୁର ପ୍ରିୟ କମଲାନନ୍ଦ ।୧୪୭।
ଶ୍ରୀଅଚ୍ୟୁତାନନ୍ଦ ଅଦ୍ୱୈତ-ଆଚାର୍ଯ୍ୟ ତନୟ ।
ନୀଲାଚଳେ ରହେ ପ୍ରଭୁର ଚରଣ-ଆଶ୍ରୟ ।୧୪୮।
ନିର୍ଲୋମ ଗଙ୍ଗାଦାସ ଆର ବିଷ୍ଣୁଦାସ ।
ଏଇ ସବେର ପ୍ରଭୁସଙ୍ଗେ ନୀଲାଚଲେ ବାସ ।୧୪୯।
ବାରାଣସୀମଧ୍ୟେ ପ୍ରଭୁର ଭକ୍ତ ତିନ ଜନ ।
ଚନ୍ଦ୍ରଶେଖର ବୈଦ୍ୟ ଆର ମିଶ୍ର ତପନ ।୧୫୦।
ରଘୁନାଥ ଭଟ୍ଟାଚାର୍ଯ୍ୟ-ମିଶ୍ରେର ନନ୍ଦନ ।
ପ୍ରଭୁ ଯବେ କାଶୀ ଆଇଲା ଦେଖି ବୃନ୍ଦାବନ ।୧୫୧।
ଚନ୍ଦ୍ରଶେଖର ଘରେ କୈଲ ଦୁଇମାସ ବାସ ।
ତପନ-ମିଶ୍ରେର ଘରେ ଭିକ୍ଷା ଦୁଇମାସ ।୧୫୨।
ରଘୁନାଥ ବାଲ୍ୟେ କୈଲ ପ୍ରଭୁର ସେବନ ।
ଉଚ୍ଛିଷ୍ଟମାର୍ଜ୍ଜନ ଆର ପାଦସମ୍ବାହନ ।୧୫୩।
ବଡ଼ ହୈଲେ ନୀଲାଚଲେ ଗେଲା ପ୍ରଭୁର ସ୍ଥାନେ ।
ଅଷ୍ଟମାସ ରହିଲ, ଭିକ୍ଷା ଦେନ କୋନ ଦିନେ ।୧୫୪।
ପ୍ରଭୁର ଆଜ୍ଞା ପାଞା ବୃନ୍ଦାବନେରେ ଆଇଲା ।
ଆସିୟା ଶ୍ରୀରୂପଗୋସାଞିର ନିକଟେ ରହିଲ ।୧୫୫।
ତାଁର ସ୍ଥାନେ ରୂପଗୋସାଞି ଶୁନେନ ଭାଗବତ ।
ପ୍ରଭୁର କୃପାୟ ତେଁହୋ କୃଷ୍ଣପ୍ରେମେ ମତ୍ତ ।୧୫୬।
ଏଇମତ ସଂଖ୍ୟାତୀତ ଚୈତନ୍ୟଭକ୍ତଗଣ ।
ଦିଙ୍ମାତ୍ର ଲିଖି ସମ୍ୟକ୍ ନା ଯାୟ କଥନ ।୧୫୭॥
ଏକୈକ ଶାଖାତେ ଲାଗେ କୋଟି କୋଟି ଡାଲ ।
ତାର ଶିଷ୍ୟ ଉପଶିଷ୍ୟ ତାର-ଉପଡାଲ ।୧୫୮॥
ସକଲ ଭରିୟା ଆଛେ ପ୍ରେମଫୁଲଫଲେ ।
ଭସାଇଲ ତ୍ରିଜଗତ କୃଷ୍ଣପ୍ରେମଜଲେ ।୧୫୯।
ଏକୈକ ଶାଖାର ଶକ୍ତି ଅନନ୍ତ ମହିମା ।
ସହସ୍ର ବଦନେ ଯାର ଦିତେ ନାରେ ସୀମା ।୧୬୦।
ସଂକ୍ଷେପେ କହିଲ ମହାପ୍ରଭୁର ଭକ୍ତବୃନ୍ଦ ।
ସମଗ୍ର ଗଣିତେ ନାରେ ଆପନେ ଅନନ୍ତ ।୧୬୧॥
ଶ୍ରୀରୂପ ରଘୁନାଥ ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ ।୧୬୨॥

ଇତି ଶ୍ରୀ ଚୈତନ୍ୟଚରିତାମୃତେ ଆଦିଖଣ୍ଡେ ମୂଲ-ସ୍କନ୍ଧ ଶାଖା ବର୍ଣ୍ଣନଂ ନାମ ଦଶମ ପରିଚ୍ଛେଦଃ ।୧୦

ଈଶ୍ୱର—ଏଠାରେ ଶ୍ରୀମନ୍ ମହାପ୍ରଭୁ । ଆଗେ—ମହାପ୍ରଭୁଙ୍କ ଆଗରେ । ୧୩୯ ।
ଅପରଶ—କାହାରିକୁ ସ୍ପର୍ଶ ନ କରି । ଗୋସାଞି—ଶ୍ରୀମନ୍ ମହାପ୍ରଭୁ । ମନୁଷ୍ୟ ଗହନେ—ମନୁଷ୍ୟଭିଡ଼ରେ । କାଶୀ—କାଶୀଶ୍ୱର । ୧୪୦ ।
ଘଡ଼ା—କଳସୀ । ମାଠିଆ । ୧୪୧ ।
ଦନ୍ତୁର—ଦାନ୍ତୁଡ଼ା । ୧୪୭ ।
ନିର୍ଲୋମ—ଲୋମଶୂନ୍ୟ । ୧୪୯ ।
ମିଶ୍ର—ତପନ ମିଶ୍ର । ୧୫୧

ଦଶମ ପରିଚ୍ଛେଦ ସମାପ୍ତ ।

—0*0—

## ଏକାଦଶ ପରିଚ୍ଛେଦ ।

ନିତ୍ୟାନନ୍ଦପଦାମ୍ଭୋଜଭୃଙ୍ଗାନ୍ ପ୍ରେମମଧୂନ୍ମଦାନ୍
ନତ୍ୱାଖିଳାନ୍ ତେଷୁ ମୁଖ୍ୟା ଲିଖ୍ୟନ୍ତେ କତିଚିନ୍ମୟା ॥
ଜୟ ଜୟ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ।
ଜୟାଦ୍ୱୈତଚନ୍ଦ୍ର ଜୟ ନିତ୍ୟାନନ୍ଦ ଧନ୍ୟ । ୧ ॥
ତଥାହି —
ତସ୍ୟ ଶ୍ରୀକୃଷ୍ଣଚୈତନ୍ୟସତ୍ପ୍ରେମାମରଶାଖିନଃ
ଊର୍ଦ୍ଧ୍ୱସ୍କନ୍ଧାବଧୂତେନ୍ଦୋଃ ଶାଖାରୂପାନ୍ ଗଣାନ୍ ନୁମଃ
ଶ୍ରୀନିତ୍ୟାନନ୍ଦବୃକ୍ଷେର ସ୍କନ୍ଧ ଗୁରୁତର ॥
ତାହାତେ ଜନ୍ମିଲ ଶାଖା-ପ୍ରଶାଖା ବିସ୍ତର । ୨ ॥
ମାଲାକାରେର ଇଚ୍ଛାଜଲେ ବାଡ଼େ ଶାଖାଗଣ ॥
ପ୍ରେମ-ଫଲ-ଫୁଲେ ଭରି ଛାଇଲ ଭୁବନ ॥ ୩ ॥
ଅସଂଖ୍ୟ ଅନନ୍ତଗଣ—କେ କରୁ ଗଣନ ॥
ଆପନ ଶୋଧିତେ କହି ମୁଖ୍ୟ ମୁଖ୍ୟ ଜନ । ୪ ।
ଶ୍ରୀ ବୀରଭଦ୍ର-ଗୋସାଇଁ ସ୍କନ୍ଧ ମହାଶାଖା ॥
ତାଁର ଉପଶାଖା ଯତ ଅସଂଖ୍ୟ ତାର ଲେଖା ॥ ୫ ॥
ଈଶ୍ୱର ହଇୟା କହାଯ଼ ' ମହାଭାଗବତ ' ॥
ବେଦ ଧର୍ମାତୀତ ହୈୟା ବେଦଧର୍ମେ ରତ ॥ ୬ ॥
ଅନ୍ତରେ ଈଶ୍ୱରଚେଷ୍ଟା, ବାହିରେ ନିର୍ଦ୍ଦମ୍ଭ ।
ଚୈତନ୍ୟଭକ୍ତିମଣ୍ଡପେ ତେଁହୋ ମୂଳସ୍ତମ୍ଭ । ୭ ।

## ଏକାଦଶ ପରିଚ୍ଛେଦ ।

ନିତ୍ୟାନନ୍ଦପଦାମ୍ଭୋଜଭୃଙ୍ଗାନ୍ ପାଦପଦ୍ମମଧୁପାନ୍ ଶାଖାରୂପ-ଭକ୍ତାନ୍ ଅଖିଳାନ୍ ଧମ୍ମ-ବାନ୍ଧାନ୍ ନତ୍ୱା ନମସ୍କାରଂ କୃତ୍ୱା, କଥମ୍ଭୂତାନ୍ ତାନ୍ ପ୍ରେମମଧୂନ୍ମଦାନ୍ ପ୍ରେମମଧୁପାନେନ ଉନ୍ମତ୍ତାନ୍ ତେଷୁ ଭକ୍ତେଷୁ ମଧ୍ୟେଷୁ ଅସଂଖ୍ୟେଷୁ କତିଚନ୍ ମୁଖ୍ୟାଃ ପ୍ରଧାନାଃ ଭକ୍ତାଃ ମୟା କୃଷ୍ଣଦାସେନ ଲିଖ୍ୟନ୍ତେ ନିରୂପ୍ୟନ୍ତେ ଇତ୍ୟର୍ଥଃ । ୧ମ ଶ୍ଳୋକଃ ।

ଶ୍ରୀ କୃଷ୍ଣଚୈତନ୍ୟସତ୍ପ୍ରେମାମରଶାଖିନଃ (ଶ୍ରୀକୃଷ୍ଣଚୈତନ୍ୟ ଏବ ସତଃ ନିତ୍ୟସ୍ୟ ପ୍ରେମ-ରୂପଫଳସ୍ୟ ଅମରଶାଖୀ କଳ୍ପବୃକ୍ଷଃ ତସ୍ୟ ) ତସ୍ୟ ( ପ୍ରସିଦ୍ଧସ୍ୟ ) ଊର୍ଦ୍ଧ୍ୱସ୍କନ୍ଧାବଧୂତେନ୍ଦୋଃ ( ଊର୍ଦ୍ଧ୍ୱ-ସ୍କନ୍ଧରୂପସ୍ୟ ଅବଧୂତେନ୍ଦୋଃ ନିତ୍ୟାନନ୍ଦଚନ୍ଦ୍ରସ୍ୟ ) ଶାଖାରୂପଗଣାନ୍ ନୁମଃ । ୨ୟ ଶ୍ଳୋକଃ ।

ନନୁ ଈଶ୍ୱରତ୍ୱାତ୍ ଶ୍ରୀ ନିତ୍ୟାନନ୍ଦାଦ୍ଭିନ୍ନ ଶ୍ରୀ ବୀରଭଦ୍ରୋଽପି କଥଂ ସ୍କନ୍ଧଶାଖା ନ ଭବତୀ-ତ୍ୟାଶଙ୍କ୍ୟାହ ସ୍ୱପାର୍ଥମାହ ଈଶ୍ୱର ଇତି । ଈଶ୍ୱର ହଇୟା ଇତ୍ୟାଦ୍ୟା—ତେନ ନିର୍ଦ୍ଦିଷ୍ଟମାହ ବୀରଭଦ୍ରଃ ଶାଖାସ୍ୱାମୁକ୍ତଃ । ୬ । ଚଃ ଚଃ

ଶ୍ରୀମାନ୍ ନିତ୍ୟାନନ୍ଦଙ୍କ ଶ୍ରୀଚରଣର ଭ୍ରମରରୂପ ପ୍ରେମ, ମଧୁପାନରେ ଉନ୍ମତ୍ତ ଅଖିଳ ଶାଖା-ରୂପୀ ଭକ୍ତମାନଙ୍କ ମଧ୍ୟରୁ ପ୍ରଧାନ ୨ କେତେଜଣଙ୍କର ନାମ ଉଲ୍ଲେଖ କଲି । ୧ମ ଶ୍ଳୋକାର୍ଥ ।

ସେହି ଶ୍ରୀକୃଷ୍ଣଚୈତନ୍ୟରୂପ ବସ୍ତୁଙ୍କ ପ୍ରେମକଳ୍ପବୃକ୍ଷର ଊର୍ଦ୍ଧ୍ୱ ସ୍କନ୍ଧରୂପୀ ଶ୍ରୀ ନିତ୍ୟାନନ୍ଦଚନ୍ଦ୍ରଙ୍କ ଶାଖାରୂପ ଗଣମାନଙ୍କୁ ମୁଁ ପ୍ରଣାମ କରେଁ । ୨ୟ ଶ୍ଳୋକାର୍ଥ ।

ଶ୍ରୀମନ୍ ନିତ୍ୟାନନ୍ଦ ପ୍ରଭୁ ଶ୍ରୀ ଚୈତନ୍ୟରୂପୀ ଭକ୍ତିକଳ୍ପବୃକ୍ଷର ଏକ ବଡ଼ ସ୍କନ୍ଧ; ସେଥିରେ ଅନେକ ଶାଖାପ୍ରଶାଖା ଜନ୍ମହେଲେ । ୨ ।

ମାଳାକାର—ଶ୍ରୀମନ୍ ମହାପ୍ରଭୁ । ୩ ।

ଶ୍ରୀ ବୀରଭଦ୍ର ଗୋସାଇଁ—ଶ୍ରୀମନ୍ ନିତ୍ୟାନନ୍ଦପ୍ରଭୁଙ୍କର ପୁତ୍ର । ଶ୍ରୀମନ୍ ନିତ୍ୟାନନ୍ଦରୂପ ବୃକ୍ଷର ସ୍କନ୍ଧତୁଲ୍ୟ ମହାଶାଖା । ୫ ।

ଶ୍ରୀମନ୍ ବୀରଭଦ୍ରଗୋସାଇଁ ଶ୍ରୀ ଗୌରଗଣୋଦ୍ଦେଶ ଦ୍ୱିପୀକାର ନିରୂପଣ ଅନୁସାରେ ପୟୋ-ବ୍ଧିଶାୟୀ ଶ୍ରୀବିଷ୍ଣୁତତ୍ତ୍ୱ ହେତୁ ଈଶ୍ୱର ହେଲେହେଁ ଭଗବତ୍ ବ୍ୟବହାର କରନ୍ତି । ସେ ଈଶ୍ୱରହେତୁ, ବେଦଧର୍ମାତୀତ ହେଲେହେଁ ବେଦଧର୍ମକୁ ବିଧିମତ ପ୍ରତିପାଳନ କରନ୍ତି । ୬ ।

ନିର୍ଦ୍ଦମ୍ଭ—ଦାନଭାବାପନ୍ନ । ମୂଳସ୍ତମ୍ଭ—ପ୍ରଧାନସ୍ତମ୍ଭ । ୭ ।

ଅଦ୍ୟାପି ଯାଁହାର କୃପା ମହିମା ହଇତେଛେ ।
ଚୈତନ୍ୟ-ନିତ୍ୟାନନ୍ଦ ଗାୟ ସକଲ ଜଗତେ ।୮।
ସେଇ ହରିଦାସ ଠାକୁରେର ଲଇନୁ ଶରଣ ।
ଯାଁହାର ପ୍ରସାଦେ ହୟ ଅଭୀଷ୍ଟ ପୂରଣ । ୯ ।
ଶ୍ରୀରାମଦାସ ଆର ଗଦାଧର ଦାସ ।
ଚୈତନ୍ୟଗୋସାଞିର ଭକ୍ତ, ରହେ ତାଁର ପାଶ ।୧୦
ନିତ୍ୟାନନ୍ଦେ ଆଜ୍ଞା ଦିଲ ଯବେ ଗୌଡ଼େ ଯାଇତେ ।
ମହାପ୍ରଭୁ ଏଇ ଦୁଇ ଦିଲା ତାଁର ସାଥେ । ୧୧ ।
ଅତଏବ ଦୁଇ ଗଣେ ଦୋଁହାର ଗଣନ ।
ମାଧବ-ବାସୁଦେବ-ଘୋଷେର ଏଇ ବିବରଣ ।୧୨।
ରାମଦାସ ମୁଖ୍ୟ ଶାଖା ସଖ୍ୟପ୍ରେମରାଶି ।
ଷୋଲ-ସାଙ୍ଗେର କାଷ୍ଠ ଯେଇ ତୁଲି କୈଲ ବାଁଶୀ ॥
ଗଦାଧରଦାସ ଗୋପୀଭାବେ ପୂର୍ଣ୍ଣାନନ୍ଦ ।
ଯାଁର ଘରେ ଦାନକେଲି କୈଲ ନିତ୍ୟାନନ୍ଦ । ୧୪
ଶ୍ରୀମାଧବଘୋଷ ମୁଖ୍ୟ କୀର୍ତ୍ତନୀୟାଗଣେ ।
ନିତ୍ୟାନନ୍ଦ ପ୍ରଭୁ ନୃତ୍ୟ କରେ ଯାଁର ଗାନେ ।୧୫।
ବାସୁଦେବ ଗୀତେ କରେ ପ୍ରଭୁର ବର୍ଣ୍ଣନେ ।
କାଷ୍ଠ-ପାଷାଣ ଦ୍ରବେ ଯାହାର ଶ୍ରବଣେ । ୧୬ ।
ମୁରାରି ଚୈତନ୍ୟଦାସେର ଅଲୌକିକ ଲୀଲା ।
ବ୍ୟାଘ୍ରଗାଲେ ଚଡ଼ ମାରେ, ସର୍ପ-ସନେ ଖେଲା ।୧୭
ନିତ୍ୟାନନ୍ଦେର ଗଣ ଯତ—ସବ ବ୍ରଜେର ସଖା ।
ଶୃଙ୍ଗବେତ୍ର ଗୋପବେଶ-ଶିରେ ଶିଖିପାଖା । ୧୮ ।
ରଘୁନାଥବୈଦ୍ୟ ଉପାଧ୍ୟାୟ ମହାଶୟ ।
ଯାଁହାର ଦର୍ଶନେ କୃଷ୍ଣ ପ୍ରେମଭକ୍ତି ହୟ । ୧୯ ।
ସୁନ୍ଦରାନନ୍ଦ-ନିତ୍ୟାନନ୍ଦେର ସଖା ଭୃତ୍ୟ ମର୍ମ୍ମ ।
ଯାଁର ସଙ୍ଗେ ନିତ୍ୟାନନ୍ଦ କରେ ବ୍ରଜ ନର୍ମ୍ମ । ୨୦ ।
କମଲାକର-ପିପଲାଇ ଅଲୌକିକ-ରୀତ ।
ଅଲୌକିକ ପ୍ରେମ ତାଁର ଭୁବନେ ବିଦିତ । ୨୧ ।
ସୂର୍ଯ୍ୟଦାସ ସରଖେଲ, ତାଁର ଭାଇ କୃଷ୍ଣଦାସ ।
ନିତ୍ୟାନନ୍ଦେ ଦୃଢ଼ବିଶ୍ୱାସ-ପ୍ରେମେର ନିବାସ ।୨୨।
ଗୌରୀଦାସପଣ୍ଡିତ ଯାଁର ପ୍ରେମୋଦଣ୍ଡ ଭକ୍ତି ।
କୃଷ୍ଣପ୍ରେମ ଦିତେ ନିତେ ଧରେ ମହାଶକ୍ତି । ୨୩ ।
ନିତ୍ୟାନନ୍ଦେ ସମର୍ପିଲ ଜାତିକୁଲପାଁତି ।
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ କରି ପ୍ରାଣପତି । ୨୪ ।
ନିତ୍ୟାନନ୍ଦ-ପ୍ରିୟ ଅତି ପଣ୍ଡିତ ପୁରନ୍ଦର ।
ପ୍ରେମାର୍ଣ୍ଣବମଧ୍ୟେ ଫିରେ ଯୈଛେନ ମନ୍ଦର । ୨୫ ।
ପରମେଶ୍ୱରଦାସ ନିତ୍ୟାନନ୍ଦୈକଶରଣ ।
କୃଷ୍ଣଭକ୍ତି ପାୟ—ତାଁରେ ଯେ କରେ ସ୍ମରଣ । ୨୬
ଜଗଦୀଶ ପଣ୍ଡିତ ହୟ ଜଗତପାବନ ।
କୃଷ୍ଣପ୍ରେମାମୃତ ବର୍ଷେ ଯେନ ବର୍ଷା ଘନ । ୨୭।
ନିତ୍ୟାନନ୍ଦ-ପ୍ରିୟଭୃତ୍ୟ ପଣ୍ଡିତ ଧନଞ୍ଜୟ ।
ଅତ୍ୟନ୍ତ ବିରକ୍ତ ସଦା କୃଷ୍ଣପ୍ରେମମୟ । ୨୮।
ମହେଶ ପଣ୍ଡିତ ବ୍ରଜେର ଉଦାର ଗୋୟାଲ ।
ଢକ୍କାବାଦ୍ୟେ ନୃତ୍ୟ କରେ-ପ୍ରେମେ ମାତୋୟାଲ ॥

ଗଣାନ୍ତଃପାତିତା ତୁ ସେବକତ୍ୱେନ ପ୍ରେମାଦିବତ୍ତ୍ୱେନାପି ଭବତି । ତତ୍ର ରାମଦାସାଦ୍ୟାବ୍ରାମସ୍ୟ ଶ୍ରୀ ଚୈତନ୍ୟଗଣାନ୍ତଃପାତିତା ତୁ ପ୍ରେମାସ୍ପଦତ୍ୱେନ । ସେବକତ୍ୱେନୈତଦ୍‌ଗଣାନ୍ତଃପାତିତ୍ୱେ ପ୍ରୟୋଜନମାହ "ନିତ୍ୟାନନ୍ଦେର ଗଣ ଯତ" ଇତ୍ୟାଦି । ଏତେନ ଗଦାଧରଦାସସ୍ୟ ସେବକତ୍ୱେ ନୈତଦ୍‌ଗଣାନ୍ତଃପାତିତେତ୍ୟମନ୍ତବ୍ୟଂ ବ୍ରଜସଖିତ୍ୱାଭାବାଦିତି । ୧୯ । ଚଃ ଚଃ

ଶ୍ରୀରାମଦାସ—ଶ୍ରୀଅଭିରାମ ଦାସ । ୧୦ ।

ଏଇଦୁଇ—ଶ୍ରୀଅଭିରାମଦାସ ଓ ଶ୍ରୀଗଦାଧରଦାସ । ଏଇ ବିବରଣ—ଦୁଇଗଣଭୁକ୍ତ ( ଶ୍ରୀମହାପ୍ରଭୁଙ୍କ ଗଣ ଓ ଶ୍ରୀନିତ୍ୟାନନ୍ଦପ୍ରଭୁଙ୍କ ଗଣ) । ୧୨ ।

ଶ୍ରୀମନ୍ ନିତ୍ୟାନନ୍ଦଙ୍କ ପରିକରମାନେ ସଖ୍ୟଭାବାପନ୍ନ ହେଲେହେଁ, ଶ୍ରୀଗଦାଧରଦାସ ଶ୍ରୀଗୋପୀଭାବାପନ୍ନ ଏବଂ ଶ୍ରୀମନ୍ ବଳରାମଙ୍କର ବ୍ରଜପ୍ରେୟସୀ ପୂର୍ଣ୍ଣାନନ୍ଦଚନ୍ଦ୍ର ଓ ଗୌରଗଣୋଦ୍ଦେଶ ଦୀପିକା ଅନୁସାରେ ଶ୍ରୀମନ୍ ମହାପ୍ରଭୁଙ୍କ ଗଣରେ ଶ୍ରୀମତୀ ରାଧିକାଙ୍କର ବିଭୂତିରୂପା ଶ୍ରୀମତୀ ଚନ୍ଦ୍ରକାନ୍ତୀ । ୧୪ ।

ପ୍ରଭୁର— ଶ୍ରୀମନ ମହାପ୍ରଭୁଙ୍କର । ୧୬ ।

ମର୍ମ୍ମ—ଅନ୍ତରଙ୍ଗ । ନର୍ମ୍ମ—ରହସ୍ୟ । ୨୦

ନବଦ୍ୱୀପେ ପୁରୁଷୋତ୍ତମପଣ୍ଡିତ-ମହାଶୟ ।
ନିତ୍ୟାନନ୍ଦ ନାମେ ଯାଁର ମହୋନ୍ମାଦ ହୟ । ୩୦ ।
ବଳରାମଦାସ କୃଷ୍ଣପ୍ରେମରସାସ୍ୱାଦୀ ।
ନିତ୍ୟାନନ୍ଦ ନାମେ ହୟ ପରମ ଉନ୍ମାଦୀ । ୩୧ ।
ମହାଭାଗବତ ଯଦୁନାଥ କବିଚନ୍ଦ୍ର ।
ଯାଁହାର ହୃଦୟେ ନୃତ୍ୟ କରେ ନିତ୍ୟାନନ୍ଦ । ୩୨ ।
ରାଢ଼େ ଜନ୍ମ ଯାର କୃଷ୍ଣଦାସ ଦ୍ୱିଜବର ।
ଶ୍ରୀନିତ୍ୟାନନ୍ଦେର ତିଁହୋ ପରମ କିଙ୍କର । ୩୩ ।
କାଲା କୃଷ୍ଣଦାସ ବଡ଼ ବୈଷ୍ଣବପ୍ରଧାନ ।
ନିତ୍ୟାନନ୍ଦଚନ୍ଦ୍ର ବିନୁ ନାହି ଜାନେ ଆନ । ୩୪ ।
ଶ୍ରୀସଦାଶିବ କବିରାଜ ବଡ଼ ମହାଶୟ ।
ଶ୍ରୀପୁରୁଷୋତ୍ତମଦାସ ତାଁହାର ତନୟ । ୩୫ ।
ଆଜନ୍ମ ନିମଗ୍ନ ନିତ୍ୟାନନ୍ଦେର ଚରଣେ ।
ନିରନ୍ତର ବାଲ୍ୟଲୀଳା କରେ କୃଷ୍ଣସନେ । ୩୬ ।
ତାଁର ପୁତ୍ର ମହାଶୟ ଶ୍ରୀକାନୁ ଠାକୁର ।
ଯାଁର ଦେହେ ରହେ କୃଷ୍ଣ ପ୍ରେମାମୃତପୂର । ୩୭ ।
ମହାଭାଗବତଶ୍ରେଷ୍ଠ ଦତ୍ତ ଉଦ୍ଧାରଣ ।
ସର୍ବଭାବେ ସେବେ ନିତ୍ୟାନନ୍ଦେର ଚରଣ । ୩୮ ।
ଆଚାର୍ଯ୍ୟ ବୈଷ୍ଣବାନନ୍ଦ ଭକ୍ତି - ଅଧିକାରୀ ।
ପୂର୍ବେ ନାମ ଛିଲ ଯାଁର 'ରଘୁନାଥପୁରୀ' । ୩୯ ।
ବିଷ୍ଣୁଦାସ ନନ୍ଦନ ଗଙ୍ଗାଦାସ--ତିନଭାଇ ।
ପୂର୍ବେ ଯାଁର ଘରେ ଛିଲା ନିତ୍ୟାନନ୍ଦଗୋସାଞି । ୪୦ ।
ନିତ୍ୟାନନ୍ଦଭୃତ୍ୟ ପରମାନନ୍ଦ-ଉପାଧ୍ୟାୟ ।
ଶ୍ରୀଜୀବପଣ୍ଡିତ ନିତ୍ୟାନନ୍ଦ ଗୁଣ ଗାୟ । ୪୧ ।
ପରମାନନ୍ଦ ଗୁପ୍ତ କୃଷ୍ଣଭକ୍ତ ମହାମତି ।
ପୂର୍ବେ ଯାଁର ଘରେ ନିତ୍ୟାନନ୍ଦେର ବସତି । ୪୨ ।
ନାରାୟଣ, କୃଷ୍ଣଦାସ, ଆର ମନୋହର ।
ଦେବାନନ୍ଦ,-ଚାରି-ଭାଇ ନିତାଇ କିଙ୍କର । ୪୩ ।
ହୋଡ଼ କୃଷ୍ଣଦାସ ନିତ୍ୟାନନ୍ଦପ୍ରଭୁ-ପ୍ରାଣ ।
ନିତ୍ୟାନନ୍ଦପଦ ବିନୁ ନାହି ଜାନେ ଆନ । ୪୪ ।
ନକଡ଼ି ମୁକୁନ୍ଦ ସୂର୍ଯ୍ୟ ମାଧବ ଶ୍ରୀଧର ।
ରାମାନନ୍ଦ ବସୁ ଜଗନ୍ନାଥ ମହୀଧର । ୪୫ ।
ଶ୍ରୀମନ୍ତ ଗୋକୁଳଦାସ ହରିହରାନନ୍ଦ ।
ଶିବାଇ ନନ୍ଦାଇ ଅବଧୂତ-ପରମାନନ୍ଦ । ୪୬ ।
ବସନ୍ତ ନବନୀ ହୋଡ଼ ଗୋପାଳ ସନାତନ ।
ବିଷ୍ଣାଇ ହାଜରା କୃଷ୍ଣାନନ୍ଦ ସୁଲୋଚନ । ୪୭ ।
କଂସାରିସେନ ରାମସେନ ରାମଚନ୍ଦ୍ର କବିରାଜ ।
ଗୋବିନ୍ଦ ଶ୍ରୀରଙ୍ଗ ମୁକୁନ୍ଦ-ତିନ କବିରାଜ । ୪୮ ।
ପୀତାମ୍ବର ମାଧବାଚାର୍ଯ୍ୟ ଦାସ ଦାମୋଦର ।
ଶଙ୍କର ମୁକୁନ୍ଦ ଜ୍ଞାନ ଦାସ ମନୋହର । ୪୯ ।
ନର୍ତ୍ତକ ଗୋପାଳ ରାମଭଦ୍ର ଗୌରାଙ୍ଗ ଦାସ ।
ନୃସିଂହ ଚୈତନ୍ୟଦାସ ମୀନକେତନ ରାମଦାସ । ୫୦ ।
ବୃନ୍ଦାବନ ଦାସ—ନାରାୟଣୀର ନନ୍ଦନ ।
ଚୈତନ୍ୟମଙ୍ଗଳ ଯିହୋ କରିଲା ରଚନ । ୫୧ ।
ଭାଗବତେ କୃଷ୍ଣଲୀଳା ବର୍ଣ୍ଣିଲା ବେଦବ୍ୟାସ ।
ଚୈତନ୍ୟ ଲୀଳାତେ ବ୍ୟାସ-ବୃନ୍ଦାବନ ଦାସ । ୫୨ ।
ସର୍ବ ଶାଖା ଶ୍ରେଷ୍ଠ ଶ୍ରୀ ବୀରଭଦ୍ର-ଗୋସାଞି ।
ତାଁର ଉପଶାଖା ଯତ—ତାର ଅନ୍ତ ନାଇ । ୫୩ ।
ଅନନ୍ତ ନିତ୍ୟାନନ୍ଦ-ଗଣ—କେ କରୁ ଗଣନ ।
ଆତ୍ମ ପବିତ୍ରତା ହେତୁ ଲିଖିଲ କତୋଜନ । ୫୪ ।
ଏଇ ସବ ଶାଖାପୂର୍ଣ୍ଣ ପକ୍ୱ-ପ୍ରେମଫଲେ ।
ଯାରେ ଦେଖେ ତାରେ ଦିୟା ଭାସାଇଲ ସକଲେ । ୫୫ ।
ଅନର୍ଗଳ ପ୍ରେମା ସଭାର—ଚେଷ୍ଟା ଅନର୍ଗଳ ।
ପ୍ରେମ ଦିତେ କୃଷ୍ଣ ଦିତେ ଧରେ ମହାବଳ । ୫୬ ।
ସଂକ୍ଷେପେ କହିଲ ଏଇ ନିତ୍ୟାନନ୍ଦ-ଗଣ ।
ଯାଁହାର ଅବଧି ନା ପାୟ ସହସ୍ରବଦନ । ୫୭ ।
ଶ୍ରୀରୂପ-ରଘୁନାଥ-ପଦେ ଯାର ଆଶ ।
ଚୈତନ୍ୟଚରିତାମୃତ କହେ କୃଷ୍ଣଦାସ । ୫୮ ।

ଇତି ଶ୍ରୀଚୈତନ୍ୟଚରିତାମୃତେ ଆଦିଖଣ୍ଡେ ନିତ୍ୟାନନ୍ଦ-ସ୍କନ୍ଧ ଶାଖା ବର୍ଣ୍ଣନଂ ନାମ ଏକାଦଶ ପରିଚ୍ଛେଦଃ । ୧୧ ।

——:୦:——

ଚୈତନ୍ୟମଙ୍ଗଳ—ଚୈତନ୍ୟଭାଗବତ । ୫୧ ।

ଏକାଦଶ ପରିଚ୍ଛେଦ ସମାପ୍ତ ।

## ଦ୍ୱାଦଶ ପରିଚ୍ଛେଦ ।

ଅଦ୍ୱୈତାଂଘ୍ର୍ୟବ୍ଜଭୃଙ୍ଗାଂସ୍ତାନ୍ ସାରାସାରଭୃତୋଽଖିଳାନ୍ । ହିତ୍ୱା ସାରାନ୍ ସାରଭୃତୋ ନୌମି ଚୈତନ୍ୟଜୀବନାନ୍ । ୧ ।

ଜୟ ଜୟ ମହାପ୍ରଭୁ ଶ୍ରୀକୃଷ୍ଣ ଚୈତନ୍ୟ ।
ଜୟ ଜୟ ନିତ୍ୟାନନ୍ଦ ଜୟାଦ୍ୱୈତ ଧନ୍ୟ ।
ଶ୍ରୀଚୈତନ୍ୟାମରତରୋ ର୍ଦ୍ୱିତୀୟସ୍କନ୍ଧରୂପିଣଃ ।
ଶ୍ରୀମଦଦ୍ୱୈତଚନ୍ଦ୍ରସ୍ୟ ଶାଖାରୂପାନ୍ ଗଣାନ୍ ନୁମଃ ।୨
ବୃକ୍ଷେର ଦ୍ୱିତୀୟ ସ୍କନ୍ଧ ଆଚାର୍ଯ୍ୟ ଗୋସାଞି ।
ତାଁର ଯତ-ଶାଖା ହୈଲ, ତାର ଲେଖା ନାହି ।୨।
ଚୈତନ୍ୟ-ମାଳୀର କୃପାଜଲେର ସେଚନେ ।
ସେଇ ଜଲେ ପୁଷ୍ଟ ସ୍କନ୍ଧ ବାଢ଼େ ଦିନେ ଦିନେ ।୩।
ସେଇ ସ୍କନ୍ଧେ ଯତ ପ୍ରେମଫଲ ଉପଜିଲ ।
ସେଇ କୃଷ୍ଣ ପ୍ରେମଫଲେ ଜଗତ୍ ଭରିଲ ।୪।
ସେଇ ଜଲ ସ୍କନ୍ଧେ-କରେ ଶାଖାୟ ସଞ୍ଚାର ।
ଫଲେ ଫୁଲେ ବାଢ଼େ ଶାଖା ହଇଲ ବିସ୍ତାର ।୫।
ପ୍ରଥମେତେ ଏକମତ ଆଚାର୍ଯ୍ୟେର ଗଣ ।
ପାଛେ ଦୁଇମତ ହୈଲ ଦୈବେର କାରଣ ।୬।
କେହୋତ ଆଚାର୍ଯ୍ୟ-ଆଜ୍ଞାୟ କେହୋତ ସ୍ୱତନ୍ତ୍ର ।
ସ୍ୱମତ-କଳ୍ପନା କରେ ଦୈବପରତନ୍ତ୍ର ।୭।
ଆଚାର୍ଯ୍ୟେର ମତ ଯେଇ—ସେଇ ମତ 'ସାର' ।
ତାଁର ଆଜ୍ଞା ଲଙ୍ଘି ଚଲେ-ସେଇତ 'ଅସାର' ।୮।
ଅସାରେର ନାମ ଇହାଁ ନାହି ପ୍ରୟୋଜନ ।
ଭେଦଜାନିବାରେ କରେ ଏକତ୍ର ଗଣନ ।୯।
ଧାନ୍ୟରାଶି ମାପି ଯୈଛେ ପାତନା ସହିତେ ।
ପାଛେ ପାତନା ଉଡ଼ାଇଯା ସଂସ୍କାର କରିତେ ।୧୦

## ଦ୍ୱାଦଶ ପରିଚ୍ଛେଦ ।

ସାରାସାରଭୃତଃ ( ସାରଃ ଅଦ୍ୱୈତାଚରିତମ୍, ଅସାରଃ ତଦନାଚରିତଂ ତୌ ବିଭ୍ରତୀତି ତାନ୍ ) ଅଖିଳାନ୍ (ସମୁଦସ୍ତାନ୍) ଅଦ୍ୱୈତାଂଘ୍ର୍ୟବ୍ଜଭୃଙ୍ଗାନ୍ ( ଅଦ୍ୱୈତସ୍ୟ ଅଂଘ୍ରୀ ଏବ ଅବ୍ଜେ ତୟୋଃ ଭୃଙ୍ଗାନ୍ ମଧୁକରାନ୍ ଶ୍ରୀ ଅଦ୍ୱୈତଭକ୍ତାନ୍) ଅସାରାନ୍ ( ପଶ୍ଚାତ୍ ସ୍ୱମତଗୃହୀତାନ୍ ) ହିତ୍ୱା (ତ୍ୟକ୍ତ୍ୱା ) ଚୈତନ୍ୟଜୀବନାନ୍ (ଚୈତନ୍ୟ ଏବ ଜୀବନଂ ପ୍ରାଣାଃ ଯେଷାଂ ତାନ୍) ସାରଭୃତଃ ତାନ୍ ( ଭକ୍ତାନ୍) ନୌମି ।
୧ମ ଶ୍ଳୋକଃ ।

ଶ୍ରୀ ଚୈତନ୍ୟାମରତରୋଃ ( ଶ୍ରୀଚୈତନ୍ୟକଳ୍ପବୃକ୍ଷସ୍ୟ) ଦ୍ୱିତୀୟସ୍କନ୍ଧରୂପିଣଃ ଶ୍ରୀମଦଦ୍ୱୈତଚନ୍ଦ୍ରସ୍ୟ ଶାଖାରୂପଗଣାନ୍ (ଭକ୍ତଗଣାନ୍) ନୁମଃ । ୨ୟ ଶ୍ଳୋକଃ ।

---

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଶ୍ରୀଚରଣାଶ୍ରିତ ଭକ୍ତମାନଙ୍କ ମଧ୍ୟରୁ ଯେଉଁମାନେ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର ମତବିରୋଧୀ ଓ ଶ୍ରୀମନ୍ ମହାପ୍ରଭୁଙ୍କର ଅଭକ୍ତ, ସେମାନଙ୍କୁ ତ୍ୟାଗକରି କେବଳ ସାରବାନ୍ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟମତାବଲମ୍ବୀ ଶ୍ରୀମନ୍ ମହାପ୍ରଭୁଙ୍କ ଭକ୍ତଗଣଙ୍କୁ ପ୍ରଣାମକରୁଅଛି ।
୧ମ ଶ୍ଳୋକାର୍ଥ ।

ଶ୍ରୀଚୈତନ୍ୟରୂପ କଳ୍ପବୃକ୍ଷର ଦ୍ୱିତୀୟସ୍କନ୍ଧରୂପୀ ଶ୍ରୀମନ୍ ଅଦ୍ୱୈତଚନ୍ଦ୍ରଙ୍କର ଶାଖାରୂପ ଭକ୍ତମାନଙ୍କୁ ପ୍ରଣାମ କରେ । ୨ୟ ଶ୍ଳୋକାର୍ଥ ।

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର ଭକ୍ତମାନେ ଶ୍ରୀମନ୍ ଆଚାର୍ଯ୍ୟଙ୍କ ମତ ଅନୁସାରେ ଶ୍ରୀମନ୍ ମହାପ୍ରଭୁଙ୍କ ପରମଆଶ୍ରୟତତ୍ତ୍ୱରୂପରେ ଆଶ୍ରୟ କରିଥିଲେ, କିନ୍ତୁ ଦୁର୍ଦୈବବଶତଃ ସେମାନଙ୍କମଧ୍ୟରୁ କେହି ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଆଜ୍ଞା ଲଙ୍ଘନକରି ଶ୍ରୀମନ୍ ମହାପ୍ରଭୁଙ୍କୁ ଜ୍ଞାନ ସ୍ୱତନ୍ତ୍ରମତ କଳ୍ପନା କଲେ, ଅର୍ଥାତ୍ ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କୁ ପରମେଶ୍ୱର ବୋଲି ପ୍ରଚାର କଲେ ଓ ଭକ୍ତିଠାରୁ ଜ୍ଞାନଯୋଗର ଶ୍ରେଷ୍ଠତ୍ୱ ପ୍ରଚାରକଲେ । ଅତଏବ ଏହି ଶ୍ରେଣୀର ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ ଭକ୍ତମାନେ ଅସାର ।୬।୭।୮।
ଭେଦ—ସାରଅସାରମଧ୍ୟରେ ପାର୍ଥକ୍ୟ । ୯ ।
ପାତନା—ଅସାରତ୍ୱ । ୧୦ ।

ଅଚ୍ୟୁତାନନ୍ଦ ବଡ଼ଶାଖା ଆଚାର୍ଯ୍ୟ ନନ୍ଦନ ।
ଆଜନ୍ମ ସେବିଲା ଯେହେଁ ଚୈତନ୍ୟଚରଣ ।୧୧।
ଚୈତନ୍ୟ ଗୋସାଞ୍ଚିର ଗୁରୁ-କେଶବ ଭାରତୀ ।
ଏଇ ପିତାର ବାକ୍ୟ ଶୁନି ଦୁଃଖ ପାଇଲ ଅତି ।୧୨।
"ଜଗଦ୍‌ଗୁରୁତେ କର ଐଛେ ଉପଦେଶ ।
ତୋମାର ଏଇ ଉପଦେଶେ ନଷ୍ଟ ହୈଲ ଦେଶ ।
ଚୌଦ୍ଦ ଭୁବନେର ଗୁରୁ—ଚୈତନ୍ୟଗୋସାଞ୍ଚି ।
ତାଁର ଗୁରୁ ଅନ୍ୟ—ଏଇ କୋନଶାସ୍ତ୍ରେ ନାଇ"।୧୪।
ପଞ୍ଚମ ବର୍ଷେର ବାଲକ କହେ ସିଦ୍ଧାନ୍ତେର ସାର ।
ଶୁନିଯା ପାଇଲ ଆଚାର୍ଯ୍ୟ ସନ୍ତୋଷ ଅପାର ।୧୫।
କୃଷ୍ଣମିଶ୍ର ନାମ ଆର ଆଚାର୍ଯ୍ୟତନୟ ।
ଚୈତନ୍ୟ ଗୋସାଞ୍ଚି ବୈସେ ଯାହାର ହୃଦୟ ।୧୬।
ଶ୍ରୀଗୋପାଲ-ନାମେ ଆର ଆଚାର୍ଯ୍ୟେର ସୁତ ।
ତାହାର ଚରିତ୍ର ଶୁନ ଅତ୍ୟନ୍ତ ଅଦ୍ଭୁତ ।୧୭।
ଗୁଣ୍ଡିଚା ମନ୍ଦିରେ ମହାପ୍ରଭୁର ସମ୍ମୁଖେ ।
କୀର୍ତ୍ତନେ ନର୍ତ୍ତନ କରେ ବଡ଼ ପ୍ରେମସୁଖେ ।୧୮।
ନାନା ଭାବୋଦ୍ଗମ ଦେହେ—ଅଦ୍ଭୁତ ନର୍ତ୍ତନ ।
ଦୁଇ ଗୋସାଞ୍ଚି 'ହରି' ବୋଲେ ଆନନ୍ଦିତ ମନ ॥
ନାଚିତେ ନାଚିତେ ଗୋପାଲ ହଇଲା ମୂର୍ଚ୍ଛିତ ।
ଭୂମିତେ ପଡ଼ିଲା, ଦେହେ ନାହିକ ସମ୍ବିତ ।୨୦।
ଦୁଃଖୀ ହଇଲା ଆଚାର୍ଯ୍ୟ—ପୁତ୍ର କୋଲେ ଲୈଯା ।
ରକ୍ଷା କରେନ ନୃସିଂହେର ମନ୍ତ୍ର ପଢ଼ିଯା ।୨୧।
ନାନାମନ୍ତ୍ର ପଢ଼େନ ଆଚାର୍ଯ୍ୟ, ନା ହୟ ଚେତନ ।
ଦୁଃଖୀ ହଇଯା ଆଚାର୍ଯ୍ୟ କରେନ କ୍ରନ୍ଦନ ।୨୨।
ତବେ ମହାପ୍ରଭୁ, ତାଁର ହୃଦେ ହସ୍ତ ଧରି ।
ଉଠହ ଗୋପାଲ ! କୈଲ—ବୋଲ ହରି ।୨୩।
ଉଠିଲା ଗୋପାଲ ପ୍ରଭୁର ସ୍ପର୍ଶଧ୍ୱନି ଶୁନି ।
ଆନନ୍ଦିତ ହୈଯା ସବେ କରେ ହରିଧ୍ୱନି । ୨୪ ।
ଆଚାର୍ଯ୍ୟେର ଆର ପୁତ୍ର ଶ୍ରୀବଲରାମ ।
ଆର ପୁତ୍ର ସ୍ୱରୂପଶାଖା-ଜଗଦୀଶ ନାମ । ୨୫ ।
କମଲାକାନ୍ତ ବିଶ୍ୱାସ ନାମ ଆଚାର୍ଯ୍ୟକିଙ୍କର ।
ଆଚାର୍ଯ୍ୟେର ବ୍ୟବହାର ତାଁହାର ଗୋଚର । ୨୬ ।
ନୀଳାଚଲେ ତେଁହୋ ଏକ ପତ୍ରିକା ଲିଖିଯା ।
ପ୍ରତାପରୁଦ୍ରେର ପାଶ ଦିଲ ପାଠାଇଯା । ୨୭ ।
ସେଇତ ପତ୍ରୀର କଥା ଆଚାର୍ଯ୍ୟ ନାହି ଜାନେ ।
କୋନ-ପାକେ ସେଇ ପତ୍ରୀ ଆଇଲ ପ୍ରଭୁସ୍ଥାନେ ॥
ସେଇ ପତ୍ରୀତେ ଲିଖିଯାଛେ ଏଇତ ଲିଖନ—।
'ଈଶ୍ୱରତ୍ୱେ ଆଚାର୍ଯ୍ୟେର କରିଯାଛେ ସ୍ଥାପନ ।୨୯।
କିନ୍ତୁ ତାଁର ଦୈବେ କିଛୁ ହଇଯାଛେ ଋଣ ।
ଋଣ ଶୋଧିବାରେ ଚାହି ତଙ୍କା ଶତ ତିନ' ।୩୦ ।
ପତ୍ର ପଢ଼ିଯା ପ୍ରଭୁର ମନେ ହୈଲ ଦୁଃଖ ।
ବାହିରେ ହାସିଯା କିଛୁ କହେ ଚନ୍ଦ୍ରମୁଖ—।୩୧ ।

ଆଚାର୍ଯ୍ୟ—ଅଦ୍ୱୈତାଚାର୍ଯ୍ୟ । ୧୧ ।
ଏ ବିଷୟର ଆଖ୍ୟାୟିକା ଶ୍ରୀଚୈତନ୍ୟଭାଗବତରେ ଦ୍ରଷ୍ଟବ୍ୟ । ୧୨।
ଜଗଦ୍‌ଗୁରୁ—ଶ୍ରୀଚୈତନ୍ୟମହାପ୍ରଭୁ ।୧୩ ।
ଭାବୋଦ୍ଗମ—ସାତ୍ତ୍ୱିକବିକାରର ପ୍ରକାଶ । ୧୯ ।
ସମ୍ବିତ—ଚେତନା । ୨୦ ।
ରକ୍ଷାକରେନ୍—ଝାଡ଼ିଲେ । ୨୧ ।
ତାଁର—ଶ୍ରୀଗୋପାଳଙ୍କର । ହୃଦେ—ଛାତିରେ ।୨୩।
ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କର ପଞ୍ଚପୁତ୍ର ଯଥା—୧—ଶ୍ରୀ ଅଚ୍ୟୁତାନନ୍ଦ, ୨—ଶ୍ରୀ କୃଷ୍ଣମିଶ୍ର, ୩—ଶ୍ରୀ ଗୋପାଳ, ୪—ଶ୍ରୀ ବଳରାମ, ୫—ଶ୍ରୀରୂପ । ୨୫ ।
ବ୍ୟବହାର—ବୈଷୟିକ କ୍ରିୟା । ୨୬ ।
କୋନପାକେ—କୌଣସି ସୂତ୍ରରେ । ୨୮ ।
ତଙ୍କା—ଟଙ୍କା । ୩୦ ।
ଚନ୍ଦ୍ରମୁଖ—ଶ୍ରୀମନ୍ ମହାପ୍ରଭୁ ।୩୧।

ଆଚାର୍ଯ୍ୟେରେ ସ୍ଥାପିୟାଛେ କରିୟା ଈଶ୍ୱର ।
ଇଥେ ଦୋଷ ନାହି, ଆଚାର୍ଯ୍ୟ ଦୈବତ ଈଶ୍ୱର ।୩୨।
ଈଶ୍ୱରେର ଦୈନ୍ୟ କରି କରିୟାଛେ ଭିକ୍ଷା ।
ଅତଏବ ଦଣ୍ଡ କରି କରାଇବ ଶିକ୍ଷା । ୩୩ ।
ଗୋବିନ୍ଦେରେ ଆଜ୍ଞା ଦିଲ—ଇହାଁ ଆଜି ହୈତେ ।
ବାଉଲିୟା-ବିଶ୍ୱାସେରେ ନା ଦିବେ ଆସିତେ ।୩୪।
ଦଣ୍ଡ ଶୁନି ବିଶ୍ୱାସ ହୈଲା ପରମଦୁଃଖିତ ।
ଶୁନିୟା ପ୍ରଭୁର ଦଣ୍ଡ ଆଚାର୍ଯ୍ୟ ହର୍ଷିତ ।୩୫।
ବିଶ୍ୱାସେରେ କହେ—ତୁମି ବଡ଼ ଭାଗ୍ୟବାନ୍ ।
ତୋମାରେ କରିଲ ଦଣ୍ଡ ପ୍ରଭୁ ଭଗବାନ୍ । ୩୬ ।
ପୂର୍ବେ ମହାପ୍ରଭୁ ମୋରେ କରେନ ସମ୍ମାନ ।
ଦୁଃଖ ପାଇ ମନେ ଆମି କୈଲ ଅନୁମାନ—। ୩୭ ।
'ମୁକ୍ତି' ଶ୍ରେଷ୍ଠ କରି କୈଲ ବାଶିଷ୍ଠ ବ୍ୟାଖ୍ୟାନ ।
କ୍ରୁଦ୍ଧ ହଞା ପ୍ରଭୁ ମୋରେ କୈଲ ଅପମାନ । ୩୮ ।
ଦଣ୍ଡ ପାଞା ହୈଲ ମୋର ପରମ ଆନନ୍ଦ ।
ଯେ ଦଣ୍ଡ ପାଇଲ ଭାଗ୍ୟବାନ୍ ଶ୍ରୀମୁକୁନ୍ଦ । ୩୯ ।
ଯେ ଦଣ୍ଡ ପାଇଲେନ୍ ଶ୍ରୀଶଚୀ ଭାଗ୍ୟବତୀ ।
ସେ-ଦଣ୍ଡ-ପ୍ରସାଦ ଅନ୍ୟ ଲୋକ ପାବେ କତି ? ୪୦ ।
ଏତ କହି ଆଚାର୍ଯ୍ୟ ତାଁରେ କରିୟା ଆଶ୍ୱାସ ।
ଆନନ୍ଦିତ ହୈୟା ଆଇଲା ମହାପ୍ରଭୁର ପାଶ । ୪୧ ।
ପ୍ରଭୁକେ କହେନ—ତୋମାର ନା ବୁଝି ଏ ଲୀଳା ।
ଆମା ହୈତେ ପ୍ରସାଦ ପାତ୍ର କରିଲା କମଲା ? ୪୨ ।
ଆମାରେହ କଭୁ ଯେଇ ନା ହୟ ପ୍ରସାଦ ।
ତୋମାର ଚରଣେ ଆମି କି କୈନୁ ଅପରାଧ ? ।୪୩।
ଏତ ଶୁନି ମହାପ୍ରଭୁ ହାସିତେ ଲାଗିଲା ।
ବୋଲାଇଲା କମଲାକାନ୍ତେ—ପ୍ରସନ୍ନ ହଇଲା ।୪୪।
ଆଚାର୍ଯ୍ୟ କହେ-ଇହାକେ କେନେ ଦିଲେ ଦରଶନ ?
ଦୁଇ ପ୍ରକାରେତେ କରେ ମୋରେ ବିଡ଼ମ୍ବନ ।୪୫।
ଶୁନିୟା ପ୍ରଭୁର ମନ ପ୍ରସନ୍ନ ହଇଲ ।
ଦୋଁହାର ଅନ୍ତର କଥା ଦୋଁହେ ସେ ବୁଝିଲ ।୪୬।
ପ୍ରଭୁ କହେ—ବାଉଲିୟା ! ଐଛେ କାହେ କର ?
ଆଚାର୍ଯ୍ୟେର ଲଜ୍ଜା ଧର୍ମହାନି ସେ ଆଚର ? ।୪୭।
ପ୍ରତିଗ୍ରହ ନା କରିବେ କଭୁ ରାଜଧନ ।
ବିଷୟିର ଅନ୍ନ ଖାଇଲେ ଦୁଷ୍ଟ ହୟ ମନ । ୪୮ ।

ଦୈବତ—ସ୍ୱରୂପତଃ । ୩୨ ।

ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ତତ୍ତ୍ୱହିଁ ଈଶ୍ୱରତତ୍ତ୍ୱ । ଅତଏବ ଈଶ୍ୱରଙ୍କର କୌଣସି ପ୍ରକାର ଅଭାବ ହୋଇପାରେ ନା । ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କ କମଳାକାନ୍ତ ଈଶ୍ୱର ବୋଲି ପରିଚୟ ଦେଇ ତାଙ୍କର ଅଭାବ ବିଜ୍ଞପ୍ତି ଦ୍ୱାରା ଭିକ୍ଷା ପ୍ରାର୍ଥନା କରି ସ୍ୱତଃସିଦ୍ଧ ଈଶ୍ୱର ଶ୍ରୀମନ୍ ଆଚାର୍ଯ୍ୟଙ୍କୁ ଅପମାନିତ କରିଥିବାରୁ ଶ୍ରୀମନ୍ ମହାପ୍ରଭୁ କମଳାକାନ୍ତଙ୍କୁ ଶିକ୍ଷାଦଣ୍ଡ ଦେବାର ମନସ୍ଥ କଲେ । ୩୩ ।

ଗୋବିନ୍ଦ—ଶ୍ରୀମନ୍ ମହାପ୍ରଭୁଙ୍କ ଶ୍ରୀଅଙ୍ଗସେବକ । ବାଉଲିୟା ବିଶ୍ୱାସେରେ—ପାଗଳ କମଳାକାନ୍ତ ବିଶ୍ୱାସଙ୍କୁ । ୩୪ ।

ବାଶିଷ୍ଠ—ଯୋଗବାଶିଷ୍ଠ ।୩୮।

ଏଥିର ଆଖ୍ୟାୟିକାମାନ ଶ୍ରୀ ଚୈତନ୍ୟଭାଗବତରେ ଦ୍ରଷ୍ଟବ୍ୟ । ୩୭ ରୁ ୪୦ ।

ଦଣ୍ଡପ୍ରସାଦ – ଦଣ୍ଡରୂପ ଅନୁଗ୍ରହ । ୪୧ ।

କମଲା—କମଳାକାନ୍ତ ବିଶ୍ୱାସ । ୪୨ ।

କୈନୁ—କଲି । ୪୩ ।

ଦୁଇପ୍ରକାରେତେ—୧ମ—ଅଜ୍ଞାତରେ ମହାରାଜା ପ୍ରତାପରୁଦ୍ରଙ୍କୁ ଦୈନ୍ୟପତ୍ର ଲେଖିବା ଦ୍ୱାରା ଅପମାନିତ କରିବା । ୨ୟ—ମହାପ୍ରଭୁଙ୍କ ଭକ୍ତମାନରେ ତାଙ୍କର ( ଅଦ୍ୱୈତାଚାର୍ଯ୍ୟଙ୍କର ) ଈଶ୍ୱରତ୍ୱ ସ୍ଥାପନ କରିବା । ୪୫ ।

ଦୋହାଁର—ଶ୍ରୀମନ୍ ମହାପ୍ରଭୁ ଓ ଶ୍ରୀଅଦ୍ୱୈତାଚାର୍ଯ୍ୟ ।୪୬।

ଐଛେ—ଏ ପ୍ରକାର । କାହେ—କାହିଁକି । ୪୭ ।

ବିଷୟୀ—ବିଷୟାସକ୍ତ । ରାଜାମାନେ ପ୍ରଧାନ ବିଷୟୀ ହେବାରୁ ଏଠାରେ ବିଷୟୀ ରାଜା ।୪୮।

ମନ ଶୁଦ୍ଧ ହୋଇଲେ ନହେ କୃଷ୍ଣେର ସ୍ମରଣ ।
କୃଷ୍ଣସ୍ମୃତି ବିନା ହୟ ନିଷ୍ଫଳ ଜୀବନ ।୪୯।
ଲୋକଲଜ୍ଜା ହୟ, ଧର୍ମ-କୀର୍ତ୍ତି ହୟ ହାନି ।
ଐଛେ କର୍ମ୍ମ ନା କରିହ କଭୁ ଇହା ଜାନି ।୫୦।
ଏଇ ଶିକ୍ଷା ସଭାକାରେ,—ସଭେ ମନେ କୈଲ ।
ଆଚାର୍ଯ୍ୟଗୋସାଞ୍ଚି ମନେ ଆନନ୍ଦ ପାଇଲ ।୫୧।
ଆଚାର୍ଯ୍ୟେର ଅଭିପ୍ରାୟ ପ୍ରଭୁମାତ୍ର ବୁଝେ ।
ପ୍ରଭୁର ଗମ୍ଭୀର ବାକ୍ୟ ଆଚାର୍ଯ୍ୟ ସମୁଝେ ।୫୨।
ଏଇତ ପ୍ରସ୍ତାବେ ଆଛେ ବହୁତ ବିଚାର ।
ଗ୍ରନ୍ଥ ବାହୁଲ୍ୟ ଭୟେ ନାହି ଲିଖିବାର ।୫୩।
ଶ୍ରୀଯଦୁନନ୍ଦନାଚାର୍ଯ୍ୟ ଅଦ୍ୱୈତେର ଶାଖା ।
ତାଁର ଶାଖା-ଉପଶାଖାର ନାହିଁ ହୟ ଲେଖା ।୫୪।
ବାସୁଦେବଦତ୍ତେର ତିଁହୋ କୃପାର ଭାଜନ ।
ସର୍ବ୍ବଭାବେ ଆଶ୍ରିୟାଛେ ଚୈତନ୍ୟଚରଣ ।୫୫।
ଭାଗବତ-ଆଚାର୍ଯ୍ୟ ଆର ବିଷ୍ଣୁଦାସ-ଆଚାର୍ଯ୍ୟ ।
ଚକ୍ରପାଣି-ଆଚାର୍ଯ୍ୟ ଆର ଅନନ୍ତ-ଆଚାର୍ଯ୍ୟ ।୫୬।
ନନ୍ଦିନୀ ଆର କାମଦେବ ଚୈତନ୍ୟଦାସ ।
ଦୁର୍ଲ୍ଲଭ ବିଶ୍ୱାସ ଆର ବନମାଲୀଦାସ ।୫୭।
ଜଗନ୍ନାଥକର, ଆର କର ଭବନାଥ ।
ହୃଦୟାନନ୍ଦସେନ, ଆର ଦାସ ଭୋଲାନାଥ ।୫୮।
ଯାଦବଦାସ ବିଜୟଦାସ ଦାସ ଜନାର୍ଦ୍ଦନ ।
ଅନନ୍ତଦାସ କାନୁପଣ୍ଡିତ ଦାସ ନାରାୟଣ ।୫୯।
ଶ୍ରୀବତ୍ସପଣ୍ଡିତ ବ୍ରହ୍ମଚାରୀ ହରିଦାସ ।
ପୁରୁଷୋତ୍ତମ ବ୍ରହ୍ମଚାରୀ ଆର କୃଷ୍ଣଦାସ ।୬୦।
ପୁରୁଷୋତ୍ତମ-ପଣ୍ଡିତ-ଆର ରଘୁନାଥ ।
ବନମାଳୀ କବିଚନ୍ଦ୍ର ଆର ବୈଦ୍ୟନାଥ ।୬୧।
ଲୋକନାଥ-ପଣ୍ଡିତ-ଆର ମୁରାରି ପଣ୍ଡିତ ।
ଶ୍ରୀହରିଚରଣ ଆର ମାଧବ-ପଣ୍ଡିତ ।୬୨।
ବିଜୟ-ପଣ୍ଡିତ ଆର ପଣ୍ଡିତ ଶ୍ରୀରାମ ।
ଅସଂଖ୍ୟ ଅଦ୍ୱୈତ ଶାଖା—କତ ଲୈବ ନାମ ? ।୬୩।
ମାଳୀଦତ୍ତ ଜଲ ଅଦ୍ୱୈତସ୍କନ୍ଧ ଯୋଗାୟ ।
ସେଇ ଜଲେ ଜୀୟେ ଶାଖା—ଫୁଲ-ଫଲ ପାୟ ।।
ଇହାର ମଧ୍ୟେ ମାଳୀ ପାଛେ କୋନ ଶାଖାଗଣ ।
ନା ମାନେ ଚୈତନ୍ୟ ମାଳୀ ଦୁର୍ଦ୍ଦୈବକାରଣ ।୬୪।
ଯେ ଜନ୍ମାଇଲ ଜୀୟାଇଲ—ତାଁରେ ନା ମାନିଲ ।
କୃତଘ୍ନ ହଇଲ, ତାରେ ସ୍କନ୍ଧ କ୍ରୁଦ୍ଧ ହୈଲ ।୬୫।
କ୍ରୁଦ୍ଧ ହଞା ସ୍କନ୍ଧ ତାରେ ଜଲ ନା ସଞ୍ଚାରେ ।
ଜଲାଭାବେ କୃଶ ଶାଖା ଶୁକାଇୟା ମରେ ।୬୬।
ଚୈତନ୍ୟରହିତ ଦେହ-ଶୁଷ୍କ କାଷ୍ଠ ସମ ।
ଜୀବତେଇ ମୃତ ସେଇ; ଦଣ୍ଡେ ତାରେ ଯମ ।୬୭।
କେବଲ ଏ ଗଣ-ପ୍ରତି ନହେ ଏଇ ଦଣ୍ଡ ।
ଚୈତନ୍ୟବିମୁଖ ଯେଇ,-ସେଇତ-ପାଷଣ୍ଡ ।୬୮।
କି ପଣ୍ଡିତ କି ତପସ୍ୱୀ କିବା ଗୃହୀ ଯତି ।
ଚୈତନ୍ୟବିମୁଖ ଯେଇ, ତାର ଏଇ ଗତି ।୭୦।
ଯେ ଯେ ଲଇଲ ଶ୍ରୀଅଚ୍ୟୁତାନନ୍ଦେର ମତ ।
ସେଇ ଆଚାର୍ଯ୍ୟେର ଗଣ ମହାଭାଗବତ ।୭୧।
ଅଚ୍ୟୁତେର ଯେଇ ମତ—ସେଇ ମତ-ସାର ।
ଆର ଯତ ମତ—ସବ ହୈଲ ଛାରଖାର ।୭୨।

ଶ୍ରୀ ଅଦ୍ୱୈତଶାଖାୟାଂ ଶ୍ରୀ ଅଚ୍ୟୁତାନନ୍ଦତନ୍ମାଃ ସର୍ବ୍ବେ ଅଧାରାଃ ଯତଃ ଶ୍ରୀଅଚ୍ୟୁତାନନ୍ଦେର ମତ ଇତ୍ୟ ।୭୨। ଇଃ ଟଃ

ଭିକ୍ଷାର୍ଥୀ କର୍ତ୍ତୃହାନିକର ଏବଂ ଲଜ୍ଜାଜନକ । ଧନବ୍ୟବହାର କୃଷ୍ଣଭଜନର ବାଧକ ହେତୁ ଧର୍ମ୍ମନାଶକ ।୫୦।

ସମୁଝେ—ବୁଝନ୍ତି ।୫୨।

ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟଙ୍କର ଶାଖାମାନଙ୍କ ମଧ୍ୟରୁ କେହି ପ୍ରଥମେ ଶ୍ରୀମନ୍ ମହାପ୍ରଭୁଙ୍କ ପରମେଶ୍ୱର ବୋଲି ସ୍ୱୀକାରକର ପରେ ଦୁର୍ଦ୍ଦୈବବଶତଃ ଅସ୍ୱୀକାର କରିଥିଲେ ।୬୪।

ସ୍କନ୍ଧ—ଶ୍ରୀମନ୍ ଅଦ୍ୱୈତାଚାର୍ଯ୍ୟପ୍ରଭୁ ।୬୬।

